# ଶୃଙ୍ଗାର ତତ୍ତ୍ୱ
# ଓ
# ଓଡ଼ିଆ ରୀତି କାବ୍ୟ

ଡକ୍ଟର ବନମାଳୀ ବାରିକ



ମୟୂର ପବ୍ଲିକେସନ୍ସ
ଭୁବନେଶ୍ୱର

# ଶୃଙ୍ଗାର ତତ୍ତ୍ୱ ଓ ଓଡ଼ିଆ ରୀତି କାବ୍ୟ

ଲେଖକ : ଡକ୍ଟର ବନମାଳୀ ବାରିକ

ପ୍ରକାଶକ : ମୟୂର ପବ୍ଲିକେସନ୍ସ
ଭୁବନେଶ୍ୱର-୭୫୧୦୦୧

ପ୍ରଚ୍ଛଦ : ନିଓଗ୍ରାଫିକ୍ସ, ୩୪୭, ଆଚାର୍ଯ୍ୟ ବିହାର, ଭୁବନେଶ୍ୱର

ମୁଦ୍ରଣ : ଉଦ୍ୟୋଗ ପ୍ରିଣ୍ଟର୍ସ, ଭୁବନେଶ୍ୱର

୧୯୯୨

ମୂଲ୍ୟ




# Srungar Tatwa O Odiya Riti Kavya

**Dr. BANAMALI BARIK**

*Published by :*

**Mayur Publications,**

Kharavela Nagar, Bhubaneswar

**1992**

*Price :*



ଦିବଂଗତ

ପିତା ଦିବାକର ବାରିକ

ଓ

ମାତା ଭୂଲିଆ ଦେବୀଙ୍କ

ପବିତ୍ର ସ୍ମୃତିରେ

# ସ୍ୱୀକୃତି

ବ୍ରହ୍ମପୁର ସରକାରୀ ସାଧ୍ୟ ମହାବିଦ୍ୟାଳୟରେ ଅଧ୍ୟାପକ ରୂପେ ନିଯୁକ୍ତି ପାଇଲା ପରେ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ ପ୍ରତି ଏକ ଅହେତୁକ ଆସକ୍ତି ମୋ ଭିତରେ ଦେଖା ଦେଇଥିଲା । ତତ୍କାଳୀନ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗର ପ୍ରଫେସର ଓ ମୁଖ୍ୟ ଡକ୍ଟର କାହ୍ନୁଚରଣ ମିଶ୍ର ପ୍ରସ୍ତାବିତ କାର୍ଯ୍ୟରେ ସହାୟତା କରିବାକୁ ସମ୍ମତି ପ୍ରଦାନ କରିଥିଲେ । ବିଶ୍ୱବିଦ୍ୟାଳୟ ଅର୍ଥ ଆୟୋଗ (U G.C.) ତରଫରୁ ତିନି ବର୍ଷ ପାଇଁ (୨୧।୭।୭୭ରୁ ୨୦।୭।୮୦) ଶିକ୍ଷକ ଗବେଷକ ବୃତ୍ତି ଲାଭ କରି ଡକ୍ଟର ମିଶ୍ରଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଏହି ସନ୍ଦର୍ଭ ରଚନାରେ ପ୍ରବୃତ୍ତ ହେଲି । ତାଙ୍କର ଉତ୍ସାହ, ଉପଦେଶ ଓ ସହଯୋଗ ବିନା ମୋର ଲକ୍ଷ୍ୟ ସୁଦୂର ପରାହତ ହୋଇଥାନ୍ତା । ଆଜି ଏହାର ପ୍ରକାଶନ କାଳରେ ମୁଁ ତାଙ୍କୁ ହୃଦୟର ଗଭୀର କୃତଜ୍ଞତା ଜଣାଉଛି ।

ଗବେଷଣା ଉପଯୋଗୀ ଉପାଦାନ ସଂଗ୍ରହ ସମୟରେ ମୁଁ ଓଡ଼ିଶା ଓ ଓଡ଼ିଶା ବାହାରେ ଥିବା ବହୁ ଅନୁଷ୍ଠାନର ଦ୍ୱାରସ୍ଥ ହୋଇଅଛି । ସେଗୁଡ଼ିକ ହେଲା– ଜାତୀୟ ଗ୍ରନ୍ଥାଗାର (କଲିକତା), ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟ (ଶାନ୍ତି ନିକେତନ), ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ (ବ୍ରହ୍ମପୁର), ରେଭେନ୍ସା ମହାବିଦ୍ୟାଳୟ (କଟକ), ଓଡ଼ିଶା ରାଜ୍ୟ ଅଭିଲେଖାଗାର (ଭୁବନେଶ୍ୱର), ଓଡ଼ିଶା ରାଜ୍ୟ ସଂଗ୍ରହାଳୟ (ଭୁବନେଶ୍ୱର), ଉତ୍କଳ ସାହିତ୍ୟ ସମାଜ (କଟକ) ବଙ୍ଗୀୟ ସାହିତ୍ୟ ପରିଷଦ (କଲିକତା) ଓ କଳିଙ୍ଗ ଭାରତୀ (କଟକ) । ଏହି ଅବସରରେ ସଂପୃକ୍ତ ଅନୁଷ୍ଠାନଗୁଡ଼ିକର କର୍ତ୍ତୃପକ୍ଷଙ୍କ ଉଦାର ସହଯୋଗ ଶ୍ରଦ୍ଧାର ସହିତ ସ୍ମରଣ କରୁଛି ।

ବିଭିନ୍ନ ସମୟରେ ଶ୍ରୀଯୁକ୍ତ ହରେକୃଷ୍ଣ ଦାସ, ଡଃ ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ), ଡଃ ଗଗନେନ୍ଦ୍ର ନାଥ ଦାଶ ଓ ବନ୍ଧୁ ଡଃ ନରସିଂହ ବାମନ ପ୍ରଧାନ ଓ ଡଃ ସୁଧୀର ଚନ୍ଦ୍ର ମହାନ୍ତିଙ୍କ ପ୍ରେରଣା ଓ ପରାମର୍ଶ ଏହି କାର୍ଯ୍ୟକୁ ସଫଳ କରିବାରେ ସାହାଯ୍ୟ କରିଛି । ସେମାନଙ୍କ ନିକଟରେ ମୁଁ କୃତଜ୍ଞ ।

ସର୍ବୋପରି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗ ମୋର ଗବେଷଣା କାର୍ଯ୍ୟରେ ସକଳ ସୁବିଧା ସୁଯୋଗ ଯୋଗାଇ ଦେଇଥିବାରୁ ବିଭାଗୀୟ ସମସ୍ତ ଶିକ୍ଷକ, ଗବେଷକ, ଛାତ୍ରଛାତ୍ରୀ ଓ କର୍ମଚାରୀ ଧନ୍ୟବାଦାର୍ହ ।

ଭୁବନେଶ୍ୱରର ଅଭିଜାତ ପ୍ରକାଶନ ସଂସ୍ଥା 'ମୟୂର ପବ୍ଲିକେସନ୍ସ'ର ଅଧ୍ୟକ୍ଷ ଡକ୍ଟର ଭବଗ୍ରାହୀ ମିଶ୍ର ଏହି ଗବେଷଣାତ୍ମକ ସଂଦର୍ଭର ପ୍ରକାଶନ ଦାୟିତ୍ୱ ଗ୍ରହଣ କରିଥିବାରୁ ମୁଁ ତାଙ୍କ ନିକଟରେ କୃତଜ୍ଞ ।

ଏହି ଗ୍ରନ୍ଥର ପ୍ରସ୍ତୁତି ଓ ପ୍ରକାଶନକୁ ତ୍ୱରାନ୍ୱିତ କରିବାରେ ମୋର ସହଧର୍ମିଣୀ ଶ୍ରୀମତୀ ସଂଘମିତ୍ରା ବେହେରାଙ୍କ ଅବଦାନ ଭୁଲିବାର ନୁହେଁ । ଅବଶେଷରେ ମୁଦ୍ରଣ କାର୍ଯ୍ୟରେ ଉଦ୍ୟୋଗ ପ୍ରିଣ୍ଟର୍ସର କର୍ମକର୍ତ୍ତା ବିଶେଷ ଶ୍ରମ ସ୍ୱୀକାର କରିଥିବାରୁ ତାଙ୍କୁ ମୋର ଆନ୍ତରିକ ଶ୍ରଦ୍ଧା ଜଣାଉଛି ।

ରଜ ସଂକ୍ରାନ୍ତି

ଭୁବନେଶ୍ୱର

ବନମାଳୀ ବାରିକ

---

ବି:ଦ୍ର: 'ଶୃଙ୍ଗାର ତତ୍ତ୍ୱ ଓ ଓଡ଼ିଆ ରୀତି କାବ୍ୟ' ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ପିଏଚ୍. ଡ଼ି. ଡିଗ୍ରୀ ନିମନ୍ତେ ଅନୁମୋଦିତ ସନ୍ଦର୍ଭ (ଓଡ଼ିଆ ରୀତି କାବ୍ୟରେ ଶୃଙ୍ଗାର ଚେତନା)ର ପ୍ରକାଶିତ ରୂପ ।

# ॥ ସୂଚୀ ॥


ସୂଚନା ୧

ପ୍ରବେଶିକା ୪

## ପ୍ରଥମ ଅଧ୍ୟାୟ

ଶୃଙ୍ଗାର ତତ୍ତ୍ୱ–

ଶୃଙ୍ଗାର ଓ ସାହିତ୍ୟଶାସ୍ତ୍ର, ଶୃଙ୍ଗାର ଓ ଧର୍ମଭାବନା, ଶୃଙ୍ଗାର ଓ ସଂସ୍କୃତି, ଶୃଙ୍ଗାର ଓ କାମଶାସ୍ତ୍ର, ଶୃଙ୍ଗାର ଓ ମନୋବିଜ୍ଞାନ ୨୨

## ଦ୍ୱିତୀୟ ଅଧ୍ୟାୟ

ଶୃଙ୍ଗାର ଚେତନାର ପରଂପରା–

ବିଶ୍ୱସାହିତ୍ୟ, ଭାରତୀୟ ସାହିତ୍ୟ, ଓଡ଼ିଆ ସାହିତ୍ୟ ୧୧୪

## ତୃତୀୟ ଅଧ୍ୟାୟ

ରସବିନ୍ୟାସ : ବିପ୍ରଲମ୍ଭ–

ପୂର୍ବରାଗ, ବିରହ, ମାନ, ପ୍ରବାସ, କରୁଣ, ଅନ୍ୟାନ୍ୟ ୧୮୬

## ଚତୁର୍ଥ ଅଧ୍ୟାୟ

ରସବିନ୍ୟାସ : ସମ୍ଭୋଗ–

ମିଛ, ଫକର, ସପନ୍ନ, ସମୃଦ୍ଧିମାନ, ନାୟିକାରବ୍ଧ ଓ ନାୟକାରବ୍ଧ, ମୁଖ୍ୟ ଓ ଗୌଣ, କୃଷ୍ଣକାବ୍ୟ ୨୫୨

## ପଞ୍ଚମ ଅଧ୍ୟାୟ

### ବସ୍ତୁ ବର୍ଣ୍ଣନା

ନଗର, ଅରଣ୍ୟ, ପର୍ବତ, ନଦୀ, ସରୋବର ଜଳକେଳି,
ଉପବନ, ସନ୍ଧ୍ୟା, ଚନ୍ଦ୍ରୋଦୟ ରଜନୀ, ପ୍ରଭାତ, ଦେଶଭାଗ,
ଋତୁଚକ୍ର ପ୍ରକୃତି ୩୦୨

## ଷଷ୍ଠ ଅଧ୍ୟାୟ

### ସୌନ୍ଦର୍ଯ୍ୟ ନିରୂପଣ-

ନାୟିକା ସୌନ୍ଦର୍ଯ୍ୟ – ରୂପ ସୌନ୍ଦର୍ଯ୍ୟ, ଗୁଣ ସୌନ୍ଦର୍ଯ୍ୟ,
ଭୂଷଣ ସୌନ୍ଦର୍ଯ୍ୟ, ସାମଗ୍ରିକ, ନାୟକ ସୌନ୍ଦର୍ଯ୍ୟ –
ରୂପ ସୌନ୍ଦର୍ଯ୍ୟ, ଗୁଣ ସୌନ୍ଦର୍ଯ୍ୟ, ଭୂଷଣ ସୌନ୍ଦର୍ଯ୍ୟ,
ସାମଗ୍ରିକ, ଅନ୍ୟାନ୍ୟ ୩୫୨

## ସପ୍ତମ ଅଧ୍ୟାୟ

### ବିବିଧ ପ୍ରସଙ୍ଗ-

ନାମକରଣ, ଚରିତ୍ର, କାବ୍ୟ ଗୌରବ, ପୂର୍ବଜନ୍ମ,
ସତ୍ୟରକ୍ଷା, • ମନ୍ତ୍ର ସାଧନା, ତାନ୍ତ୍ରିକତା, ବ୍ରତାଚରଣ,
ଛଦ୍ମବେଶ, କାନ୍ଥଲେଖା, ନ.ସ୍ତ୍ରୀ ସମକାମୀତା ପ୍ରଭୃତି ୪୧୭

ଉପସଂହାର ୪୬୭

ଗ୍ରନ୍ଥସୂଚୀ ୪୭୦

–❋–

# ସୂଚନା

ଉପସ୍ଥାପିତ ସନ୍ଦର୍ଭରେ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ ଅଧ୍ୟୟନର ଏକ ନୂତନ ପ୍ରୟାସ କରାଯାଇଛି । ସୀମିତ ସମୟ ଓ ସୁଯୋଗ ମଧ୍ୟରେ ବିଶାଳ କାବ୍ୟ ପରଂପରାର ବିସ୍ତୃତ ବିଚାର ସଂପୂର୍ଣ୍ଣ ଅସମ୍ଭବ । ପୁନଶ୍ଚ ବହୁ କବିଙ୍କର ସୃଷ୍ଟି ସଂଭାର ଅଧ୍ୟାବଧି ଲୋକଲୋଚନ ଅନ୍ତରାଳରେ ବିଦ୍ୟମାନ । ସଂଗ୍ରହାଳୟଗୁଡ଼ିକରେ ସାଇତାହୋଇ ରହିଥିବା ଅଧିକାଂଶ ପାଣ୍ଡୁଲିପି ଏତେ ପ୍ରାଚୀନ ଯେ ସେସବୁର ବ୍ୟବହାର ଅତ୍ୟନ୍ତ ଆୟାସସାଧ୍ୟ । ଭାଷା ଓ ଲିପି ଦୃଷ୍ଟିରୁ ସେଗୁଡ଼ିକର ସାଧାରଣ ପଠନ ମଧ୍ୟ ସହଜ ନୁହେଁ । ସୁତରାଂ ପୋଥି ସମୂହର ବ୍ୟାପକ ସଂଗ୍ରହ, ସୁସଂରକ୍ଷଣ ଓ ଶୁଦ୍ଧ ସଂପାଦନା ତଥା ଓଡ଼ିଆ କାବ୍ୟ ସାହିତ୍ୟର ପୂର୍ଣ୍ଣାଙ୍ଗ ଇତିହାସ ସଂକଳନ କରା ନହେବା ପର୍ଯ୍ୟନ୍ତ ଏ କ୍ଷେତ୍ରରେ ଉଚ୍ଚତର ଚର୍ଚ୍ଚାର ସୀମା ସବୁବେଳେ ସଂକୁଚିତ ହୋଇ ରହିବ ।

ଏହା ପୂର୍ବରୁ ଓଡ଼ିଆ ରୀତିକାବ୍ୟ ସଂପର୍କିତ ଛଅଗୋଟି ସନ୍ଦର୍ଭ ବିଭିନ୍ନ ବିଶ୍ୱବିଦ୍ୟାଳୟର ସ୍ୱୀକୃତି ଲାଭ କରିଛି । ସେଗୁଡ଼ିକର ରଚୟିତା ହେଲେ–ଡକ୍‌ଟର ଉପେନ୍ଦ୍ର ନାଥ ମହାନ୍ତି (ବିଶ୍ୱଭାରତୀ), ଡକ୍‌ଟର କୁଞ୍ଜମଣି ମହାପାତ୍ର (ଉତ୍କଳ), ଡକ୍‌ଟର ସୁଦର୍ଶନ ଆଚାର୍ଯ୍ୟ (ବ୍ରହ୍ମପୁର), ଡକ୍‌ଟର ସତ୍ୟ ନାରାୟଣ ଆଚାର୍ଯ୍ୟ(ବ୍ରହ୍ମପୁର), ଡକ୍‌ଟର ଶ୍ରୀମତୀ ଶାରଦା ମହାନ୍ତି (ଉତ୍କଳ), ଡକ୍‌ଟର ଗଙ୍ଗାଧର ବଳ (ବ୍ରହ୍ମପୁର) । ସେମାନଙ୍କର କୃତି ସଂପର୍କରେ ସଂପୂର୍ଣ୍ଣ ସଚେତନ ଥାଇ ଏହି ସନ୍ଦର୍ଭ ପ୍ରସ୍ତୁତିରେ ମୁଁ ନିଜକୁ ନିୟୋଜିତ କରିଛି ।

ସୀମିତ ପରିସର ଦୃଷ୍ଟିରୁ ରୀତିଯୁଗର ସକଳ କବି ଓ ସେମାନଙ୍କ କାବ୍ୟ ସଂଭାର ଆଲୋଚନା ଅନ୍ତର୍ଭୁକ୍ତ ହୋଇ ପାରିନାହିଁ । ପ୍ରସଂଗର ଗୁରୁତ୍ୱକୁ ଭିତ୍ତିକରି କେତେଜଣ ପ୍ରଧାନ ଓ ଅପ୍ରଧାନ କବିଙ୍କର ସୁନିର୍ବାଚିତ କାବ୍ୟାବଳୀ (ପ୍ରକାଶିତ ଓ ଅପ୍ରକାଶିତ) ଅଧ୍ୟୟନ ନିମନ୍ତେ ଗୃହୀତ ।

ଆଲୋଚନାକୁ ଅଧିକ ତଥ୍ୟ ନିର୍ଭର କରିବା ପାଇଁ ସଂସ୍କୃତ, ହିନ୍ଦୀ, ବଙ୍ଗଳା, ଇଂରାଜୀ ଆଦି ବିଭିନ୍ନ ଭାଷାରେ ରଚିତ ଗ୍ରନ୍ଥ ତଥା ପତ୍ର ପତ୍ରିକାର ଆବଶ୍ୟକୀୟ ସାହାଯ୍ୟ ନିଆଯାଇଛି । ବିଭିନ୍ନ ସମୟରେ ବହୁ କବି, ଅଧ୍ୟାପକ, ଗବେଷକ ଓ ସମୀକ୍ଷକଙ୍କ ସହ ବ୍ୟକ୍ତିଗତ ଆଳାପ/ପରାମର୍ଶର ସୁଫଳକୁ ଏହି କାର୍ଯ୍ୟରେ ବିନିଯୋଗ କରିବାର ସୌଭାଗ୍ୟ ମୋତେ ମିଳିଛି ।

ଆଲୋଚନାର ମାର୍ଗ ସମ୍ବନ୍ଧରେ ଏଠାରେ କିଞ୍ଚିତ୍ ଉଲ୍ଲେଖ କରିବା ବିଧେୟ । (କ) ଓଡ଼ିଆ ରୀତି କାବ୍ୟର ଏକ ବିଶିଷ୍ଟ ବିଭବକୁ ସ୍ୱତନ୍ତ୍ରଭାବେ ବିଶ୍ଳେଷଣ କରିବା ଏହି ସନ୍ଦର୍ଭର ମୁଖ୍ୟ ବିଷୟ । ତାହା ହେଉଛି–ଶୃଙ୍ଗାର ଚେତନାର ବିବିଧ ବୈଚିତ୍ର୍ୟ ସହ ଆମ କାବ୍ୟ ସାହିତ୍ୟ ଭିତ୍ତିରେ ତାହାର ସ୍ୱରୂପ ନିରୂପଣ । (ଖ) ମଧ୍ୟଯୁଗୀୟ ସାହିତ୍ୟର କେବଳ ନିନ୍ଦା ବା ପ୍ରଶଂସା–ସମାଲୋଚନାର ଏଇ ଏକଦିଗଦର୍ଶୀ ଧାରାକୁ ପରିହାର କରାଯାଇ ନିରପେକ୍ଷ ସିଦ୍ଧାନ୍ତରେ ପହଞ୍ଚିବାର ଯତ୍‌ପରୋନାସ୍ତି ପ୍ରଚେଷ୍ଟା ଏହି ସନ୍ଦର୍ଭର ଅନ୍ୟତମ ଦିଗ । (ଗ) ଭାରତୀୟ ସାହିତ୍ୟ (ମୁଖ୍ୟତଃ ସଂସ୍କୃତ ଓ ହିନ୍ଦୀ) ପରିପ୍ରେକ୍ଷୀରେ ଓଡ଼ିଆ କାବ୍ୟ ସଂପଦର ତୁଳନାମୂଳକ ଅଧ୍ୟୟନ କରାଯାଇ ଆଲୋଚନାର ଦିଗନ୍ତକୁ ଏଥିରେ ଯଥାସଂଭବ ସଂପ୍ରସାରିତ କରାଯାଇଛି । (ଘ)କେତେକ ଅପ୍ରକାଶିତ କାବ୍ୟର ସହାୟତାରେ ରୀତି କାବ୍ୟ ସମ୍ବନ୍ଧୀୟ ନୂତନ ତଥ୍ୟର ଅବତାରଣା ହେତୁ ବହୁ ଅଜ୍ଞାତ ଓ ଅନାଲୋଚିତ ଦିଗର ସଂଧାନ ଦେବାକୁ ଏହା ସମର୍ଥ । (ଙ) ଆଧୁନିକ ସାହିତ୍ୟ ଜିଜ୍ଞାସା ଆଲୋକରେ ଓଡ଼ିଆ ରୀତି କାବ୍ୟର ବିବିଧ ସମସ୍ୟା ଏଥିରେ ଯଥା ସଂଭବ ଅନୁଶୀଳିତ ।

ସଂଶିତ ସନ୍ଦର୍ଭ ସାତଗୋଟି ଅଧ୍ୟାୟରେ ବିଭକ୍ତ ।

ପ୍ରଥମ ଅଧ୍ୟାୟରେ 'ଶୃଙ୍ଗାରତତ୍ତ୍ୱ' ବିଷୟକ ବିଶଦ ଆଲୋଚନା ସ୍ଥାନ ପାଇଛି । ସାହିତ୍ୟ ଶାସ୍ତ୍ର, ଧର୍ମଭାବନା, ସଂସ୍କୃତ, କାମଶାସ୍ତ୍ର ଓ ମନୋବିଜ୍ଞାନ ଦୃଷ୍ଟିରୁ ଶୃଙ୍ଗାରର ଗୁରୁତ୍ୱ ଓ ଗୌରବ ସହ ପରିଚିତ ହେବା ସଙ୍ଗେ ସଙ୍ଗେ ପରବର୍ତ୍ତୀ ଆଲୋଚନାର ମାର୍ଗ ପ୍ରସ୍ତୁତ କରିବା ନିମନ୍ତେ ଏହା ଉଦ୍ଦିଷ୍ଟ । ଦ୍ୱିତୀୟ ଅଧ୍ୟାୟରେ 'ଶୃଙ୍ଗାର ଚେତନାର ପରମ୍ପରା' ବିଶ୍ଲେଷିତ । ବିଶ୍ୱ ସାହିତ୍ୟ, ଭାରତୀୟ ସାହିତ୍ୟ ଓ ଓଡ଼ିଆ ସାହିତ୍ୟ–ଏହିପରି ତିନିଗୋଟି ଭାଗରେ ଏହି ପରମ୍ପରାର ସୂତ୍ର ଦେଖାଇ

ଦିଆଯାଇଛି । •ତୃତୀୟ ଅଧ୍ୟାୟରେ ଓଡ଼ିଆ ରୀତିକାବ୍ୟ ଆଧାରିତ 'ବିପ୍ରଲମ୍ଭ' ପ୍ରସଂଗର ଆଲୋଚନା ପ୍ରଦତ୍ତ । ଏଥିରେ ଓଡ଼ିଆ କବିର ଶାସ୍ତ୍ରୀୟ ଧାରା ଅନୁସରଣ ଓ ବିରୁଦ୍ଧାଚରଣ ତଥା ତତ୍‌ସଂପର୍କିତ ସଫଳତା ଓ ବିଫଳତା ସ୍ପଷ୍ଟଭାବେ ସୂଚିତ । ଚତୁର୍ଥ ଅଧ୍ୟାୟରେ ସେହିପରି 'ସଂଭୋଗ' ପ୍ରସଂଗର ବିବିଧ ବୈଚିତ୍ର୍ୟ ଉଦ୍‌ଘାଟନ ନିମନ୍ତେ ପ୍ରୟାସ କରାଯାଇଛି । ବହୁ ଜ୍ଞାତ ଓ ଅଜ୍ଞାତ ତଥ୍ୟାବଳୀରେ ଏହି ଆଲୋଚନା ସମୃଦ୍ଧ । ପଞ୍ଚମ ଅଧ୍ୟାୟରେ 'ବସ୍ତୁ ବର୍ଣ୍ଣନା' ଅନ୍ତର୍ଗତ ଶୃଙ୍ଗାର ଚେତନାର ସ୍ୱରୂପ ଆଲୋଚିତ । ଓଡ଼ିଆ ରୀତି କବିର କାବ୍ୟଦୃଷ୍ଟି କିପରି ନିବିଡ଼ ଭାବରେ ଶୃଙ୍ଗାର ଭାବାଚ୍ଛନ୍ନ ତାହାହିଁ ଏ ସ୍ଥଳର ପ୍ରତିପାଦ୍ୟ ବିଷୟ । ଷଷ୍ଠ ଅଧ୍ୟାୟରେ 'ସୌନ୍ଦର୍ଯ୍ୟ ନିରୂପଣ' ପ୍ରସଂଗ ତୁଳନାତ୍ମକ ଭାବେ ସମୀକ୍ଷିତ । ଆହରଣ ଓ ମୌଳିକତାର ଭୂମିକା ଏବଂ ଶୃଙ୍ଗାର ଦୃଷ୍ଟିର ରୂପ ରୂପାନ୍ତର ଏ କ୍ଷେତ୍ରରେ ଯଥାରୀତି ଉଲ୍ଲିଖିତ । ସପ୍ତମ ଅଧ୍ୟାୟରେ "ବିବିଧ ପ୍ରସଙ୍ଗର' ଅବତାରଣା କ୍ରମେ ଶୃଙ୍ଗାର ଚେତନାର ନାନାବିଧ ରହସ୍ୟ ପ୍ରତି ସଂକେତ ପ୍ରଦାନ କରାଯାଇଛି । ପ୍ରଚଳିତ ବହୁ ସିଦ୍ଧାନ୍ତର ବିରୋଧ ଏବଂ ଅନାଲୋଚିତ ବହୁ ନୂତନ ସମସ୍ୟାର ସୂଚନା ଏଥିରେ ଉତ୍‌ଥାପିତ । ପରିଶେଷରେ ଉପରୋକ୍ତ ଅଧ୍ୟୟନର ସଂକ୍ଷିପ୍ତ ଉପସଂହାର' ସନ୍ନିବେଶିତ ।

କେତେକ ସନ୍ଦେହର ଅବସାନ ନିମନ୍ତେ ଏଠାରେ ଏକ ସ୍ପଷ୍ଟୀକରଣ ଆବଶ୍ୟକ । ତାହା ହେଉଛି–(୧) ଯେଉଁ ସକଳ ଓଡ଼ିଆ କାବ୍ୟକୁ ଆଧାର କରି ଏହି ସନ୍ଦର୍ଭଟି ଉପସ୍ଥାପିତ ତାହାର ଏକ ତାଲିକା ଯଥା ସ୍ଥାନରେ ପ୍ରଦତ୍ତ । (୨) ଅଧିକାଂଶ ପ୍ରାଚୀନ କାବ୍ୟର ଶୁଦ୍ଧ ସଂପାଦନା ହୋଇ ନଥିବାରୁ ଉଦ୍ଧୃତି ଗ୍ରହଣ ବେଳେ ପ୍ରକାଶିତ/ଅପ୍ରକାଶିତ ପାଠର କୌଣସି ପରିବର୍ତ୍ତନ କରାଯାଇନାହିଁ । ସୁତରାଂ ସ୍ଥଳ ବିଶେଷରେ ଅର୍ଥ-ପ୍ରତୀତିଗତ ଜଟିଳତା, ବନାନଗତ ତ୍ରୁଟି ଆଦି ଦେଖାଦେଇପାରେ । (୩) ସଂସ୍କୃତ ଗ୍ରନ୍ଥଗୁଡ଼ିକରେ ବହୁଳ ପାଠାନ୍ତର ଦୃଷ୍ଟିଗୋଚର ହେଉ ଥିବାରୁ ଉଦ୍ଧୃତ ଶ୍ଳୋକଗୁଡ଼ିକୁ ଏକ ଏକ ନିର୍ଦ୍ଦିଷ୍ଟ ସଂସ୍କରଣରୁ ନିଆଯାଇଛି ।

ଓଡ଼ିଆ ସାହିତ୍ୟ ଚର୍ଚ୍ଚା କ୍ଷେତ୍ରରେ ଏହି ଉଦ୍ୟମ କିଞ୍ଚିତ୍ ସଫଳ ହେଲେ ମୋର ଶ୍ରମ ସାର୍ଥକ ହେବ ।



# ପ୍ରବେଶିକା

"Art and Science have always been independent methods of discovering and presenting truth". [୧]

ଓଡ଼ିଆ ରୀତିକାବ୍ୟର ବିପୁଳ ପ୍ରକାଶ ଯେପରି ଐଶ୍ୱର୍ଯ୍ୟମଣ୍ଡିତ ସେହିପରି ବିସ୍ମୟ-ସମୃଦ୍ଧ । ବିଧିବଦ୍ଧ ସମାଲୋଚନାର ଅଭାବରୁ ତାହା ଅଦ୍ୟାବଧି ସପକ୍ଷ ଓ ବିପକ୍ଷବାଦୀମାନଙ୍କର ବିତର୍କ-ବିଷୟ ହୋଇ ରହିଛି । ନିରପେକ୍ଷତାର ମାନଦଣ୍ଡରେ ଉକ୍ତ କାବ୍ୟଧାରର ଯଥାର୍ଥ ମୂଲ୍ୟାଙ୍କନ ଆଜି ଆମ ସମ୍ମୁଖରେ ଏକ ଉପସ୍ଥିତ କର୍ତ୍ତବ୍ୟ । ପରଂପରପ୍ରୀତି ଓ ସ୍ୱଦେଶପ୍ରବଣତା ସତ୍ୟ ସଂଧାନ କ୍ଷେତ୍ରରେ ଘୋର ଅନ୍ତରାୟ ସୃଷ୍ଟି କରେ । ସାଂପ୍ରତିକ ସାହିତ୍ୟ-ସମୀକ୍ଷା ଏଥିପ୍ରତି ସଂପୂର୍ଣ୍ଣ ସଚେତନ । ଏହି ପରିପ୍ରେକ୍ଷୀରେ ଉପସ୍ଥାପିତ ସନ୍ଦର୍ଭର ରୂପ ପରିକଳ୍ପିତ ।

## 'ରୀତି' ଓ ରୀତି କାବ୍ୟ–

ସଂସ୍କୃତ ଅଳଂକାର ଶାସ୍ତ୍ରରେ କାବ୍ୟର ଆତ୍ମା ରୂପେ 'ରୀତି'ର ଗୌରବ କୀର୍ତ୍ତିତ (ରୀତିରାତ୍ମା କାବ୍ୟସ୍ୟ) [୨] । ଆଚାର୍ଯ୍ୟ ବାମନ ହେଉଛନ୍ତି ଏହି ମତବାଦର ପ୍ରତିଷ୍ଠାତା । ରୀତିର ତାତ୍ପର୍ଯ୍ୟ ବୁଝାଇବାକୁ ଯାଇ ସେ କହିଛନ୍ତି–'ବିଶିଷ୍ଟା ପଦ ରଚନା ରୀତିଃ' [୩] । ଅର୍ଥାତ୍ କାବ୍ୟର ଶୋଭା ବର୍ଦ୍ଧନ ନିମନ୍ତେ ରଚନାରେ ଯେଉଁ ବିଶେଷ ପ୍ରକାର ଶବ୍ଦ ଯୋଜନା କରାଯାଇଥାଏ ତାହାହିଁ ରୀତି । ଅଳଂକାର ଗ୍ରନ୍ଥରେ ବହୁବିଧ ରୀତିର ଉଲ୍ଲେଖ ଦେଖାଯାଏ । ସେଗୁଡ଼ିକ ମଧ୍ୟରେ ଗୌଡୀ, ବୈଦର୍ଭୀ ଓ ପାଞ୍ଚାଳୀ ପ୍ରଧାନ ।

ଗୁଣ ହେଉଛି ରୀତିର ସୌନ୍ଦର୍ଯ୍ୟ ବିଧାୟକ ଶକ୍ତି । ଏହାର ସଂଖ୍ୟା ଦଶ–ଓଜଃ, ପ୍ରସାଦ, ଶ୍ଲେଷ, ସମତା, ସମାଧି, ମାଧୁର୍ଯ୍ୟ, ସୌକୁମାର୍ଯ୍ୟ, ଉଦାରତା, ଅର୍ଥବ୍ୟକ୍ତି ଓ କାନ୍ତି । ବୈଦର୍ଭୀରେ ସକଳ ଗୁଣ, ଗୌଡ଼ୀରେ ଓଜଃ ଓ କାନ୍ତି ଏବଂ ପାଞ୍ଚାଳୀରେ ମାଧୁର୍ଯ୍ୟ ଓ ସୌକୁମାର୍ଯ୍ୟର ସମାବେଶ ଦେଖାଯାଏ [୪] ।

ସଂସ୍କୃତ ଆଳଂକାରିକ 'ରୀତି' ଓ ପ୍ରାନ୍ତୀୟ କାବ୍ୟ ସାହିତ୍ୟ (ହିନ୍ଦୀ, ଓଡ଼ିଆ, ମରାଠୀ) ପରଂପରାରେ ବ୍ୟବହୃତ ରୀତି ମଧ୍ୟରେ ବିରାଟ ପାର୍ଥକ୍ୟ ବିଦ୍ୟମାନ । ଶେଷୋକ୍ତ କ୍ଷେତ୍ରରେ ରୀତିକୁ ବ୍ୟାପକ ଅର୍ଥରେ ଗ୍ରହଣ କରାଯାଇଛି । ଏଠାରେ ଏହା ଏକ ଆଳଂକାରିକ ଆଦର୍ଶ ନୁହେଁ; କାବ୍ୟ ରଚନାର ନିୟମାନୁବଦ୍ଧ ଧାରା ମାତ୍ର । ସକଳ ଶାସ୍ତ୍ରୀୟ ମତବାଦ (ରସ, ରୀତି, ଧ୍ୱନି, ଅଳଂକାର, ବକ୍ରୋକ୍ତି, ଔଚିତ୍ୟ ଆଦି) ଦ୍ୱାରା ଏହି ଧାରା ପରିପୁଷ୍ଟ । ସାହିତ୍ୟର ଐତିହାସିକ ଆଲୋଚନା ପରିପ୍ରେକ୍ଷୀରେ ଏହା ରୀତି କାବ୍ୟ ରୂପେ ପରିଚିତ । ହିନ୍ଦୀ ସାହିତ୍ୟ ସମୀକ୍ଷକ ଡ଼କ୍ଟର ଭଗୀରଥ ମିଶ୍ରଙ୍କ ଭାଷାରେ—"ଏସେ ହି ରୀତି କାବ୍ୟ ଉସ କାବ୍ୟ କୋ କହେଁଗେ ଜିସ୍‌ମେ ଅଳଂକାର, ରସ, ରୀତି, ବକ୍ରୋକ୍ତି ଆଦି କେ ଉଦାହରଣ କେ ରୂପ ମେଁ ୟା ଇନକା ଧ୍ୟାନ ରଖ କର କାବ୍ୟ ଲିଖା ଗୟା ହୋ, ଇନକେ ଲକ୍ଷଣ ଗ୍ରନ୍ଥ ନ ଭି ଦିୟେ ଗୟେ ହୋ ।"[୪]

## ରୀତି ଯୁଗର ନାମକରଣ–

ରୀତି ଯୁଗର ନାମକରଣକୁ କେନ୍ଦ୍ରକରି ଆଲୋଚକମାନଙ୍କ ମଧ୍ୟରେ ନାନା ମତ ମତାନ୍ତର ଦୃଷ୍ଟିଗୋଚର ହୁଏ । ଏହି ଯୁଗକୁ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ 'ମୁସଲମାନ ଯୁଗ' (ଦିବ୍ୟସିଂହ ପୂର୍ବଯୁଗ ବା ଧନଞ୍ଜୟ ଯୁଗ– ଦିବ୍ୟସିଂହ ଯୁଗ ବା ଉପେନ୍ଦ୍ର ଯୁଗ ବା କାବ୍ୟଯୁଗ) 'ମରହଟ୍ଟା ଯୁଗ' (ବା ଉପେନ୍ଦ୍ର ଯୁଗ) [ଓଡ଼ିଆ ସାହିତ୍ୟର ଇତିହାସ–୨ୟ, ୩ୟ, ୪ର୍ଥ], ଶ୍ରୀ ସୁରେନ୍ଦ୍ର ମହାନ୍ତି 'ଆଦି ମଧ୍ୟଯୁଗ' ଓ 'ଉତ୍ତର ମଧ୍ୟଯୁଗ ବା ଅଳଙ୍କାରଯୁଗ' [ଓଡ଼ିଆ ସାହିତ୍ୟର କ୍ରମବିକାଶ] ଡ଼କ୍ଟର ମାୟାଧର ମାନସିଂହ 'ପୌରାଣିକ ଓ ଆଳଂକାରିକ କବିତା' [ଓଡ଼ିଆ ସାହିତ୍ୟର ଇତିହାସ], ଶ୍ରୀ ପଠାଣି ପଟ୍ଟନାୟକ 'ରୀତି ସାହିତ୍ୟ ଓ କାବ୍ୟଯୁଗ' [ଓଡ଼ିଆ ସାହିତ୍ୟର ଇତିହାସ], ଡ଼କ୍ଟର ଗୋପାଳ ଚନ୍ଦ୍ର ମିଶ୍ର 'ଓଡ଼ିଆ ସାହିତ୍ୟର ମଧ୍ୟଯୁଗ' [ବିଂଶ ଶତାବ୍ଦୀର ଭାରତୀୟ ସାହିତ୍ୟ] ନାମରେ ନାମିତ କରିଛନ୍ତି । କିନ୍ତୁ ଅଧ୍ୟାପକ ଗୌରୀକୁମାର ବ୍ରହ୍ମା (ରସ କଲ୍ଲୋଳ ସମୀକ୍ଷା), ଅଧ୍ୟାପକ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ (ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ),

ଡକ୍ଟର ଦେବୀ ପ୍ରସନ୍ନ ପଟ୍ଟନାୟକ (ସାହିତ୍ୟ ବୀକ୍ଷା), ଡ଼କ୍ଟର ବଂଶୀଧର ମହାନ୍ତି (ବିଦଗ୍ଧ ଚିନ୍ତାମଣି ପରିଚୟ), ଅଧ୍ୟାପକ ଚିନ୍ତାମଣି ବେହେରା (କାବ୍ୟ ଓ କଳାକାର), ଡ଼କ୍ଟର ଜେ. ଭି. ବୋଲଟନ୍ (ଦେଶ, କାଳ, ପାତ୍ର ଓ ଫକୀର ମୋହନ ପୃ:୪)ପ୍ରଭୃତି ସମୀକ୍ଷକଙ୍କ ଦ୍ୱାରା'ରୀତିଯୁଗ' ନାମକରଣ ସମର୍ଥିତ । ମଧ୍ୟଯୁଗର କାବ୍ୟସାଧନା ଏକ ନିର୍ଦ୍ଦିଷ୍ଟ ଶିଳ୍ପ-ଧର୍ମାନୁସାରୀ ହୋଇଥିବା ଦୃଷ୍ଟିରୁ ଏହାକୁ ରୀତିଯୁଗ କହିବା ଯଥାର୍ଥ ।

ହିନ୍ଦୀ ସାହିତ୍ୟର ଉତ୍ତର ମଧ୍ୟଯୁଗକୁ ଡ଼କ୍ଟର ନଗେନ୍ଦ୍ର ରୀତି କାବ୍ୟ କି ଭୂମିକା), ଡ଼କ୍ଟର ଭଗୀରଥ ମିଶ୍ର (ହିନ୍ଦୀ ରୀତି ସାହିତ୍ୟ), ଡ଼କ୍ଟର ଜଗଦୀଶ ଗୁପ୍ତ (ରୀତିକାବ୍ୟ ସଂଗ୍ରହ) ପ୍ରମୁଖ ସମାଲୋଚକଗଣ 'ରୀତିକାଳ' ରୂପେ ସ୍ୱୀକୃତି ପ୍ରଦାନ କରିଛନ୍ତି । ଆଚାର୍ଯ୍ୟ ରାମଚନ୍ଦ୍ର ଶୁକ୍ଳଙ୍କ ମତରେ (ହିନ୍ଦୀ ସାହିତ୍ୟ କା ଇତିହାସ) ଏହି ଯୁଗର ନାମ ରୀତିକାଳ ପରିବର୍ତ୍ତେ 'ଶୃଙ୍ଗାର କାଳ' ହେବା ଅଧିକ ଯୁକ୍ତିଯୁକ୍ତ । ମିଶ୍ର ବଂଧୁ ଦ୍ୱୟ (ବିନୋଦ) ଓ ଡ଼କ୍ଟର ରାମ କୁମାର ବର୍ମା (ହିନ୍ଦୀ ସାହିତ୍ୟକା ଐତିହାସିକ ଅନୁଶୀଳନ) ଏ ପ୍ରସଙ୍ଗରେ ଯଥାକ୍ରମେ 'ଅଳଂକୃତ କାଳ' ଓ 'କଳାକାଳ'ର ପକ୍ଷ ସମର୍ଥନ କରନ୍ତି । କିନ୍ତୁ ହିନ୍ଦୀ ଜଗତରେ ରୀତିକାଳର ବ୍ୟବହାର ସର୍ବାଧିକ । ଡ଼କଟର ଗୁପ୍ତ ଲେଖିଛନ୍ତି-"ନାମକରଣ କେ ଇନ୍ ପ୍ରଯନ୍ତୋଁ କେ ବାଦ ଭି ରୀତି କାଲ' ନାମ ହିଁ ସର୍ବାଧିକ ପ୍ରଚଳିତ ହୁଆ, ୟହ ନିର୍ବିବାଦ ହୈ ।"[୬]

## ରୀତି ଯୁଗର ସମୟ ସୀମା

ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା ତାଙ୍କର 'ରସକଲ୍ଲୋଳ ସମୀକ୍ଷା' ଗ୍ରନ୍ଥରେ ଖ୍ରୀ ୧୬୫୦ରୁ ୧୮୫୦-ଏହି କାଳକୁ ରୀତିଯୁଗ ଆଖ୍ୟା ପ୍ରଦାନ କରିଛନ୍ତି । କିନ୍ତୁ ସେ କହନ୍ତି-୧୫୫୦ରୁ ୧୬୫୦ ମଧ୍ୟରେ ଏହି କାବ୍ୟଧାରା କ୍ରମ ବିକଶିତ ହୋଇ ଓଡ଼ିଆ ସାହିତ୍ୟକୁ ପରିପୁଷ୍ଟ କରିଥିଲା ।[୭] ଡ଼କ୍ଟର ବଂଶୀଧର ମହାନ୍ତିଙ୍କ ମତରେ "ଓଡ଼ିଆ ସାହିତ୍ୟର ଇତିହାସରେ ରୀତି କାବ୍ୟର ଯୁଗ ଖ୍ରୀ ୧୬ଶ ଶତାବ୍ଦୀର ପ୍ରଥମ ଭାଗରୁ ଖ୍ରୀ ୧୯ ଶ ଶତାବ୍ଦୀର

ଶେଷଭାଗ ପର୍ଯ୍ୟନ୍ତ ବିସ୍ତୃତ । ଏହା ଦୀର୍ଘ ୩ ଶହ ବର୍ଷର ସାହିତ୍ୟ [୮] ।" ଅଧ୍ୟାପକ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ 'ରୀତିଯୁଗର ଆଦି ବାର୍ତ୍ତାବହ କବି ଗୋପାଳ'ଙ୍କୁ ୧୫୫୦ରୁ ୧୬୫୦ ଏବଂ ରୀତିଯୁଗକୁ ୧୬୫୦ରୁ ୧୮୮୦ ସମୟ ସୀମା ମଧ୍ୟରେ ରଖିଛନ୍ତି [୯] । ଓଡ଼ିଆ ସାହିତ୍ୟର ସକଳ ଆଲୋଚକ ପ୍ରାୟତଃ ଏହି ତିନି ଶହ ବର୍ଷକୁ ୧୫୫୦–୧୮୫୦ ରୀତି କାବ୍ୟର ଉନ୍ମେଷ ଓ ଉତ୍ତରଣ କାଳ ରୂପେ ସ୍ୱୀକୃତି ଜଣାଇଥିବା ଦେଖାଯାଏ ।

## ରୀତି କାବ୍ୟର ପୃଷ୍ଠଭୂମି–

କ) ରାଜନୈତିକ : ଖ୍ରୀ ୧୫୬୮ରେ ଓଡ଼ିଶାର ଶେଷ ସ୍ୱାଧୀନ ହିନ୍ଦୁ ରାଜା ମୁକୁନ୍ଦଦେବଙ୍କ ପରାଜୟ ଓ ମୃତ୍ୟୁ ପରେ ରାଜ୍ୟର ଶାସନ ବ୍ୟବସ୍ଥା ଆଫଗାନମାନଙ୍କ କରଗତ ହେଲା ଏବଂ ଖ୍ରୀ ୧୫୯୨ରେ ଏହା ମୋଗଲମାନଙ୍କ ହାତକୁ ଗଲା । ମୋଗଲ ଦରବାର ପକ୍ଷରୁ ନିଯୁକ୍ତ ସୁବାଦାରମାନେ ସେତେବେଳେ ପ୍ରଜାମାନଙ୍କ ସୁଖ ଦୁଃଖ ବୁଝିବା ପରିବର୍ତ୍ତେ ଲୁଣ୍ଠନ ଓ ଅତ୍ୟାଚାରରେ ଲିପ୍ତ ରହୁଥିଲେ । କେନ୍ଦ୍ରୀୟ ଶାସନ କ୍ରମେ କ୍ରମେ ଦୁର୍ବଳ ହୋଇ ପଡୁଥିବାରୁ ଭାରତବର୍ଷର ଚାରିଆଡେ ଅରାଜକତା ଦେଖାଦେଇଥିଲା । ଖ୍ରୀ ୧୬୦୭ରେ ହାଶିମ୍ ଖାଁ ଓଡ଼ିଶାର ଶାସକ ହୋଇ ଆସିଲେ । ଐତିହାସିକ ଡକ୍ଟର ମହତାବ କହନ୍ତି–"ହାଶିମ ଖାଁଙ୍କ ଶାସନ ଉଲଗ୍ନ ଅତ୍ୟାଚାରର ଏକ ବିସ୍ତୃତ କାହାଣୀ । ସେତେବେଳେ ଅର୍ଥ ଆହରଣ କରିବାହିଁ ଏକମାତ୍ର ଶାସନକାର୍ଯ୍ୟ ବୋଲି ବୁଝା ଯାଉଥିଲା"।[୧୦] କେଶୋଦାସଙ୍କ (ହାଶିମ ଖାଁଙ୍କ ସାହାଯ୍ୟକାରୀ) ହିନ୍ଦୁ ପୀଡ଼ନ ଓ ଶ୍ରୀମନ୍ଦିର ଲୁଣ୍ଠନ ଓଡ଼ିଶା ଇତିହାସରେ ଏକ କଳଙ୍କିତ ଅଧ୍ୟାୟ । କଲ୍ୟାଣ ମଲ୍ଲ, ମକ୍ରାମ ଖାଁ ପ୍ରଭୃତି ସୁବାଦାରମାନଙ୍କ ଅମଳରେ ଓଡ଼ିଶାର ଅବସ୍ଥା କ୍ରମେ ଶୋଚନୀୟ ଆକାର ଧାରଣ କରିବାକୁ ଲାଗିଲା । ବାରମ୍ବାର ଆକ୍ରମଣ ଓ ଅତ୍ୟାଚାର ହେତୁ ତତ୍କାଳୀନ ଦେଶୀୟ ରାଜନ୍ୟ ମଣ୍ଡଳୀ ହୀନବୀର୍ଯ୍ୟ ହୋଇ ପଡିଥିଲେ । ପ୍ରଜାମାନଙ୍କର ଆର୍ଥିକ ଓ ମାନସିକ ଅଧୋଗତିର ସୀମା ନଥିଲା ।

ଖ୍ରୀ : ୧୭୫୧ରେ ଓଡ଼ିଶା ମରହଟ୍ଟାମାନଙ୍କ ଅଧିକାରଭୁକ୍ତ ହେଲା । ସ୍ୱର୍ଗତ ପ୍ୟାରୀମୋହନ ଆଚାର୍ଯ୍ୟ ଲେଖିଛନ୍ତି– "ଓଡ଼ିଶାରେ ମରହଟ୍ଟାଙ୍କ ଶାସନ ସମୟକୁ ଅତ୍ୟାଚାର ଓ ଅରାଜକତାର ସମୟ ବୋଇଲେ ଅତ୍ୟୁକ୍ତି

ହୁଅଇ ନାହିଁ । ଓଡ଼ିଆମାନେ ଅର୍ଦ୍ଧଶତ ବର୍ଷ ପୃଥିବୀର ଘୋର ଦୁଃଖର କାହାଣୀ ଶୁଣାଇବା ପାଇଁ ମରହଟ୍ଟାଙ୍କ ନିଷ୍ଠୁର ଶାସନର ଅଧୀନ ହୋଇଥିଲେ" ।[୧୧] ସୁତରାଂ ମୋଗଲ ଓ ମରହଟ୍ଟା ଶାସନାଧୀନ ଓଡ଼ିଶାର ରାଜନୈତିକ ଆକାଶ ଘୋର ତମସାଚ୍ଛନ୍ନ ଥିଲା । ଭୀତତ୍ରସ୍ତ ଓ ନିର୍ଯ୍ୟାତିତ ଓଡ଼ିଆ ଜାତି ସମ୍ମୁଖରେ କୌଣସି ଉଚ୍ଚ ଆଦର୍ଶ ନଥିଲା । ମୁସଲମାନ ଓ ମରହଟ୍ଟା ଫୌଜଦାରଙ୍କୁ ପରବର୍ତ୍ତୀ କାଳରେ ଇଂରେଜ କଲେକ୍ଟରଙ୍କୁ ରାଜା ଓ ଜମିଦାରମାନେ ସେମାନଙ୍କର ନିର୍ଦ୍ଦିଷ୍ଟ ଦେୟ ଦେଇ ସାରିବା ପରେ ନିଷ୍କଣ୍ଟକ ଜୀବନ ଯାପନ କରୁଥିଲେ । ମୋଗଲ ଦରବାରର ଭୋଗବିଳାସ ସାମନ୍ତ ରାଜାମାନଙ୍କ ଉପରେ ଅପ୍ରତିହତ ପ୍ରଭାବ ପକାଇ ଥିଲା । ଐତିହାସିକ ଡ଼କ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ କହନ୍ତି– "ଏପରି ଅବସ୍ଥାରେ ରାଜନ୍ୟବର୍ଗ ମଧ୍ୟରୁ ଅଧିକାଂଶଙ୍କ ପ୍ରେମ ଓ ବିଳାସ ମୁଖ୍ୟ କର୍ମ ଥିଲା" ।[୧୨] ଧନଞ୍ଜୟ ଭଞ୍ଜଙ୍କ ବିଳାସଲିପ୍‌ସା ତାହାର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ–

ଉନ୍ନତ ସ୍ତନୀ ଯଉବନୀ ନାରୀଙ୍କର
ସ୍ତନରେ ମରଦନ କରନ୍ତି ଶରୀର ।।[୧୩]

ଅନ୍ୟ ପକ୍ଷରେ ଦେଶୀୟ ରାଜପରିବାରମାନଙ୍କରେ ଈର୍ଷ୍ୟା, ଦ୍ୱେଷ, ଷଡ଼ଯନ୍ତ୍ର ଓ ହତ୍ୟା ଆଦି ବସାବାନ୍ଧି ରହିଥିଲା । ଘୁମୁସର ରାଜବଂଶରେ ରାଜସିଂହାସନ ଲାଗି ଅନ୍ତର୍ଦ୍ୱନ୍ଦ୍ୱ । ଅନ୍ୟତମ ରାଣୀ ମଣ୍ଡାଦେବୀଙ୍କର ମନ୍ତ୍ରଣାକ୍ରମେ ଧନଞ୍ଜୟଙ୍କୁ ବିଷ ପ୍ରୟୋଗ, ନୀଳକଣ୍ଠ ଭଞ୍ଜଙ୍କ ରାଜ୍ୟଚ୍ୟୁତି ଇତ୍ୟାଦି ଏହାର ପ୍ରମାଣ । ଭାରତୀୟ ରାଜନୀତିରେ ମଧ୍ୟ ଏପରି ଘଟଣାର ଅଭାବ ନଥିଲା । ଡ଼କ୍ଟର ନଗେନ୍ଦ୍ର ଲେଖିଛନ୍ତି– "ବହୁପତ୍ନୀକ ରାଜପୁତ ରାଜାଓଁ କେ ରନିବାସୋଁ ମେଁ ମୋଗଲ ହରମୋଁ କି ତରହ ଆନ୍ତରିକ କଲହ ଔର ଈର୍ଷ୍ୟା କା ନଗ୍ନନୃତ୍ୟ ହୋତା ଥା–ଏକ ଏକ ରାଜା କି କଈ ବିବାହିତା ରାନିୟାଁ ଔର ଅନେକ ରକ୍ଷିତାଏଁ ହୋତି ଥି । × ×ପିତା ପୁତ୍ର ମେ ଅଧିକାର କେ ଲିୟେ ଯୁଦ୍ଧ ହୋନା ଯହାଁ ଭି ମାମୁଲି ବାତ୍ ଥି । ଅଗର ଦିଲ୍ଲୀକା ଔରଂଗଜେବ ପିତା କୋ କୈଦ କର ସକତା ଥା, ତୋ ମାରବାଡ଼ କା ଅମର ସିଂ ଅପନେ ପିତା କି ହତ୍ୟା ଭି କର ସକତା ଥା ।"[୧୪]

ଏହିପରି ରାଜନୈତିକ ଘନଘଟା ମଧ୍ୟରେ କବି, ବୁଦ୍ଧିଜୀବୀ ଓ କଳାକାର ଥିଲେ ଏକ ସଙ୍କୁଚିତ ପୃଥିବୀର ଅଧିବାସୀ । ସୁତରାଂ ସେମାନଙ୍କ କାବ୍ୟାଦର୍ଶ ସାମନ୍ତାଶ୍ରିତ ଜୀବନଚର୍ଯ୍ୟାର ପରିପୂରକ ଥିଲା ।

(ଖ) ସାମାଜିକ : ମଧ୍ୟଯୁଗର ସାମାଜିକ ଅବସ୍ଥା ଥିଲା ସଂପୂର୍ଣ୍ଣରୂପେ ରାଜତନ୍ତ୍ର/ସାମନ୍ତତନ୍ତ୍ର ଆଧାରିତ । ରାଜା ଓ ତାଙ୍କର ପାରିଷଦ ବର୍ଗ ଗୋଟିଏ ଶ୍ରେଣୀର ପ୍ରତିନିଧିତ୍ୱ କରୁଥିଲାବେଳେ ଶ୍ରମିକ ଓ କୃଷକବର୍ଗ ଅନ୍ୟ ଏକ ଶ୍ରେଣୀର ପ୍ରତିନିଧିତ୍ୱ କରୁଥିଲେ । ସେମାନଙ୍କ ମଧ୍ୟରେ ଯେଉଁ ସଂପର୍କ ଥିଲା ତାହା ହେଉଛି– ଶାସକ ଓ ଶାସିତ ବା ଶୋଷକ ଓ ଶୋଷିତ ।[୧୪] ଏହି ଦୁଇ ଶ୍ରେଣୀ ଭିନ୍ନ ଅନ୍ୟ ଏକ ବର୍ଗ ଥିଲେ–କବି ଓ ପଣ୍ଡିତ ସମାଜ । ସାଧାରଣ ଜୀବନ ସହିତ ଏମାନଙ୍କର ଅନ୍ତରଙ୍ଗ ପରିଚୟ ଥିଲା । ପୁଣି ରାଜ ଦରବାର ସହ ଜଡ଼ିତ ଥିବା ହେତୁ ଏମାନେ ସ୍ୱତନ୍ତ୍ର ସୁବିଧା ଓ ସୁଯୋଗ ଲାଭ କରୁଥିଲେ । ରାଜାଶ୍ରିତ ହୋଇଥିବା ହେତୁ ଦରବାରୀ ଅଭିରୁଚି ପ୍ରତି ସମ୍ମାନ ପ୍ରଦର୍ଶନ କରିବା ଏମାନଙ୍କର କର୍ତ୍ତବ୍ୟ ରୂପେ ବିବେଚିତ ହେଉଥିଲା । ନାରୀ ଥିଲା ସାଧାରଣତଃ ଭୋଗ ବିଳାସର ସାମଗ୍ରୀ । ରାଜପୁରୁଷମାନେ ତେଣୁ ସୁନ୍ଦରୀ ଯୁବତୀମାନଙ୍କୁ ଅପହରଣ କରିଆଣି ରାଜନବରରେ ରଖୁଥିଲେ । ଧନଂଜୟ ଭଞ୍ଜ ଏପରି ଜଣେ ଲମ୍ପଟ ରାଜା ଥିଲେ ବୋଲି 'ଘୁମୁସର ଭଞ୍ଜବଂଶାବଳୀ'କାର ବର୍ଣ୍ଣନା କରିଛନ୍ତି ।[୧୬] ହାରେମ ସଂସ୍କୃତିର ସ୍ପଷ୍ଟ ପ୍ରଭାବ ବ୍ୟତୀତ ଏହା ଅନ୍ୟ କିଛି ନୁହେଁ ।

ପ୍ରଜାମାନଙ୍କ ଆର୍ଥିକ ସ୍ଥିତି ଅତ୍ୟନ୍ତ ଦୁର୍ବଳ ଥିଲା । ଐତିହାସିକ କୃପାସିନ୍ଧୁ ମିଶ୍ର ଲେଖିଛନ୍ତି– "ବର୍ଗୀ ଭୟରେ ଲୋକେ ତ୍ରସ୍ତ ହେଉଥିଲେ । ସେମାନଙ୍କ ଭୟରେ ଲୋକେ ଭଲ ଖାଉ ନଥିଲେ, ଭଲ ପିନ୍ଧୁ ନଥିଲେ କି ଭଲ ଘର କରି ରହୁନଥିଲେ ।"[୧୭] ଦେଶରେ ନ୍ୟାୟ ବିଚାର ନଥିଲା କହିଲେ ଚଳେ । ଚୋର, ଡକାୟତ ଓ ଲୁଣ୍ଠନକାରୀଙ୍କ ସଂଖ୍ୟା ପ୍ରବଳ ଥିଲା । ଏପରି ପରିସ୍ଥିତିରେ ସମାଜର ନୈତିକ ମେରୁଦଣ୍ଡ ଭାଙ୍ଗି ଛାରଖାର

ହୋଇଯିବା କିଛି ବିଚିତ୍ର ନୁହେଁ । ସୁତରାଂ ଏକ ନୀତିହୀନ ଓ ଆଦର୍ଶହୀନ ସମାଜ ସାହିତ୍ୟକୁ ଲୁବ୍ଧ-ଜୀବନର ପ୍ରେରଣା ବ୍ୟତୀତ ଆଉ କ'ଣ ଦେଇଥାନ୍ତା ?

(ଗ) ସାଂସ୍କୃତିକ : 'ମୋଗଲ ରାଜତ୍ୱରେ ଦେଶର ଅବସ୍ଥା' ସମ୍ପର୍କରେ ଐତିହାସିକ କୃପାସିନ୍ଧୁ ମିଶ୍ର ଲେଖିଛନ୍ତି—"ଗଜପତିଙ୍କ ରାଜତ୍ୱର ପାଣ୍ଡିତ୍ୟ ଚର୍ଚ୍ଚା ଉତ୍କଳରୁ ଲୋପ ପାଇନଥିଲା । ବ୍ରାହ୍ମଣମାନେ ସାଧାରଣତଃ ସଂସ୍କୃତ ଚର୍ଚ୍ଚାରେ ଅନୁରକ୍ତ ଥିଲେ । ଭୋଇ ବଂଶୀୟ ରାଜାମାନଙ୍କର ଶାସନ, ଦାନ ଓ କୌଳିନ୍ୟ ବିଧାନ ତତ୍‌କାଳୀନ ପାଣ୍ଡିତ୍ୟର ସମଧିକ ପରିଚୟ ଦିଏ । କାବ୍ୟ, ନାଟକ, ସ୍ମୃତି, ବ୍ୟାକରଣ, ଦର୍ଶନ, ଅଭିଧାନ, କର୍ମକାଣ୍ଡ, ଯୁଦ୍ଧବିଦ୍ୟା, ଜ୍ୟୋତିଷ, ଆୟୁର୍ବେଦ, ଗଣିତ ପ୍ରଭୃତି ବିଦ୍ୟାରେ ସେ କାଳର ପଣ୍ଡିତମାନେ ମୂଳଗ୍ରନ୍ଥ ଓ ଟୀକା ଆକାରରେ ବହୁ ଗ୍ରନ୍ଥ ପ୍ରଣୟନ କରିଥିଲେ ।×××ସଂସ୍କୃତ ସାହିତ୍ୟ ବ୍ୟତୀତ ଉତ୍କଳ ସାହିତ୍ୟର ଶ୍ରୀବୃଦ୍ଧି ମୋଗଲ ରାଜତ୍ୱର ପ୍ରଧାନ ଘଟଣା । ପୂର୍ବବର୍ତ୍ତୀ ଗଜପତିଙ୍କ ରାଜତ୍ୱରେ ଶାରଳା ଦାସ, ଜଗନ୍ନାଥ ଦାସ ଓ ବଳରାମ ଦାସ ପ୍ରଭୃତି ମନୀଷୀମାନେ ଉତ୍କଳ ସାହିତ୍ୟର ଯେ ମାର୍ଗ ଦେଖାଇଥିଲେ ମୋଗଲ ରାଜତ୍ୱରେ ତାହା ବିସ୍ତୀର୍ଣ୍ଣ ହୋଇ ବହୁବିଧ ଉପାଦେୟ ଗ୍ରନ୍ଥ ଦ୍ୱାରା ପରିପୁଷ୍ଟ ହୋଇଥିଲା । ଏହି ଯୁଗର କବିମାନଙ୍କ ମଧ୍ୟରେ ଦୀନକୃଷ୍ଣ, ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ, ବିଶ୍ୱନାଥ ଖୁଣ୍ଟିଆ ପ୍ରଭୃତି ବହୁକବି ଉତ୍କଳ ସାହିତ୍ୟ କ୍ଷେତ୍ରରେ ରାଜତ୍ୱ କରି ଆସୁଛନ୍ତି ।"

ମଧ୍ୟଯୁଗୀୟ ଓଡ଼ିଶାର ବହୁ ରାଜ ଦରବାର (ଯଥା-ଘୁମୁସର, ପାରଳାଖେମୁଣ୍ଡି, ଆଠଗଡ଼, ଢେଙ୍କାନାଳ, ଚିକିଟି ଇତ୍ୟାଦି) ସାହିତ୍ୟ ଓ ସଙ୍ଗୀତ ଚର୍ଚ୍ଚାର ପ୍ରସିଦ୍ଧ ପୀଠ ରୂପେ ଖ୍ୟାତି ଅର୍ଜନ କରିଥିଲା । ସେ ଯୁଗର ବହୁ ରାଜକବି ଓ ରାଜାଶ୍ରିତ କବି ଇତିହାସରେ କାବ୍ୟ ସାଧନାର ଉଜ୍ଜ୍ୱଳ ସ୍ୱାକ୍ଷର ଲିପିବଦ୍ଧ କରିଯାଇଛନ୍ତି । ପଣ୍ଡିତ ସମାଜରେ କ୍ଲିଷ୍ଟ ପଦ ଯୋଜନା ଓ ଆଳଂକାରିକତାର ବିଶେଷ ଆଦର ଥିବାରୁ କବିଗଣ ଏଥିପ୍ରତି ସମ୍ପୂର୍ଣ୍ଣ ସଚେତନ ଥାଇ ସୃଷ୍ଟି କର୍ମରେ ମନୋନିବେଶ କରୁଥିଲେ । କାଳିଦାସ,

ଶ୍ରୀହର୍ଷ, ମାଘ ପ୍ରଭୃତିଙ୍କ ପ୍ରଭବକୁ ଅସ୍ୱୀକାର କରିବା ସେମାନଙ୍କ ପକ୍ଷରେ କଷ୍ଟସାଧ୍ୟ ଥିଲା । ଅନ୍ୟପକ୍ଷରେ ପୁରାଣଯୁଗର (ଶାରଳା,ଜଗନ୍ନାଥ,ବଳରାମଙ୍କ) ଶ୍ରେଷ୍ଠ କୃତିଗୁଡ଼ିକୁ ରକ୍ଷଣଶୀଳ ସମାଜର ନାସିକା କୁଂଚନ ସହ୍ୟ କରିବାକୁ ପଡ଼ିଥିବା ହେତୁ ରୀତିଯୁଗରେ ମାତୃଭାଷାକୁ ସଂସ୍କୃତ ପ୍ରତିସ୍ପର୍ଦ୍ଧୀ ଗୌରବ ଟୀକା ପିନ୍ଧାଇ ଦେବା ଥିଲା କବି ସମାଜର ଦୁରନ୍ତ ଲକ୍ଷ୍ୟ । ଏଥିପାଇଁ ରାଜକୀୟ ପ୍ରୋତ୍ସାହନର ଅଭାବ ମଧ୍ୟ ନଥିଲା ।

ଏହି ସମୟରେ ଦେଶର ଧାର୍ମିକ ପରିସ୍ଥିତି ମଧ୍ୟ ନୂଆ ରୂପ ନେଇଥିଲା । ପର ପଦାନତ ହିନ୍ଦୁ ଶକ୍ତି ମୋଗଲ ଅତ୍ୟାଚାରରେ ଉତ୍‌ପୀଡ଼ିତ ହେବା ଯୋଗୁଁ (ଜଣେ ଜଣେ ସୁଶାସକଙ୍କ ସାମୟିକ ଆବିର୍ଭାବ ବ୍ୟତୀତ) ଭାରତୀୟ ସାଂସ୍କୃତିକ ଜୀବନ କଳୁଷିତ ହୋଇ ପଡ଼ିଲା । ଅର୍ଥ ଓ ପଦ ମର୍ଯ୍ୟାଦାର ପ୍ରଲୋଭନ କିମ୍ବା ବଳାତ୍କାର ହେତୁ ଅନେକେ ଧର୍ମାନ୍ତର ଗ୍ରହଣ କରିବାକୁ ବାଧ୍ୟ ହେଉଥିଲେ । ମୁସଲମାନମାନଙ୍କର ଅହଂକାର ଓ ବିଳାସ-ପ୍ରିୟତା ଏବଂ ହିନ୍ଦୁମାନଙ୍କର ପରାଧୀନତା ଓ ହୀନମନ୍ୟତା ଧାର୍ମିକ ବିକାଶର ପଥରୁଦ୍ଧ କରି ଦେଇଥିଲା । ଡକ୍‌ଟର ନଗେନ୍ଦ୍ର ଏ ସମ୍ପର୍କରେ କହନ୍ତି—"ଧର୍ମକା ତାତ୍ତ୍ୱିକ ବିକାଶ ଏକଦମ୍ ରୁକ୍ ଗୟା ଥା ଔର ଉସକେ ସ୍ଥାନ ପର ଭକ୍ତି କେ ବାହ୍ୟ ବିଳାସ ଅତ୍ୟନ୍ତ ସମୃଦ୍ଧ ହୋ ଗୟେ ।"[୧୯] ତତ୍ ସଙ୍ଗେ ସଙ୍ଗେ ଶ୍ରୀଚୈତନ୍ୟ ଓ ରାଧାବଲ୍ଲଭ ସମ୍ପ୍ରଦାୟର ଆବିର୍ଭାବ, ମଧୁର (ବା ଶୃଙ୍ଗାର) ରସ ତଥା ରାଧାତତ୍ତ୍ୱର ମହତ୍ତ୍ୱ ପ୍ରଚାର, ଜୟଦେବଙ୍କ 'ଗୀତ ଗୋବିନ୍ଦ'ର ବହୁଳ ଚର୍ଚ୍ଚା, ରୂପ ଗୋସ୍ୱାମୀ ଓ ଜୀବ ଗୋସ୍ୱାମୀ ପ୍ରଭୃତିଙ୍କ ତତ୍ତ୍ୱଗ୍ରନ୍ଥ ରଚନା—ମଧ୍ୟ ଯୁଗୀୟ କାବ୍ୟଧାରାକୁ ଯଥେଷ୍ଟ ପ୍ରେରଣା ଯୋଗାଇଥିଲା । ଶ୍ରୀଚୈତନ୍ୟଙ୍କ ଓଡ଼ିଶା ଆଗମନ ଏବଂ ବୈଷ୍ଣବ ଧର୍ମ ପ୍ରଚାର ଦେଶବ୍ୟାପୀ ପ୍ରେମ ଭକ୍ତି ଧର୍ମର ଯେଉଁ ପ୍ଳାବନ ସୃଷ୍ଟି କରିଥିଲା ତାହା ଆମ ସାହିତ୍ୟ ଓ ରାଜନୀତିକୁ ନବଦିଗନ୍ତର ସନ୍ଧାନ ଦେଇଥିଲା ।

ଓଡ଼ିଆ ରୀତି କାବ୍ୟର ପୃଷ୍ଠଭୂମିରେ ଉତ୍କଳୀୟ ମନ୍ଦିର କଳାର ଭୂମିକା ମଧ୍ୟ ଉଲ୍ଲେଖଯୋଗ୍ୟ । କୋଣାର୍କ ଓ ଭୁବନେଶ୍ୱରର ମନ୍ଦିର

ଗାତ୍ରରେ କଳା ସ୍ଥାପତ୍ୟର ଯେଉଁ ଅପୂର୍ବ ନିଦର୍ଶନ ଲିପିବଦ୍ଧ ତାହାକୁ ପ୍ରେମ ଓ ଯୌବନର ଅନୁପମ ନିର୍ବାକ୍-କାବ୍ୟ କହିଲେ ଅତ୍ୟୁକ୍ତି ହେବନାହିଁ । ମୂର୍ତ୍ତିଗୁଡ଼ିକର ଶ୍ଳୀଳତା ବା ଅଶ୍ଳୀଳତା ଏକ ବିତର୍କିତ ପ୍ରସଙ୍ଗ । କିନ୍ତୁ ନାୟିକାର ଅଙ୍ଗରାଗ, ବିବିଧ ଅବସ୍ଥା (ଅଭିସାରିକାଦି), ନର୍ମ ବିଳାସ ସହ ମଧ୍ୟଯୁଗୀୟ କାବ୍ୟ ନାୟିକାର ତୁଳନାତ୍ମକ ସମ୍ବନ୍ଧ ସହଜରେ ପ୍ରତିଷ୍ଠା କରାଯାଇପାରେ । ସୁରେନ୍ଦ୍ର ମହାନ୍ତି କହନ୍ତି–"ମନ୍ଦିର ସ୍ଥାପତ୍ୟର ଆଳଂକାରିକ ଶୈଳୀ ଓଡ଼ିଆ କାବ୍ୟ ଶୈଳୀକୁ ପ୍ରଭାବିତ କରିଥିବା ଅସ୍ୱୀକାର କରାଯାଇ-ପାରିବ କିପରି ?"[୨୦] ମୋଗଲ, ରାଜସ୍ଥାନୀ ଓ ବୁନ୍ଦେଲଖଣ୍ଡୀ ଚିତ୍ରକଳା ଭିତ୍ତିରେ ହିନ୍ଦି ରୀତି କାବ୍ୟର ସମୀକ୍ଷା କରିବାକୁ ଯାଇ ଡକ୍ଟର ନଗେନ୍ଦ୍ର ଲେଖିଛନ୍ତି– " ଇନ୍‌କି ଔର ହିନ୍ଦିକେ ରୀତି ସାହିତ୍ୟ କି ଆତ୍ମା ଏକ ହି ହେ ।"[୨୧]

## ରୀତି କାବ୍ୟର ବୈଶିଷ୍ଟ୍ୟଃ–

ରୀତି ଯୁଗର କାବ୍ୟଧାରା ମୁଖ୍ୟତଃ ଦୁଇଭାଗରେ ବିଭକ୍ତ ; ଯଥା– ପୌରାଣିକ ଓ କାଳ୍ପନିକ । ପ୍ରଥମଟି ଦୁଇଟି ଭକ୍ତିମାର୍ଗକୁ ଆଶ୍ରୟ କରି ବିକଶିତ (ରାମଭକ୍ତି ଓ କୃଷ୍ଣ ଭକ୍ତି) । କାଳ୍ପନିକ କାବ୍ୟ ମୁଖ୍ୟତଃ ସ୍ୱକୀୟା ଭିତ୍ତିକ । କିନ୍ତୁ ସମଗ୍ର ରୀତି କାବ୍ୟ ନିମ୍ନୋକ୍ତ କେତେଗୋଟି ବିଶିଷ୍ଟ ବିଭବର ଅଧିକାରୀ ।

(କ) ଶୃଙ୍ଗାରିକତା– ମୋଗଲ ଶାସିତ ମଧ୍ୟଯୁଗର ସାମନ୍ତୀୟ ଜୀବନ ଧାରା ବିଳାସିତାର ଚରମ ପର୍ଯ୍ୟାୟରେ ଉପନୀତ ହୋଇଥିଲା । ନାରୀ ଥିଲା ଏହାର କେନ୍ଦ୍ରବିନ୍ଦୁ । ରାଜ ପୃଷ୍ଠପୋଷକତା ଲାଭ କରିଥିବା କବି ଓ କାବ୍ୟ ଏହି ଭୋଗଚର୍ଯ୍ୟାର ପ୍ରଭାବରେ ପ୍ରଭାବିତ ହେବା ଏକାନ୍ତ ସ୍ୱାଭାବିକ । ସଂସ୍କୃତ କାବ୍ୟ ଓ ଅଳଂକାର ଶାସ୍ତ୍ରାନୁଶୀଳନ ତଥା ବୈଷ୍ଣବ ପ୍ରେମ ଧର୍ମର ପ୍ରସାର ଯୁଗ ସାହିତ୍ୟକୁ ମଧ୍ୟ ଯଥେଷ୍ଟ ପ୍ରେରଣା ଯୋଗାଇଥିଲା । ଫଳତଃ ଜୀବନ ଓ କାବ୍ୟରେ ଶୃଙ୍ଗାରିକତାର ଭୂମିକା ହେଲା ଅପ୍ରତିଦ୍ୱନ୍ଦୀ ।

ଡକ୍ଟର ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟଙ୍କ ଭାଷାରେ—"ଶୃଙ୍ଗାରିକତା ବାସ୍ତବରେ ଥିଲା ରୀତି ଯୁଗୀୟ କାବ୍ୟ—ପୁରୁଷ ଧମନୀରେ ପ୍ରବାହିତ ରକ୍ତଧାରା ଭଳି ।"[୨୨] ଏହି ଶୃଙ୍ଗାର ସମ୍ପୂର୍ଣ୍ଣ ରୂପେ ଦେହ ସର୍ବସ୍ୱ । ଏପରିକି ରୀତି କାବ୍ୟର ରାଧାକୃଷ୍ଣ ଭକ୍ତିଧାରା ମଧ୍ୟ ଏହାର କରାଳ ଗ୍ରାସରେ ପଡ଼ି ପଥଭ୍ରଷ୍ଟ । କାବ୍ୟର ନାୟକ ନାୟିକାଙ୍କ ଚରିତ୍ରରେ ସମ୍ଭୋଗ ଓ ବିପ୍ରଲମ୍ଭ ଅତିରିକ୍ତ ଅନ୍ୟ କୌଣସି ପ୍ରଧାନ ସମସ୍ୟା ନାହିଁ । ରତି ସମରରେ ସେମାନେ ଜଣେ ଜଣେ କୁଶଳୀ ଯୋଦ୍ଧା ।

(ଖ) ଆଳଂକାରିକତା—ରୀତି କାବ୍ୟରେ ଜୀବନାନୁଭୂତିର ବୈଚିତ୍ର୍ୟ ସ୍ଥଳ ବୈଚିତ୍ର୍ୟ କେବଳ ଧ୍ୱନି, ବ୍ୟଞ୍ଜନା, ବକ୍ରୋକ୍ତି, ଛନ୍ଦ, ରୀତି, ବୃତ୍ତି, ଶବ୍ଦ ଓ ଅର୍ଥର ପ୍ରହେଳିକା ସୃଷ୍ଟିରେ ନିହିତ । କ୍ଲିଷ୍ଟତା ଓ ଅଳଂକରଣ ଯୋଗୁଁ ଅଧିକାଂଶ କାବ୍ୟ ଗୁରୁ ଗମ୍ଭୀର । ଶାରଳା, ଜଗନ୍ନାଥ ଓ ବଳରାମଙ୍କ ରଚନାରେ ଯେଉଁ ସୌନ୍ଦର୍ଯ୍ୟବୋଧ ଓ ଆନନ୍ଦବୋଧର ସ୍ୱାଭାବିକ ପରିସ୍ଫୁର୍ତ୍ତି ସମ୍ଭବ ହୋଇଥିଲା । ରୀତି ସାହିତ୍ୟରେ ତାହାର ବ୍ୟତିକ୍ରମ ଦେଖାଯାଏ । ଆତ୍ମାର ଉତ୍କର୍ଷ ଅପେକ୍ଷା ଅଳଂକାରର ଗୁରୁଭାରରେ ଏହି ଯୁଗର କାବ୍ୟ ସୁନ୍ଦରୀ ଭାରକ୍ରାନ୍ତ । ହିନ୍ଦି ରୀତି ସାହିତ୍ୟ ସମ୍ପର୍କରେ ଡକ୍ଟର ଭଗୀରଥ ମିଶ୍ରଙ୍କ ଉକ୍ତି ଏଠାରେ ଆମର ସ୍ମରଣୀୟ ।"ଓ୍ୱହ ଅଲଂକାର ପ୍ରଧାନ କାବ୍ୟ ହୈ । କବି ଅପନେ କାବ୍ୟ କୋ ସଜାନେ ଔର ସଓଁାରନେ ମେଁ ପୂର୍ଣ୍ଣତଃ ସଚେତ ହୈ ଔର ଅଧିକାଂଶ କାବ୍ୟ ମେଁ କବିକା ଅଲଂକାର ପ୍ରୟୋଗ ସହଜ ନହିଁ ।"[୨୩]

ଗ) ପୌରାଣିକତା—ପୌରାଣିକତା ରୀତି କାବ୍ୟର ଅନ୍ୟତମ ବିଶିଷ୍ଟ ବିଭବ । ଏ ଯୁଗର କବି ବହୁ ପୌରାଣିକ ଆଖ୍ୟାନକୁ ଅବଲମ୍ବନ କରି କାବ୍ୟ ସୃଷ୍ଟିରେ ଅଶେଷ କୃତିତ୍ୱ ଅର୍ଜ୍ଜନ କରିଅଛି । କାଳ୍ପନିକ କାବ୍ୟ ରଚନାରେ ବହୁ ଅଲୌକିକ ବିଷୟବସ୍ତୁର ସଂଯୋଜନ ଦ୍ୱାରା ସେ ପୌରାଣିକତାକୁ ସହଜ ସମର୍ଥନ ଜଣାଇଛି । ଏତଦ୍‌ଭିନ୍ନ ନାୟିକାର ଯୌବନ ଶୋଭା, ସମ୍ଭୋଗ, ବିପ୍ରଲମ୍ଭ ଏବଂ ନଗରାଦି ବର୍ଣ୍ଣନାରେ ଯେଉଁ ଉଦାତ୍ତ ଶୈଳୀ ଦୃଷ୍ଟିଗୋଚର ହୁଏ ତାହା ଶାରଳା ବଳରାମଙ୍କ ନିରଳଂକୃତ ବାଣୀ

ବିନ୍ୟାସର ଆଙ୍କାରିକ ପରଣତି । ଉପେନ୍ଦ୍ର ଭଂଜ ଏହି ପୁରଣ ପରଂପରା ପ୍ରତି ଉଦାର ସ୍ୱୀକୃତି ଜ୍ଞାପନ କରିଛନ୍ତି ।

"ବାଲ୍ମୀକି ବ୍ୟାସ କବି ଯହଁରେ ମହାକାବ୍ୟକେ ପୁରଣ କରେ
ମହା ନାଟକ ବାତ ସ୍ତୁତରରେ ହେଲେ ରଚିତା ଯେ
ବିହିଲେ କାବ୍ୟ ଯେ କାଳିଦାସେ ଚମ୍ପୂ ରଚନା ଭୋଜନରେଶେ
କୃପାସିନ୍ଧୁଏ ଗୀତ ପ୍ରକାଶେ ଛାଡ଼ିଲି ଚିନ୍ତା ଯେ ।"

ଘ) ସାଂଗୀତିକତା—ସାଂଗୀତିକତା ଓଡ଼ିଆ ରୀତି କାବ୍ୟର ଗୌରବମୟ ସମ୍ପଦ । ଯୁଗ ଯୁଗ ଧରି ଏହା ଉତ୍କଳୀୟ ପ୍ରାଣ ପ୍ରବାହକୁ ରସସିକ୍ତ କରି ରଖିଅଛି । ଦୀନକୃଷ୍ଣ, ଉପେନ୍ଦ୍ର ଓ କବିସୂର୍ଯ୍ୟଙ୍କ ଦକ୍ଷତା ଏ କ୍ଷେତ୍ରରେ ଅତୁଳନୀୟ ରୀତି କବିର ରଚନାରେ ଯେଉଁ ସବୁ ରାଗରାଗିଣୀ ପ୍ରୟୋଗ କରାଯାଇଛି ତାହାର ଏକ ସ୍ୱତନ୍ତ୍ର ସମୀକ୍ଷା ଆବଶ୍ୟକ । 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ରେ ସଂଗୀତ ବିଦ୍ୟା ବିଷୟକ ପ୍ରଦତ୍ତ ସୂଚନା ଉପେନ୍ଦ୍ରଙ୍କ ଶାସ୍ତ୍ରୀୟ ବ୍ୟୁତ୍ପତ୍ତିର ପରିଚାୟକ । ଯଥା—

ସେ କି କଇଳାସ ତାଳରେ ପ୍ରକାଶ
ଆଦି ଯତି ମନ ମୋହି ଯେ
ଶୋଭିନୀ ସାରୀ ସିଦ୍ଧମଠାଲିଙ୍ଗନ
ଜ୍ଞାନ ଝମ୍ପା ରୂପକ ହିଁ ଯେ
ତ୍ରିପୁଟା, ଏକତାଳୀ ଯୁକ୍ତ କାହିଁ ଯେ
ସାରିମାନ ଆଡ଼୍ଡ ଶିବ ବଚନରେ
ଗଉରୀ ପ୍ରକଟ ଯହିଁ ଯେ ।[୨୫]

ରୀତି କାବ୍ୟର ସାଙ୍ଗୀତିକ ସଫଳତା ପାଇଁ ପ୍ରାଚୀନ ଉତ୍କଳର ସଙ୍ଗୀତ ଚର୍ଚ୍ଚା ମୁଖ୍ୟତଃ ଦାୟୀ । ଅଧ୍ୟାପକ ଗୌରୀ କୁମାର ବ୍ରହ୍ମାଙ୍କ 'ଭଞ୍ଜ ଭୂମିକା' ଗ୍ରନ୍ଥରେ ଏ ସମ୍ପର୍କୀୟ ବିଶଦ ଆଲୋଚନା ସ୍ଥାନ ପାଇଛି ।"[୨୬]

ଙ) ଗତାନୁଗତିକତା—ରୀତି କାବ୍ୟର ରଚନା ରୀତିରେ ଗତାନୁଗତିକତାର ଧାରା ସୁସ୍ପଷ୍ଟ । ସଂସ୍କୃତ ଅଳଂକାର ଶାସ୍ତ୍ରୋକ୍ତ ମହାକାବ୍ୟ/କାବ୍ୟର

ଲକ୍ଷଣାବଳୀ (ଉଦାହରଣ ସ୍ବରୂପ-ଆଦୌ ନମସ୍କ୍ରିୟାଶୀର୍ବାବସ୍ତୁ ନିର୍ଦ୍ଦେଶ ଏବ ବା ..)[୨୭] ଓ କାଳିଦାସ, ଶ୍ରୀହର୍ଷ, ମାଘ, ଜୟଦେବ ପ୍ରଭୃତିଙ୍କ ସୃଷ୍ଟି ପରଂପରା ଅନୁସରଣରେ ଏହା ପରିପୁଷ୍ଟ । ନାୟକ ନାୟିକା ଜୀବନ ବୃତ୍ତ, ବିଷୟ ବସ୍ତୁ, ପ୍ରକୃତି ଚିତ୍ର, ନଖଶିଖ ବର୍ଣ୍ଣନା, ସୁରତି ବ୍ୟାପାର, କାବ୍ୟ ଦୃଷ୍ଟି ଆଦି ସକଳ ପ୍ରସଙ୍ଗ ଏଥିରେ ପ୍ରାୟ ରୀତିବଦ୍ଧ । ପ୍ରାଚୀନ ଭାରତୀୟ କାବ୍ୟାଦର୍ଶ ପ୍ରତି ଗଭୀର ଆନୁଗତ୍ୟ ହେତୁ ସେ ଯୁଗର କବି ପକ୍ଷରେ ଏହା ଥିଲା ଏକମାତ୍ର ସମ୍ଭବ୍ୟ ପରିଣତି ।"

ଏସବୁ ସତ୍ତ୍ୱେ ରୀତି କାବ୍ୟରେ ଜୀବନ ଓ କଳାର ଗୌରବମୟ ବିଭବ ସମ୍ପୂର୍ଣ୍ଣ ନିଷ୍ପ୍ରଭ ନୁହେଁ । କିନ୍ତୁ ମଧ୍ୟଯୁଗୀୟ ସାହିତ୍ୟ ସାଧନାର ବୃହତ୍ତର ପୃଷ୍ଠପଟରେ ତାହା ଗୌଣ ଭୂମିକାର ଅଧିକାରୀ ।

## ରୀତି କାବ୍ୟର ଶାସ୍ତ୍ରୀୟ ଆଧାର:-

ରୀତି ଯୁଗର କବିମାନେ ଥିଲେ ବହୁଶାସ୍ତ୍ରଦର୍ଶୀ । ପାଣ୍ଡିତ୍ୟ ହିଁ ଥିଲା କାବ୍ୟ ରଚନାର ନିକଷ । ତେଣୁ ଅଳଙ୍କାର, ଅଭିଧାନ, ବ୍ୟାକରଣ ସଂଗୀତ, ଜ୍ୟୋତିଷ ତଥା ରତିଶାସ୍ତ୍ର—ଏହିପରି ସକଳ ପ୍ରାଚ୍ୟ ବିଦ୍ୟା ଆୟତ୍ତ କରିବାକୁ ସେମାନେ ବାଧ୍ୟ ହେଉଥିଲେ । ନଚେତ୍ ଦରବାରୀ ପଣ୍ଡିତ ମଣ୍ଡଳୀଙ୍କ ଶ୍ରଦ୍ଧାଭାଜନ ହେବା ସେକାଳରେ ସମ୍ଭବ ହେଉ ନ ଥିଲା । ଧନଞ୍ଜୟଙ୍କଠାରୁ ଏହି ପରମ୍ପରାର ବିକାଶ ଲକ୍ଷ୍ୟ କରଯାଇଥାଏ । ଉପେନ୍ଦ୍ର ଭଞ୍ଜ ହେଉଛନ୍ତି ରୀତିଯୁଗର ସର୍ବଶ୍ରେଷ୍ଠ କବି । ତାଙ୍କର କାବ୍ୟାବଳୀରେ ଉପରୋକ୍ତ ସକଳ ଶାସ୍ତ୍ରର ଉଲ୍ଲେଖ/ଅନୁସରଣ ବହୁଳ ଭାବେ ଦୃଷ୍ଟିଗୋଚର ହୁଏ । ଏଠାରେ ଭଞ୍ଜ ତଥା ଅନ୍ୟାନ୍ୟ କବିଙ୍କ ରଚନାରୁ ତତ୍‌ସମ୍ପର୍କିତ କେତୋଟି ଉଦାହରଣ ପ୍ରଦତ୍ତ ।

ଅଳଙ୍କାର-୧) ନାନା ଶବ୍ଦ ଅର୍ଥେ ଯେ ବିଚକ୍ଷଣ
ଯେହୁ ଜାଣେ ଅଳଙ୍କାର ଲକ୍ଷଣ ।
(କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ୩/୧)

୨) ରସ ତରଂଗିଣୀ ଗ୍ରନ୍ଥ ସାହିତ୍ୟ ଦର୍ପଣ
କବି ସମ୍ମତି କି ଆସିବ ।
(ରସ ପଞ୍ଚକ—ପ୍ରଥମ ପଙ୍‌କ୍ତି/'ର' କ ର ବୋଲି/ ୪)

ଅଭିଧାନ-୧) ପୁରଣ ଅଭିଧାନ ଜାଣିଥିଲେ ।

(କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ୨ । ୧୬

୨) ଗୀତ ଅଭିଧାନ ହୋଇ ସାବଧାନ ଶୁଣ
ସୁଜନେ ସନ୍ତୋଷେ
ଅମର ତ୍ରିକାଣ୍ଡ ଯାଦବ ଶାଶ୍ୱତ
ମେଦିନୀ ବିଶ୍ୱପ୍ରକାଶେ ।

(ଗୀତାଭିଧାନ-୧ । ୧)

ବ୍ୟାକରଣ-୧) ଡ଼ରଳରେ ସାବର୍ଣ୍ୟ ଯା
ବ୍ୟାକରଣେ ଲିହି ।

(ଲବଣ୍ୟବତୀ-୧ । ୯)

୨) ବହୁ ବଚନେ ଏଣୁସିଦ୍ଧ ତର୍କି
ବ୍ୟାକରଣେ ଗମ ଗମା କରିକି
ବିହି ଏଣୁ ଗୀତେ ଯୋଷା ସୁଷମା
ବୋଲନ୍ତି ପାଶ୍ଚାତ୍ୟେ ଆଗମା ଗମା ।

(ବୈଦେହୀଶ ବିଳାସ-୧୫।୬)

ସଙ୍ଗୀତ-୧) ସେ କି କଇଳାସ ତାଳରେ ପ୍ରକାଶ × × ×
କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ-୩୧।୨୩)

୨) ଶଙ୍କର ପରଙ୍ଗରେ ପଡ଼ି ରହିଲେ
ରଗ ଆଶାବରୀ ଗଉରୀ × × ×

(ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର-୩।୨୫)

ଜ୍ୟୋତିଷ-୧) ଶୁକ୍ଳପକ୍ଷ ଦଶମୀ ବୁଧବାରେ
ସିଦ୍ଧ ସାଧ୍ୟ ଯୋଗ ଯୋଗ ହେବାରେ
× × ×
ସିଂହେ ସ୍ଥିତ ହୋଇଛି ବିକର୍ତ୍ତନ
ସୌମ୍ୟ ଗ୍ରହ ଦୃଷ୍ଟି ଲଗ୍ନେ ପତନ ।

(ଲବଣ୍ୟବତୀ ୩/୪୧-୪୪)

୨) ଚିତ୍ରକାର କର୍ମକର୍ତ୍ତା । ଚିତ୍ରା ନକ୍ଷତ୍ର ବିଦିତା (ଧର୍ମଗ୍ରନ୍ଥ)
କନ୍ୟକାଦି ଗମାମୋହି । କନ୍ୟଚନ୍ଦ୍ର ଖ୍ୟାତ ହୋଇ ଯେ । ××
(କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ୩୨/୬ ଇତ୍ୟାଦି)

କାମଶାସ୍ତ୍ର–୧୬ କିଛି କହନ୍ତି ଅବା ଚେତି ଚିରେ
କାମ ଶାସ୍ତ୍ରରେ ଲେଖା ନାହିଁ ତେତେ ।
(ରସ କଲ୍ଲୋଳ-୧୧/୮୫)

୨) କାମ ଶାସ୍ତ୍ର ପୋଥି ହସ୍ତେ ଦିଅ ବୁଝୁଥାଉ ନିତ୍ୟେ
ବକ୍ଷଚିତ୍ର ଭିତ୍ତି ଯହିଁ ବସିବା ଶୋଇବା ତହିଁ ।
(ଲବଣ୍ୟବତୀ-୨୯/୫୦)

## ରୀତି କାବ୍ୟର ଭାଷାଃ–

ରୀତି ଯୁଗର ଆଦି କବି ଗୋଷ୍ଠୀଙ୍କ ଭଷା ରୀତି ଥିଲା ଆଡ଼ମ୍ବରଶୂନ୍ୟ । ଭବ/ରସର ପ୍ରାଧାନ୍ୟ ଓ ସର୍ବଜନ ବୋଧ୍ୟତା–ଏଇ ଆଦର୍ଶକୁ ସମ୍ମୁଖରେ ରଖି ସେମାନେ କାବ୍ୟ ରଚନା କରୁଥିଲେ । 'ପରିମଳା'ର ସ୍ରଷ୍ଟା ନରସିଂହ ସେଣ ଏହା ସ୍ପଷ୍ଟ ଭବରେ ଉଲ୍ଲେଖ କରି ଯାଇଛନ୍ତି–

ଦେଶ ଭଷାରେ ମୁଁ ଗୀତ ରଚିଲଇଁ ସବୁଙ୍କର ବୁଝିବା ପାଇଁ ।
ଯେଥକୁ ମନ୍ଦ ବୋଲି କେହି ନ ବୋଲିବ ଦୋଷ ମୋର କିଛି ନାହିଁ ।।
ଯେଥୁ ଭବରସ ସୁଜନେ ଶୁଣିମ ଭଷାରେ କାର୍ଯ୍ୟ କିସ ।
ପନସ ଉପରେ କଣ୍ଟକ ଭିତରେ ପୂରିତ ଅମୃତ ରସ ।। [୨୮]

ପରବର୍ତ୍ତୀ କାଳର କବିଗଣ ଏହି ରୀତି ପରିହାର କରି ଏକ କ୍ଲିଷ୍ଟ ଓ ଜଟିଳ ଶବ୍ଦବ୍ୟୂହ ସୃଷ୍ଟିରେ ମନ ବଳାଇଥିଲେ । ସଂସ୍କୃତ 'କାବ୍ୟପାକ' (ଯଥା–ପନସୋ ନାରିକେଳଂ ଚ ଦ୍ରାକ୍ଷା ଖର୍ଜ୍ଜୁର ଏବ ଚ
କଦଳୀ, ଗୁଡ଼ ଇତ୍ୟେବ ପାକାଃ ଷଡ଼ଭିଧୀୟତେ ।) [୨୯]
ଏବଂ ଆଳଂକାରିକ ଆଦର୍ଶ (ଯଥା–ଇହଶିଷ୍ଟାନୁଶିଷ୍ଟାନାମନୁଶିଷ୍ଟାନାଂ ସର୍ବଥା
ବାଗ୍ଭମେବ ପ୍ରସାଦେନ ଲୋକଯ ତ୍ରାପ୍ରବର୍ତ୍ତତେ)[୩୦]

ଥିଲା ସେମାନଙ୍କର ପ୍ରେରଣା ଉତ୍ସ । କବି ଅଭିମନ୍ୟୁ ଏହାକୁ ଅକ୍ଷରେ ଅକ୍ଷରେ ପାଳନ କରିଛନ୍ତି । ତାଙ୍କ 'ବିଦଗ୍ଧ ଚିନ୍ତାମଣି' ର ପ୍ରଥମ ଛାନ୍ଦରେ ଚାରିଗୋଟି 'କାବ୍ୟପାକ'(ଦ୍ରାକ୍ଷା, ଗୁଡ଼,ନାରିକେଳ,ଖର୍ଜୁର)[୩୧] ଓ'ଦିବ୍ୟ ଅଦିବ୍ୟ'[୩୨] ଭାଷାରୀତି ବିଷୟକ ଉଲ୍ଲିଖିତ ଉକ୍ତି ଏଠାରେ ସ୍ମରଣୀୟ । ଉପେନ୍ଦ୍ର ଭଞ୍ଜ ହେଉଛନ୍ତି ମଧ୍ୟଯୁଗୀୟ ଶବ୍ଦଶିଳ୍ପର ମହାନ୍ କଳାକାର । 'କହେ ଉପଇନ୍ଦ୍ର ଭଞ୍ଜ ମୁଁ ଲଭିଛି ଶବଦ ସମୁଦ୍ର ପାର' [୩୩]—କବିଙ୍କ ଏହି ଦମ୍ଭୋକ୍ତିର ସତ୍ୟତା ତାଙ୍କର ସମଗ୍ର କୃତିରେ ପ୍ରତିଫଳିତ । ଭଂଜୀୟ ଭାଷା ବିଭବ କେଉଁଠାରେ ସରଳ ମଧୁର ଗୀତିମୟ ତ କେଉଁଠାରେ କ୍ଲିଷ୍ଟ, ନୀରସ ଓ ଆଳଂକାରିକ । ରସିକ, ପଣ୍ଡିତ ଓ ସମ୍ଭ୍ରାନ୍ତ ଶ୍ରେଣୀ ନିମନ୍ତେ ରୀତିକାବ୍ୟ ଉଦ୍ଦିଷ୍ଟ ଥିବାରୁ ତାହା ସମ୍ପୃତୋନ୍ମୁଖୀ ହେବା ସ୍ୱାଭାବିକ । ଯେଉଁଠାରେ କବିପ୍ରତିଭା ଆଡ଼ମ୍ବରମୁକ୍ତ ସେଠାରେ କାବ୍ୟଭାଷା ସରସ ଓ ହୃଦୟଗ୍ରାହୀ । ଦୀନକୃଷ୍ଣଙ୍କ'ରସକଲ୍ଲୋଳ'ର ସଫଳତା ସେ ଦୃଷ୍ଟିରୁ ବିସ୍ମୟକର । ସୁତରାଂ ରୀତିକାବ୍ୟର ଭାଷାକୁ ହୃଦୟନିଷ୍ଠ/ଶାସ୍ତ୍ରନିଷ୍ଠ ବୋଲି କୁହାଯାଇପାରେ ।

ଶେଷ କଥା—ଶାସନ ପଦ୍ଧତିର ପରିବର୍ତ୍ତନ, ନୂତନ ଶିକ୍ଷାନୀତି, ପାଶ୍ଚାତ୍ୟ ସଂସ୍କୃତିର ପ୍ରଭାବ, ନବ୍ୟଧର୍ମ ଆନ୍ଦୋଳନ ଓ ନାନାବିଧ ଜନହିତକର କାର୍ଯ୍ୟ ହେତୁ ଊନବିଂଶ ଶତାବ୍ଦୀରେ ଭାରତୀୟ ନବଜାଗରଣର ସୂତ୍ରପାତ ହୋଇଥିଲା । ଆଧୁନିକ ସାହିତ୍ୟର ଅଭ୍ୟୁଦୟ ସଙ୍ଗେ ସଙ୍ଗେ ମଧ୍ୟଯୁଗୀୟ କାବ୍ୟରୁଚି ଓ ପରଂପରା ସାମାଜିକ ସ୍ୱୀକୃତି ହରାଇବାକୁ ଆରମ୍ଭ କରିଥିଲା । କବିବର ରାଧାନାଥ ହେଲେ ନୂତନ ଓଡ଼ିଆ କାବ୍ୟଧାରାର କର୍ଣ୍ଣଧାର । ତାଙ୍କ ସମେତ ଏ ଯୁଗର ଅଧିକାଂଶ କବି (ଯଥା—ଗଙ୍ଗାଧର, ନନ୍ଦକିଶୋର ଚିନ୍ତାମଣି, ନୀଳକଣ୍ଠ)ଙ୍କ ପକ୍ଷରେ କିନ୍ତୁ ମଧ୍ୟଯୁଗୀୟ କାବ୍ୟଶୈଳୀ ସମ୍ପୂର୍ଣ୍ଣ ପରିହାର କରିବା ସମ୍ଭବ ହୋଇନଥିଲା । ଚରିତ୍ର ନିର୍ବାଚନ, ବିଷୟ ଗ୍ରମ୍ଫନ, ପ୍ରେମଚିତ୍ର ଉପସ୍ଥାପନାଦି କ୍ଷେତ୍ରରେ ଏହି କବିଗଣ ରୀତିସାହିତ୍ୟ ନିକଟରେ ଋଣୀ ।

ଯୁଗଧର୍ମକୁ ପ୍ରତ୍ୟାଖ୍ୟାନ କରି ଅଦ୍ୟାବଧି ବହୁ କବି ରୀତି କାବ୍ୟ-ଧାରାଶ୍ରୟୀ ସୃଷ୍ଟି କର୍ମରେ ତତ୍ପର । ସେମାନଙ୍କ ସାଧନା ଜୀବନ ଓ ସମାଜର ସମର୍ଥନ ଲାଭ ନ କଲେ ମଧ୍ୟ ଲୋକପ୍ରିୟତା ହରାଇ ନାହିଁ ।

ପାଦଟୀକା-

୧। Collected Essays In Literary Criticism
: P 13(by H. Read)

୨। କାବ୍ୟାଳଂକାର ସୂତ୍ରବୃତ୍ତି : ୧ । ୨ । ୬

୩। ତତ୍ରୈବ : ୧ । ୨ । ୭

୪। ତତ୍ରୈବ : ୧ । ୨ । ୧୧, ୧୨, ୧୩

୫। ହିନ୍ଦି ରୀତି ସାହିତ୍ୟ : ପୃ ୨୯ (ଡ଼ଃ. ଭଗୀରଥ ମିଶ୍ର)

୬। ରୀତି କାବ୍ୟ ସଂଗ୍ରହ : ପୃ ୧୬ (ଡଃ. ଜଗଦୀଶ ଗୁପ୍ତ)

୭। ରସକଲ୍ଲୋଳ ସମୀକ୍ଷା : ପୃ ୧୧

୮। ବିଦଗ୍ଧ ଚିନ୍ତାମଣି ପରିଚୟ : ପୃ ୬୭

୯। ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ : ପୃ ୧୨୫, ୧୩୪

୧୦। ଓଡ଼ିଶା ଇତିହାସ (ପ୍ରଥମ ଖଣ୍ଡ)– ଅଭିନବ ୨ୟ ସଂସ୍କରଣ : ପୃ ୩୧୫
(ଡଃ. ହରେକୃଷ୍ଣ ମହତାବ)

୧୧। ଓଡ଼ିଶାର ଇତିହାସ(୧୯୨୫) : ପୃ ୧୨୯ (ପ୍ୟାରୀମୋହନ ଆଚାର୍ଯ୍ୟ)

୧୨। ମୋ ସମୟର ଓଡ଼ିଶା : ପୃ ୧୨୫ (ଡଃ. କୃଷ୍ଣଚନ୍ଦ୍ର ପାଣିଗ୍ରାହୀ)

୧୩। ଭଞ୍ଜ ବଂଶାନୁଚରିତ (୨ୟ ସଂସ୍କରଣ) : ପୃ ୧୯ (ମାଗୁଣି ଦାସ)

୧୪। ରୀତି କାବ୍ୟକି ଭୂମିକା : ପୃ ୭ (ଡଃ. ନଗେନ୍ଦ୍ର)(୬ଷ୍ଠ ସଂସ୍କରଣ)

୧୫। ତତ୍ରୈବ : ପୃ ୯

୧୬। ବହୁତ ଜାତିରୁ ସ୍ତିରୀମାନ ଆଣିଲେ
ଯତ୍ନ ବଡ କରି ନହରରେ ରଖିଲେ ।
× × ×
ଯା ଘରେ ସୁନ୍ଦରୀ ସ୍ତୀରୀମାନେତ ଥିଲେ
ବଳାତ୍କାର କରି ତାକୁ ଘେନି ଆସିଲେ ।
ଘୁମୁସର ଭଞ୍ଜ ବଂଶାବଳୀ : ୧୨/୫୨, ୯୩

୧୭। ଉତ୍କଳ ଇତିହାସ (୧୯୩୩) : ପୃ. ୨୮୬ (କୃପାସିନ୍ଧୁ ମିଶ୍ର)

୧୮। ତତ୍ରୈବ : ପୃ ୨୬୫

୧୯। ରୀତି କାବ୍ୟ କି ଭୂମିକା : ପୃ ୧୭ (ଡଃ.ନଗେନ୍ଦ୍ର)(୬ଷ୍ଠ ସଂସ୍କରଣ)

୨୦। ଓଡ଼ିଆ ସାହିତ୍ୟର କ୍ରମବିକାଶ : ପୃ ୮୩

୨୧। ରୀତି କାବ୍ୟ କି ଭୂମିକା : ପୃ ୨୭

୨୨। ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ : ପୃ ୧୪୮

୨୩। ହିନ୍ଦି ରୀତି କାବ୍ୟ : ପୃ ୧୪୧ (ଡଃ ଭଗୀରଥ ମିଶ୍ର)

୨୪। ବୈଦେହୀଶ ବିଳାସ : ୧/୪

୨୫। କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୩୧/୨୩

୨୬। ଭଞ୍ଜ ଭୂମିକା : ପୃ ୧୧୪–୧୧୮

୨୭। ସାହିତ୍ୟ ଦର୍ପଣ : ୬ଷ୍ଠ–ପୃ ୫୮୪ (ଓଡ଼ିଆ ସାହିତ୍ୟ ଏକାଡ଼େମୀ)

୨୮। ପରିମଳା ୭/୪୫–୪୬

୨୯। ଭଞ୍ଜୀୟ କାବ୍ୟ ରଚନା : ପୃ ୪୨ (ଉଦ୍ଧୃତି)

୩୦। କାବ୍ୟାଦର୍ଶ : ୧।୩

୩୧। ଥୋକେ ଋଜ ହେବ ଦ୍ରାକ୍ଷା ଗୁଡ଼ ପାକ
ଥୋକେ ପାକ ନାରିକେଳ ଖର୍ଜ୍ଜୁର ରେଚକା ହେ ।

ବିଦଗ୍ଧ ଚିନ୍ତାମଣି : ୧ । ୩୩

୩୨। ଦିବ୍ୟ ଅଦିବ୍ୟ ଭଷାରେ ପଦ ହେବ ସିଦ୍ଧି
ଦେଖ ମହାଜନମାର୍ଗ ପରଂପର ବିଧି ହେ ।

ବିଦଗ୍ଧ ଚିନ୍ତାମଣି : ୧ । ୩୪

୩୩। କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୧୪ । ୩୮

*

# ଶୃଙ୍ଗାର ତତ୍ତ୍ୱ

## -ଶୃଙ୍ଗାର ଓ ସାହିତ୍ୟ ଶାସ୍ତ୍ର

ଶୃଙ୍ଗାର ଏକ ମଧୁରଃ ପରଃ ପରପ୍ରହ୍ଲାଦନୋରସଃ
ତନ୍ମୟଂ କାବ୍ୟମାଶ୍ରିତ୍ୟ ମାଧୁର୍ଯ୍ୟଂ ପ୍ରତିତିଷ୍ଠତି । [୧]

ଯୁଗ ଯୁଗ ଧରି ସାହିତ୍ୟରେ ଶୃଙ୍ଗାରର ଆସନ ସୁପ୍ରତିଷ୍ଠିତ । ଏହାର ଅପରିସୀମ ଗରିମା ମହାକବିଠାରୁ ଲୋକ କବି ପର୍ଯ୍ୟନ୍ତ ସମସ୍ତଙ୍କୁ ମୁଗ୍ଧ କରିଛି । ଭକ୍ତକବିର ଆଧ୍ୟାତ୍ମିକ ସାଧନା ହେଉ କିମ୍ବା ରସିକ କବିର ଜୀବନ ସାଧନା ହେଉ, ଶୃଙ୍ଗାର ଅଭିବ୍ୟଂଜନାରେ ତା'ର ସାହିତ୍ୟ ସୃଷ୍ଟି ଶାଶ୍ୱତ ସୌନ୍ଦର୍ଯ୍ୟରେ ମହିମାନ୍ୱିତ । ମହାକବି ବାଲ୍ମୀକିଙ୍କ ଆଦି ଶ୍ଳୋକ[୨] ରେ ଶୃଙ୍ଗାର-ଚେତନା ସହିତ କାବ୍ୟ-ଚେତନାର ନିବିଡ଼ ସମ୍ବନ୍ଧ ସ୍ପଷ୍ଟ ଲକ୍ଷଣୀୟ ।

ଶୃଙ୍ଗାରର ପରିଭାଷା – କୋଷ ଗ୍ରନ୍ଥମାନଙ୍କରେ ଶୃଙ୍ଗାରର ବିଭିନ୍ନ ଅର୍ଥ ପ୍ରଦତ୍ତ । 'ବାଚସ୍ପତ୍ୟମ୍'ରେ କୁହାଯାଇଛି– ଶୃଙ୍ଗାର : ପୁଂ ଶୃଙ୍ଗ କାମୋଦ୍ରେକ ମୃଚ୍ଛତ୍ୟେନ ର ଅଣ୍ । ୧। ରସଭେଦ ୨। ଲବଙ୍ଗ ୩। ସିନ୍ଦୁର ୪। ଚୂର୍ଣ୍ଣ ୫। କଳା ଅଗୁରୁ ୬। ଆର୍ଦ୍ରକ ୭। ଭୂଷଣ ୮। ଗଜ ଭୂଷଣ ୯। ସ୍ତ୍ରୀ ପୁରୁଷର ସଂଯୋଗ ଇତ୍ୟାଦି ।[୩] ଶବ୍ଦ କଳ୍ପଦ୍ରୁମ, ଓଡ଼ିଆ ଭାଷାକୋଷ, ବଙ୍ଗଳା ବିଶ୍ୱକୋଷ,ହିନ୍ଦି ଶବ୍ଦସାଗର ପ୍ରଭୃତି ଗ୍ରନ୍ଥରେ ମଧ୍ୟ ଉପରୋକ୍ତ ସକଳ ଅର୍ଥ ଦେଖିବାକୁ ମିଳେ ।[୪]

ଶୃଙ୍ଗାର ତତ୍ତ୍ୱ ବିଷୟକ ବିପୁଳ ଶାସ୍ତ୍ରୀୟ ଆଲୋଚନା ସଂସ୍କୃତ ଅଳଂକାର ଗ୍ରନ୍ଥମାନଙ୍କରେ ପ୍ରଦତ୍ତ । 'ନାଟ୍ୟଶାସ୍ତ୍ର'କାର ଭରତଙ୍କଠାରୁ 'ରସଗଙ୍ଗାଧର'କାର ପଣ୍ଡିତ ଜଗନ୍ନାଥଙ୍କ ପର୍ଯ୍ୟନ୍ତ ଆଚାର୍ଯ୍ୟଗଣ ଶୃଙ୍ଗାର ଚର୍ଚ୍ଚା କ୍ଷେତ୍ରରେ ନାନା ମୌଳିକ ବିଚାର ଉପସ୍ଥାପିତ କରିଯାଇଛନ୍ତି । ଆଚାର୍ଯ୍ୟ ଭରତଙ୍କ ମତରେ ଋତୁ ମାଲ୍ୟାଦି ସେବିତ ପ୍ରାୟ ଇଷ୍ଟ ସଂପାଦନକାରୀ ସ୍ତ୍ରୀ ଓ ପୁରୁଷର ସଂଯୋଗ ଶୃଙ୍ଗାର ରୂପେ ବିବେଚିତ ।[୪] 'ଦଶରୂପ'କାର ଧନଞ୍ଜୟ କହନ୍ତି—ରମ୍ୟଦେଶ, କାଳ, କଳା, ବେଶ, ଭୋଗାଦି ସେବନ ଦ୍ୱାରା ଯୁବକ ଯୁବତୀମାନଙ୍କର ଆମୋଦ ପ୍ରମୋଦ ରତି ନାମରେ ଉକ୍ତ । ଏହି ରତିଭାବ ଅଙ୍ଗର ମଧୁର ଚେଷ୍ଟାଦ୍ୱାରା ପରିପୁଷ୍ଟ ହୋଇ ଶୃଙ୍ଗାର ରୂପ ଲାଭ କରେ ।[୬] ଭୋଜରାଜ ସ୍ୱୀୟ 'ସରସ୍ୱତୀ କଣ୍ଠାଭରଣ'ରେ ଶୃଙ୍ଗାରକୁ ରସ, ଅଭିମାନ ଓ ଅହଂକାର ରୂପେ ଗ୍ରହଣ କରିଛନ୍ତି ।[୭] 'ଶୃଙ୍ଗାର ପ୍ରକାଶ'ରେ ସେ କହିଛନ୍ତି—ମନୋନୁକୂଳ ମୋଦ, ହର୍ଷ, ଆନନ୍ଦାଦି ଭାବ ଅନୁଭବର ହେତୁ ହେଉଛି ଅଭିମାନ (ଶୃଙ୍ଗାର) ଇତ୍ୟାଦି ଭାବର ବିଶାଳ ସଂଖ୍ୟା ସତ୍ତ୍ୱେ ଶୃଙ୍ଗାରାତିରିକ୍ତ ରସକୁ ରସ କହିବା ବ୍ୟର୍ଥ ।[୮] 'ସାହିତ୍ୟ ଦର୍ପଣ'ରେ ପଣ୍ଡିତ ବିଶ୍ୱନାଥ ଏ ସଂପର୍କରେ କହିଛନ୍ତି—ମନ୍ମଥର ଉଦ୍‌ଭେଦ (ଅଙ୍କୁରଣ)କୁ ଶୃଙ୍ଗ କୁହାଯାଏ । ଏହି ମନ୍ମଥୋଦ୍‌ଭେଦର ହେତୁ ସ୍ୱରୂପ ଉତ୍ତମ ପ୍ରକୃତି ପ୍ରାୟ ରସ ଶୃଙ୍ଗାର ରୂପେ କଥିତ ।[୯] 'ରସଗଙ୍ଗାଧର'କାର ଜଗନ୍ନାଥଙ୍କ ମତରେ— ଶୃଙ୍ଗାର ରସରେ ସ୍ତ୍ରୀ ପୁରୁଷ ଆଲମ୍ବନ ବିଭାବ; ଚନ୍ଦ୍ର, ଜ୍ୟୋତ୍ସ୍ନା, ବସନ୍ତଋତୁ, ବିବିଧ ଉପବନ,ଏକାନ୍ତ ସ୍ଥାନ ଆଦି ଉଦ୍ଦୀପନ ବିଭାବ, ପ୍ରେମପାତ୍ରର ମୁଖାବଲୋକନ, ତା'ର ଗୁଣ ଶ୍ରବଣ ଓ କୀର୍ତ୍ତନ ପ୍ରଭୃତି ତଥା ସାତ୍ତ୍ୱିକ ଭାବ ସମୂହ ଅନୁଭାବ ଏବଂ ସ୍ମୃତି, ଚିନ୍ତାଦି ବ୍ୟଭିଚାରୀ ଭାବ ରୂପେ ପରିଚିତ ।[୧୦] 'ଶବ୍ଦ କଳ୍ପଦ୍ରୁମ'ରେ ଉଦ୍ଧୃତ ଏକ ଶ୍ଳୋକରୁ ଜଣାଯାଏ ଯେ—ପୁରୁଷ ଓ ସ୍ତ୍ରୀ ପରସ୍ପରର ସଂଯୋଗ ନିମିତ୍ତ ଅଭିଳାଷ ରତି କ୍ରୀଡ଼ାଦିର କାରଣ ହେଲେ, ତା'ହା ଶୃଙ୍ଗାର ନାମରେ ଖ୍ୟାତ ।[୧୧]

ଉପରୋକ୍ତ ପରିଭାଷାମାନଙ୍କରୁ ଶୃଙ୍ଗାର ସମ୍ବନ୍ଧୀୟ ଏକ ସ୍ପଷ୍ଟ ଧାରଣା ଆମେ ପାଇଥାଉଁ । ନାରୀ ଓ ପୁରୁଷ ପରସ୍ପର ପ୍ରତି ଆକୃଷ୍ଟ ହୋଇ ପରସ୍ପରର ପ୍ରୀତି ସଂପାଦନ କଲେ ତା'ହା ଶୃଙ୍ଗାର ରସର ଗୌରବ ପ୍ରାପ୍ତ ହୁଏ

ସୁଖ, ସମ୍ଭୋଗ, ପ୍ରମୋଦ, ରତି, ମଧୁର ଅଂଗ ବିଚେଷ୍ଟା ଆଦି ଉଲ୍ଲେଖ କାମ ଓ ପ୍ରେମର ସମନ୍ୱିତ ରୂପ ପ୍ରକାଶ କରେ । ଋତୁ, ମାଲ୍ୟାଦି, ରମ୍ୟ ଦେଶ, କାଳ, କଳା, ବେଶ ଇତ୍ୟାଦିରୁ ଶୃଙ୍ଗାର ଯେ ସୌନ୍ଦର୍ଯ୍ୟାଶ୍ରିତ ଏହା ପ୍ରମାଣିତ । ସୁତରାଂ ଶୃଙ୍ଗାରର ଭିତ୍ତି ହେଉଛି କାମ, ପ୍ରେମ ଓ ସୌନ୍ଦର୍ଯ୍ୟ ।

ପୁନଶ୍ଚ ଶୃଙ୍ଗାରର ସ୍ଥାୟୀଭାବ ରତି ହୋଇଥିବାରୁ ଏହା ଦେବତା, ଗୁରୁ, ପୁତ୍ର ପ୍ରତି ଉଦ୍ଦିଷ୍ଟ ନୁହେଁ । ପଣ୍ଡିତରାଜ ଜଗନ୍ନାଥ ଏହା ସ୍ପଷ୍ଟଭାବରେ ଉଲ୍ଲେଖ କରିଯାଇଛନ୍ତି ।[୧୨] ମମ୍ମଟ କହନ୍ତି—ଯାହା କେବଳ ନାୟିକା ବିଷୟକ ରତିକୁ ବ୍ୟକ୍ତ କରେ ତାହାହିଁ ଶୃଙ୍ଗାର ।[୧୩] ସୁତରାଂ ବିଶୁଦ୍ଧ ପ୍ରେମ, ମୈତ୍ରୀ ଆଦି ଶୃଙ୍ଗାର ତତ୍ତ୍ୱର ଅନ୍ତର୍ଭୁକ୍ତ ହୋଇ ନ ପାରେ ।

ବର୍ତ୍ତମାନ କାମ, ପ୍ରେମ ଓ ସୌନ୍ଦର୍ଯ୍ୟ ସମ୍ବନ୍ଧରେ କିଞ୍ଚିତ୍ ବିଚାର କରାଯାଇପାରେ ।

କାମ— ଭାରତୀୟ ଶାସ୍ତ୍ରୀୟ ପରମ୍ପରାରେ ଆମେ କାମର ଦ୍ୱିବିଧ ରୂପ ଦେଖିବାକୁ ପାଉ । ଗୋଟିଏ ବୃହତ୍ତର ; ଅନ୍ୟଟି ସାଧାରଣ ।

କାମର ବୃହତ୍ତର ରୂପରେ ସୃଷ୍ଟି ଜିଜ୍ଞାସା ଓ ସୌନ୍ଦର୍ଯ୍ୟ ତତ୍ତ୍ୱ ନିହିତ । ଏହା ଏପରି ସର୍ବବ୍ୟାପୀ ଯେ ପ୍ରାଚୀନ ମନୀଷୀଗଣ ଏଥିରେ ପରମାତ୍ମା ବା ଈଶ୍ୱରୀୟ ସତ୍ତାର ସନ୍ଧାନ କରି ଯାଇଛନ୍ତି ।

ଋଗ୍‌ବେଦରେ କୁହାଯାଇଛି—ସୃଷ୍ଟି ଉତ୍ପତ୍ତିର ମୂଳ କାରଣ ରୂପେ ସର୍ବପ୍ରଥମେ କାମର ଆବିର୍ଭାବ ହେଲା ।[୧୪] 'ଅଥର୍ବ ବେଦ' ରେ ଠିକ୍ ସେହି କଥା ହିଁ ଉଲ୍ଲିଖିତ । ହେ କାମ ! ସର୍ବ ପ୍ରଥମେ ତୋର ଉତ୍ପତ୍ତି । ଦେବତା, ପିତର୍ ଓ ମର୍ତ୍ତ୍ୟ—ତୁ ସର୍ବତ୍ର ପରିବ୍ୟାପ୍ତ । ତୋ କବଳରୁ କେହି ମୁକ୍ତ ନୁହଁନ୍ତି । ତୁ ବିଶ୍ୱବ୍ୟାପୀ ଓ ମହାନ୍ । ମୁଁ ତୋତେ ନମସ୍କାର କରୁଅଛି ।"[୧୫]

'ଗୀତା'ରେ ଧର୍ମ ଅବିରୁଦ୍ଧ କାମକୁ ଈଶ୍ୱରୀୟ ବିଭୂତି ରୂପେ ବର୍ଣ୍ଣନା କରାଯାଇଛି ।[୧୬]

ଭାରତୀୟ ପୁରାଣ ପରଂପରାରେ କାମଦେବ ଓ ରତିଦେବୀଙ୍କୁ ପତିପତ୍ନୀ ରୂପେ କଳ୍ପନା କରାଯାଇଛି । କାମ ଓ ରତିର ମିଳନରେ ଶୃଙ୍ଗାର ସଂପନ୍ନ ହୁଏ । ସୁତରାଂ କାମକୁ ଛାଡ଼ି ରତିର ସ୍ଥିତି ଅସଂଭବ ।

ନାରୀ ପୁରୁଷର ମିଳନ ତତ୍ତ୍ୱ ବା କାମତତ୍ତ୍ୱର ସୂଚନା ଋଗ୍‌ବେଦର ହିରଣ୍ୟ ଗର୍ଭ ସୂକ୍ତରେ ଉଲ୍ଲିଖିତ ।[୨୩] ହିରଣ୍ୟଗର୍ଭ ପ୍ରଥମେ ଅର୍ଦ୍ଧନାରୀଶ୍ୱର ଅର୍ଥାତ୍ ଉଭୟଲିଂଗୀ ଥିଲେ । ପୁରୁଷ ତତ୍ତ୍ୱ ଓ ସ୍ତ୍ରୀ ତତ୍ତ୍ୱର ପୃଥକୀକରଣ ହୋଇ ତାଙ୍କଠାରେ ପ୍ରଜନନ ସାମର୍ଥ୍ୟ ଉତ୍ପନ୍ନ ହେଲା । ଏହାହିଁ ହେଉଛି କାମ ଏବଂ ଜଗତୋତ୍ପତ୍ତିର ମୂଳ ହେତୁ । କାମ ସଜୀବମାନଙ୍କୁ ସଂଗ୍ରଥିତ କରି ସନ୍ତାନୋତ୍ପତ୍ତି ନିମିତ୍ତ ପ୍ରେରଣା ଯୋଗାଇଥାଏ । ଏହାଦ୍ୱାରା ମହା-ସୁଖପ୍ରାପ୍ତି ହୁଏ । ଋଗ୍‌ବେଦର ବହୁସ୍ଥଳରେ କାମର ସାଧାରଣ ରୂପ ପରିଦୃଷ୍ଟ । ଯମଯମୀ ସଂବାଦରେ କାମୋତ୍ତପ୍ତା ଭଗିନୀର ଭାଇ ସହିତ ସମ୍ଭୋଗେଚ୍ଛା ଓ ଭାଇର ପ୍ରତ୍ୟାଖ୍ୟାନ, ଉର୍ବଶୀ ପୁରୁରବା ସଂବାଦରେ ପତ୍ନୀ ପ୍ରତ୍ୟାଖ୍ୟାତ ରାଜାଙ୍କର ପ୍ରଣୟାକୁଳତା ଅତୀବ ମହତ୍ତ୍ୱପୂର୍ଣ୍ଣ । ରତିକ୍ରୀଡ଼ା ଓ ପ୍ରଜୋତ୍ପତ୍ତି କ୍ଷେତ୍ରରେ ନାରୀ ପୁରୁଷର ସମାନ ଗୌରବ ବୃଷାକପି ସୂକ୍ତର ଇନ୍ଦ୍ର ଇନ୍ଦ୍ରାଣୀ ସଂବାଦରେ ଏବଂ ବ୍ରହ୍ମଚର୍ଯ୍ୟ ପାଳନ ଜନିତ ପୁରୁଷର ବୀର୍ଯ୍ୟବାନତ୍ୱ ଅଗସ୍ତ୍ୟ ସୂକ୍ତରେ ବର୍ଣ୍ଣିତ ।

ଅଥର୍ବ ବେଦରେ କାମକୁ ଯଜ୍ଞ ରୂପେ କଳ୍ପନା କରାଯାଇଛି । ଏଥିରେ ପୁରୁଷ ତତ୍ତ୍ୱ ଓ ସ୍ତ୍ରୀ ତତ୍ତ୍ୱର ସଂଯୋଗ ଭାବନା ନିହିତ । ଗୋଟିଏ ସ୍ଥାନରେ କୁହାଯାଇଛି ଯେ ମନୁଷ୍ୟର ଦେହ ମନ ପ୍ରଜ୍ୱଳନକାରୀ କାମାଗ୍ନି ଅତ୍ୟନ୍ତ ଶକ୍ତିଶାଳୀ ଓ ଅଦମ୍ୟ ଅଟେ ।[୨୪] କେତୋଟି ମନ୍ତ୍ରରେ ନାରୀର ପ୍ରେମ ପ୍ରାପ୍ତି ନିମିତ୍ତ ପୁରୁଷର ପ୍ରବଳ କାମନା ପ୍ରକାଶିତ ।

ଉପନିଷଦରେ ଉକ୍ତ ଅଛି ଯେ ସେହି ଏକମେବାଦ୍ୱିତୀୟ ଆଦି ପୁରୁଷର ବହୁ ରୂପରେ ଅଭିବ୍ୟକ୍ତ ହେବାର କାମନାରୁ କାମର ଉତ୍ପତ୍ତି ।[୨୫] ସେହି ଆଦି ପୁରୁଷର ସିଦ୍ଧ ସୁକୃତ ହିଁ ରସ ଏବଂ ଏହା ବ୍ରହ୍ମାନନ୍ଦ ସୃଷ୍ଟି କରିଥାଏ । 'ବୃହଦାରଣ୍ୟକ'ରେ ନାରୀ ପୁରୁଷର ସହବାସକୁ ପ୍ରତୀକାତ୍ମକ

ଭବରେ ଉପସ୍ଥାପିତ କରାଯାଇଛି । ନାରୀ ହେଉଛି ଅଗ୍ନି, ଉପସ୍ଥ ହେଉଛି ସମିଧ, ଲୋମ ହେଉଛି ଧୂମ, ଯୋନି ହେଉଛି ଅର୍ଚ୍ଚି, ମୈଥୁନ ହେଉଛି ଅଂଗାର ଓ ଆନନ୍ଦ ହେଉଛି ସ୍ଫୁଲିଙ୍ଗ । [୨୬] ସହବାସର ପ୍ରଯୋଜନ ଦ୍ୱିବିଧ ରତି ସୁଖ ଓ ପ୍ରଜୋତ୍ପତ୍ତି ।

ବୈଦିକ ଓ ଔପନିଷଦୀୟ ସାହିତ୍ୟର ବହୁ ସ୍ଥଳରେ ମିଳନୋତ୍କଣ୍ଠା, ଆଲିଙ୍ଗନ, ସହବାସ, ପୁରୁଷାୟିତ, ବେଶ୍ୟାଗମନ, ପରକୀୟା ସଂଭୋଗ ବା ପରପୁରୁଷ ବିଳାସ ଆଦି ସାଧାରଣ କାମର ବିବିଧ ରୂପ ଦେଖିବାକୁ ମିଳେ ।

**ପ୍ରେମ** :— ସାହିତ୍ୟ, ଧର୍ମ, ଦର୍ଶନାଦି ଗ୍ରନ୍ଥରେ ପ୍ରେମର ସ୍ୱରୂପ ସମ୍ବନ୍ଧୀୟ ବହୁଳ ବ୍ୟାଖ୍ୟା ପରିଦୃଷ୍ଟ । ପାର୍ଥିବ ଓ ଅପାର୍ଥିବ ଭେଦରେ ଏହାର ଗୌରବ ବିଭିନ୍ନ ସ୍ଥଳରେ ଉଦ୍‌ଘୋଷିତ ।

'ନାରଦ ଭକ୍ତି ସୂତ୍ର'ରେ କୁହାଯାଇଛି—ପ୍ରେମର ସ୍ୱରୂପ ଅନିର୍ବଚନୀୟ । ମୂକର ଆସ୍ୱାଦନବତ୍ । [୨୭] 'ଚୈତନ୍ୟ ଚରିତାମୃତ' ରଚୟିତା କହନ୍ତି—ଆତ୍ମେନ୍ଦ୍ରିୟ ପ୍ରୀତି ବାଞ୍ଛା ହେଉଛି କାମ ଏବଂ କୃଷ୍ଣେନ୍ଦ୍ରିୟ ପ୍ରୀତି ଇଚ୍ଛା ହେଉଛି ପ୍ରେମ । କାମ ଅଂଧତମ ଏବଂ ପ୍ରେମ ନିର୍ମଳ ଭାସ୍କର । [୨୮] କବି କର୍ଣ୍ଣପୂର ତାଙ୍କର 'ଅଳଂକାର କୌସ୍ତୁଭ'ରେ ପ୍ରେମର ଏକ ସୁନ୍ଦର ବର୍ଣ୍ଣନା ପ୍ରଦାନ କରିଅଛନ୍ତି । ଯଥା :- ସମୁଦ୍ରରେ ତରଂଗ ପରି ପ୍ରେମ ରସରେ ସକଳଭାବ ଓ ରସ ଉନ୍ମଗ୍ନ ଓ ନିମଗ୍ନ ହେଉଛନ୍ତି । [୨୯] 'ଉଜ୍ଜ୍ୱଳ ନୀଳମଣି'କାର ପ୍ରେମର ସାନ୍ଦ୍ରତାକୁ ଅଧିକ ସ୍ପଷ୍ଟ କରିବାକୁ ଯାଇ କହିଛନ୍ତି ଯେ ଧ୍ୱଂସର କାରଣ ଉପସ୍ଥିତ ହେଲେ ସୁଦ୍ଧା ଭାବ ବଂଧନ ଧ୍ୱସ୍ତ ହୁଏ ନାହିଁ; ତାହା ହିଁ ପ୍ରେମ । [୩୦] ଏହି ସକଳ କ୍ଷେତ୍ରରେ ଅପାର୍ଥିବ ପ୍ରେମ ଭାବନା ଆଧ୍ୟାତ୍ମିକ ବିଭୂତି ବିମଣ୍ଡିତ ।

ପ୍ରେମର ପାର୍ଥିବ ରୂପ ନର ନାରୀର ଅଂଗ ସୌନ୍ଦର୍ଯ୍ୟ ପ୍ରତି ଗଭୀର ଆକର୍ଷଣ । ନିବିଡ଼ ସାନ୍ନିଧ୍ୟ ଓ ଅନ୍ତରଂଗ ଅନୁଭବ ଉପରେ ପ୍ରତିଷ୍ଠିତ ।

ଏହାର ବିକାଶରେ କାମ ବାସନାର ଭୂମିକା ସ୍ୱୀକୃତ । ସ୍ୱାର୍ଥମୂଳକ ହେଲେ ହେଁ ଜୀବଧର୍ମର ପରିପୁଷ୍ଟି ନିମନ୍ତେ ଏହା ପ୍ରାଣୀକୁ ପ୍ରବୃତ୍ତ କରେ । ବାସନାର ଆବିର୍ଭାବରେ ପ୍ରେମର ମୋହିନୀ ରୂପ ଉଦ୍ଭାସିତ ହୋଇଉଠେ । କାଳକ୍ରମେ ତାର ପରିମାର୍ଜନ ବା ଉନ୍ନୟନ ପ୍ରକ୍ରିୟା ଆରମ୍ଭ ହୁଏ । ଭରତଙ୍କ ମତରେ–ଶ୍ରବଣ, ଦର୍ଶନ, ରୂପ, ଅଂଗଲୀଳା ଓ ମଧୁର ସଂଳାପ କାମ ଉପଜାତ କରେ । [୩୧]

ପ୍ରେମରେ ମନ ଓ ଆତ୍ମାର ସଂଶ୍ଳେଷଣ ହୋଇଥାଏ । ବାସନା ଭୋଗରେ ଜାଗ୍ରତ ରହେ । କିନ୍ତୁ ପ୍ରିୟ ବସ୍ତୁର ଅଭାବରେ ପ୍ରେମ ଅଧିକ ବଳବତୀ ହୋଇଉଠେ । ରୂପର ଆକର୍ଷଣରୁ ବିକଶିତ ହୋଇ ଆତ୍ମାର ଆକର୍ଷଣରେ ଏହା ସିଦ୍ଧି ଲାଭ କରେ । ଭବଭୂତି ଏ ସଂପର୍କରେ କହିଛନ୍ତି– ପ୍ରୀତି ବାହ୍ୟ ସୌନ୍ଦର୍ଯ୍ୟର ଅଧୀନ ନୁହେଁ । ଯେପରି ସୂର୍ଯ୍ୟୋଦୟରେ କମଳ ବିକଶିତ ହୁଏ, ଚନ୍ଦ୍ରୋଦୟରେ ଚନ୍ଦ୍ରକାନ୍ତ ମଣି ଦ୍ରବିତ ହୋଇଥାଏ– ଏହାର ସ୍ୱରୂପ ଠିକ ସେହିପରି । [୩୨]

ପାର୍ଥିବ ପ୍ରେମକୁ ଦ୍ୱିବିଧ ଦୃଷ୍ଟିକୋଣରୁ ବିଗ୍ଭର କରଯାଇପାରେ । ଯଥା– ଆଦର୍ଶବାଦୀ ଓ ସ୍ୱଭାବବାଦୀ । ପ୍ରଥମଟିର ଦୃଷ୍ଟି ପ୍ରେମର ଐକାନ୍ତିକତା ଉପରେ ପ୍ରତିଷ୍ଠିତ । ମିଳନରେ ଯେପରି ଲଜ୍ଜା, କୁଳ, ଗୌରବ ଓ ସକଳ ସ୍ୱାର୍ଥକୁ ଧିକ୍କାର କରି ପ୍ରଣୟୀ ପ୍ରଣୟିନୀ ଏକପ୍ରାଣ ଓ ଏକଆତ୍ମା ହୋଇଥାନ୍ତି, ବିରହରେ ସେହିପରି ପରସ୍ପରର ଅନୁରାଗ ସ୍ମରଣ ପୂର୍ବକ ଦୁହେଁ ଆକୁଳ ପ୍ରତୀକ୍ଷାରେ କାଳାତିବାହିତ କରନ୍ତି । ଏହା ଚିର ଅମଳିନ । ଏପରିକି ଏକର ମୃତ୍ୟୁରେ ଅପରର ପ୍ରେମ ଅପରିବର୍ତ୍ତିତ ରହେ । ସେକ୍ସପିଅରଙ୍କ ଭାଷାରେ–

'Love is not love which alters when it alternation finds, or bends with remover to remove, O; no! it is an everfixed mark [୩୩] ଦୁଷ୍ୟନ୍ତ ଶକୁନ୍ତଳା, ନଳ ଦମୟନ୍ତୀ ପ୍ରଭୃତି ଉପାଖ୍ୟାନକୁ ଏହାର ଉଦାହରଣ ରୂପେ ଗ୍ରହଣ କରଯାଇପାରେ ।

ସ୍ଵଭବବାଦୀ ପ୍ରେମର ଭିତ୍ତି ହେଉଛି ପରିବେଶ ଓ ପରିସ୍ଥିତି ସଂପର୍କିତ ଅନୁକୂଳତା । ଆଦର୍ଶ ପ୍ରତି ଏହା ପରାଂମୁଖ । ଶିଳ୍ପ ସଭ୍ୟତା ଓ ନଗର ଜୀବନର ଦ୍ରୁତ ପ୍ରସାର ଫଳରେ ସଭ୍ୟତାର ଧାରା ପରିବର୍ତ୍ତିତ ହେବାରେ ଲାଗିଛି । ବୈଜ୍ଞାନିକ ଚିନ୍ତାଧାରା ଓ ସ୍ଥିତିବାଦୀ ଦର୍ଶନର ପ୍ରଭାବ ଯୋଗୁଁ ପ୍ରାଚୀନ ମୂଲ୍ୟବୋଧ ଉପରେ ମଣିଷର ଆଜି ଗଭୀର ଅବିଶ୍ଵାସ । ସୁତରାଂ ପ୍ରେମ ତା'ର ପୂର୍ବ ପ୍ରତିଷ୍ଠା ଓ ମହତ୍ତ୍ଵ ହରାଇ ବସିଛି । ଟି. ଏସ. ଏଲିଅଟଙ୍କ 'ପ୍ରୁଫକର ପ୍ରେମଗୀତି', ଜୋଲାଙ୍କ 'ନାନା', ଡ଼ି. ଏଚ. ଲରେନ୍‌ସଙ୍କ 'ଲେଡ଼ି ଚ୍ୟାଟାର୍ଲିଙ୍କ ପ୍ରେମିକ', ସଚ୍ଚି ରାଉତରାୟଙ୍କ' ଅଳକା ସାନ୍ୟାଲ' କିଂବା ରମାକାନ୍ତ ରଥଙ୍କ 'ଚନ୍ଦ୍ରମାର ଚୂଡ଼ି' ପ୍ରଭୃତି ସୃଷ୍ଟିରେ ପ୍ରେମର ସ୍ଵଭବବାଦୀ ଧାରା ଲକ୍ଷ୍ୟ କରାଯାଇପାରେ ।

ସୌନ୍ଦର୍ଯ୍ୟ :— ସୌନ୍ଦର୍ଯ୍ୟର ସ୍ଵରୂପ ନିରୂପଣ ପ୍ରସଂଗରେ ଦାର୍ଶନିକ ତଥା ପଣ୍ଡିତମାନଙ୍କ ମଧ୍ୟରେ ବିତର୍କର ଶେଷ ନାହିଁ । ଏହାର କୌଣସି ନିର୍ଦ୍ଦିଷ୍ଟ ସଂଜ୍ଞା ଦେବା ସମ୍ଭବପର ନୁହେଁ । ବ୍ୟକ୍ତିର ମାନସିକ ଅବସ୍ଥା ଏବଂ ଜ୍ଞାନର କୋଟି ଉପରେ ଏହାର ବିଗ୍ରହ ନିର୍ଭର କରେ । ସେ ଯାହା ହେଉ ସୌନ୍ଦର୍ଯ୍ୟ ସଂପର୍କରେ ମାଘଙ୍କର ଉକ୍ତିଟି ଏଠାରେ ଆମର ସ୍ମରଣୀୟ ।

କ୍ଷଣେ କ୍ଷଣେ ଯନ୍ନବତାମୁପୈତି
ତଦେବ ରୂପଂ ରମଣୀୟତାୟା । [୩୫]

କବି ରାଧାନାଥଙ୍କ ଭାଷାରେ—

ସୁନ୍ଦର ତୃପ୍ତିର ଅବସାଦ ନାହିଁ
ଯେତେ ଦେଖିଲେ ହେଁ ନୂଆ ଦିଶୁଥାଇ । [୩୬]

ପ୍ରତ୍ୟକ୍ଷୀଭୂତ ସୁନ୍ଦର ବସ୍ତୁର ତ୍ରିବିଧ ରୂପ (ଯଥା—ପ୍ରକୃତି ସୌନ୍ଦର୍ଯ୍ୟ, ମାନବୀୟ ସୌନ୍ଦର୍ଯ୍ୟ ଓ ଅଳଂକାର ସୌନ୍ଦର୍ଯ୍ୟ) ମଣିଷର୍ ପ୍ରାଣ ପୁଲକିତ କରେ । ନର ନାରୀର ପ୍ରଣୟ ଲୀଳାରେ ଉଦ୍ଦୀପନ ବିଭବ ରୂପେ ପ୍ରକୃତିର

ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ । ଶୀଲ ଭଟ୍ଟାରିକାଙ୍କ ସେଇ ପ୍ରସିଦ୍ଧ କବିତାଟି ଏଠାରେ ଉଲ୍ଲେଖ କରାଯାଇପାରେ । ସେଥିରେ—ଏକଦା ଚୈତ୍ର ରାତ୍ରୀ, ନିର୍ଜନ ରେବାତଟ, ବେତସକୁଂଜ ଓ ସୁରତୋତ୍ସବ—ତାଙ୍କ କୁମାରୀ ଜୀବନର ସେଇ ଅବିସ୍ମରଣୀୟ ସ୍ମୃତି ଅନୁରଂଜିତ । [୩୬] କାଳିଦାସଙ୍କ 'ଋତୁସଂହାର'ରେ ପ୍ରକୃତିର ନବ ନବ ରୂପ ସୁଷମା କିପରି ମାନବୀୟ ଶୃଙ୍ଗାର ପ୍ରବୃତ୍ତିକୁ ଉଦ୍‌ବୋଧିତ କରିଛି ତାହା ଲକ୍ଷ୍ୟ କରିବାର କଥା ।

ନର ନାରୀର ରୂପ ଲାବଣ୍ୟାଦି ମାନବୀୟ ସୌନ୍ଦର୍ଯ୍ୟର ଅନ୍ତର୍ଗତ । କାବ୍ୟ ଓ ଅଳଂକାର ଶାସ୍ତ୍ରରେ ପୁରୁଷ-ସୌନ୍ଦର୍ଯ୍ୟ ତୁଳନାରେ ନାରୀ-ସୌନ୍ଦର୍ଯ୍ୟର ବର୍ଣ୍ଣନା ପ୍ରଚୁର । ରୂପର ଆକର୍ଷଣରେ ହିଁ ନାୟକ ନାୟିକା ପ୍ରଥମେ ପରସ୍ପରର ସମୀପବର୍ତ୍ତୀ ହୁଅନ୍ତି । ପରେ ପରେ ଉଭୟ ଉଭୟଙ୍କର ଅନ୍ତର୍ଲୋକ ପ୍ରତି ଆସକ୍ତ ହୋଇ ପ୍ରୀତି ରଜ୍ଜୁରେ ବାନ୍ଧି ହୋଇଯାନ୍ତି । ମଧ୍ୟଯୁଗୀୟ ରହସ୍ୟବାଦୀ କବି ଦାଦୁଙ୍କ ଭାଷାରେ—

ରୂପ କହେ ହମ ଭବକୋ ପାଉଁ ଭବ କହେ ହମ ରୂପ
ଆପସ ମେ ଦଉ ପୂଜନ ଲାହେ ପୂଜା ଅଗାଧ ଅନୂପ । [୩୭]

ପ୍ରଣୟୀ ପ୍ରଣୟିନୀଙ୍କ ରୂପ ତୃଷ୍ଣା କିପରି ପ୍ରବଳ ତାହା ଚଣ୍ଡୀଦାସଙ୍କ ଗୋଟିଏ କବିତାରୁ ଉପଲବ୍ଧି କରିହେବ—

ରୂପ ଲାଗି ଆଖି କାନ୍ଦେ ଗୁଣେ ମନ ଭୋର
ପ୍ରତି ଅଂଗ ଲାଗି କାନ୍ଦେ ପ୍ରତି ଅଂଗ ମୋର । [୩୮]

ଏ ପ୍ରସଙ୍ଗରେ କବି ରାଧାନାଥଙ୍କୁ ମଧ୍ୟ ଏଠାରେ ସ୍ମରଣ କରାଯାଇ-ପାରେ । ସେ କହନ୍ତି— ରୂପ ଆକର୍ଷଣ ପ୍ରବଳ କି ବା ନରେ ଅମରେ । [୩୯]

ନାରୀ ଦେହର ଗଠନ ସୌନ୍ଦର୍ଯ୍ୟ ଯଥା— କେଶ, କପୋଳ, ନେତ୍ର, ନାସିକା, ଅଧର, ସ୍ତନ, ନାଭି, ବାହୁ, ପାଦ ଆଦି ଯେପରି ପୁରୁଷକୁ ଆକର୍ଷଣ କରେ ସେହିପରି ତା'ର ଭ୍ରୂବିକ୍ଷେପ, କଟାକ୍ଷ, ସ୍ମିତହାସ୍ୟ,

ଅଂଗଭଂଗୀ ତାକୁ ପ୍ରେମାନୁରଣିତ କରେ । ଅପର ପକ୍ଷରେ ପୁରୁଷର ପ୍ରଶସ୍ତ ବକ୍ଷ, ବଳିଷ୍ଠ ଅଂଗ, ଉଜ୍ଜ୍ୱଳ ମୁଖମଣ୍ଡଳ ପ୍ରତି ନାରୀ ଆକୃଷ୍ଟ ହୋଇଥାଏ । ବାହ୍ୟ ସୌନ୍ଦର୍ଯ୍ୟ ଅତିରିକ୍ତ ପରସ୍ପରର ଅନ୍ତଃ ସୌନ୍ଦର୍ଯ୍ୟ ମଧ୍ୟ ମାନବୀୟ ସୌନ୍ଦର୍ଯ୍ୟ ବିଗ୍ରହରେ ଉପେକ୍ଷାର ବସ୍ତୁ ନୁହେ ।

ଶୃଙ୍ଗାରର ପରିପୁଷ୍ଟି ନିମିତ୍ତ ଅଳଂକାର ସୌନ୍ଦର୍ଯ୍ୟର ଭୂମିକା ମଧ୍ୟ ମହତ୍ତ୍ୱପୂର୍ଣ୍ଣ । କାବ୍ୟର ଗୌରବ ବିଧାନ ପାଇଁ ଅଳଙ୍କାରର ଆବଶ୍ୟକତା ଯେପରି ଅନୁପେକ୍ଷଣୀୟ, ନରନାରୀର ଶ୍ରୀବୃଦ୍ଧି ସାଧନ ପାଇଁ ଅଳଂକାର ମଣ୍ଡନ ସେହିପରି ଅପରିହାର୍ଯ୍ୟ । ନାରୀର କଟିରେ କିଙ୍କିଣୀ ପାଦରେ ନୂପୁର ଆଦି ପୁରୁଷର କେବଳ ଶ୍ରବଣାମୋଦୀ ନୁହେଁ, କାମ ବାସନା ଉଦ୍ରେକକାରୀ ମଧ୍ୟ । ନେତ୍ର ପ୍ରାନ୍ତରେ କଜ୍ଜ୍ୱଳ । କପୋଳରେ ବିନ୍ଦୁ କରତଳରେ କୁଙ୍କୁମ ତଥା ଅଙ୍ଗରେ ବସ୍ତ୍ରାଭୂଷଣାଦିର ଶୋଭ ପୁରୁଷର ନୟନାନନ୍ଦୀ ହୋଇଥାଏ । ସେହିପରି ପୁରୁଷର ପୃଷ୍ଠଦେଶସ୍ଥ ତୂଣୀର, ସ୍କନ୍ଧସ୍ଥ ସାୟକ, ବକ୍ଷସ୍ଥ ବର୍ମ, କଟିଭଗସ୍ଥ ଖଡ୍‌ଗକୋଷ, ମସ୍ତକସ୍ଥ ଶିରସ୍ତ୍ରାଣ ଆଦି ବୀରଭୂଷଣ ମଧ୍ୟ ନାରୀର ମନ ଆକର୍ଷଣ କରିବାକୁ ସମର୍ଥ ।

ପ୍ରତିପାଦ୍ୟ ବିଷୟ ଏହି ଯେ ଗଙ୍ଗା, ଯମୁନା ଓ ସରସ୍ୱତୀର ପବିତ୍ର ତ୍ରିବେଣୀ ସଙ୍ଗମ ପରି କାମ, ପ୍ରେମ ଓ ସୌନ୍ଦର୍ଯ୍ୟର ମଧୁର ମିଳନରେ ଶୃଙ୍ଗାର ମହିମାନ୍ୱିତ । ଉକ୍ତ ତିନିଗୋଟି ଉପାଦାନ ମଧ୍ୟରୁ କୌଣସି ଗୋଟିକର ସ୍ଥିତିକୁ ଅସ୍ୱୀକାର କରିବା ଅର୍ଥ ଶୃଙ୍ଗାରର ବିକଳାଙ୍ଗ ରୂପକୁ ହିଁ ପ୍ରତ୍ୟକ୍ଷ କରିବା । ମାନବ ଜୀବନର ବଳିଷ୍ଠତମ ପ୍ରବୃତ୍ତି ତଥା ପ୍ରାଣ ବିଧାୟକ ରସ ରୂପେ ଶୃଙ୍ଗାରର ଅପାର ଆନନ୍ଦମୟ ବିଚିତ୍ର ରୂପମାଧୁରୀ ଯେପରି ଅତୀବ ବିସ୍ମୟକର ସେହିପରି ଏକାନ୍ତ ଅନୁଧ୍ୟାନର ବିଷୟ ।

**ଶୃଙ୍ଗାରର ପ୍ରକାର ଭେଦ:**—ଶୃଙ୍ଗାରର ଭେଦ ନିରୂପଣ କରିବାକୁ ଯାଇ ଆଚାର୍ଯ୍ୟ ଭରତ ନାୟକର ଦୃଷ୍ଟିଭଙ୍ଗୀ ଓ ଅବସ୍ଥାକୁ ଏହାର ଆଧାର ରୂପେ ଗ୍ରହଣ କରିଛନ୍ତି । ଏହା ତିନି ଭଗରେ ବିଭକ୍ତ । [୮୦] (୧) ଧର୍ମ ଶୃଙ୍ଗାର—ଗୃହସ୍ଥ-ଧର୍ମ ଅନୁସାରେ ନାୟକର ସପତ୍ନୀ ସହ ସମ୍ବନ୍ଧ । [୮୧] (୨) ଅର୍ଥ

ଶୃଙ୍ଗାର—ଧନ ବିନିମୟରେ ନାୟକର ପରକୀୟା ବା ସାମାନ୍ୟା ସହିତ ସମ୍ବନ୍ଧ । [୫୨] (୩)' କାମ ଶୃଙ୍ଗାର—କାମ ପ୍ରବୃତ୍ତି ଅନୁଗତ ନାୟକ ନାୟିକାଙ୍କ ସମ୍ବନ୍ଧ । [୫୩] ଭୋଜରାଜ 'ଶୃଙ୍ଗାର ପ୍ରକାଶରେ' ମୋକ୍ଷ ଶୃଙ୍ଗାରର [୫୪] କଥା ଉଲ୍ଲେଖ କରିଥିଲେ ହେଁ ଭରତଙ୍କ ଧର୍ମ ଶୃଙ୍ଗାର ସହ ତାହାର ସାମ୍ୟ ଦେଖିବାକୁ ମିଳେ ।

ଅବସ୍ଥା ଭେଦରେ ଶୃଙ୍ଗାର ଦ୍ୱିବିଧ । [୫୫] ସମ୍ଭୋଗ ଓ ବିପ୍ରଲମ୍ଭ । ଧନଞ୍ଜୟଙ୍କ 'ଦଶରୂପକ'ରେ ଅଯୋଗ ଶୃଙ୍ଗାର କଥା ଉଲ୍ଲିଖିତ । [୫୬] ଅନୁରାଗଯୁକ୍ତ ନାୟକ ନାୟିକାଙ୍କ ମିଳନାକାଂକ୍ଷା ଗୁରୁଜନ, ଦୈବ ବା ବିପ୍ରକର୍ଷ ହେତୁ ବାଧାପ୍ରାପ୍ତ ହେଉଥିଲେ ତାହା ଅଯୋଗ ଶୃଙ୍ଗାର ନାମରେ କଥିତ । କିନ୍ତୁ ଆଚାର୍ଯ୍ୟଗଣ ଏ ପ୍ରସଙ୍ଗରେ ସମ୍ଭୋଗ ଓ ବିପ୍ରଲମ୍ଭ ଭେଦକୁ ସ୍ୱୀକାର କରିଛନ୍ତି । ଅଗ୍ନିପୁରାଣ [୫୭], କାବ୍ୟ ପ୍ରକାଶ [୫୮], ସାହିତ୍ୟ-ଦର୍ପଣ [୫୯] ଆଦି ଗ୍ରନ୍ଥରେ ଏହା ସମର୍ଥିତ ।

ସମ୍ଭୋଗ ଶୃଙ୍ଗାର—ଆଚାର୍ଯ୍ୟ ରୁଦ୍ରଟଙ୍କ ମତରେ-ନାୟକ ନାୟିକା ପ୍ରସନ୍ନ ଚିତ୍ତ ହୋଇ ପରସ୍ପର ଆଲୋକନ ଓ ବଚନାଦିରେ ରତ ହେଲେ ସମ୍ଭୋଗ ଶୃଙ୍ଗାର ହୁଏ । [୬୦] ଏହା ଦ୍ୱିବିଧ—ପ୍ରଚ୍ଛନ୍ନ ଓ ପ୍ରକାଶ । [୬୧] ଅଗ୍ନିପୁରାଣକାର ସମ୍ଭୋଗର ଏହି ଭେଦକୁ ମଧ୍ୟ ସ୍ୱୀକାର କରିଛନ୍ତି । [୬୨] ପ୍ରଚ୍ଛନ୍ନ ଓ ପ୍ରକାଶର ତାତ୍ପର୍ଯ୍ୟ ରୁଦ୍ରଟ ସ୍ପଷ୍ଟ ଭାବରେ ବୁଝାଇ ନାହାନ୍ତି । ସମ୍ଭବତଃ ପରକୀୟା ଓ ସ୍ୱକୀୟା ଆଧାରରେ ଏହା ନିର୍ଦ୍ଧାରିତ । ଆଚାର୍ଯ୍ୟ ମମ୍ମଟ ନାୟକ ନାୟିକାଙ୍କ ପରସ୍ପର ଅବଲୋକନ, ଆଲିଙ୍ଗନ, ଅଧରପାନ, ଚୁମ୍ବନାଦି ଭିତ୍ତିରେ ସମ୍ଭୋଗର ଅନନ୍ତଭେଦ ସ୍ୱୀକାର କରିଥିଲେ ହେଁ ସେ ସବୁକୁ ସେ ଏକ ବୋଲି କହିଛନ୍ତି । [୬୩] ଆଚାର୍ଯ୍ୟ ଶାରଦାତନୟଙ୍କ 'ଭାବ ପ୍ରକାଶ'ରେ ସ୍ତ୍ରୀ ପୁରୁଷର କାମୋପଚାର ଜନିତ ସୁଖକୁ ସମ୍ଭୋଗ ବୋଲି କୁହାଯାଇଛି । [୬୪] ଏହା ଚାରି ଭାବରେ ବିଭକ୍ତ ଯଥା—ମିତ, ସଙ୍କର, ସଂପନ୍ନ ଓ ସମୃଦ୍ଧିମାନ । [୬୫]

ମିତ—ନାୟକ ନାୟିକା ପରସ୍ପର ଉପଚାର କାଳରେ ଭୟାଦି କାରଣରୁ ମିତ ଭୋଗରେ ଲିପ୍ତ ହେଲେ ତାହାକୁ ମିତ ସଂଭୋଗ କୁହାଯାଏ । [୬୬]

ସଙ୍କର–କୋପ ଅନନ୍ତରର ପ୍ରସନ୍ନ ହୋଇ ମଧ୍ୟ ପୂର୍ବକୃତ ଦୋଷ ସ୍ମରଣ ହେତୁ ଭୋଗ ସଂକୀର୍ଣ୍ଣ ହେଲେ ତାହା ସଙ୍କର୍ ସମ୍ଭୋଗ ହୁଏ ।[୫୭]

ସଂପନ୍ନ–ପ୍ରୋଷିତ ନାୟକର ପ୍ରତ୍ୟାବର୍ତ୍ତନ ହେତୁକ କାମୋପ-ଭୋଗ ସମ୍ପନ୍ନ ସଂଭୋଗ ନାମରେ କଥିତ । [୫୮]

ସମୃଦ୍ଧିମାନ–ମୃତ-ଜୀବିତ ପ୍ରିୟ (ମରଣତୁଲ୍ୟ ବିଚ୍ଛେଦ ଭୋଗ କରୁଥିବା ଯୁବକ) ଯେତେବେଳେ ପ୍ରିୟା ସହ ଆନନ୍ଦୋତ୍‌ଫୁଲ୍ଲ ହୋଇ ମିଳିତ ହୁଏ ସେତେବେଳେ ସମୃଦ୍ଧିମାନ ସମ୍ଭୋଗ ହୁଏ । [୫୯]

ଭୋଜରାଜଙ୍କ 'ଶୃଙ୍ଗାର ପ୍ରକାଶ'ରେ ସଂଭୋଗର ବିଶଦ ଭେଦୋପଭେଦ ଉଲ୍ଲିଖିତ । ବିପ୍ରଲମ୍ଭର ପ୍ରକାର ଭେଦ ଭିତ୍ତିରେ ଏହା ଚାରିପ୍ରକାର ଯଥା– ପ୍ରଥମାନୁରାଗାନ୍ତର, ମାନାନ୍ତର, ପ୍ରବାସାନ୍ତର, କରୁଣାନ୍ତର । ନାୟିକା ତଥା ଦେଶ କାଳ ଭେଦ ଅନୁସାରେ ଏହା ବାର ପ୍ରକାର ଯଥା–ସ୍ୱାଙ୍ଗନା ବିଷୟ, ପରାଙ୍ଗନା ବିଷୟ । ସାମାନ୍ୟା ବିଷୟ, ଉତ୍ତମା ବିଷୟ, ମଧ୍ୟମା ବିଷୟ, କନିଷ୍ଠା ବିଷୟ, ମୁଗ୍ଧା ବିଷୟ, ମଧ୍ୟା ବିଷୟ, ପ୍ରଗଲ୍‌ଭା ବିଷୟ, ସର୍ବ ବିଷୟ, ସର୍ବକାଳ ବିଷୟ, ସର୍ବର୍ତ୍ତୁଚର୍ଯ୍ୟା ବିଷୟ ।[୬୦]

'ସାହିତ୍ୟ ଦର୍ପଣ'କାର ପଣ୍ଡିତ ବିଶ୍ୱନାଥ ସଂଭୋଗ ଶୃଙ୍ଗାରର ପରିଭାଷା ଦେବାକୁ ଯାଇ କହିଛନ୍ତି–ଯୁବକ ଯୁବତୀ ପରସ୍ପର ଦର୍ଶନ ସ୍ପର୍ଶାଦି ଦ୍ୱାରା ଆସକ୍ତ ହୋଇ ଯେଉଁ ସୁଖ ଅନୁଭବ କରନ୍ତି ତାହାହିଁ ସଂଭୋଗ । ଚୁମ୍ବନ, ଆଲିଙ୍ଗନ ଆଦି ଭେଦରେ ଏହା ବହୁବିଧ । କିନ୍ତୁ ପଣ୍ଡିତଗଣ ଏ ସବୁକୁ ଏକ ବୋଲି କହି ଅଛନ୍ତି ।[୬୧]

ପଣ୍ଡିତରାଜ ଜଗନ୍ନାଥଙ୍କ ମତରେ–ନାରୀ ପୁରୁଷର ପ୍ରେମାନୁକୂଳ ସଂଯୋଗ ହିଁ ସଂଭୋଗ । ସଂଯୋଗର ଅର୍ଥ କେବଳ ଏକ ସ୍ଥାନରେ ଅବସ୍ଥାନ ନୁହେଁ । କାରଣ ଏକ ଶଯ୍ୟାରେ ଶାୟିତ ଦମ୍ପତି ପରସ୍ପର ଅନୁରାଗ ରହିତ ହେଲେ (ଈର୍ଷ୍ୟାଦି ହେତୁ) ସେଠାରେ ବିପ୍ରଲମ୍ଭ ହୋଇଥାଏ । ତାଙ୍କ ଦୃଷ୍ଟିରେ ସଂଭୋଗ ଓ ବିପ୍ରଲମ୍ଭ ସ୍ଥୂଳ ଶରୀର ଧର୍ମ ନୁହେଁ; ସୂକ୍ଷ୍ମ ମାନସିକ ବୃତ୍ତି ବିଶେଷ ।[୬୨]

ମୋଟ ଉପରେ କହିଲେ ସଂଭୋଗ ଶୃଙ୍ଗାର ନରନାରୀଙ୍କ ଶାରୀରିକ ଓ ମାନସିକ ଆସକ୍ତି/ଉପଭୋଗ ଭିତ୍ତିକ । ଦେଶ, କାଳ, ପାତ୍ର ଓ ଉପଗ୍ଚର (ଚୁମ୍ବନ, ଆଲିଙ୍ଗନ ଇତ୍ୟାଦି) ଭେଦରେ ଏହାର ରୂପ ବହୁବିଧ । କୌଣସି ଶାସ୍ତ୍ରୀୟ ଶୃଙ୍ଖଳା ଭିତରେ ଏହି ବିଭବର ବୈଚିତ୍ର୍ୟ ନିରୂପଣ ଏକ ଅସମ୍ଭବ ବ୍ୟାପାର ।

ବିପ୍ରଲମ୍ଭ ଶୃଙ୍ଗାର– 'ସରସ୍ୱତୀ କଣ୍ଠାଭରଣ'ରେ ଭୋଜରାଜ ବିପ୍ରଲମ୍ଭ ଶୃଙ୍ଗାରର ପରିଭାଷା ଦେବାକୁ ଯାଇ କହିଛନ୍ତି–ରତି ନାମକ ଭାବ ଯେତେବେଳେ ପ୍ରକର୍ଷ ପ୍ରାପ୍ତ ହୋଇ ନିଜର ଅଭୀଷ୍ଟ ଲାଭ କରିପାରେ ନାହିଁ ସେତେବେଳେ ବିପ୍ରଲମ୍ଭ ଶୃଙ୍ଗାର ହୋଇଥାଏ ।[୭୩] ତାଙ୍କ ମତରେ– ବିପ୍ରଲମ୍ଭ ବିନା ସଂଭୋଗ ପରିପୁଷ୍ଟ ହୁଏ ନାହିଁ । ଯେପରି ବସ୍ତ୍ର କଷାୟ ରଙ୍ଗରେ ରଞ୍ଜିତ ହେଲେ ହିଁ ସମୁଜ୍ଜ୍ୱଳତା ପ୍ରାପ୍ତ ହୁଏ ।[୭୪]

'ଶୃଙ୍ଗାର ପ୍ରକାଶ'ରେ ବିପ୍ରଲମ୍ଭର ଚାରିପ୍ରକାର ଭେଦ ଉଲ୍ଲିଖିତ ଯଥା–ପୂର୍ବାନୁରାଗ, ମାନ, ପ୍ରବାସ, କରୁଣ ।[୭୫] ନାୟିକା ତଥା ଦେଶ କାଳ ଭେଦକୁ ଆଧାର କରି ବିପ୍ରଲମ୍ଭକୁ ପୁର୍ବଭଳି ବାରଭାଗରେ ବିଭକ୍ତ କରାଯାଇଛି । (ଯଥା–ସ୍ୱାଙ୍ଗନା ବିଷୟ, ପରାଙ୍ଗନା ବିଷୟ ଇତ୍ୟାଦି) ।[୭୬]

'କାବ୍ୟ ପ୍ରକାଶ'ରେ ଆଚାର୍ଯ୍ୟ ମମ୍ମଟ ବିପ୍ରଲମ୍ଭର କୌଣସି ପରିଭାଷା ଦେଇ ନାହାନ୍ତି । କିନ୍ତୁ ଉକ୍ତ ଗ୍ରନ୍ଥରେ ଅଭିଳାଷ, ବିରହ, ଈର୍ଷା, ପ୍ରବାସ, ଶାପ ଭେଦରେ ଏହାର ପଞ୍ଚବିଧ ରୂପ ସ୍ୱୀକୃତ ।[୭୭]

ହେମଚନ୍ଦ୍ରଙ୍କ 'କାବ୍ୟାନୁଶାସନ'ରେ ଉଲ୍ଲିଖିତ ଅଛି ଯେ–ଶଙ୍କାଦି ବ୍ୟଭିଚାରୀ ଭାବ ଓ ସନ୍ତାପାଦି ଅନୁଭବ ଯୁକ୍ତ ହୋଇ ଅଭିଳାଷ, ମାନ, ପ୍ରବାସ ରୂପରେ ବିପ୍ରଲମ୍ଭର ପ୍ରତିଷ୍ଠା ଲାଭ କରନ୍ତି ।[୭୮] ଏଠାରେ ବିପ୍ରଲମ୍ଭର ତ୍ରିବିଧ ଭେଦ ସ୍ୱୀକୃତ ।

'ଅଗ୍ନି ପୁରାଣ'ରେ ବିପ୍ରଲମ୍ଭର ଚତୁର୍ବିଧ ଭେଦ (ପୂର୍ବାନୁରାଗ, ମାନ, ପ୍ରବାସ, କରୁଣ) ବର୍ଣ୍ଣିତ । [୭୯]

'ସାହିତ୍ୟ ଦର୍ପଣ'କାର ପଣ୍ଡିତ ବିଶ୍ୱନାଥଙ୍କ ପରିଭଷା ସହ ଭୋଜଙ୍କ ଉକ୍ତି ସାମ୍ୟ ଲକ୍ଷ୍ୟ କରଯାଇଥାଏ । ସେ କହନ୍ତି–ଯେଉଁଠାରେ ରତି ପ୍ରକୃଷ୍ଟ ହୋଇ ଅଭୀଷ୍ଟକୁ ପାଏ ନାହିଁ, ତାହା ବିପ୍ରଲମ୍ଭ ନାମରେ କଥିତ । ଏଠାରେ ଅଭୀଷ୍ଟର ଅର୍ଥ ନାୟକ ବା ନାୟିକା । ପୂର୍ବରଗ, ମାନ, ପ୍ରବାସ, କରୁଣ ଭେଦରେ ଏହା ଗ୍ୱରି ପ୍ରକାର । [୭୦]

ପ୍ରକାର ଭେଦ–ପୂର୍ବରଗ, ମାନ, ପ୍ରବାସ, କରୁଣ ବିପ୍ରଲମ୍ଭର ଏହି ଗ୍ୱରିଭେଦ ସାହିତ୍ୟ ଶାସ୍ତ୍ରରେ ବହୁଳ ଭବେ ସ୍ୱୀକୃତ । 'କାବ୍ୟ ପ୍ରକାଶ' ଉଲ୍ଲିଖିତ ଅଭିଳାଷ, ଈର୍ଷା ଓ ଶାପକୁ ଯଥାକ୍ରମେ ପୂର୍ବରଗ, ମାନ ଓ ପ୍ରବାସର ଅନ୍ତର୍ଭୁକ୍ତ କରଯାଇପାରେ । ବିରହକୁ ସ୍ୱତନ୍ତ୍ର ମର୍ଯ୍ୟାଦା ଦିଆଗଲେ ବିପ୍ରଲମ୍ଭ ପାଞ୍ଚ ଭଗରେ ବିଭକ୍ତ ହୋଇ ପାରିବ ଯଥା– ପୂର୍ବରଗ, ବିରହ, ମାନ, ପ୍ରବାସ, ଓ କରୁଣ ।

ଏତଦ୍‌ବ୍ୟତୀତ ବୈଷ୍ଣବ ଅଳଂକାର ଶାସ୍ତ୍ରରେ ପ୍ରେମ ବୈଚିତ୍ର୍ୟକୁ ବିପ୍ରଲମ୍ଭର ଏକ ଭେଦ ରୂପେ ସ୍ୱୀକାର କରଯାଇଛି ।

ପୂର୍ବରଗ–ଭୋଜରଜଙ୍କ ମତରେ–ପୂର୍ବରୁ ଅପରିଚିତ କୌଣସି ଯୁବକ ଯୁବତୀଙ୍କ ଅଭିଳାଷ ଯଦି ସୁନ୍ଦର ସଂକଳ୍ପ ରୂପ ଧାରଣ କରେ ତାହାକୁ ପୂର୍ବାନୁରଗ ବା ପ୍ରଥମାନୁରଗ କୁହାଯାଏ । [୭୧] ଏଠାରେ ସୁନ୍ଦର ସଂକଳ୍ପର ଅର୍ଥ ଅନୁରଗଯୁକ୍ତ ପୁରୁଷ ଓ ସ୍ତ୍ରୀର ପରସ୍ପର ପ୍ରତି ଅନୁରକ୍ତି ।

ପଣ୍ଡିତ ବିଶ୍ୱନାଥ କହନ୍ତି–ପୁରୁଷ ଓ ସ୍ତ୍ରୀ ଉଭୟଙ୍କଠାରେ ପରସ୍ପର ରୂପାଦି ଦର୍ଶନ ଓ ଗୁଣାଦି ଶ୍ରବଣ ହେତୁ ଅନୁରଗ ଜାତ ହେଲେ ଏବଂ ପରସ୍ପରର ପ୍ରାପ୍ତିରେ ବ୍ୟାଘାତ ଘଟିଲେ ଯେଉଁ ଅବସ୍ଥା ବିଶେଷର ଅନୁଭବ ହୁଏ ତାହା ହିଁ ପୂର୍ବରଗ । ଇନ୍ଦ୍ରଜାଲ, ଚିତ୍ର, ସାକ୍ଷାତ୍ ଓ ସ୍ୱପ୍ନ–ଏହି ଗ୍ୱରି ଉପାୟରେ ରୂପଦର୍ଶନ ଏବଂ ଦୂତ, ବନ୍ଦୀ ଓ ସଖୀ–ଏମାନଙ୍କ ନିକଟରୁ ଗୁଣ ଶ୍ରବଣ–ଏହାର କାରଣ । [୭୨] ଅଭିଳାଷ, ଚିନ୍ତା, ସ୍ମୃତି, ଗୁଣ କଥନ, ଉଦ୍‌ବେଗ, ସଂପ୍ରଳାପ, ଉନ୍ମାଦ, ବ୍ୟାଧି, ଜଡ଼ତା, ମରଣ–ଏହି ଦଶଗୋଟି କାମଦଶାକୁ 'ସାହିତ୍ୟ ଦର୍ପଣ'କାର ପୂର୍ବରଗ ବିପ୍ରଲମ୍ଭର ଅନ୍ତର୍ଭୁକ୍ତ

କରିଛନ୍ତି । [୭୩] ମରଣ ସମ୍ବନ୍ଧରେ ସେ କହିଛନ୍ତି—ରସ ବିଚ୍ଛେଦ ହେତୁ ଏହାର ବର୍ଣ୍ଣନା କରାଯାଏ ନାହିଁ । ଏ କ୍ଷେତ୍ରରେ ମରଣ ତୁଲ୍ୟ ଦଶାର ବର୍ଣ୍ଣନା ଦିଆଯାଏ । ଯଦି ପୁନର୍ଜୀବନ ପ୍ରାପ୍ତିର ଅବକାଶ ଥାଏ ତାହେଲେ ମରଣର ବର୍ଣ୍ଣନା କରାଯାଇପାରେ ।[୭୪]

ପୂର୍ବରାଗ ତିନି ଭାଗରେ ବିଭକ୍ତ । [୭୫] ଯଥା—

ନୀଳୀ ରାଗ—ଯେଉଁ ପ୍ରେମ ଅତି ମନୋରଞ୍ଜକ ନ ହେଲେ ମଧ୍ୟ ଉଭୟଙ୍କ ହୃଦୟରୁ କେବେହେଲେ ଦୂରୀଭୂତ ହୁଏ ନାହିଁ ; ତାହାକୁ ନୀଳୀରାଗ କୁହାଯାଏ । [୭୬] (ଯଥା—ରାମ ଓ ସୀତା)

କୁସୁମ୍ଭ ରାଗ—ଯେଉଁ ପ୍ରେମ ଅତ୍ୟନ୍ତ ରମଣୀୟ ଅଥଚ ନଷ୍ଟଶୀଳ ତାହା କୁସୁମ୍ଭ ରାଗ ରୂପେ ଖ୍ୟାତ । [୭୭] (ଯଥା—ଶ୍ରୀକୃଷ୍ଣ ଓ ଶ୍ୟାମଳାଦି ଯୂଥ)

ମଞ୍ଜିଷ୍ଠା ରାଗ—ଯେଉଁ ପ୍ରେମ ଅତ୍ୟନ୍ତ ମନୋଜ୍ଞ ଏବଂ ସ୍ଥିତିଶୀଳ ତାହା ମଞ୍ଜିଷ୍ଠା ରାଗ ନାମରେ ଖ୍ୟାତ । [୭୮] (ଯଥା—ଶ୍ରୀକୃଷ୍ଣ ଓ ରାଧା)

ଆଚାର୍ଯ୍ୟ ହେମଚନ୍ଦ୍ର ପୂର୍ବରାଗକୁ ଦୁଇ ଭାଗରେ ବିଭକ୍ତ କରିଛନ୍ତି ଯଥା—ଦୈବବଶ ଓ ପରବଶ । [୭୯] ପ୍ରଥମଟିରେ ପ୍ରତିଜ୍ଞାଦି ଭଙ୍ଗ କାରଣରୁ ଏବଂ ଦ୍ୱିତୀୟଟିରେ ଗୁରୁଜନାଦି ଉପସ୍ଥିତି ଯୋଗୁଁ ପରସ୍ପର ମିଳନରେ ବାଧା ସୃଷ୍ଟି ହୋଇଥାଏ ।

ବିରହ—'କାବ୍ୟ ପ୍ରକାଶ'ରେ ଆଚାର୍ଯ୍ୟ ମମ୍ମଟ ବିରହ ବିପ୍ରଲମ୍ଭକୁ ପ୍ରବାସ ବିପ୍ରଲମ୍ଭଠାରୁ ସ୍ୱତନ୍ତ୍ର କରି ଦର୍ଶାଇଛନ୍ତି । [୮୦] ସମ୍ମତି ପ୍ରଦାନ କରି ନାୟକ କୌଣସି କାରଣରୁ ସଂକେତ ସ୍ଥଳରେ ଉପସ୍ଥିତ ନ ହେଲେ, ନାୟିକାର ଯେଉଁ ଅନୁଭବ ହୁଏ ତାହା ଏହି ଶ୍ରେଣୀୟ । ଏଠାରେ ନାୟିକା ବିରହୋତ୍କଣ୍ଠିତା ଓ ନାୟକ ଅପ୍ରବାସୀ ।

ମାନ—ଆଚାର୍ଯ୍ୟ ରୁଦ୍ରଟ କହନ୍ତି—ନାୟକଠାରେ ଅନ୍ୟ ସ୍ତ୍ରୀ ସମ୍ବନ୍ଧ ଜନିତ ଦୋଷକୁ ଲକ୍ଷ୍ୟ କରି ଈର୍ଷାଯୁକ୍ତ ନାୟିକାଠାରେ ଯେଉଁ ବିକାର ଜାତ ହୁଏ ତାହା ହିଁ ମାନ । [୧] ଏହା ଦେଶ କାଳ ପାତ୍ର ଭେଦରେ ତିନି ପ୍ରକାର ; ଯଥା—ଅସାଧ୍ୟ, ଦୁଃଖସାଧ୍ୟ, ସୁଖସାଧ୍ୟ । [୨] ମହାରାଜ ଭୋଜଙ୍କ ମତରେ—ସର୍ପର ଗତି ପରି ପ୍ରେମର ସ୍ୱଭାବ କୁଟିଳ । ଅହେତୁରୁ ବା ସହେତୁରୁ ଯେତେବେଳେ ନେତି ନେତି ଉକ୍ତି ଦ୍ୱାରା ପ୍ରେମର ନିଷେଧ କରାଯାଏ ସେଠାରେ ମାନ ହୋଇଥାଏ । [୩] ପଣ୍ଡିତ ବିଶ୍ୱନାଥ ପ୍ରଣୟ ବା ଈର୍ଷାରୁ ଜାତ କୋପକୁ ମାନ ରୂପେ ଅଭିହିତ କରନ୍ତି । ଏହା ଦ୍ୱିବିଧ—ପ୍ରଣୟମାନ ଓ ଈର୍ଷାମାନ । [୪] ନାୟକ ନାୟିକା ମଧ୍ୟରେ ଅତିଶୟ ପ୍ରେମହେତୁ ପ୍ରଣୟମାନ ଜାତ ହୋଇଥାଏ । ଏହି ମାନ ଅନୁନୟ ବିନୟ ପର୍ଯ୍ୟନ୍ତ ଅପେକ୍ଷା ନ କଲେ ଏହାକୁ ବିପ୍ରଲମ୍ଭ ଶୃଙ୍ଗାରର ଅନ୍ତର୍ଭୁକ୍ତ କରାଯିବ ନାହିଁ । କାରଣ ଏହା ସମ୍ଭୋଗ ଶୃଙ୍ଗାରର ସଂଚାରୀ ଭାବ ରୂପେ ପରିଗଣିତ । [୫]

ପତି ଅନ୍ୟ ପ୍ରିୟାଠାରେ ଆସକ୍ତ ଥିବାର ଜାଣିଲେ ନାୟିକାଠାରେ ଈର୍ଷ୍ୟାମାନ ଜାତ ହୋଇଥାଏ । ଦର୍ଶନ (ନିଜ ଆଖିରେ ଦେଖି), ଅନୁମାନ, ଶ୍ରବଣ (ଦାସୀ ବା ସଖୀଠାରୁ) ଭେଦରେ ଏହା ତିନି ପ୍ରକାର । ଅନୁମାନ ପୁଣି ତିନି ଭାଗରେ ବିଭକ୍ତ—ସ୍ୱପ୍ନାୟିତ (ସ୍ୱପ୍ନରେ ଅନ୍ୟ ସ୍ତ୍ରୀର ନାମ ଉଚ୍ଚାରଣ), ଭୋଗାଙ୍କ (ନାୟକଠାରେ ପରସ୍ତ୍ରୀ ସମ୍ଭୋଗ ଚିହ୍ନ ଦର୍ଶନ), ଗୋତ୍ର, ସ୍ଖଳନ (ନିଜ ସ୍ତ୍ରୀର ନାମ ଧରି ଡାକିବା ସମୟରେ ପରସ୍ତ୍ରୀର ନାମ ଧାରଣ) । [୬]

ନାୟିକାର ମାନ ଭଞ୍ଜନ ପାଇଁ 'ସାହିତ୍ୟ ଦର୍ପଣ'ରେ ଷଡ଼ବିଧ ଉପାୟ ଉଲ୍ଲିଖିତ ; [୭] ଯଥା-ସାମ (ପ୍ରିୟ ବଚନ କହି ନାୟିକାକୁ ସନ୍ତୁଷ୍ଟ କରିବା), ଭେଦ (ସଖୀକୁ ହାତ କରି ବା କୌଶଳ ପ୍ରୟୋଗ ପୂର୍ବକ ନାୟିକାକୁ ବଶ କରିବା), ଦାନ (ନାୟିକାକୁ ନୂତନ ବସ୍ତ୍ର ଅଳଂକାରାଦି ଦେଇ ଆକୃଷ୍ଟ କରିବା), ନତି (ପାଦତଳେ ପଡ଼ି ମନାଇବା), ଉପେକ୍ଷା (ଅନ୍ୟ ଉପାୟରେ କାର୍ଯ୍ୟସିଦ୍ଧି ନ ହେଲେ ପାଖରୁ ଅଲଗା ରହି

ବା ତିରସ୍କାର କରି କୋପ ଶାନ୍ତ କରିବା), ରସାନ୍ତର (ଅକସ୍ମାତ ଭୟ ବା ହର୍ଷ ସୃଷ୍ଟି କରି ଅଧୀନକୁ ଆଣିବା) ।

ଭରତ ଚନ୍ଦ୍ରଙ୍କ 'ରସ ମଞ୍ଜରୀ'ରେ ମାନକୁ ଅହେତୁ ଓ ସହେତୁ ଭେଦରେ ଦୁଇ ଭାଗ କରାଯାଇଛି । ସହେତୁ ତିନି ପ୍ରକାର । ଯଥା– ଲଘୁମାନ (ପତିର ଅନ୍ୟ ସ୍ତ୍ରୀ ସହ କଥୋପକଥନରୁ ଏହା ଜାତ ହୁଏ ଏବଂ ପ୍ରିୟ ବଚନରେ ଏହା ଦୂରୀଭୂତ ହୁଏ), ମଧ୍ୟମାନ (ଅନ୍ୟ ସ୍ତ୍ରୀର ନାମ ଗୁଣ ବର୍ଣ୍ଣନାରେ ଏହା ଉତ୍ପନ୍ନ ହୁଏ), ଗୁରୁମାନ (ପତିଠାରେ ଅନ୍ୟ ସ୍ତ୍ରୀ ସମ୍ଭୋଗ ଚିହ୍ନ ଦେଖିଲେ ଏହା ଜାତ ହୋଇଥାଏ ଏବଂ ଏପରି ମାନର ଦୂରୀକରଣ ପାଇଁ ପ୍ରଣାମ ପର୍ଯ୍ୟନ୍ତ କରିବାକୁ ପଡ଼େ) । [୮୮]

ପ୍ରବାସ :– ଆଚାର୍ଯ୍ୟ ରୁଦ୍ରଟ କହନ୍ତି– ନାୟକର ବିଦେଶ ଯାତ୍ରା ଅର୍ଥାତ୍ ଯିବ, ଯାଉଅଛି, ଗଲଣି-ପ୍ରବାସ ବିପ୍ରଲମ୍ଭର ଅନ୍ତର୍ଗତ । ସେହିପରି ନାୟକର ଗୃହ ପ୍ରତ୍ୟାବର୍ତ୍ତନ ଅର୍ଥାତ୍ ଆସିବ, ଆସୁଅଛି, ଆସିଲଣି–ସକଳ ଆକାଂକ୍ଷା ଏହି ଭାବର ବିଷୟୀଭୂତ । [୮୯]

ଭୋଜରାଜଙ୍କ ମତରେ–ଯୁବକ ଯୁବତୀଙ୍କର ନବାନୁରାଗ ବା ପ୍ରୌଢ଼ାନୁରାଗରେ ଦେଶାନ୍ତର କାରଣରୁ ଯେଉଁ ଚିରକାଳର ବ୍ୟବଧାନ ସୃଷ୍ଟିହୁଏ ତାହାକୁ ପ୍ରବାସ କୁହାଯାଏ । [୯୦] ଆଚାର୍ଯ୍ୟ ରୁଦ୍ରଟଙ୍କ ଅପେକ୍ଷା ଭୋଜରାଜଙ୍କ ପରିଭାଷା ଅତ୍ୟନ୍ତ ସ୍ପଷ୍ଟ । ଆଚାର୍ଯ୍ୟ ହେମଚନ୍ଦ୍ର ନାୟକର ଭିନ୍ନ ଦେଶରେ ଅବସ୍ଥାନକୁ ପ୍ରବାସ ଆଖ୍ୟା ଦେଇଛନ୍ତି । ଏହାର କାରଣ ତ୍ରିବିଧ ; ଯଥା – କାର୍ଯ୍ୟ ହେତୁକ, ଶାପ ହେତୁକ । ସଂଭ୍ରମ ହେତୁକ । [୯୧] 'ସାହିତ୍ୟ ଦର୍ପଣ'କାର ପଣ୍ଡିତ ବିଶ୍ୱନାଥ ପ୍ରବାସର ପରିଭାଷା ପ୍ରସଂଗରେ ହେମଚନ୍ଦ୍ରଙ୍କୁ ହିଁ ଅନୁସରଣ କରିଛନ୍ତି । ସେ କହନ୍ତି–ପ୍ରବାସ ହେତୁ ଅଙ୍ଗବସ୍ତ୍ର ମଳିନ ହୁଏ । ମୁଣ୍ଡରେ ଗୋଟିଏ ବେଣୀ ରହେ । ନିଃଶ୍ୱାସ, ଉଚ୍ଛ୍ୱାସ, ରୋଦନ ଏବଂ ଭୂମି ପତନ ଆଦି ଦେଖାଯାଏ । [୯୨] ପ୍ରବାସ ବିପ୍ରଲମ୍ଭରେ ମଧ୍ୟ କାମର ଦଶ ଦଶା ଉଲ୍ଲିଖିତ ; ଯଥା–ଅଙ୍ଗ ଅସୌଷ୍ଠବ (ଅଙ୍ଗ ସଂସ୍କାରର ଅଭାବ), ତାପ, ପାଣ୍ଡୁତା, କୃଶତା, ଅରୁଚି, ଅଧୃତି । ଅନାଲମ୍ବ (ନିରାଶ୍ରୟ),

ଉନ୍ମାଦ, ମୂର୍ଚ୍ଛା, ସ୍ମୃତି । [୯୩] କାର୍ଯ୍ୟହେତୁକ ପ୍ରବାସ ତିନିପ୍ରକାର ; ଯଥା– ଭବୀ (ଭବିଷ୍ୟତ), ଭବନ୍ (ସାଂପ୍ରତିକ), ଭୂତ (ଅତୀତ) । [୯୪] ସମ୍ଭ୍ରମ ପ୍ରବାସ ଚାରି ପ୍ରକାର ; ଯଥା–ଦିବ୍ୟ (ଦେବତା, ବିଦ୍ୟୁତ୍, ଉଲ୍କା ହେତୁକ) ମାନୁଷ ଗଜଦ୍ରୋହାଦି ହେତୁକ), ନିର୍ଘାତ (ଝଞ୍ଜାଦି ହେତୁକ), ଉତ୍ପାତ (ଭୂମିକଂପାଦି ହେତୁକ) ।[୯୫]

ପ୍ରବାସ ବିପ୍ରଲମ୍ଭ ଭାରତୀୟ କାବ୍ୟ ପରଂପରାରେ ମୁଖ୍ୟସ୍ଥାନ ଅଧିକାର କରିଅଛି । ଋତୁଚକ୍ର ଓ ମାସଚିତ୍ର ପ୍ରଦାନ କରିବାରେ ଏହାର ଭୂମିକା ଅତ୍ୟନ୍ତ ଅନୁକୂଳ । ସମ୍ଭୋଗ ସୁଖ ବଂଚିତ ଦୟିତ/ଦୟିତାର ଦେହ, ମନ, ପ୍ରାଣର ପୀଡ଼ା, ଆଶା ଓ ଆଶଙ୍କା, ଅଶ୍ରୁ ଓ ଉଚ୍ଛ୍ୱାସ କେଉଁ କବିର ଲେଖନୀକୁ ବିଚଳିତ ନ କରିଛି, ନାଁ କେଉଁ ପାଠକର ହୃଦୟକୁ କରୁଣାର୍ଦ୍ର ନ କରିଛି ?

କରୁଣ– ଆଚାର୍ଯ୍ୟ ଭରତ ସର୍ବପ୍ରଥମେ କରୁଣ ବିପ୍ରଲମ୍ଭ ଓ କରୁଣ ରସ ମଧ୍ୟରେ ପାର୍ଥକ୍ୟର ସୂଚନା ଦେଇ ଅଛନ୍ତି । ଇଷ୍ଟ ବ୍ୟକ୍ତିର ବିନାଶ କିମ୍ବା ବନ୍ଧନ ଆଦି କାରଣରୁ କରୁଣ ରସ ଓ କରୁଣ ବିପ୍ରଲମ୍ଭ ଉତ୍ପନ୍ନ ହେଉଥିଲେ ହେଁ ଦୁଇଟିରେ ପ୍ରକୃତିଗତ ମୌଳିକ ପ୍ରଭେଦ ଦେଖିବାକୁ ମିଳେ । କରୁଣ ବିପ୍ରଲମ୍ଭରେ ଔତ୍ସୁକ୍ୟ, ଚିନ୍ତା ଆଦି ରତି ସାପେକ୍ଷ ଭାବ ନିହିତ ଥାଏ । କିନ୍ତୁ କରୁଣ ରସରେ ଭାବ ରତି ନିରପେକ୍ଷ । ଅର୍ଥାତ୍ କରୁଣ ବିପ୍ରଲମ୍ଭ ଓ ସମ୍ଭୋଗ ଶୃଙ୍ଗାରରେ ରତି ସ୍ଥାୟୀଭାବ ରୂପେ ବର୍ତ୍ତମାନ । [୯୬]

ଆଚାର୍ଯ୍ୟ ରୁଦ୍ରଟ କରୁଣ ବିପ୍ରଲମ୍ଭ ଓ କରୁଣରସ ମଧ୍ୟରେ ଥିବା ପ୍ରଭେଦକୁ ସ୍ପଷ୍ଟରୂପେ ଧରି ପାରିନାହାନ୍ତି । ତାଙ୍କ ମତରେ–ନାୟକ ଅଥବା ନାୟିକାର ମୃତ୍ୟୁରେ କିମ୍ବା ମୃତକଳ୍ପ ଅବସ୍ଥାରେ ଉତ୍ପନ୍ନ ପ୍ରଳାପକୁ କରୁଣ କୁହାଯାଏ । [୯୭]

ଭୋଜରାଜ ତାଙ୍କର 'ସରସ୍ୱତୀ କଣ୍ଠାଭରଣ'ରେ ପ୍ରାୟ ରୁଦ୍ରଟଙ୍କର ପୁନରାବୃତ୍ତି ହିଁ କରିଅଛନ୍ତି । ସେ କହନ୍ତି–ପ୍ରିୟ ବା ପ୍ରିୟାର ଲୋକାନ୍ତର

ଗମନ ହେତୁକ ଦୁଃଖ କରୁଣ ନାମରେ ଅଭିହିତ ।[୯୮] ଏହା କରୁଣ ରସ ମାତ୍ର । କରୁଣ ବିପ୍ରଲମ୍ଭ ନୁହେଁ । ପଣ୍ଡିତ ବିଶ୍ୱନାଥ କିନ୍ତୁ ଏ କ୍ଷେତ୍ରରେ ଭରତଙ୍କୁ ଯଥାର୍ଥ ଭାବେ ଅନୁଭବ କରିଛନ୍ତି । ତାଙ୍କ ମତରେ—ଯୁବକ ଯୁବତୀ ମଧ୍ୟରୁ କାହାର ମୃତ୍ୟୁ ହୋଇ ସେହି ଜନ୍ମରେ ପୁଣି ଜୀବନ ପ୍ରାପ୍ତ ହେଲେ, ଜୀବିତର ଇଷ୍ଟ ପ୍ରାପ୍ତି ଅବଧି ଦୁଃଖ ଭୋଗକୁ କରୁଣ ବିପ୍ରଲମ୍ଭ କୁହାଯାଏ ।[୯୯] କିନ୍ତୁ ତାଙ୍କ ପ୍ରଦତ୍ତ କରୁଣ ରସର ପରିଭାଷାରେ ଜଟିଳତା ପରିଦୃଷ୍ଟ । ସେହି ଜନ୍ମରେ ପ୍ରିୟ ବ୍ୟକ୍ତିର ଅପ୍ରାପ୍ତି କିମ୍ବା ଜନ୍ମାନ୍ତରରେ ପ୍ରାପ୍ତି ହେଲେ ସେଠାରେ କରୁଣ ରସ ହୋଇଥାଏ ।[୧୦୦] ଏଠାରେ କହିବାର କଥା ଏହି ଯେ ପ୍ରିୟ ବ୍ୟକ୍ତିର ପ୍ରାପ୍ତି ହେଲେ ଶୋକ ସ୍ଥାୟୀ ରୂପେ ରହିବାର ଅବକାଶ ରଖେନାହିଁ । କାରଣ ଯା ମଧ୍ୟରେ ମିଳନର ଆଶା ବଞ୍ଚି ରହୁଥିବାରୁ ବରଂ ରତିକୁ ସ୍ଥାୟୀଭାବ ରୂପେ ଗ୍ରହଣ କରଯାଇପାରେ । ପଣ୍ଡିତ ବିଶ୍ୱନାଥ କିଞ୍ଚିତ୍ ପରେ ସ୍ପଷ୍ଟ ଭାବରେ ଦୁଇଟିର ପ୍ରଭେଦ ଦର୍ଶାଇଛନ୍ତି ଯେ କରୁଣ ବିପ୍ରଲମ୍ଭରେ ବିଚ୍ଛେଦ ସତ୍ତ୍ୱେ ନାୟକ ନାୟିକା ମଧ୍ୟରେ ପୁନର୍ମିଳନର ଆଶା ବଳବତୀ ଥାଏ ଏବଂ ରତି ସ୍ଥାୟୀଭାବ ରୂପେ କାର୍ଯ୍ୟ କରେ । କରୁଣ ରସରେ ପରସ୍ପର ପୁନର୍ମିଳନର କୌଣସି ଆଶା ରହେ ନାହିଁ ଏବଂ ଶୋକ ହିଁ ଏହାର ସ୍ଥାୟୀଭାବ ।[୧୦୧]

ପ୍ରେମବୈଚିତ୍ର୍ୟ— 'ଉଜ୍ଜ୍ୱଳ ନୀଳମଣି' କାରଙ୍କ ମତରେ-ପ୍ରେମର ଉତ୍କର୍ଷ ମଧ୍ୟରେ ବିରହ ପୀଡ଼ାର ନିଦାରୁଣ ଅନୁଭବ ପ୍ରେମ ବୈଚିତ୍ର୍ୟ ନାମରେ ଖ୍ୟାତ ।[୧୦୨] ପ୍ରିୟ ଓ ପ୍ରିୟା ପରସ୍ପରର ସନ୍ନିକଟରେ ଥାଇ ସୁଦ୍ଧା ଗଭୀର ପ୍ରେମର ସ୍ୱଭାବଜ ଶଂକାରୁ ଏଇ ଜାତୀୟ ବିରହ ବିଭ୍ରମରେ ପୀଡ଼ିତ ହୋଇଥାନ୍ତି । ବୈଷ୍ଣବ ପଦାବଳୀ ସାହିତ୍ୟରେ ଏହାର ବହୁ ମଂଜୁଳ ଦୃଷ୍ଟାନ୍ତ ପରିଦୃଷ୍ଟ ।

## ଶୃଙ୍ଗାରର ଅବୟବ—

ସ୍ଥାୟୀ ଭାବଃ— ଆଚାର୍ଯ୍ୟ ଭରତଙ୍କ ମତରେ ଶୃଙ୍ଗାର ରତି ନାମକ ସ୍ଥାୟୀ ଭାବରୁ ଉତ୍ପନ୍ନ ଓ ଉଜ୍ଜ୍ୱଳ ବେଶଯୁକ୍ତ ।[୧୦୩] ସ୍ଥାୟୀ

ଭାବର ଗୌରବ ବୁଝାଇବାକୁ ଯାଇ ସେ କହନ୍ତି—ସବୁ ମନୁଷ୍ୟଙ୍କର ଅଙ୍ଗଗତ ସାମ୍ୟ ସତ୍ତ୍ୱେ ଯେପରି ଜଣେ ଜଣେ ବ୍ୟକ୍ତି ନିଜର ଗୁଣ, କୁଳ, ଶୀଳ, ବିଦ୍ୟା, ଶିଳ୍ପ ଓ ବିଚକ୍ଷଣତା ବଳରେ ରାଜପଣକୁ ଯୋଗ୍ୟ ହୋଇଥାନ୍ତି ଓ ଅନ୍ୟମାନେ ତାଙ୍କର ଅନୁଚର ହୋଇ ରହିଥାନ୍ତି ; ସେହିପରି ବିଭାବ, ଅନୁଭାବ ଓ ବ୍ୟଭିଚାରୀ ଭାବ ସ୍ଥାୟୀ ଭାବର ଅନୁଗାମୀ ହୋଇଥିବାରୁ ତାହାର ଶ୍ରେଷ୍ଠତ୍ୱ କୀର୍ତ୍ତିତ ହେବା ସ୍ୱାଭାବିକ । [୧୦୪] ରତି ସମ୍ପର୍କରେ ତାଙ୍କର ମତ ହେଉଛି—ଏହି ରତି ନାମକ ସ୍ଥାୟୀ ଭାବ ଆମୋଦ ସ୍ୱରୂପ ; ଋତୁ, ମାଲ୍ୟ, ଅନୁଲେପନ, ଆଭରଣ, ପ୍ରିୟବ୍ୟକ୍ତି, ଉତ୍କୃଷ୍ଟ ଗୃହର ଉପଭୋଗ ଆଦି ବିଭାବମାନଙ୍କରୁ ଏହାର ଉତ୍ପତ୍ତି । [୧୦୫] ଏଥିରୁ ଏହା ସ୍ପଷ୍ଟ ଜଣାଯାଏ ଯେ ବିଭାବ, ଅନୁଭାବ ଓ ସଞ୍ଚାରୀଭାବମାନଙ୍କର ସହାୟତାରେ ଶୃଙ୍ଗାର ଉତ୍କର୍ଷ ରୂପ ଲାଭ କରେ ଏବଂ ରତି ସକଳ ଭାବର ଅନ୍ତର୍ନିହିତ ସତ୍ତା ରୂପେ ବିରାଜମାନ ଥାଏ ।

ଏହି ରତି କ'ଣ ? ଆଚାର୍ଯ୍ୟ ଧନଞ୍ଜୟ କହନ୍ତି—ଯୁବକ ଯୁବତୀଙ୍କ ଆତ୍ମାର ପ୍ରମୋଦ ହିଁ ରତି । [୧୦୬] ଏ ସଂପର୍କରେ ପଣ୍ଡିତ ବିଶ୍ୱନାଥଙ୍କ ମତ ହେଉଛି—ମନର ଅନୁକୂଳ ଅର୍ଥରେ ମନ ତନ୍ମୟ ହୋଇ ଯିବାକୁ ରତି କୁହାଯାଏ । [୧୦୭] ଏହି ରତି ଭାବଧ୍ୱନି ଅର୍ଥରେ ଦେବ, ଗୁରୁ, ମୁନୀ, ନୃପ, ପୁତ୍ର ପ୍ରଭୃତି ବିଷୟକ ହୋଇପାରେ । [୧୦୮] କିନ୍ତୁ ଆଚାର୍ଯ୍ୟ ମମ୍ମଟ ସକଳ ସନ୍ଦେହର ଦୂରୀକରଣ କରିବାକୁ ଯାଇ କହିଛନ୍ତି ଯେ କେବଳ ସ୍ତ୍ରୀ ପୁରୁଷର ଅନୁରାଗରୁ ରତି ବ୍ୟକ୍ତ ହେଲେ ତାହା ଶୃଙ୍ଗାରର ସ୍ଥାୟୀ ଭାବେ ଗୃହୀତ ହୋଇଥାଏ । [୧୦୯]

**ବିଭାବ**—ଆଚାର୍ଯ୍ୟ ଭରତଙ୍କ ମତରେ ବିଭାବ ହେଉଛି ବିଜ୍ଞାନାର୍ଥକ । ଏହା କାରଣ, ନିମିତ୍ତ ଓ ହେତୁ ପର୍ଯ୍ୟାୟବାଚୀ । ଯାହା ବାକ୍ ଅଙ୍ଗରେ ଅଭିନୟାଶ୍ରିତ ହୋଇ ବିଶେଷ ଅର୍ଥ ଜ୍ଞାନ କରାଏ ତାହାହିଁ ବିଭାବ । [୧୧୦] ଅଗ୍ନି ପୁରାଣକାରଙ୍କ ମତରେ ରତି ଆଦି ଭାବକୁ ଯାହା ଉତ୍ପନ୍ନ କରେ ତାହାକୁ ବିଭାବ କୁହାଯାଏ । [୧୧୧] ଆଚାର୍ଯ୍ୟ ଧନଞ୍ଜୟ ବିଭାବକୁ ଭାବ

ପରିପୁଷ୍ଟିର କାରଣ 'ରୂପେ ଗ୍ରହଣ କରିଛନ୍ତି ।[୧୧୨] ପଣ୍ଡିତ ବିଶ୍ୱନାଥଙ୍କ ଦୃଷ୍ଟିରେ ଏହା ହେଉଛି ରତିର ଉଦ୍‌ବୋଧକ ।[୧୧୩]

ଏହା ଦ୍ୱିବିଧ–ଆଲମ୍ବନ ଓ ଉଦ୍ଦୀପନ ।

ଆଲମ୍ବନ–ରତ୍ୟାଦି ଭାବ ସକଳ ଯାହାକୁ ଆଲମ୍ବନ କରି ରସ ରୂପେ ଉଦ୍ଦୀପ୍ତ ହୁଅନ୍ତି ତାହାକୁ ଆଲମ୍ବନ ବିଭାବ କୁହାଯାଏ ।[୧୧୪] ନାୟକ ନାୟିକାଦି ଶୃଙ୍ଗାରର ଆଲମ୍ବନ ବିଭାବ ରୂପେ ପରିଗଣିତ । 'ସାହିତ୍ୟ ଦର୍ପଣ'କାରଙ୍କ ମତରେ ନାୟକାଦିଙ୍କୁ ଅବଲମ୍ବନ କରି ରସର ଉଦ୍‌ଗମ ଅର୍ଥାତ୍ ଉତ୍ପତ୍ତି ହୁଏ । ଆଦି (ନାୟକାଦି) ଶବ୍ଦର ଅର୍ଥ ହେଉଛି ନାୟକ, ନାୟିକା, ପ୍ରତିନାୟିକା ପ୍ରଭୃତି ।[୧୧୫] ଅଳଂକାର ଶାସ୍ତ୍ରରେ ଏମାନଙ୍କ ଭେଦୋପଭେଦର ବିପୁଳ ବିସ୍ତର ପରିଦୃଷ୍ଟ ।

ଉଦ୍ଦୀପନ–'ଅଗ୍ନି ପୁରାଣ'ରେ ଅଛି–ଯାହା ଆଲମ୍ବନ ବିଭାବଗତ ଭାବକୁ ଉଦ୍ଦୀପ୍ତ କରେ ତାହା ହେଉଛି ଉଦ୍ଦୀପନ ବିଭାବ । ଏହା ବିବିଧ ସଂସ୍କାରଯୁକ୍ତ ।[୧୧୬] 'ସାହିତ୍ୟ ଦର୍ପଣ'କାରଙ୍କ ମତରେ ଯେଉଁ ଭାବ ସକଳ ରସକୁ ଉଦ୍ଦୀପ୍ତ କରନ୍ତି ତାହାହିଁ ଉଦ୍ଦୀପନ ବିଭାବ ।[୧୧୭] ଭୋଜରାଜଙ୍କ 'ଶୃଙ୍ଗାର ପ୍ରକାଶ' ଗ୍ରନ୍ଥରେ ଉଦ୍ଦୀପନ ସାମଗ୍ରୀକୁ ସାତ ଭାଗରେ ବିଭକ୍ତ କରାଯାଇଛି ।[୧୧୮] (୧) ଋତୁ (୨) ଉପକରଣ (ମାଲ୍ୟ ଅଙ୍ଗରାଗ ଇତ୍ୟାଦି) (୩) ଇତିହାସ ଶ୍ରବଣ (୪) ଦେଶ (ଗ୍ରାମ, ପତ୍ତନ, ଉପବନ, କାନ୍ତାର, ପର୍ବତ, ସରିତ, ସାଗରାଦି) (୫) କାଳ (ଦିବା, ସୂର୍ଯ୍ୟୋଦୟ, ଚନ୍ଦ୍ରୋଦୟାଦି) (୬) ୬୪ କଳା (ଯଥା–ଗୀତ, ବାଦିତ୍ର, ନୃତ୍ୟ, ନାଟ୍ୟ, ଚିତ୍ର, ପୁସ୍ତକର୍ମ, ପତ୍ରଚ୍ଛେଦ୍ୟ, ଲିପିଜ୍ଞାନ, ବଚନ କୌଶଳ, ବୈଚକ୍ଷଣ୍ୟ, ମାଲ୍ୟବିଧି, ଗନ୍ଧଯୁକ୍ତି, ଆସ୍ୱାଦ୍ୟବିଧାନ, ରଂଜନ ବିଧାନ, ରତ୍ନ ପରୀକ୍ଷା, ସିବ୍ୟ, ଉପକରଣକ୍ରିୟା, ଆଜୀବଜ୍ଞାନ, ତିର୍ଯ୍ୟଗ ଯୋନିଚିକିତ୍ସା, ମାୟାକୃତ, ପାଷାଣ୍ଡ-ସମୟଜ୍ଞାନ, କ୍ରୀଡ଼ା କୌଶଳ, ସଂବାହନ, ଶରୀର ସଂସ୍କାର କୌଶଳ, ଆୟପ୍ରାପ୍ତି, ରକ୍ଷାବିଧାନ, ରୂପସଂଖ୍ୟା, କ୍ରିୟାମାର୍ଗ, ଜୀବଗ୍ରହଣ, ନୟଜ୍ଞାନ, କରଣଜ୍ଞାନ, ଚିତ୍ରାଚିତ୍ରବିଧି, ଗୂଢ଼ରାଶି, ତୁଲ୍ୟାଭିହାର, କ୍ଷିପ୍ରଗ୍ରହଣ, ଅନୁପ୍ରାପ୍ତି, ଲେଖସ୍ମୃତ୍ୟାନୁକ୍ରମ, ଛଳବ୍ୟାମୋହନ, ଗ୍ରହଣାଦାନ,

ଉପସ୍ଥାନବିଧି, ଯୁଦ୍ଧ, ତତ, ଗତ, ନୃତ, ଶୟନୋପଚାରିକା, ସ୍ତ୍ରୀ ପୁରୁଷ ଭାବ ଗ୍ରହଣ, ସ୍ୱରାଗ ପ୍ରକାଶନ, ପ୍ରତ୍ୟଙ୍ଗଦାନ, ନଖଦନ୍ତ ବିଗ୍ରହ (ଦୁଇ), ନୀବୀସ୍ରଂସଣ, ଗୁହ୍ୟସ୍ପର୍ଶ—ଅନୁଲୋମ୍ୟ, ପରମାର୍ଥ-କୌଶଳ, ହର୍ଷଣ, ସମାନାର୍ଥତା, କୃତାର୍ଥ-ପ୍ରୋତ୍ସାହନ, ମୃଦୁ କ୍ରୋଧ ପ୍ରବର୍ତ୍ତନ, କ୍ରୁଦ୍ଧ ପ୍ରସାଦନ, ସୁପ୍ତ-ଅପରି ତ୍ୟାଗ, ଚରମସ୍ୱାପ ବିଧି,ଗୁହ୍ୟ ଗୂହନ, ସାଶ୍ରୁପାତମ୍-ରମଣସ୍ୟ-ବୀକ୍ଷଣମ୍, ସ୍ୱୟଂ ଶପଥକ୍ରିୟା, ପ୍ରସ୍ଥିତାନୁଗମନମ୍, ପୁନର୍ନିରୀକ୍ଷଣମ୍ । (୭) ବୟସ (ସନ୍ଧି, ଉପରି, ପ୍ରୌଢ଼, ଅତି ପ୍ରୌଢ଼) ।

ଅନୁଭାବ—ଆଚାର୍ଯ୍ୟ ଭରତଙ୍କ ମତରେ ବାକ୍ ଅଂଗ ଓ ସତ୍ତ୍ୱର ଅଭିନୟ ଦ୍ୱାରା ନାନାବିଧ ଅର୍ଥ ଅନୁଭାବିତ ହେଉଥିବାରୁ ଏହାକୁ ଅନୁଭାବ କୁହାଯାଏ ।[୧୧୯] ଅମର କୋଷରେ ଏହାର ଅର୍ଥ ହେଉଛି—ଭାବବୋଧକ ଅର୍ଥାତ୍ ରତି ଆଦି ଭାବ ଅନୁଭବର କାରଣ ।[୧୨୦] ଆଚାର୍ଯ୍ୟ ଧନଞ୍ଜୟ ଏ ସଂପର୍କରେ କହନ୍ତି— ସ୍ଥାୟୀ ଭାବ ଉଦ୍‌ବୁଦ୍ଧ ହେଲେ ନାୟକ ନାୟିକାଠାରେ ଯେଉଁ ବିକାର ସୃଷ୍ଟି ହୋଇ ସେମାନଙ୍କ ଅନ୍ତରର ଭାବ ଅନୁଭବ କରାଏ, ତାହାହିଁ ଅନୁଭାବ ।[୧୨୧] 'ସାହିତ୍ୟ ଦର୍ପଣ'ରେ ଉଲ୍ଲିଖିତ ଅଛି ଯେ ସ୍ଥାୟୀ ଭାବ ଉଦ୍‌ବୁଦ୍ଧ ହେବାର କାରଣରୁ ରତି ଆଦି ନିଜ ନିଜର ବହିର୍ଭାବ ପ୍ରକାଶ କରି ଲୋକରେ କାର୍ଯ୍ୟରୂପ ଗ୍ରହଣ କଲେ, କାବ୍ୟ ନାଟକରେ ତାହା ଅନୁଭାବ ନାମ ଧାରଣ କରେ ।[୧୨୨] ଉକ୍ତ ପରିଭାଷାମାନଙ୍କରୁ ଏହା ସ୍ପଷ୍ଟ ଜଣାଯାଏ ଯେ ନାୟକ ନାୟିକାଙ୍କଠାରେ ରତି ଉଦ୍‌ବୁଦ୍ଧ ହେଲେ ସେମାନଙ୍କର ଆଙ୍ଗିକ, ବାଚିକ ଓ ସାତ୍ତ୍ୱିକ ଭାବମାନ ପ୍ରକାଶ ପାଏ । ଏହି ସକଳ ଭାବ ଶୃଙ୍ଗାର ଅନୁଭବର କାରଣ ସ୍ୱରୂପ ।

ଅନୁଭାବର ଭେଦ—'ନାଟ୍ୟ ଶାସ୍ତ୍ର'ରେ ଅନୁଭାବ ସକଳକୁ ଆଙ୍ଗିକ, ବାଚିକ, ସାତ୍ତ୍ୱିକ—ତିନି ଭେଦରେ ବିଭକ୍ତ କରାଯାଇଛି । ସାତ୍ତ୍ୱିକ ପୁଣି ଆଠ ପ୍ରକାର; ଯଥା— ସ୍ତମ୍ଭ, ସ୍ୱେଦ, ରୋମାଞ୍ଚ, ସ୍ୱରଭଙ୍ଗ, ବେପଥୁ, ବୈବର୍ଣ୍ଣ୍ୟ, ଅଶ୍ରୁ ଓ ପ୍ରଳୟ ।[୧୨୩]

ଭୋଜରାଜ ଅନୁଭବକୁ ଚାରିଭାଗରେ ବିଭକ୍ତ କରିଛନ୍ତି,[୧୨୮]
ଯଥା:—

୧। ମନାରମ୍ଭ—ଭାବ, ହାବ, ହେଳା, ଶୋଭା, କାନ୍ତି, ଦୀପ୍ତି, ମାଧୁର୍ଯ୍ୟ, ଧୈର୍ଯ୍ୟ, ପ୍ରାଗଲ୍‌ଭ୍ୟ, ଔଦାର୍ଯ୍ୟ, ସ୍ଥୈର୍ଯ୍ୟ, ଗାମ୍ଭୀର୍ଯ୍ୟ ।

୨। ବାଗାରମ୍ଭ—ଆଳାପ, ପ୍ରଳାପ, ବିଳାପ, ଅନୁଲାପ, ସଂଳାପ, ଅପଳାପ, ସନ୍ଦେଶ, ଅତିଦେଶ, ନିର୍ଦ୍ଦେଶ, ଉପଦେଶ, ଅପଦେଶ, ବ୍ୟପଦେଶ ।

୩। ବୁଦ୍ଧ୍ୟାରମ୍ଭ—ରୀତି (ପାଞ୍ଚାଳୀ, ଗୌଡ଼ୀ, ବୈଦର୍ଭୀ, ଲାଟ୍ୟା)
ବୃତ୍ତି (ଭାରତୀ, ଆରଭଟୀ, କୌଶିକୀ, ସାତ୍ତ୍ୱିକୀ)
ପ୍ରବୃତ୍ତି (ପୌରସ୍ତ୍ୟ,ଉଡ୍ରମାଗଧୀ,ଦାକ୍ଷିଣାତ୍ୟା,ଆବନ୍ତ୍ୟା)

୪। ଶରୀରମ୍ଭ—ଲୀଳା, ବିଳାସ, ବିଚ୍ଛିତ୍ତି, ବିଭ୍ରମ, କିଳକିଞ୍ଚିତ, ମୋଟ୍ଟାୟିତ, କୁଟ୍ଟମିତ, ବିବ୍ବୋକ, ଲଳିତ, ବିହୃତ, କ୍ରୀଡ଼ିତ, କେଳି ।

'ଅଗ୍ନିପୁରାଣ'କାର ନାୟକ ଓ ନାୟିକା ଭିତ୍ତିରେ ମନାରମ୍ଭ (ଅନୁଭବ)କୁ ଦୁଇ ଭାଗରେ ବିଭକ୍ତ କରିଛନ୍ତି; [୧୨୯] ଯଥା—

୧। ନାୟକଗତ (୮ ପ୍ରକାର)—ଶୋଭା, ବିଳାସ, ମାଧୁର୍ଯ୍ୟ, ସ୍ଥୈର୍ଯ୍ୟ, ଗାମ୍ଭୀର୍ଯ୍ୟ, ଲଳିତ, ଔଦାର୍ଯ୍ୟ, ତେଜସ୍ ।

୨। ନାୟିକାଗତ (୧୨ ପ୍ରକାର)—ଭାବ, ହାବ, ହେଳା, ଶୋଭା, କାନ୍ତି, ଦୀପ୍ତି, ମାଧୁର୍ଯ୍ୟ, ଧୈର୍ଯ୍ୟ, ପ୍ରାଗଲ୍‌ଭ୍ୟ, ଔଦାର୍ଯ୍ୟ, ସ୍ଥୈର୍ଯ୍ୟ, ଗାମ୍ଭୀର୍ଯ୍ୟ ।

ପଣ୍ଡିତ ବିଶ୍ୱନାଥଙ୍କ ମତରେ ଅଷ୍ଟବିଧ ସାତ୍ତ୍ୱିକ ଭାବ ତଥା ନାୟକ ନାୟିକାର ଅଂଗଜ ଓ ସ୍ୱଭାବଜ ଅଳଂକାର ସମୂହ ଅନୁଭବର ଅନ୍ତର୍ଗତ ।[୧୨]

ଅଙ୍ଗଜ ଅଳଙ୍କାର ଦ୍ୱିବିଧ; ଯଥା:–୧) ଯନୂଜ (୩ ଗୋଟି)–ହାବ, ଭବ ଓ ହେଳା (୨) ଅଯନୂଜ (୭ ଗୋଟି)– ଶୋଭା, କାନ୍ତି,ଦୀପ୍ତି,ମାଧୁର୍ଯ୍ୟ, ପ୍ରଗଲ୍‌ଭତା, ଔଦାର୍ଯ୍ୟ, ଧୈର୍ଯ୍ୟ । ଅଙ୍ଗଜ ଅଳଂକାର ସମୂହ ଯୌବନ କାଳରେ ନାୟିକାଠାରେ ଯେପରି ଶୋଭନୀୟ ହୁଏ, ନାୟକଠାରେ ସେପରି ହୋଇପାରେ ନାହିଁ । ସ୍ୱଭବଜ ଅଳଂକାର ଅଠର ଗୋଟି; ଯଥା:– ଲୀଳା, ବିଳାସ ଇତ୍ୟାଦି । ଏ ସମସ୍ତ ଯୌବନ କାଳରେ ନାୟିକାମାନଙ୍କର ଶୋଭା ବର୍ଦ୍ଧନ କରିଥାଏ ।

'ସାହିତ୍ୟ ଦର୍ପଣ'ର ପରିଭଷାକୁ ଆଧାର କରି ଅନୁଭବ ସମୂହର ପରିଚୟ ଏଠାରେ ପ୍ରଦାନ କରଯାଉଛି ।[୧୨୭]

ସାତ୍ତ୍ୱିକ ଭବ:–ସ୍ତମ୍ଭ–ଭୟ ହର୍ଷାଦି କାରଣରୁ ଚେଷ୍ଟାଶୂନ୍ୟତା ।

ସ୍ୱେଦ–ରତି,ଘର୍ମ,ଶ୍ରମାଦି କାରଣରୁ ଶରୀରରୁ ଝାଳ ବୋହିବା

ରୋମାଞ୍ଚ–ହର୍ଷ, ଅଦ୍‌ଭୂତ, ଭୟାଦି କାରଣରୁ ରୋମ ବିକ୍ରିୟା ।

ସ୍ୱରଭଙ୍ଗ–ମଦ (ମରଣ), ସମଦ (ହର୍ଷ). ପୀଡ଼ାଦି କାରଣରୁ ଗଦ୍‌ଗଦ୍ ସ୍ୱର ।

ବେପଥୁ–ରାଗ, ଦ୍ୱେଷ, ଶ୍ରମାଦି କାରଣରୁ ଶରୀର କଂପ ।

ବୈବର୍ଣ୍ଣ୍ୟ–ବିଷାଦ, ମଦ (ଉନ୍ମତ୍ତତା), ରୋଷାଦିରୁ ଶରୀର ବିବର୍ଣ୍ଣତା ।

ଅଶ୍ରୁ–କ୍ରୋଧ, ଦୁଃଖ ଓ ଅତିଶୟ ଆନନ୍ଦରୁ ଲୋତକ ପ୍ରବାହ ।

ପ୍ରଳୟ–ସୁଖ ବା ଦୁଃଖରୁ ଚେଷ୍ଟା ବା ଜ୍ଞାନ ଶୂନ୍ୟତା ।

ଅଙ୍ଗଜ ଅଳଂକାର

(ଯନୂଜ):–ଭବ–ନିର୍ବିକାର ମନରେ ଜାତ ପ୍ରଥମ ବିକାର ବା ସଂଭୋଗ ଇଚ୍ଛା ।

ହାବ–ସଂଭୋଗ ଇଚ୍ଛା ପ୍ରକାଶକ ଭ୍ରୂ ଓ ନେତ୍ରାଦିର ବିକାର ।

ହେଳା—ବିକାରମୂକ ଭାବର ଅତ୍ୟନ୍ତ ପ୍ରକାଶମାନ ଅବସ୍ଥା ।

(ଅଯତ୍ନଜ)

ଶୋଭା—ରୂପ, ଯୌବନ, ଲାଳିତ୍ୟ, ରଂଗ ଭୂଷଣାଦି ଯୁକ୍ତ ଶରୀର ଶୋଭା ।

କାନ୍ତି—ଶୋଭାରେ କାମ ଭାବର ଆଧିକ୍ୟ ।

ଦୀପ୍ତି—କାନ୍ତିର ବିସ୍ତାର ଅବସ୍ଥା ।

ମାଧୁର୍ଯ୍ୟ—ସକଳ ଅବସ୍ଥା ନିର୍ବିଶେଷରେ ରମଣୀୟତା ।

ପ୍ରଗଲ୍‌ଭତା—ନିର୍ଭୀକତା ।

ଔଦାର୍ଯ୍ୟ—ସଦା ବିନୀତ ଭାବ ।

ଧୈର୍ଯ୍ୟ—ଆତ୍ମଶ୍ଳାଘା ମୁକ୍ତ ଅଚଞ୍ଚଳ ମନୋବୃତ୍ତି ।

ସ୍ୱଭାବଜ ଅଳଙ୍କାର:—

ଲୀଳା—ପ୍ରୀତି ଉତ୍‌ପାଦକ ଅଙ୍ଗଭଙ୍ଗୀ ତଥା ବେଶ, ଅଳଙ୍କାର, ବଚନରେ ପ୍ରିୟର ଅନୁକରଣ ।

ବିଳାସ—ପ୍ରିୟର ସଂଦର୍ଶନ ବା ଆଗମନ ସଂବାଦରେ ପ୍ରିୟାର ଗମନ, ଅବସ୍ଥାନ, ଆସନ ଗ୍ରହଣକାଳୀନ ମୁଖ ନେତ୍ରାଦିରେ ପ୍ରକାଶମାନ ବିଶେଷ ସୌନ୍ଦର୍ଯ୍ୟ ।

ବିଚ୍ଛିତ୍ତି—ସୌନ୍ଦର୍ଯ୍ୟ ବର୍ଦ୍ଧକ ସ୍ୱଳ୍ପ ବେଶ ରଚନା ।

ବିବ୍‌ବୋକ—ଅତି ଗର୍ବରେ ଅଭିଳଷିତ ପଦାର୍ଥର ଅନାଦର ।

କିଳକିଞ୍ଚିତ—ପ୍ରିୟ ଜନର ସଂଗମ ଜାତ ଆନନ୍ଦରୁ ମନ୍ଦହାସ, ଶୁଷ୍କରୋଦନ, ହାସ, ତ୍ରାସ ଓ କ୍ରୋଧାଦିର ମିଳିତ ପ୍ରକାଶ ।

ମୋଟ୍ଟାୟିତ—ପ୍ରିୟଜନର କଥା ପ୍ରସଙ୍ଗରେ ନାୟିକାର ଗୋପନ ପ୍ରେମ ବ୍ୟଞ୍ଜନା (କାନ କୁଣ୍ଡାଇବା, ହାଇ ମାରିବା ଆଦି ବିକାର ସକଳ) ।

କୁଟ୍ଟମିତ—କେଶ, ସ୍ତନ, ଅଧରରେ ପ୍ରିୟର ସ୍ପର୍ଶ ହେତୁକ ନାୟିକାର ସଂଭ୍ରମ (ମୁଣ୍ଡ ଓ ହାତ ହଲାଇବା) ।

ବିଭ୍ରମ—ପ୍ରିୟ ଆଗମନ ହେତୁ ଚଞ୍ଚଳତା ଓ ରାଗ ବିହ୍ୱଳରେ ଅସ୍ଥାନରେ ଅଳଂକାରାଦିର ବିନ୍ୟାସ ।

ଲଳିତ—ସୁକୁମାର ଅଂଗ ବିନ୍ୟାସ ।

ମଦ—ସୌଭାଗ୍ୟ ଓ ଯୌବନାଦି ଗର୍ବରୁ ଜାତ ବିକାର ।

ବିହୃତ—ବକ୍ତବ୍ୟ କାଳରେ ଲଜ୍ଜା ହେତୁ କହି ନପାରିବା ।

ତପନ—ପ୍ରିୟ ବିରହରେ ନାୟିକାଠାରେ ଜାତ କାମ ବିକାର ।

ମୌଗ୍‌ଧ୍ୟ—ପ୍ରିୟ ଆଗରେ ଜାଣିଥିବା ବସ୍ତୁକୁ ନଜାଣିବା ପରି ପଚାରିବା ।

ବିକ୍ଷେପ—ଭୂଷଣର ଅର୍ଦ୍ଧରଚନା, ମିଛରେ ଚାରିଆଡ଼କୁ ଦୃଷ୍ଟି ନିକ୍ଷେପ ଓ ପ୍ରିୟ ନିକଟରେ ରହସ୍ୟ ଆଖ୍ୟାନର ଗୋପନ ଭାଷଣ ।

କୁତୂହଳ—ସୁନ୍ଦର ବସ୍ତୁ ଦର୍ଶନରେ ମାନସିକ ଚଞ୍ଚଳତା ।

ହସିତ—ଯୌବନ ଆବିର୍ଭାବରେ ସମ୍ଭବିତ ବୃଥାହସ ।

ଚକିତ—କୌଣସି କାରଣରୁ ପ୍ରିୟ ସମକ୍ଷରେ ଭୟ ବିହ୍ୱଳତା ।

କେଳି—ପ୍ରିୟ ସହ ବିହାର ଓ କ୍ରୀଡ଼ା ।

**ବ୍ୟଭିଚାରୀ ଭାବ**—ନାଟ୍ୟଶାସ୍ତ୍ର ଅନୁସାରେ—ବି + ଅଭି + ଚର୍ (ଗତ୍ୟର୍ଥକ)=ବ୍ୟଭିଚାରୀ । ଅର୍ଥାତ୍ ବାଚିକ, ଆଙ୍ଗିକ ଓ ସାତ୍ତ୍ୱିକ ଅଭିନୟମାନଙ୍କୁ ନାନା ରସର ଅଭିମୁଖରେ ନିଅନ୍ତି ବୋଲି ଏମାନଙ୍କର ନାମ ବ୍ୟଭିଚାରୀ ଭାବ ।[୧୨୮] ଏମାନଙ୍କର ସଂଖ୍ୟା ତେତିଶ ଗୋଟି । ପ୍ରାୟ ସକଳ ଆଳଂକାରିକ ଏହା ସ୍ୱୀକାର କରିଯାଇଛନ୍ତି ।

'ସାହିତ୍ୟ ଦର୍ପଣ'ର ପରିଭାଷା ଅନୁସାରେ ସେସବୁର ପରିଚୟ ଏଠାରେ ପ୍ରଦତ୍ତ ।

ନିର୍ବେଦ–ତତ୍ତ୍ୱଜ୍ଞାନ, ଆପଦ, ଈର୍ଷ୍ୟା ପ୍ରଭୃତିରୁ ନିଜ ପ୍ରତି ଅବମାନନା । ଦୀନତା, ଚିନ୍ତା, ଅଶ୍ରୁ, ନିଃଶ୍ୱାସ ବିବର୍ଣ୍ଣତା, ଉର୍ଦ୍ଧ୍ୱଶ୍ୱାସ ଏହାର ଲକ୍ଷଣ ।

ଆବେଗ–ଆକସ୍ମିକ ଦୁଃଖରେ ବ୍ୟାକୁଳତା ।

ଦୈନ୍ୟ–ଦାରିଦ୍ର୍ୟ ହେତୁ ନିରଶ ଭବ ।

ଶ୍ରମ–ରତିକ୍ରୀଡ଼ା ବା ଦୀର୍ଘପଥ ଯାତ୍ରାର ଦୁଃଖ ।

ମଦ–ମଦ୍ୟପାନ ହେତୁକ ମୋହ ଓ ଆନନ୍ଦର ମିଶ୍ରଣ ।

ଜଡ଼ତା–ଇଷ୍ଟ ବା ଅନିଷ୍ଟ ବସ୍ତୁ ଦର୍ଶନରୁ ବୁଦ୍ଧିହୀନତା ।

ଉଗ୍ରତା–ଅନ୍ୟର ବୀରତ୍ୱ ବା ଅପରାଧ ଦେଖି ନିଜଠାରେ ଚଣ୍ଡ ସ୍ୱଭବ ।

ମୋହ–ଭୟ, ଦୁଃଖ, ଆବେଗ ଓ ଅତିଶୟ ଚିନ୍ତା ହେତୁ ମୂର୍ଚ୍ଛା ।

ବିବୋଧ–ନିଦ୍ରାଭଙ୍ଗ ହେତୁ ପୁନର୍ବାର ଚୈତନ୍ୟୋଦୟ ।

ସ୍ୱପ୍ନ–ଶୋଇଥିବା ଅବସ୍ଥାରେ ବିଷୟଜ୍ଞାନ ।

ଅପସ୍ମାର–ଶନି ପ୍ରଭୃତି ଗ୍ରହ ବା ଭୂତ ପ୍ରେତାଦି ଆବେଶ ଜନିତ ଜ୍ଞାନଶୂନ୍ୟତା ।

ଗର୍ବ–ପ୍ରଭୁତ୍ୱ, ସମ୍ପତ୍ତି, ବିଦ୍ୟା, କୁଳୀନତାଦିରୁ ଜାତ ଅହଂକାର ।

ମରଣ–ଶର ପ୍ରଭୃତି ଅସ୍ତ୍ରଦ୍ୱାରା ଜୀବନ ନାଶ ।

ଆଳସ୍ୟ–ପରିଶ୍ରମ ବା ଗର୍ଭଭର ପ୍ରଭୃତିରୁ ଜାଡ୍ୟତା ।

ଅମର୍ଷଃ—ପରଠାରୁ ନିନ୍ଦା, ଭର୍ତ୍ସନା ବା ଅପମାନ ଯୋଗୁଁ କ୍ରୋଧ ।

ନିଦ୍ରା—ପରିଶ୍ରମ କ୍ଳାନ୍ତି ବା ମଦ୍ୟପାନ ଜନିତ ବିକାରରୁ ଚେତନା ରହିତ ଭବ ।

ଅବହିତ୍ଥା—ଭୟ, ଗୌରବ, ଲଜ୍ଜାଦି ହେତୁ ହର୍ଷ ବା ଦୁଃଖ ପ୍ରଭୃତି ଗୋପନ ମନୋଭବ ।

ଔତ୍ସୁକ୍ୟ—ଇଷ୍ଟବସ୍ତୁ ବା ପ୍ରିୟ ସଙ୍ଗମାଦିର ଅପ୍ରାପ୍ତି ହେତୁ କାଳକ୍ଷେପଣଗତ ଅସହିଷ୍ଣୁତା ।

ଉନ୍ମାଦ—କାମଭବ, ଶୋକ, ଭୟ ପ୍ରଭୃତିରୁ ଚିର ବ୍ୟାକୁଳତା ।

ଶଙ୍କା—ଶତ୍ରୁର କ୍ରୂରତା ବା ନିଜକୃତ ଦୋଷରୁ ଅନର୍ଥ ଆଶଙ୍କା ।

ସ୍ମୃତି—ସଦୃଶ ବସ୍ତୁର ଜ୍ଞାନ ବା ଭବନା ବଶରୁ ପୂର୍ବାନୁଭବର ସ୍ମରଣ ।

ମତି—ନୀତିମାର୍ଗ ଅନୁସରଣରେ ପଦାର୍ଥ ନିର୍ଦ୍ଧାରଣ ।

ବ୍ୟାଧି—ଜ୍ୱର ବା ବାତ ହେତୁ କମ୍ପ ବା ଭୂମିଶୟନାଦି ।

ତ୍ରାସ—ନିର୍ଘାତ (ଝଡ଼ଝଂଜା), ବିଦ୍ୟୁତ୍, ଉଲ୍କା ହେତୁ ଭୟ ।

ବ୍ରୀଡା—ସ୍ତ୍ରୀର ନିଜ ବସନ ଅସମ୍ଭାଳତା ବା ଅନ୍ୟର ଦୁଷ୍ଟ ଆଚରଣ ହେତୁ ଲଜ୍ଜା ।

ହର୍ଷ—ଅଭିଳଷିତ ବସ୍ତୁ ପ୍ରାପ୍ତିରେ ମନର ପ୍ରସନ୍ନତା ।

ଅସୂୟା—ଉଦ୍ଧତ ସ୍ୱଭବ ହେତୁ ଅନ୍ୟ ପ୍ରତି ଅସହିଷ୍ଣୁତା ।

ବିଷାଦ—ଉପାୟ ଅଭବରେ ବିଚେଷ୍ଟା ।

ଧୃତି—ଜ୍ଞାନ ବା ପ୍ରିୟଜନର ଆଗମନ ଜନିତ ସମ୍ପୂର୍ଣ୍ଣ ସ୍ପୃହା ।

ଚପଳତା–ମାତ୍ସର୍ଯ୍ୟ, ଦ୍ୱେଷ, ଅନୁରାଗାଦି ହେତୁକ ଚପଳ ଭାବ ।

ଗ୍ଲାନି–ରତି କ୍ଳାନ୍ତି, ମନସ୍ତାପ, କ୍ଷୁଧା ବା ପିପାସା ପ୍ରଭୃତିରୁ ଜାତ ଅସାମର୍ଥ୍ୟ ବା ଦୁର୍ବଳତା ।

ଚିନ୍ତା–ହିତ ବସ୍ତୁର ଅପ୍ରାପ୍ତି ଜନିତ ଶୂନ୍ୟତା ଭାବ ।

ତର୍କ–କୌଣସି ବିଷୟକ ସନ୍ଦେହର ବିଚାର ।

## ନାୟିକା ଭେଦ–

କୁଳ, ଶୀଳ, ସ୍ୱଭାବାଦିକୁ ଭିତ୍ତିକରି ସଂସ୍କୃତ ଅଳଂକାର ଶାସ୍ତ୍ରରେ ନାୟିକା ଭେଦର ସୁବିଶାଳ ପରଂପରା ପରିଦୃଷ୍ଟ । ମଧ୍ୟଯୁଗୀୟ ଓଡ଼ିଆ କବିଗଣ ସଂସ୍କୃତ ଗ୍ରନ୍ଥ ଉପରେ ମୁଖ୍ୟତଃ ନିର୍ଭରଶୀଳ ଥିବାରୁ କାବ୍ୟ ରଚନା କ୍ଷେତ୍ରରେ ସେ ସବୁର ସ୍ପଷ୍ଟ ପ୍ରଭାବ ଲକ୍ଷ୍ୟ କରାଯାଇଥାଏ । ପୁନଶ୍ଚ ଶୃଙ୍ଗାର ରସଚର୍ଚ୍ଚା କବି କର୍ମର ମୁଖ୍ୟ ବିଷୟ ହୋଇଥିବା ଯୋଗୁଁ ନାୟିକା ଭେଦ ପ୍ରତି ସକଳ ଦୃଷ୍ଟି ଆକର୍ଷିତ ହେବା ସ୍ୱାଭାବିକ ।

### ଭରତଙ୍କ 'ନାଟ୍ୟଶାସ୍ତ୍ର'ରେ ଉଲ୍ଲିଖିତ ନାୟିକା ଭେଦ–

'ନାଟ୍ୟଶାସ୍ତ୍ର'କାର ରସ, ରୀତି ଆଦି ସାହିତ୍ୟର ବିଭିନ୍ନ ବିଭବ ଉପରେ ଆଲୋକପାତ କଲାବେଳେ ଏଥିପ୍ରତି (ନାୟିକା ଭେଦ) ମଧ୍ୟ ଯଥାର୍ଥ ଦୃଷ୍ଟି ଦେଇଛନ୍ତି । ପରବର୍ତ୍ତୀ ଆଳଂକାରିକଗଣ ଏହାର ପରିଶୀଳନ ଓ ପରିମାର୍ଜନରେ ପ୍ରବୃତ୍ତ ହୋଇ ଥିବାର ଦେଖାଯାଏ । ଭରତଙ୍କ ନାୟିକା ବିଚାରର ଭିତ୍ତି ଅତ୍ୟନ୍ତ ବ୍ୟାପକ; ଯଥା–

୧) ଶୀଳ ଭେଦ (୨୨ ପ୍ରକାର) ୧୨୯ (କ)–ଦେବ, ଅସୁର, ଗନ୍ଧର୍ବ, ରକ୍ଷ, ନାଗ, ପତତ୍ରୀ, ପିଶାଚ, ଯକ୍ଷ, ବ୍ୟାଳ, ନର, ବାନର, ହସ୍ତୀ, ମୃଗ, ମୀନ, ଉଷ୍ଟ୍ର, ମକର, ଖର, ଶୂକର,

ବାଜୀ, ମହିଷ, ଅଜ, ଗୋ । (ଏମାନଙ୍କ ଶୀଳ ଅନୁସାରେ ନାୟିକାମାନଙ୍କୁ ବିଭିନ୍ନ ଶ୍ରେଣୀଭୁକ୍ତ କରାଯାଇଛି । )

୨) ପ୍ରକୃତି ଭେଦ [୧୩୦] (୩ ପ୍ରକାର)– ଆଭ୍ୟନ୍ତର, ବାହ୍ୟା, ବାହ୍ୟାଭ୍ୟନ୍ତର (କୁଳୀନା ସ୍ତ୍ରୀ ଆଭ୍ୟନ୍ତର ପ୍ରକୃତିର, ବେଶ୍ୟା ବାହ୍ୟା ପ୍ରକୃତିର ଏବଂ କୃତଶୌଚ୍ଚ ବାହ୍ୟାଭ୍ୟନ୍ତର ପ୍ରକୃତିର ।)

୩) ଉପଚାର ଭେଦ[୧୩୧] (୩ ପ୍ରକାର)–କୁଳଜା, କନ୍ୟା, ବାହ୍ୟା ।

୪) ଗୁଣ ଭେଦ[୧୩୨] (୩ ପ୍ରକାର)–ଉତ୍ତମା, ମଧ୍ୟମା, ଅଧମା ।

୫) ଅବସ୍ଥା ଭେଦ[୧୩୩] (୮ ପ୍ରକାର)–ବାସକସଜ୍ଜା, ବିରହୋତ୍କଣ୍ଠିତା, ସ୍ୱାଧୀନ ଭର୍ତ୍ତୃକା, କଳହାନ୍ତରିତା, ଖଣ୍ଡିତା, ବିପ୍ରଲବ୍ଧା ପ୍ରୋଷିତ ଭର୍ତ୍ତୃକା, ଅଭିସାରିକା ।

୬) ମଦନାବସ୍ଥା ଭେଦ[୧୩୪] (୨ ପ୍ରକାର)–ଅନୁରକ୍ତା, ବିରକ୍ତା ।

୭) ଯୌବନ ଭେଦ[୧୩୫] (୪ ପ୍ରକାର)– ପ୍ରଥମ ଯୌବନା, ଦ୍ୱିତୀୟ ଯୌବନା, ତୃତୀୟ ଯୌବନା, ଚତୁର୍ଥ ଯୌବନା ।

୮) ରାଜ-ଅନ୍ତଃପୁର ଉପଚାର ଭେଦ[୧୩୬] (୧୬ ପ୍ରକାର)– ମହାଦେବୀ, ଦେବୀ, ସ୍ୱାମିନୀ, ସ୍ଥାୟିନୀ, ଭୋଗିନୀ,ଶିଳ୍ପକାରିଣୀ, ନାଟକୀୟା, ନର୍ତ୍ତକୀ, ଅନୁଚାରିକା, ପରିଚାରିକା, ସଞ୍ଚାରିକା, ପ୍ରେଷଣ ଚାରିକା, ମହତ୍ତରା, ପ୍ରତିହାରୀ, କୁମାରୀ, ସ୍ଥବିରା, ଆୟୁକ୍ତିକା ।

୯) ସ୍ୱଭାବ ଭେଦ[୧୩୭] (୪ ପ୍ରକାର)–ଧୀରା, ଲଳିତା, ଉଦାତ୍ତା, ନିଭୃତା ।

୧୦) ଆଚାର ଭେଦ[୧୩୮] (୩ ପ୍ରକାର)–କୁଳଜା, ବେଶ୍ୟା,ପ୍ରେଷ୍ୟା ।

ଉପରୋକ୍ତ ସକଳ ଶ୍ରେଣୀର ନାୟିକାମାନଙ୍କ ଲକ୍ଷଣାଦି ସମ୍ପର୍କରେ ଆଚାର୍ଯ୍ୟ ଭରତ ସବିଶେଷ ବର୍ଣ୍ଣନା କରିଯାଇଛନ୍ତି । ଆଲୋଚନାର ପରିସର ସୀମିତ ଥିବାରୁ ଏଠାରେ ତାହା କେବଳ ସୂଚନାତ୍ମକ ଭାବରେ ପ୍ରଦତ୍ତ ହେଲା ।

## ଭୋଜରାଜଙ୍କ 'ଶୃଙ୍ଗାର ପ୍ରକାଶ'ରେ ଉଲ୍ଲିଖିତ ନାୟିକା ଭେଦ[୧୩]

ଭୋଜରାଜ ନାୟିକାମାନଙ୍କୁ ପ୍ରଥମେ ଚାରି ଭାଗରେ ବିଭକ୍ତ କରିଅଛନ୍ତି; ଯଥା–ସ୍ୱକୀୟା, ପରକୀୟା, ପୁନର୍ଭୂ, ସାମାନ୍ୟା । ପ୍ରଥମୋକ୍ତ ଦୁଇ ଶ୍ରେଣୀର ନାୟିକା ପୁନଶ୍ଚ ଉତ୍ତମା, ମଧ୍ୟମା, କନିଷ୍ଠା–ଊଢ଼ା, ଅନୂଢ଼ା–ଧୀରା, ଅଧୀରା–ମୁଗ୍ଧା, ମଧ୍ୟା, ପ୍ରଗଲ୍ଭା–ଭେଦରେ ପ୍ରତ୍ୟେକେ ବର୍ଗୀକୃତ । ପୁନର୍ଭୂ ଚାରି ପ୍ରକାର; ଯଥା–ଅକ୍ଷତା, କ୍ଷତା, ଯାତାୟାତା, ଯାଯାବର । ସାମାନ୍ୟ ନାୟିକା ପାଞ୍ଚ ପ୍ରକାର; ଯଥା–ଊଢ଼ା, ଅନୂଢ଼ା, ସ୍ୱୟଂବରା, ସ୍ୱୈରିଣୀ ଓ ବେଶ୍ୟା । ବେଶ୍ୟା ପୁଣି ତିନି ଶ୍ରେଣୀର; ଯଥା–ଗଣିକା, ବିଳାସିନୀ ଓ ରୂପାଜୀବା । ଏଠାରେ ଅଷ୍ଟନାୟିକା ଭେଦ ମଧ୍ୟ ସ୍ୱୀକୃତ । ଅନ୍ୟତ୍ର ନାୟିକାମାନଙ୍କର କାବ୍ୟୋପଯୋଗିତା ଭେଦରେ ବର୍ଗୀକରଣ ପରିଲକ୍ଷିତ ।[୧୫୦] ଯଥା–ନାୟିକା, ପ୍ରତି ନାୟିକା, ଉପନାୟିକା ଓ ଅନୁନାୟିକା । ଏତଦ୍‌ଭିନ୍ନ ଉଦାତ୍ତା, ଉଦ୍ଧତା, ଲଳିତା, ଶାନ୍ତା–ଚତୁର୍ବିଧ ନାୟିକା ପ୍ରସଂଗ ମଧ୍ୟ ଗ୍ରନ୍ଥରେ ଯଥାରୀତି ଆଲୋଚିତ ।

## ଧନଞ୍ଜୟଙ୍କ 'ଦଶରୂପକ'ରେ ଉଲ୍ଲିଖିତ ନାୟିକା ଭେଦ[୧୫୧]

ଆଚାର୍ଯ୍ୟ ଧନଞ୍ଜୟଙ୍କ ମତରେ ନାୟିକା ତିନିପ୍ରକାର; ଯଥା–ସ୍ୱା (ସ୍ୱକୀୟା), ଅନ୍ୟା (ପରକୀୟା), ସାଧାରଣ ସ୍ତ୍ରୀ । ସ୍ୱା ତିନି ଭାଗରେ ବିଭକ୍ତ; ଯଥା–ମୁଗ୍ଧା, ମଧ୍ୟା, ପ୍ରଗଲ୍‌ଭା । ମଧ୍ୟା ଓ ପ୍ରଗଲ୍‌ଭା ପୁଣି ତିନି ତିନି ଭାଗରେ ବିଭକ୍ତ; ଯଥା–ଧୀରା, ଅଧୀରା, ଧୀରାଧୀରା । ଉପରୋକ୍ତ ଛ' ପ୍ରକାର ନାୟିକା ଜ୍ୟେଷ୍ଠା ଓ କନିଷ୍ଠା ଭେଦରେ ବାର ପ୍ରକାର ।

ଅନ୍ୟା ଦୁଇ ପ୍ରକାର; ଯଥା–କନ୍ୟକା ଓ ଅନ୍ୟୋଢ଼ା । ସୁତରାଂ ସମୁଦାୟ ନାୟିକା ସଂଖ୍ୟା ଷୋହଳ । [ସ୍ୱା (୧୩)+ଅନ୍ୟା (୨)+ସାଧାରଣ ସ୍ତ୍ରୀ (୧)]

## ବିଶ୍ୱନାଥଙ୍କ 'ସାହିତ୍ୟ ଦର୍ପଣ'ରେ ଉଲ୍ଲିଖିତ ନାୟିକା ଭେଦ [୧୦୨]

ପଣ୍ଡିତ ବିଶ୍ୱନାଥଙ୍କ ନାୟିକା ଭେଦ ବିଗ୍ଭର ପୂର୍ବବର୍ତ୍ତୀ ଆଗ୍ଭର୍ଯ୍ୟମାନଙ୍କଠାରୁ ଅଧିକ ବିସ୍ତୃତ ଓ ସ୍ପଷ୍ଟ । ତାଙ୍କ ମତରେ ନାୟିକା ମୁଖ୍ୟତଃ ତିନିପ୍ରକାର; ଯଥା ସ୍ୱା, ଅନ୍ୟା, ସାଧାରଣା । ଏ କ୍ଷେତ୍ରରେ ସେ ଧନଞ୍ଜୟଙ୍କୁ ହିଁ ଅନୁସରଣ କରିଛନ୍ତି ଓ ପୂର୍ବୋକ୍ତ ଷୋହଳ ପ୍ରକାର ନାୟିକା ବର୍ଗୀକରଣକୁ ସ୍ୱୀକାର କରି ନେଇଛନ୍ତି । ଏହାପରେ ବାସକସଜ୍ଜିକାଦି ଅଷ୍ଟନାୟିକା ଭେଦରେ ନାୟିକା ସଂଖ୍ୟା (୧୬×୮) ଏକଶହ ଅଠାଇଶରେ ପହଞ୍ଚିଛି । ଉତ୍ତମ, ମଧ୍ୟମ ଓ ଅଧମ ଭେଦରେ ସେମାନଙ୍କ ସଂଖ୍ୟା (୧୨୮×୩) ସର୍ବମୋଟ ତିନିଶହ ଚଉରାଶି ବୋଲି ବିଶ୍ୱନାଥଙ୍କ ମତ ।

## ରୂପ ଗୋସ୍ୱାମୀଙ୍କ 'ଉଜ୍ଜ୍ୱଳ ନୀଳମଣି'ରେ ଉଲ୍ଲିଖିତ ନାୟିକା-ଭେଦ[୧୦୩]

ଚୈତନ୍ୟୋତ୍ତର କାଳରେ ଅନ୍ୟତମ ବୈଷ୍ଣବ ଆଳଂକାରିକ ହେଉଛନ୍ତି ରୂପ ଗୋସ୍ୱାମୀ । ତାଙ୍କ ପ୍ରଣୀତ 'ଉଜ୍ଜ୍ୱଳ ନୀଳମଣି' ବୈଷ୍ଣବ ଧର୍ମ ଓ ସାଧନା ମାର୍ଗର ଅନ୍ୟତମ ପ୍ରମାଣିକ ଗ୍ରନ୍ଥ । ଏଥିରେ ଉଜ୍ଜ୍ୱଳ ବା ମଧୁର ରସ ହିଁ ମୁଖ୍ୟରସ ରୂପେ ପ୍ରତିପାଦିତ । ଏହାର ସ୍ଥାୟୀଭାବ ହେଉଛି କୃଷ୍ଣ-ରତି । ନାୟିକା ଭେଦ ପ୍ରସଂଗରେ ରୂପ ଗୋସ୍ୱାମୀ ପୂର୍ବସୂରୀମାନଙ୍କ ମାର୍ଗ ପ୍ରାୟତଃ ଅନୁସରଣ କରିଛନ୍ତି । ରାଧା କୃଷ୍ଣଙ୍କ ପ୍ରଣୟଲୀଳାକୁ ଆଶ୍ରୟ କରି ତାଙ୍କର ନାୟକ ନାୟିକା ଭାବନା ଗଢି ଉଠିଥିବାରୁ ତାହା ଇନ୍ଦ୍ରିୟାନୁଭୂତି ପରିବର୍ତ୍ତେ ଭକ୍ତି ଭାବନା ଅନୁରଂଜିତ ।

ରୂପ ଗୋସ୍ୱାମୀଙ୍କ ମତରେ ନାୟିକା ଦୁଇ ପ୍ରକାର—ସ୍ୱକୀୟା ଓ ପରକୀୟା । ଏମାନେ ମୁଗ୍ଧା, ମଧ୍ୟା ଓ ପ୍ରଗଲ୍ଭା ଭେଦରେ ତିନି ତିନି ଭାଗରେ ବିଭକ୍ତ । ମଧ୍ୟା ଓ ପ୍ରଗଲ୍ଭା ପୁଣି ଧୀରା, ଅଧୀରା ଓ ଧୀରାଧୀରା ଭେଦରେ ତିନି ତିନି ପ୍ରକାରର । ଏହିପରି ଭାବରେ ସ୍ୱକୀୟା ଓ ପରକୀୟା ନାୟିକାଙ୍କ ସଂଖ୍ୟା ଚଉଦ । ମୁଗ୍ଧା (କନ୍ୟା)କୁ ମିଶାଇଲେ ମୋଟ ସଂଖ୍ୟା ପନ୍ଦର । ଅଷ୍ଟନାୟିକା ରୂପରେ (୧୫×୮) ଏମାନେ ଏକଶହ କୋଡ଼ିଏ ପ୍ରକାର । ଶ୍ରୀକୃଷ୍ଣଙ୍କ ପ୍ରତି ପ୍ରେମର ତାରତମ୍ୟ ହେତୁ ଉତ୍ତମା, ମଧ୍ୟମା ଓ କନିଷ୍ଠା ଭେଦରେ ନାୟିକାମାନଙ୍କ ସମୁଦାୟ ସଂଖ୍ୟା (୧୨୦×୩) ତିନିଶହ ଷାଠିଏ ।

ଅନ୍ୟାନ୍ୟ–ନାରାୟଣ ଭଟ୍ଟଙ୍କ କୃତ 'ଭକ୍ତିରସ ତରଂଗିଣୀ' ଗ୍ରନ୍ଥରେ ନାୟିକାମାନଙ୍କୁ ମୁଖ୍ୟତଃ ତିନିଭାଗରେ ବିଭକ୍ତ କରାଯାଇଛି, ଯଥା–ସ୍ୱକୀୟା, ପରକୀୟା ଓ ସାମାନ୍ୟା ।

ପ୍ରୌଢ଼ା, ମୁଗ୍‌ଧା ଓ ମଧ୍ୟା ଭେଦରେ ସ୍ୱକୀୟା ତିନି ପ୍ରକାର । ପ୍ରୌଢ଼ା ଓ ମଧ୍ୟା ପୁନଶ୍ଚ ଧୀର. ଅଧୀର ଓ ଧୀରାଧୀର ଭେଦରେ ଛଅ ଭାଗରେ ବିଭକ୍ତ । ଜ୍ୟେଷ୍ଠା ଓ କନିଷ୍ଠା ଭେଦରେ ଏମାନେ ବାର ପ୍ରକାର । ମୁଗ୍‌ଧାକୁ ମିଶାଇ ଏମାନଙ୍କ ସଂଖ୍ୟା ତେର । ଉତ୍ତମ, ମଧ୍ୟମ ଓ ଅଧମ ଭେଦରେ ଏମାନେ (୧୩×୩) ଅଣଚାଳିଶ ପ୍ରକାର । ଅଷ୍ଟ ନାୟିକା ରୂପରେ ସମୁଦାୟ ସ୍ୱକୀୟା ନାୟିକାଙ୍କ ସଂଖ୍ୟା (୩୯×୮) ତିନିଶହ ବାର ।

ପରକୀୟା ଦ୍ୱିବିଧ–କନ୍ୟା ଓ ବିବାହିତା । ବିବାହିତା ପୂର୍ବପରି ତେର ପ୍ରକାର । କନ୍ୟାକୁ ମିଶାଇଲେ ଏମାନଙ୍କ ସଂଖ୍ୟା ଚଉଦ । ଉତ୍ତମ, ମଧ୍ୟମ, କନିଷ୍ଠ ଭେଦରେ (୧୪×୩) ଏମାନେ ବୟାଳିଶ ପ୍ରକାର । ଅଷ୍ଟ ନାୟିକା ରୂପେ (୪୨×୮) ପରକୀୟା ନାୟିକାଙ୍କ ମୋଟ ସଂଖ୍ୟା ତିନିଶହ ଛତିଶ ।

ପରକୀୟା ପରି ସାମାନ୍ୟା ନାୟିକାଙ୍କ ସଂଖ୍ୟା ମଧ୍ୟ ତିନିଶହ ଛତିଶ ।

ସୁତରାଂ ସମୁଦାୟ ନାୟିକା ସଂଖ୍ୟା (ସ୍ୱକୀୟା–୩୧୨+ପରକୀୟା ୩୩୬+ସାମାନ୍ୟା+୩୩୬) ନଅଶହ ଚଉରାଶି ।[୧୮୦]

ଏଥିରୁ ନାୟିକା ଭେଦରେ ବିପୁଳତା ସହଜ ଅନୁମେୟ ।

## ନାୟକ ଭେଦ–

ମଧ୍ୟ ଯୁଗୀୟ ଓଡ଼ିଆ କବିଗଣ କାବ୍ୟନାୟକଙ୍କୁ ସକଳ ଗୁଣାବଳୀରେ ଭୂଷିତ କରିଯାଇଛନ୍ତି । ସଂସ୍କୃତ କାବ୍ୟଗ୍ରନ୍ଥ ଓ ଅଳଂକାର ଶାସ୍ତ୍ର ଏଥିପାଇଁ

ସେମାନଙ୍କୁ ଯଥେଷ୍ଟ ପ୍ରେରଣା ଯୋଗାଇଛି । ପୂର୍ବାଗ୍ରୀମାନଙ୍କର ବିଗ୍ଧର ଅନୁସରଣରେ ନାୟକ ଭେଦର ସମ୍ୟକ ପରିଚୟ ଏଠାରେ ପ୍ରଦତ୍ତ ।

ଭରତଙ୍କ 'ନାଟ୍ୟଶାସ୍ତ୍ର'ରେ ଉଲ୍ଲିଖିତ ନାୟକ ଭେଦ

ସ୍ତ୍ରୀ-ସଂଭୋଗ ଭିତ୍ତିରେ ନାୟକ ପାଞ୍ଚ ଭାଗରେ ବିଭକ୍ତ; [୧୦୪] ଯଥା–

୧। ଚତୁର–ସମଦୁଃଖ, କ୍ଳେଶ ସହ, ପ୍ରଣୟକ୍ରୋଧ ପ୍ରସାଦନରେ କୁଶଳ, ଅର୍ଥୀ, ଆମ୍ଭୁଛନ୍ଦଶୂନ୍ୟ ଓ ଦକ୍ଷ ।

୨। ଉତ୍ତମ- ସ୍ତ୍ରୀ ଅନୁରକ୍ତ, ସ୍ମୃତିମାନ, ମଧୁର, ତ୍ୟାଗୀ, ରାଗହୀନ, ଅଜ୍ଞାତହୃଦୟାଭିଳାଷ, ନାରୀ-ଅପମାନ ବିରକ୍ତ ।

୩। ମଧ୍ୟମ–ନାରୀର ସକଳ ପ୍ରୟୋଜନକୁ ସମ୍ମାନ ଦିଏ, ସାମାନ୍ୟ ଦୋଷରେ ବିରକ୍ତି ପ୍ରକାଶ କରେ, ଅପମାନିତ ହେଲେ ମଧ୍ୟ କ୍ରୋଧ ପ୍ରକାଶ କରେ ନାହିଁ । ଛଳନାକୁ ଅତ୍ୟନ୍ତ ଘୃଣା କରେ ।

୪। ଅଧମ–ନାରୀଠାରୁ ତିରସ୍କୃତ ହୋଇ ମଧ୍ୟ ନିର୍ଲଜ୍ଜ ଭାବରେ ତାହା ପ୍ରତି ଅନୁକୂଳ ଭାବ ପ୍ରକାଶ କରେ । ଅନ୍ୟ ନାରୀର ସ୍ନେହ ପ୍ରତି ପରାବୃତ୍ତ ଭାବ ଦେଖାଏ । ସଦ୍ୟକୃତ ଅପରାଧ ସତ୍ତ୍ୱେ ଦୃଢ଼ତର ଅନୁରାଗ ପ୍ରକାଶରେ ସମର୍ଥ ହୁଏ ଏବଂ ବଂଧୁ ପରିତ୍ୟକ୍ତ ଜୀବନ ଅତିବାହିତ କରେ ।

୫। ସଂପ୍ରବୃତ୍ତକ–ଭୟ-ଅମର୍ଷ-ଅବିଗଣିତ, ମୂର୍ଖ ପ୍ରକୃତିଯୁକ୍ତ, ଏକାନ୍ତ ଦୃଢ଼ଗ୍ରାହୀ (ଏକ ନାୟିକାନିଷ୍ଠ),କାମତନ୍ତ୍ର ଅନୁରାଗୀ, ରତି କଳହରେ ସଂପ୍ରହାରିତ ହୋଇ ମଧ୍ୟ ଅକର୍କଶ ଏବଂ ସ୍ତ୍ରୀର କ୍ରୀଡ଼ନକ ସଦୃଶ ।

ପ୍ରକୃତି ଭେଦରେ ନାୟକ ତିନି ପ୍ରକାର ।[୧୦୬] ଯଥା-ଉତ୍ତମ, ମଧ୍ୟମ, ଅଧମ ।

ଶୀଳ ଭେଦରେ ନାୟକ ଚାରି ପ୍ରକାର; [୧୦୭] ଯଥା–ଧୀରୋଦ୍ଧତ; ଧୀରଲଳିତ, ଧୀରୋଦାତ୍ତ, ଧୀରପ୍ରଶାନ୍ତ ।

## ଭୋଜରାଜଙ୍କ 'ଶୃଙ୍ଗାର ପ୍ରକାଶ'ରେ ଉଲ୍ଲିଖିତ ନାୟକ ଭେଦ

ଧୈର୍ଯ୍ୟଭେଦରେ ନାୟକ ଗ୍ୱରି ପ୍ରକାର[୧୦୮] , ଯଥା- ଧୀରୋଦାତ୍ତ, ଧୀରୋଦ୍ଧତ, ଧୀର ଲଳିତ, ଧୀର ପ୍ରଶାନ୍ତ । ଗୁଣ, ପ୍ରକୃତି, ପ୍ରବୃତ୍ତି ଓ ପରିଗ୍ରହ ଭେଦରେ ଏମାନଙ୍କ ସଂଖ୍ୟା ବହୁ ଗୁଣିତ ।

ଗୁଣ–ଉତ୍ତମ, ମଧ୍ୟମ, ଅଧମ ।

ପ୍ରକୃତି–ସାତ୍ତ୍ୱିକ, ରାଜସ, ତାମସ ।

ପ୍ରବୃତ୍ତି–ଅନୁକୂଳ, ଦକ୍ଷିଣ, ଶଠ, ଧୃଷ୍ଟ ।

ପରିଗ୍ରହ (ସ୍ତ୍ରୀ ସଂଖ୍ୟା)–ଅସାଧାରଣ, ସାଧାରଣ ।

ମାନବୀୟ ଗୁଣାବଳୀ ଭେଦରେ ନାୟକ ଗ୍ୱରିପ୍ରକାର[୧୦୯] ; ଯଥା- ନାୟକ, ପ୍ରତିନାୟକ, ଉପନାୟକ, ଅନୁନାୟକ । ଏମାନେ ପ୍ରତ୍ୟେକେ ଧୀରୋଦାତ୍ତାଦି ଭେଦରେ ଗ୍ୱରି ଗ୍ୱରି ପ୍ରକାର । ଏ କ୍ଷେତ୍ରରେ ସମୁଦାୟ ନାୟକ ସଂଖ୍ୟା ଷୋହଳ ।

## ଧନଂଜୟଙ୍କ 'ଦଶରୂପକ'ରେ ଉଲ୍ଲିଖିତ ନାୟକ ଭେଦ ।[୧୧୦]

ନାୟକ ସାଧାରଣତଃ ବିନୀତ, ମଧୁର, ତ୍ୟାଗୀ, ଦକ୍ଷପ୍ରିୟମ୍ବଦ, ରକ୍ତଲୋକ(ଲୋକାନୁରାଗୀ) କୁଶଳବକ୍ତା, ରଢବଂଶ (ପ୍ରସିଦ୍ଧବଂଶ), ସ୍ଥିର ଓ ଯୁବା ତଥା ବୁଦ୍ଧି, ସ୍ମୃତି, ପ୍ରଜ୍ଞା, କଳା, ମାନ-ସମନ୍ୱିତ ଏବଂ ଶୂର, ତେଜସ୍ୱୀ, ଶାସ୍ତ୍ରଚକ୍ଷୁ ଓ ଧାର୍ମିକ ହେବା ବିଧେୟ ।

ପୂର୍ବାଗ୍ୱର୍ଯ୍ୟମାନଙ୍କୁ ଅନୁସରଣ କରି ସେ ନାୟକଙ୍କୁ ଧୀରୋଦାତ୍ତାଦି ଭେଦରେ ବିଭକ୍ତ କରିଯାଇଛନ୍ତି । ନାୟିକା ପ୍ରତି ପ୍ରେମାଶକ୍ତି ଭେଦରେ ଏମାନେ ପ୍ରତ୍ୟେକେ ଗ୍ୱରି ପ୍ରକାର; ଯଥା- ଦକ୍ଷିଣ, ଶଠ, ଧୃଷ୍ଟ, ଅନୁକୂଳ (ନାୟକ ସଂଖ୍ୟା ଷୋହଳ) ।

ପ୍ରତି ନାୟକ ପ୍ରସଙ୍ଗରେ ସେ କହନ୍ତି– ଏହା ହେଉଛି ନାୟକର ପ୍ରତିଦ୍ୱନ୍ଦୀ ଚରିତ୍ର । ଏମାନେ ଛଅ ପ୍ରକାର– (୧) ଲୁବ୍ଧ (୨) ଧୀରୋଦ୍ଧତ (୩) ସ୍ତବ୍ଧ (ଜଡୀକୃତ) (୪) ପାପକୃତ୍ (୫) ବ୍ୟସନୀ (୬) ରିପୁ ।

ନାୟକର ସହାୟକ ରୂପେ ପୀଠମର୍ଦ୍ଦ, ବିଟ ଓ ବିଦୂଷକ ଚରିତ୍ରର ଉଲ୍ଲେଖ ମଧ୍ୟ ସେ କରିଯାଇଛନ୍ତି ।

**ବିଶ୍ୱନାଥଙ୍କ 'ସାହିତ୍ୟ ଦର୍ପଣ'ରେ ଉଲ୍ଲିଖିତ ନାୟକ ଭେଦ ।**[୧୫୧]

ପଣ୍ଡିତ ବିଶ୍ୱନାଥଙ୍କ ନାୟକ ଭେଦ ବିଚାର ମୁଖ୍ୟତଃ 'ଦଶରୂପକ' ଭିତ୍ତିକ । ପୂର୍ବୋକ୍ତ ଷୋହଳ ପ୍ରକାର ନାୟକଙ୍କୁ ସେ ପୁନଶ୍ଚ ଉତ୍ତମ, ମଧ୍ୟମ ଓ ଅଧମ ଭେଦରେ ବର୍ଗୀକରଣ କରିଯାଇଛନ୍ତି (୧୬×୩) ।

ସହାୟକ – ବିଶ୍ୱନାଥଙ୍କ ମତରେ ଏମାନେ ଚାରିପ୍ରକାର; ଯଥା– ପୀଠମର୍ଦ୍ଦ (ନାୟକର ସମଗୁଣ ସମ୍ପନ୍ନ) ବିଟ (ବାଗ୍ମୀ, ଧୂର୍ତ୍ତ, ବେଶ ଉପଚାର କୁଶଳ, ମଧୁର ସ୍ୱଭାବ ଯୁକ୍ତ) ଚେଟ (ଚାକରାଣୀର ପୁଅ),ବିଦୂଷକ । ଶେଷୋକ୍ତ ତିନିଜଣ ନାୟକଙ୍କୁ ଶୃଙ୍ଗାର ବିଷୟକ ସହାୟତା ପ୍ରଦାନ କରିଥାନ୍ତି ।

ଅନ୍ତଃପୁର ସହାୟକ–ବାମନ (ଖର୍ବକାୟ), ଶଣ୍ଢ (ନପୁଂସକ) କିରାତ (ଶବର), ମ୍ଲେଚ୍ଛ (ନୀଚ ଜାତୀୟ), ଆଭୀର (ଗଉଡ଼), ଶକାର (ରକ୍ଷିତାର ଭାଇ), କୁବ୍‌ଜା ଏମାନେ ଅନ୍ତଃପୁର ସହାୟକ ରୂପେ ନାୟକର ପରିଚର୍ଯ୍ୟା ନିମନ୍ତେ ନିଯୁକ୍ତ ହୋଇଥାନ୍ତି ।

**ରୂପ ଗୋସ୍ୱାମୀଙ୍କ 'ଉଜ୍ଜ୍ୱଳ ନୀଳମଣି'ରେ ଉଲ୍ଲିଖିତ ନାୟକଭେଦ ।**[୧୫୨]

ପ୍ରଥମତଃ ଧୀରୋଦାତ୍ତାଦି ଭେଦରେ ନାୟକ ଚାରି ପ୍ରକାର । ଏମାନେ ପ୍ରତ୍ୟେକେ ପୂର୍ଣ୍ଣତମ, ପୂର୍ଣ୍ଣତର, ପୂର୍ଣ୍ଣ– ଏହିପରି ତିନିଭାଗରେ ବିଭକ୍ତ (୪×୩) । ଏହି ବାର ପ୍ରକାର ନାୟକ ପୁନଶ୍ଚ ପତି ଓ ଉପପତି ଭେଦରେ ବର୍ଗୀକୃତ (୧୨×୨) । ତତ୍‌ପରେ ଅନୁକୂଳ, ଦକ୍ଷିଣ, ଶଠ ଓ ଧୃଷ୍ଟ–ଭେଦରେ ଏମାନଙ୍କ ସଂଖ୍ୟା ସର୍ବମୋଟ (୨୪×୪) ଛୟାନବେ ।

ଅନ୍ୟାନ୍ୟ—ନାରାୟଣ ଭଟ୍ଟଙ୍କ କୃତ 'ଭକ୍ତିରସ ତରଂଗିଣୀ' ଗ୍ରନ୍ଥରେ ନାୟକ ସଂଖ୍ୟା ଆହୁରି ଅଧିକ । ଧୀରୋଦାତ୍ତାଦି ଚତୁର୍ବିଧ ନାୟକ ପତି, ଉପପତି ଓ ବୈଶିକ ଭେଦରେ ବାର ଭାଗରେ ବିଭକ୍ତ । ପୁନଶ୍ଚ ଅନୁକୂଳ, ଶଠ, ଧୃଷ୍ଟ, ଦକ୍ଷିଣ ଭେଦରେ ଏମାନଙ୍କ ସଂଖ୍ୟା (୧୨×୪) ଅଠଚାଳିଶ । ଉତ୍ତମ, ମଧ୍ୟମ, ଅଧମ-ଭେଦରେ ସମୁଦାୟ ନାୟକ ସଂଖ୍ୟା (୪୮×୩) ଏକଶହ ଚଉରାଳିଶ ।[୧୫୩]

ଗ୍ରନ୍ଥକାରଙ୍କ ମତରେ ଏହି ସକଳ ରୂପ ଧାରଣ କରି କେବଳ ଶ୍ରୀକୃଷ୍ଣ ହିଁ ଲୀଳା ପ୍ରକଟନ କରନ୍ତି ।

## ଶେଷ କଥା-

ନାୟିକା ଭେଦର ସୂକ୍ଷ୍ମାତିସୂକ୍ଷ୍ମ ବିଶ୍ଳେଷଣ ପ୍ରତି ଦୃଷ୍ଟି ଦେଲେ ମନେହୁଏ ଯେପରିକି ଆଚାର୍ଯ୍ୟମାନଙ୍କର ପରସ୍ପର ପ୍ରତି ସ୍ପର୍ଦ୍ଧାରେ ଏହି ବିଭବଟି କ୍ରମ ପରିପୁଷ୍ଟ । ନାୟକ ଭେଦ ପ୍ରତି ସେମାନେ ବିଶେଷ ଆଗ୍ରହୀ ହୋଇଥିବା ଜଣାଯାଏ ନାହିଁ । ସଂସ୍କୃତ କାବ୍ୟଯୁଗ ତଥା ପ୍ରାନ୍ତୀୟ ସାହିତ୍ୟର ରୀତିଯୁଗର କବିମଣ୍ଡଳୀ ଅଳଂକାର ଶାସ୍ତ୍ରର ଏହି ନିର୍ଦ୍ଦେଶ ପ୍ରତି ଗଭୀର ଅନୁରକ୍ତି ପ୍ରକାଶ କରିଯାଇଛନ୍ତି । ଫଳତଃ ନର ନାରୀର ଆତ୍ମା-ସୌନ୍ଦର୍ଯ୍ୟ ଅଧିକାଂଶ କ୍ଷେତ୍ରରେ ଯଥାର୍ଥ ବିକାଶ ଲାଭ କରିବାର ଗୌରବରୁ ବଞ୍ଚିତ । କେବଳ ଏକ ଆଙ୍ଗିକ ସର୍ବସ୍ୱ ରତିବଦ୍ଧ ଜୀବନଧାରା ସେମାନଙ୍କ ଚରିତ୍ରରେ ପ୍ରତିଫଳିତ । ଏ ପ୍ରସଙ୍ଗରେ ହିନ୍ଦି ସାହିତ୍ୟର ବିଶିଷ୍ଟ ଆଲୋଚକ ରାକେଶ ଗୁପ୍ତାଙ୍କ ଅଭିମତ ଏକାନ୍ତ ଉଲ୍ଲେଖଯୋଗ୍ୟ–"The HIndi Authors, under the influence of the Krsna-lila literature in general and Ujjvala Nilamani of Rupa Gosvami in particular, adopted Krishna's amorous sports with the Gopis within the Scientific framework of Nayak Nayika Bheda."[୨୪୪] ଏହି ବିଚାର ମଧ୍ୟଯୁଗୀୟ ଓଡ଼ିଆ କବିମାନଙ୍କ ପ୍ରତି ସମାନ ଭାବେ ପ୍ରଯୁଜ୍ୟ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ଦୌତ୍ୟ ପ୍ରସଙ୍ଗ–ନାୟକ ନାୟିକାଙ୍କ ମଧ୍ୟରେ ପ୍ରଣୟ ସମ୍ପର୍କ ସ୍ଥାପନ ତଥା ଉଭୟଙ୍କ ମିଳନର ସଫଳୀକରଣ ନିମନ୍ତେ ଦୂତ ବା ଦୂତୀର ସହାୟତା ଆବଶ୍ୟକ ହୋଇଥାଏ । ଅଳଂକାର ଶାସ୍ତ୍ରରେ ସେମାନଙ୍କର ପ୍ରକାର ଭେଦ ଓ ଚାରିତ୍ରିକ ବୈଶିଷ୍ଟ୍ୟ ଯଥାରୀତି ଉଲ୍ଲିଖିତ । ସେ ସବୁର କିଞ୍ଚିତ୍ ଆଭାସ ଏଠାରେ ପ୍ରଦତ୍ତ ।

ଦୂତ—ବିଶ୍ୱନାଥଙ୍କ ମତରେ ଦୂତ ତିନି ପ୍ରକାର; ଯଥା—(୧)ନିସୃଷ୍ଟାର୍ଥ (ନାୟକ ନାୟିକାଙ୍କ ମନ ଜାଣି ଯେ କାର୍ଯ୍ୟ ସାଧନ କରେ) (୨) ମିତାର୍ଥ ଅଳ୍ପ କଥା କହି ଯିଏ କାର୍ଯ୍ୟ ହାସଲ କରି ପାରେ) (୩) ସନ୍ଦେଶ ହାରକ (ଯେତିକି କୁହାଯାଇଥାଏ, ଯିଏ ସେତିକି ମାତ୍ର ପ୍ରକାଶ କରେ) ।[୧୫୪]

ଦୂତୀ—'ସାହିତ୍ୟ ଦର୍ପଣ'ରେ ପୂର୍ବୋକ୍ତ ଦୂତ ଭେଦ ଅନୁସାରୀ ଦୂତୀମାନଙ୍କ ତ୍ରିବିଧ ଭେଦ ଉଲ୍ଲିଖିତ ।[୧୫୬] ଏତଦ୍‌ଭିନ୍ନ ନିମ୍ନୋକ୍ତ ଶ୍ରେଣୀର ନାରୀଗଣ ଦୂତୀ ରୂପେ କାର୍ଯ୍ୟ କରିଥାନ୍ତି; ଯଥା— ସଖୀ, ନଟୀ, ଦାସୀ, ଧାତ୍ରେୟୀ, ପ୍ରତିବେଶିନୀ, ବାଳିକା, ପ୍ରବ୍ରଜିତା (ସନ୍ନ୍ୟାସିନୀ), ରଜକିନୀ, ଶିଳ୍ପିନୀ, ସ୍ୱୟଂଦୂତୀ । ତାମ୍ବୁଳିକ ଓ ଗାନ୍ଧିକର ସ୍ତ୍ରୀ ମଧ୍ୟ ଏହି ପର୍ଯ୍ୟାୟଭୁକ୍ତ ।[୧୫୭]

'ଉଜ୍ଜଳ ନୀଳମଣି'କାରଙ୍କ ମତରେ—ଦୂତୀ ସାଧାରଣତଃ ଦୁଇ ପ୍ରକାର । ସ୍ୱୟଂ ଦୂତୀ ।[୧୫୮] (କ) (ଅନୁରାଗ ଆତିଶଯ୍ୟରୁ ଯିଏ ସ୍ୱୟଂ ପ୍ରିୟତମ ନିକଟରେ ଉପସ୍ଥିତ ହୁଏ) ଓ ଆପ୍ତଦୂତୀ ୧୫୮(ଖ)(ଯିଏ ପ୍ରାଣ ଗଲେ ସୁଦ୍ଧା ବିଶ୍ୱାସ ଭଙ୍ଗ କରେ ନାହିଁ, ଅତିଶୟ ସ୍ନେହବତୀ ଏବଂ ବାକ୍ୟ ପ୍ରୟୋଗ ନିପୁଣା) । ଆପ୍ତଦୂତୀ ପୁଣି ତିନି ଭାଗରେ ବର୍ଗୀକୃତ; ଯଥା— ୧) ଅମିତାର୍ଥା (ନାୟକ ନାୟିକା ଦୁହିଙ୍କ ମଧ୍ୟରୁ ଜଣକର ଇଂଗିତ ଦ୍ୱାରା ଅଭିପ୍ରାୟ ଅବଗତ ହୋଇ ଯିଏ ଦୁହିଙ୍କର ମିଳନ ଉପାୟ ସ୍ଥିର କରେ ।) (୨) ନିସୃଷ୍ଟାର୍ଥା (ନାୟକ ନାୟିକାଙ୍କ ମଧ୍ୟରୁ ଜଣକର କାର୍ଯ୍ୟଭାର ଗ୍ରହଣ କରି ଯିଏ ଯୁକ୍ତି ବଳରେ ଦୁହିଙ୍କର ମିଳନ କରାଏ ।) (୩) ପତ୍ରହାରୀ (ଯିଏ ନାୟକ ବା ନାୟିକାର ସନ୍ଦେଶ ପତ୍ର ବହନ କରେ ।)

ଉଲ୍ଲିଖିତ ଆପ୍ତଦୂତୀମାନଙ୍କ ମଧ୍ୟରେ ଶିଳ୍ପକାରିଣୀ, ଦୈବଜ୍ଞା, ଲିଙ୍ଗିନୀ, ପରିଚାରିକା, ଧାତ୍ରେୟୀ, ବନଦେବୀ ଏବଂ ସଖୀ—ଏହିପରି ବିବିଧ ଭେଦ ଦେଖାଯାଏ । ୧୫୮(ଗ)

ନାୟକ ବା ନାୟିକାର ଚିତ୍ରପଟ ଧାରଣ କରି ଦୂତର ଦେଶାନ୍ତର ଭ୍ରମଣ ଏବଂ ସେମାନଙ୍କ ବିବାହ ନିମନ୍ତେ ପାତ୍ର ବା ପାତ୍ରୀ ସନ୍ଧାନାଦି ବିବିଧ କାର୍ଯ୍ୟ ଓଡ଼ିଆ ରୀତି କାବ୍ୟରେ ବହୁଳ ଉଲ୍ଲିଖିତ । ସେହିପରି ପ୍ରଣୟ ସନ୍ଦେଶ/ଚିଟାଉର ଆଦାନ ପ୍ରଦାନ, ମିଳନର ଉପାୟ, ବିରହୋପଚାର ଆୟୋଜନ ଇତ୍ୟାଦି ପ୍ରସଙ୍ଗରେ ଦୂତୀର ଗୁରୁତ୍ୱପୂର୍ଣ୍ଣ ଭୂମିକା ପ୍ରତି ଆମ କାବ୍ୟ ପରଂପରା ସାଦର ସ୍ୱୀକୃତି ଜଣାଇଅଛି ।

## ଅନ୍ୟାନ୍ୟ-

ରସାଭାସ–'ସାହିତ୍ୟ ଦର୍ପଣ'କାରଙ୍କ ମତରେ ରସ ଅନୁଚିତ ରୀତିରେ ପ୍ରଯୁକ୍ତ ହେଲେ ତାହାକୁ ରସାଭାସ କୁହାଯାଏ ।[୧୬୯] ପ୍ରାଚୀନ ଆଳଂକାରିକ ରୀତି ନୀତି ଅନୁସରଣ ନକରି କେବଳ ରତ୍ୟାଦି ସ୍ଥାୟୀଭାବରେ ବର୍ଣ୍ଣନା କଲେ ସେଠାରେ ରସର ପ୍ରକୃତ ସ୍ୱରୂପ ପ୍ରକାଶ ପାଏ ନାହିଁ; ତାହା କେବଳ ଆଭାସ ହୁଏ; ଯଥା–ଋଷିପତ୍ନୀ ବା ଗୁରୁପତ୍ନୀଙ୍କ ଠାରେ ପ୍ରୀତି, ବିବାହିତ ବା ବିବାହିତାର ଅନ୍ୟଠାରେ ପ୍ରୀତି, ନାୟିକାର ବହୁନାୟକପ୍ରୀତି ଅଥବା ନାୟକର ବହୁ ନାୟିକା ପ୍ରୀତି ତଥା ଅଧମ ଜାତି ବିଷୟକ କିମ୍ବା ପଶୁ-ପକ୍ଷୀଗତ ଶୃଙ୍ଗାର ଇତ୍ୟାଦି ।

ରସୌଚିତ୍ୟ–ଆଚାର୍ଯ୍ୟ କ୍ଷେମେନ୍ଦ୍ର ତାଙ୍କର 'ଔଚିତ୍ୟ ବିଚାର ଚର୍ଚ୍ଚା' ଗ୍ରନ୍ଥରେ ଔଚିତ୍ୟର ନାନାବିଧ ରୂପ ଦର୍ଶାଇବାକୁ ଯାଇ ରସୌଚିତ୍ୟ ବିଷୟ ଉଲ୍ଲେଖ କରିଛନ୍ତି । ତାଙ୍କ ମତରେ-ମଧୁମାସ ଯେପରି ଅଶୋକ ତରୁକୁ ଅଙ୍କୁରିତ କରେ ସେହିପରି ରସଗତ ଔଚିତ୍ୟ ସହୃଦୟର ହୃଦୟକୁ ଆମୋଦିତ କରିଥାଏ ।[୧୭୦]

ରସଦୋଷ–ରସର ନିବିଡ଼ ଉପଲବ୍ଧି ନିମିତ୍ତ କାବ୍ୟ ନିମ୍ନଲିଖିତ ତେରଗୋଟି ଦୋଷରୁ ମୁକ୍ତ ରହିବା ଉଚିତ୍ (୧) ରସର ସ୍ୱଶବ୍ଦ ବାଚ୍ୟତା, (୨) ସ୍ଥାୟୀ ଭାବର ସ୍ୱଶବ୍ଦ ବାଚ୍ୟତା, (୩) ବ୍ୟଭିଚାରୀ ଭାବର ସ୍ୱଶବ୍ଦ

ବାଚ୍ୟତା (୪) ପ୍ରକୃତ ରସର ବିରୋଧୀ ଭାବ ଗ୍ରହଣ (୫) ଅନୁଭାବର କଷ୍ଟ କଳ୍ପନା (୬) ବିଭାବର କଷ୍ଟ କଳ୍ପନା (୭) ଅକାଣ୍ଡ (ଅସ୍ଥାନ)ରେ ରସର ବିସ୍ତାର (୮) ଅକାଣ୍ଡରେ ରସର ଛେଦ (୯) ପୁନଃ ପୁନଃ ରସଦୀପ୍ତି (୧୦) ଅଙ୍ଗୀରସର ଅନନୁସଂଧାନ (୧୧) ଅନୁପକାରକ ରସର ବିସ୍ତୃତ ବର୍ଣ୍ଣନ, (୧୨) ଅଙ୍ଗଭୂତ ରସଭାବାଦିର ଅତିବିସ୍ତାର (୧୩) ପ୍ରକୃତି ବିପର୍ଯ୍ୟୟ, (୧୪) ଅର୍ଥାନୌଚିତ୍ୟ । ଏତଦ୍‌ଭିନ୍ନ ଅନ୍ୟାନ୍ୟ ଦୋଷ (ପଦ, ବାକ୍ୟ, ବାକ୍ୟାଂଶ ଇତ୍ୟାଦି) ମଧ୍ୟ ରସର ଅପକର୍ଷ ବିଧାୟକ ।[୧୬୧]

ଓଡ଼ିଆ ରୀତି କାବ୍ୟରେ ଏସବୁର ବହୁଳ ଦୃଷ୍ଟାନ୍ତ ପରିଲକ୍ଷିତ । ସ୍ପଷ୍ଟ ଆଳଂକାରିକ ନିର୍ଦ୍ଦେଶ ସତ୍ତ୍ୱେ ଆମର କବିଗଣ ଏଥିପ୍ରତି ଯଥାର୍ଥ ଧ୍ୟାନ ଦେଇଥିବା ମନେହୁଏ ନାହିଁ ।



# ଶୃଙ୍ଗାର ଓ ଧର୍ମଭାବନା

ପୃଥିବୀର ସକଳ ଦେଶୀୟ ଧର୍ମଭାବନା ମଧ୍ୟରେ ଶୃଙ୍ଗାର ବା କାମ ଚେତନା ଯେ ଏକାନ୍ତ ଗୋପନୀୟ ବର୍ତ୍ତମାନ ଏକଥା ହୁଏତ କେହି ସହଜରେ ବିଶ୍ୱାସ କରିପାରିବ ନାହିଁ । ବିଦ୍ୱାନ୍‌ମାନଙ୍କ ମତରେ ହିନ୍ଦୁମାନଙ୍କର ଶିବ ଉପାସନା ବା ଲିଙ୍ଗ ଯୋନି ପୂଜାରେ ସୃଷ୍ଟିତତ୍ତ୍ୱର ଆଦିମ ପରିକଳ୍ପନା ନିହିତ । ନରନାରୀର ମିଳନର ପ୍ରତୀକ ରୂପେ ଏହା ଅତି ଜନପ୍ରିୟ ଧାର୍ମିକ ମୂର୍ତ୍ତିତତ୍ତ୍ୱ (Popular religious iconoqraphy)ର ଭୂମିକା ଗ୍ରହଣ କରି ଆସିଛି । ହରପ୍ପା ସଭ୍ୟତା (ଖ୍ରୀ.ପୂ. ୩୦୦୦ ବର୍ଷ) ଏହି ଉପାସନାର ପ୍ରାଚୀନତମ ସାକ୍ଷ୍ୟ ବହନ କରେ ।[୧୬୨] ପୁରାଣ ପ୍ରସିଦ୍ଧ ଅର୍ଦ୍ଧନାରୀଶ୍ୱର କଳ୍ପନା ମଧ୍ୟ ଏହି ଧାର୍ମିକ ବିଶ୍ୱାସର ଅନ୍ୟତମ ପରିଚୟ ।

ଉପନିଷଦମାନଙ୍କରେ ପୁରୁଷ ନାରୀର ରତିଲୀଳାକୁ ଅତି ପବିତ୍ର କର୍ମ ରୂପେ ସ୍ୱୀକାର କରାଯାଇଛି । ଛାନ୍ଦୋଗ୍ୟ ଉପନିଷଦର କେତୋଟି ପ୍ରସିଦ୍ଧ ମନ୍ତ୍ରରେ ରତିକ୍ରିୟାର ବିଭିନ୍ନ ଅବସ୍ଥା ତାର୍କିକତାର ସହ ବର୍ଣ୍ଣିତ । ଏହି ମନ୍ତ୍ର ସାଧନା କଲେ ଯେ କୌଣସି ବ୍ୟକ୍ତି ଧନଶାଳୀ ଓ ଯଶସ୍ୱୀ ହୋଇପାରିବ ବୋଲି ସେଥିରେ କୁହାଯାଇଛି ।[୧୬୩]

ବୃହଦାରଣ୍ୟକ ଉପନିଷଦର ଏକ ପ୍ରସିଦ୍ଧ ଓ ପବିତ୍ର ଶ୍ଳୋକରେ ନାରୀକୁ ଅଗ୍ନି ଓ ବୀର୍ଯ୍ୟକ୍ଷରଣକୁ ଆହୁତି ସହିତ ତୁଳନା କରାଯାଇଛି ।[୧୬୪]

ଏଥିରୁ ଜଣାଯାଏ ଯେ ଲିଙ୍ଗ ଓ ଯୋନିର ମିଳନ କେବଳ ପ୍ରଜନନ ନିମିତ୍ତ ଉଦ୍ଦିଷ୍ଟ ନୁହେଁ । ଏଥି ସହିତ ମଣିଷର ସୁଖ; ଶାନ୍ତି, ଧନ ଓ ଯଶ ମଧ୍ୟ ଜଡ଼ିତ । ସୁତରାଂ ଶୃଙ୍ଗାର ସହିତ ଧର୍ମର ନିବିଡ଼ ସମାନ୍ତରାଳ ସଂପର୍କ ଭାରତୀୟ ପ୍ରଜ୍ଞା ରାଜ୍ୟରେ କିପରି ସୁଚିନ୍ତିତ ରୂପ ଲାଭ କରିଅଛି, ତାହା ଭାବିଲେ ବିସ୍ମିତ ହେବାକୁ ପଡ଼େ ।

ପୃଥିବୀର ବହୁ ସ୍ଥାନରେ ଲିଙ୍ଗ ଓ ଯୋନି ଉପାସନା ଅଦ୍ୟାବଧି ଅତ୍ୟନ୍ତ ଲୋକପ୍ରିୟ ରହିଥିବାର ଦେଖାଯାଏ । ନେପାଳର ଗୁହ୍ୟେଶ୍ୱରୀ (ଭଗାଖ୍ୟା) ଓ ଆସାମର କାମାଖ୍ୟା ପ୍ରସିଦ୍ଧ ଯୋନିପୀଠ ରୂପେ ସର୍ବତ୍ର ପରିଚିତ । ଗ୍ରୀସର ଦେବୀ ଆର୍ଟେମିସ୍ ବହୁ ଉରଜ ବିଶିଷ୍ଟ । ସେଠାରେ ଭକ୍ତଗଣ ଏହାକୁ ଗଭୀର ଶ୍ରଦ୍ଧା ଓ ଭକ୍ତି କରନ୍ତି । ଏହାଛଡ଼ା ପୁଂ-ଜନନେନ୍ଦ୍ରିୟକୁ ବହୁ ବିଶାଳ ଆକାରରେ ନିର୍ମାଣ କରି ସେମାନେ ତାହାର ପୂଜା ଅର୍ଚ୍ଚନା ମଧ୍ୟ କରିଥାନ୍ତି । ରୋମର ପ୍ରିୟାପସ୍, ପ୍ରାଚୀନ ଟିଉଟନିକଙ୍କର ଫ୍ରେ (Frey), ନ୍ୟାସା ଦ୍ୱୀପର ଅଧିବାସୀଙ୍କ ଏଡୁ (Adu), ପଶ୍ଚିମ ଆଫ୍ରିକାସ୍ଥ ସେଭ୍‌କୋଷ୍ଟର ଲେଗ୍‌ବା (Legba) ପ୍ରଭୃତି ଲିଙ୍ଗ ପୂଜାର ପ୍ରତୀକ ଛଡ଼ା ଅନ୍ୟକିଛି ନୁହେଁ ।[୧୬୫]

କେତେକ ଦେଶରେ ସ୍ତ୍ରୀ ଜନନେନ୍ଦ୍ରିୟର ପୂଜା ମଧ୍ୟ ପ୍ରଚଳିତ । ଦେବଦେବୀ ରୂପେ ମନ୍ଦିର ମଧ୍ୟରେ ବା ମନ୍ଦିର ଗାତ୍ରରେ ନିୟମିତ ଭାବେ ଏହାର ପୂଜା ଉପାସନା କରାଯାଏ । ଫ୍ରାନସର କେତେକ ସ୍ଥାନରେ ଓ କଂଗୋ ଉପତ୍ୟକାର ଷ୍ଟାନଲିପୋଲ ନିକଟରେ ଏହି ଜାତୀୟ ମୂର୍ତ୍ତି ସବୁ ଝୁଲି ହୋଇ ପୂଜା ହେଉଥିବାର ଦେଖିବାକୁ ମିଳେ । ଯାତ୍ରାମାନଙ୍କରେ ଏ ମୂର୍ତ୍ତିଗୁଡ଼ିକର କିଣା ବିକା ମଧ୍ୟ ହୁଏ ।[୧୬୬]

ଭାରତର ଦେବଦାସୀ ପ୍ରଥା ପରି ବହୁ ଦେଶର ମନ୍ଦିରମାନଙ୍କରେ ସେବିକା ନିଯୁକ୍ତିର ପରମ୍ପରା ଦେଖିବାକୁ ମିଳେ । ଏ ପ୍ରକାର ଧାର୍ମିକ ଆବରଣ ତଳେ ଅନେକ କ୍ଷେତ୍ରରେ ଅବାଧ ଗଣିକା ବୃତ୍ତି ମୁଖ୍ୟ ସ୍ଥାନ ଅଧିକାର କରିଥାଏ । ପ୍ରାଚୀନ ଗ୍ରୀସ, ଫୋନେସିଆ, ସିରିଆ, ଏସିଆ ମାଇନରର ମନ୍ଦିରମାନଙ୍କରେ ହଜାର ହଜାର ଦେବଦାସୀ ନିଯୁକ୍ତ ଥିବାର ପ୍ରମାଣ ମିଳେ । ଦେବ ଦେବୀଙ୍କ ସେବାପୂଜା ବ୍ୟତୀତ ସେମାନେ ନୃତ୍ୟ ସଂଗୀତାଦି ପରିବେଷଣ କରୁଥିଲେ । ସେମାନଙ୍କ ଆୟ ମନ୍ଦିରର ଧନ ଭଣ୍ଡାରରେ ଠୁଳ ହେଉଥିଲା । ଆନାଇଟିସ୍ ମନ୍ଦିରର ବହୁ ଦେବଦାସୀ ଅର୍ଥ ବିନିମୟରେ ଦେହ ଦାନ କରୁଥିଲେ ବୋଲି ଷ୍ଟ୍ରାବୋ ବର୍ଣ୍ଣନା କରିଯାଇଛନ୍ତି ।[୧୬୭]

କେତେକ ଦେଶର ପରଂପରାରେ ଦେବଦାସୀମାନେ ଜୀବନ କାଳରେ ଅନ୍ତତଃ ଥରେ ହେଲେ ମଧ୍ୟ ଗଣିକା ବୃତ୍ତି କରିବାକୁ ବାଧ୍ୟ ହେଉଥିଲେ । ହେରୋଡ୍‌ଟାସ୍‌ଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ ବେବିଲୋନୀୟ ପ୍ରଥାନୁସାରେ ସ୍ତ୍ରୀମାନଙ୍କୁ ମିଲିଟାର ପବିତ୍ର ପୀଠରେ କୌଣସି ଏକ ଅଜ୍ଞାତ ବ୍ୟକ୍ତିକୁ ଅର୍ଥ ବିନିମୟରେ ଦେହଦାନ କରିବାକୁ ପଡୁଥିଲା ।[୧୬୮] ସୁନ୍ଦରୀ ସ୍ତ୍ରୀମାନଙ୍କ ପକ୍ଷରେ ଜଣେ ଏପରି ଗ୍ରାହକ ପାଇବା ବିଶେଷ ଅସୁବିଧା-ଜନକ ନଥିଲା । କିନ୍ତୁ ଅଳ୍ପ ସୁନ୍ଦରୀ ବା ଅସୁନ୍ଦରୀ ସ୍ତ୍ରୀକୁ ଏଥିପାଇଁ ଦୀର୍ଘଦିନ ଅପେକ୍ଷା କରିବାକୁ ପଡୁଥିଲା । ସବୁଠାରୁ ଦୁଃଖର କଥା ଏହି ଯେ ସ୍ତ୍ରୀ ପକ୍ଷରେ ପୁରୁଷକୁ ପ୍ରତ୍ୟାଖ୍ୟାନ କରିବା କିମ୍ବା ଅଯୋଗ୍ୟା ହୋଇ ଘରକୁ ଫେରିବା ତାହାର ଅଧିକାର ବହିର୍ଭୂତ ଥିଲା ।

ଗ୍ରୀକ୍‌ଦେବୀ ଆଫ୍ରୋଡ଼ାଇଟ୍‌ଙ୍କ ସମ୍ପର୍କରେ ଷ୍ଟ୍ରାବୋ କହନ୍ତି ଯେ ଏହି ମନ୍ଦିରରେ ଏକ ହଜାରରୁ ଊର୍ଦ୍ଧ୍ୱ ଦେବଦାସୀ ନିଯୁକ୍ତ ଥିଲେ ଏବଂ ଏହି ପୀଠ ଗଣିକାବୃତ୍ତିର ଏକ ପ୍ରଧାନ କେନ୍ଦ୍ର ଥିଲା ।[୧୬୯] ସୁତରାଂ ସହରକୁ ଅଜସ୍ର ପର୍ଯ୍ୟଟକ ଓ ଧନର ସୁଅ ଛୁଟୁଥିଲା । ସୁନ୍ଦରୀ ଦେବଦାସୀମାନେ ପ୍ରଚୁର ଅର୍ଥଦାବୀ କରୁଥିବାରୁ ବିଶେଷତଃ ନାବିକମାନେ ଏଠାକୁ ଆସି ସର୍ବସ୍ୱାନ୍ତ ହୋଇଯାଉଥିଲେ । "They ruined themselves because the fees charged by the famous prostitutes were particularly high."[୧୭୦] ଏପରି ଗଣିକାବୃତ୍ତି ଓ ନୈତିକତା ମଧ୍ୟରେ କୌଣସି ପ୍ରକାର ବିଭେଦ ନଥିଲା । ପ୍ରେମ ପ୍ରାର୍ଥୀ ହେଉଥିବା ପୁରୁଷମାନେ ଦେବୀ ଆଫ୍ରୋଡ଼ାଇଟ୍‌ଙ୍କ ଉପହାର ରୂପେ ପରିଗଣିତ ହେଉଥିଲେ ।

ଖ୍ରୀଷ୍ଟିୟାନମାନଙ୍କ ଧର୍ମଗ୍ରନ୍ଥ ବାଇବେଲର ଅନେକ ସ୍ଥଳରେ ନିଛକ ଶୃଙ୍ଗାରିକତାର ଚିତ୍ର ଦେଖିବାକୁ ମିଳେ । ଧର୍ମଗୁରୁମାନେ ତାହାର ବ୍ୟାଖ୍ୟା ଯେଉଁପରି ଭାବରେ କରନ୍ତୁ ନା କାହିଁକି ସେ ସବୁରେ ମଣିଷର ବାସ୍ତବ ଜୀବନ ଯେ ସଫଳତାର ସହିତ ରୂପାୟିତ, ଏହା ନିଃସନ୍ଦେହ । ଓଲଡ ଟେଷ୍ଟାମେଣ୍ଟ୍ (Old Testament) ରେ ବର୍ଣ୍ଣିତ ଅଛି ଯେ ଈଶ୍ୱର ପୁରୁଷ

ଓ ସ୍ତ୍ରୀ ସୃଷ୍ଟି ପରେ  ସେମାନଙ୍କୁ ମିଳିତ  ହେବା ଏବଂ ବଂଶ ବୃଦ୍ଧି କରିବା ନିମିତ୍ତ ଆଶୀର୍ବାଦ କରିଥିଲେ । "So God created man in his own image, in the image of God created he him; male and female created he them. And God blessed them, and God said unto them be fruitful and multiply, and replenish the earth."[୧୭୧] ଏହାଠାରୁ ବଳି ନାରୀ ପୁରୁଷର ମିଳନ ସମ୍ପର୍କୀତ ସରଳ ଓ ସୁନ୍ଦର ବ୍ୟାଖ୍ୟା ଆଉ କ'ଣ ଥାଇପାରେ ।

ଜେନେସିସ୍ (Genesis)ର ଦ୍ୱିତୀୟ ଅଧ୍ୟାୟରେ କୁହାଯାଇଛି ଯେ ଈଶ୍ୱର ପୁରୁଷର ପଞ୍ଜରା ହାଡ଼ରୁ ନାରୀ ସୃଷ୍ଟି କଲେ ଏବଂ ତାକୁ ଆଦାମ ନିକଟକୁ ଆଣିଲେ । ଆଦାମ ଘୋଷଣା କଲା–'This is now bone of my bones and flesh of my flesh: she shall be called woman because she was taken out of man. Therefore shall a man leave his father and his mother and shall cleave unto his wife and they shall be one flesh."[୧୭୨] ପୃଥିବୀର କୌଣସି ପାପ ବା କୌଣସି ନିଷେଧ ସେତେବେଳେ ଏହି ଅଭିବ୍ୟକ୍ତିକୁ ସ୍ପର୍ଶ କରିନାହିଁ । ଏହାହିଁ ହେଉଛି ମଣିଷର ଆଦିମ କାମ ବାସନାର ଅନାବିଳ ଓ ପୁଷ୍ଟଳ ରୂପ ।

ଯୌନ ପ୍ରବୃତ୍ତିର ତାଡ଼ନା କିପରି ପ୍ରବଳ, ଓଲଡ୍ ଟେଷ୍ଟାମେଣ୍ଟ (Old Testament)ର ସ୍ଥଳ ବିଶେଷରେ ତାହା ନିଷ୍କପଟ ଅଭିବ୍ୟକ୍ତି ଲାଭ କରିଅଛି । ଗୋଟିଏ ସ୍ଥାନରେ ସନ୍ତାନ ଅଭିଳାଷିଣୀ ବନ୍ଧ୍ୟା ରଚେଲ ତାହାର ସ୍ୱାମୀକୁ କହିଛି– "Give me children or else I die".[୧୭୩] ଆଉ ଏକ କାହାଣୀରେ ପରିବାର ଓ ନଗର ରକ୍ଷା ନିମନ୍ତେ ଲଟ୍ (Lot) ଶତ୍ରୁମାନଙ୍କ ହାତରେ ନିଜର ଦୁଇ କନ୍ୟାକୁ ଅର୍ପଣ କରିବା ଏବଂ ସେଇ କନ୍ୟାଗଣ ବଂଶରକ୍ଷା ଲାଗି ଏକଦା ନିଜର ପିତାଙ୍କୁ ମଦ୍ୟପାନ କରାଇ ତାଙ୍କ ସହ ଅବୈଧ ପ୍ରଣୟରେ ଲିପ୍ତ ହେବା ବିଷୟ ବର୍ଣ୍ଣିତ ।[୧୭୪] ଅନ୍ୟ ଏକ ସ୍ଥଳରେ ଓନାନ୍ (Onan) ତାଙ୍କର

ମୃତ ଭାଇର ସ୍ତ୍ରୀ ସହ ସହବାସ ବେଳେ ଜ୍ଞାତସାରରେ ବୀର୍ଯ୍ୟକୁ ଭୂପତିତ କରାଇ ଈଶ୍ୱରଙ୍କ ଆଜ୍ଞା ଅବଜ୍ଞା କରିଥିବା ଏବଂ ସେଇ ଅପରାଧରେ ସେ ମୃତ୍ୟୁଦଣ୍ଡର ସମ୍ମୁଖୀନ ହୋଇଥିବା ଉଲ୍ଲିଖିତ । [୭୫] ଏହାର ଅନ୍ତରାଳରେ ଥିବା ସରଳ କଥାଟି ହେଉଛି—ନାରୀର ସନ୍ତାନ କାମନା ପରିତୃପ୍ତ କରିବା ପୁରୁଷର ଧର୍ମ । ଏଥିରେ ନୀତି ଅନୀତିର ପ୍ରଶ୍ନ ଉଠି ନପାରେ । ଏହିପରି ବାଇବେଲର ଅନେକ କାହାଣୀରେ ମଣିଷର ଶୃଙ୍ଗାର ଜୀବନ କିପରି ଧର୍ମର ସହଜ ସମର୍ଥନ ଲାଭ କରିଅଛି, ଆମେ ତାହାର ଲକ୍ଷ୍ୟ କରି ପାରିବା । ଏଥିରେ କେବଳ ନାରୀ ପୁରୁଷର ସ୍ୱର୍ଗଭୋଗ ନୁହେଁ, ସନ୍ତାନ କାମନା, ବଂଶରକ୍ଷା, ଗୌରବବୃଦ୍ଧି ଭଳି ବହୁ ବିଷୟ ନିହିତ ଥିବାର ଦେଖାଯାଏ ।

ପୃଥିବୀର ବହୁଦେଶରେ ନାରୀକୁ ଗୁପ୍ତ ସାଧନାର ସଙ୍ଗିନୀ ରୂପେ ଗ୍ରହଣ କରି ବହୁ ଧର୍ମ ସମ୍ପ୍ରଦାୟ ଗଢ଼ି ଉଠିଛି । ଭାରତବର୍ଷର ବୌଦ୍ଧ ସହଜ ସାଧନା, ବାମାଚାର, କିଶୋରୀଭଜନ କିମ୍ବା ତନ୍ତ୍ର ସାଧନା ଭଳି ବହୁ ଧାର୍ମିକ ପଦ୍ଧତିରେ ଏହି ପ୍ରଥା ପ୍ରଚଳିତ । ପାର୍ଥିବ କାମ ବାସନାକୁ ଅପାର୍ଥିବ ଲକ୍ଷ୍ୟପ୍ରାପ୍ତି ଉଦ୍ଦେଶ୍ୟରେ ମାର୍ଗିତ କରିବା ଏହାର ଲକ୍ଷ୍ୟ । ଅଧିକାଂଶ ସାଧନ ପଦ୍ଧତିରେ ଷୋଡ଼ଶୀ କନ୍ୟାକୁ ନାନା ଉପଚାର ଓ ପୂଜା ବିଧି ଅନୁସରଣପୂର୍ବକ ରମଣ କରିବା ଶାସ୍ତ୍ର ସ୍ୱୀକୃତି ଲାଭ କରିଅଛି । "The master accepts the offering and has intercourse with her in a ceremony which is known as the 'assembly' "[୭୬] ନେପାଳର ଇନ୍ଦ୍ରଯାତ୍ରା ଉତ୍ସବରେ ଏହି ଜାତୀୟ ଷୋଡଶୀ ପୂଜା ପ୍ରଥା ପ୍ରଚଳିତ ।

ତନ୍ତ୍ର ଗ୍ରନ୍ଥମାନଙ୍କରେ କୁମାରୀ ଓ ନାରୀ ସାଧନାର ବିସ୍ତୃତ ବିବରଣୀମାନ ଦେଖିବାକୁ ମିଳେ । ପୁଣ୍ୟାନନ୍ଦଙ୍କ ପ୍ରଣୀତ 'କାମକଳା ବିଳାସ' ଗ୍ରନ୍ଥରେ କାମକଳାର ଯେଉଁ ବ୍ୟାଖ୍ୟା ଦିଆଯାଇଛି ତାହାର ଅର୍ଥ ଅତୀବ ଗୁହ୍ୟ ଏବଂ ରହସ୍ୟାତ୍ମକ । "ଆଦି ସୃଷ୍ଟିର କାରଣ ଶିବ ଓ ଶକ୍ତି—ଦୁଇଟି ବିନ୍ଦୁ ସ୍ୱରୂପ । ପ୍ରଥମଟି ଶ୍ୱେତବର୍ଣ୍ଣ ଓ ଦ୍ୱିତୀୟଟି ରକ୍ତବର୍ଣ୍ଣ । ଶିବ ବିନ୍ଦୁ ସହିତ ଯେତେବେଳେ ଶକ୍ତି ବିନ୍ଦୁର ସଂଯୋଗ ହୁଏ, ତାହାକୁ

କାମ କୁହାଯାଏ । × × × ଏହି କାମକଳା ବିଦ୍ୟା ଅବଗତ ହେଲେ ତ୍ରିପୁରସୁନ୍ଦରୀତ୍ୱ ପ୍ରାପ୍ତ ହୁଏ ।" [୧୭୭] ଧାର୍ମିକ ଆଡ଼ମ୍ବର ସତ୍ତ୍ୱେ ଏଥିରେ ମୈଥୁନ ତତ୍ତ୍ୱର ସ୍ୱଷ୍ଟତା ଲକ୍ଷ୍ୟ କରାଯାଇଥାଏ ।

ତନ୍ତ୍ର ସାଧନାରେ ପଞ୍ଚମକାରର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । 'ମହାନିର୍ବାଣ ତନ୍ତ୍ର'ରେ ଏହାର ମହିମା ଉଦ୍‌ଘୋଷିତ । ମଦ୍ୟପାନ କଲେ ଅଷ୍ଟଐଶ୍ୱର୍ଯ୍ୟ ଓ ପରମମୋକ୍ଷ, ମାଂସ ଭକ୍ଷଣ ମାତ୍ରେ ସାକ୍ଷାତ୍ ନାରାୟଣତ୍ୱ, ମତ୍ସ୍ୟ ଭକ୍ଷଣ ମାତ୍ରେ କାଳିକା ଦର୍ଶନ, ମୁଦ୍ରା ସେବନରେ ବିଷ୍ଣୁତ୍ୱ ଏବଂ ମୈଥୁନ ଦ୍ୱାରା ଶିବତ୍ୱ ପ୍ରାପ୍ତି ହୋଇଥାଏ । [୧୭୮]

ପଞ୍ଚମକାରରେ ଭୈରବେଶ୍ୱରୀଙ୍କର ଯେଉଁ ପୂଜା କରାଯାଏ ସେଥିରୁ କୋଟିକନ୍ୟାଦାନ ତଥା ଭୂମି ଓ ସୁବର୍ଣ୍ଣଦାନର ପୁଣ୍ୟ ମିଳେ । ଚଣ୍ଡାଳୀ, ଚର୍ମକାରୀ, ମାତଙ୍ଗୀ, ମତ୍ସ୍ୟକାରିଣୀ, ମଦ୍ୟକର୍ତ୍ତ୍ରୀ, ରଜକୀ, ଯୌରକୀ ଓ ଧନବଲ୍ଲଭ– ଏହି ଆଠ କୁଳ ଯୋଗିନୀ ଉପାସନାରେ ଅଂଶ ଗ୍ରହଣ କରନ୍ତି । ଏମାନେ ହିଁ ସକଳ ସିଦ୍ଧିଦାନକାରିଣୀ । [୧୭୯]

କୌଳିକମାନଙ୍କ ମତରେ ସମାଜର ସବୁ ଶ୍ରେଣୀର ନାୟିକା ସେମାନଙ୍କର ପୂଜନୀୟା । ମାତା, ଭଗିନୀ; ପୁତ୍ରବଧୂ , ଦୁହିତା, ବୀରପତ୍ନୀ, ଗୁରୁପତ୍ନୀ ଏମାନଙ୍କୁ ରାଜଚକ୍ରରେ ପୂଜା କରାଯାଏ । କୌଣସି କୁ ଅଭିପ୍ରାୟ ରଖି ସାଧକ ସେମାନଙ୍କର ଅଂଗ ସ୍ପର୍ଶ କଲେ ତାକୁ ନର୍କଗାମୀ ହେବାକୁ ପଡ଼େ । ନଟୀ, କାପାଳିକା, ବେଶ୍ୟା, ରଜକୀ, ନାପିତାଣୀ, ଯୋଗିନୀ; ଚଣ୍ଡାଳୀ, ଶୁଣ୍ଢୀନୀ, ରାଜକନ୍ୟା, ଗୋପିନୀ ମାଳିନୀ-ସମସ୍ତେ ସେମାନଙ୍କ ଉପାସନାରେ ଅଂଶ ଗ୍ରହଣ କରିପାରିବେ । [୧୮୦]

ଜଗନ୍ନାଥ ଧର୍ମରେ ମଧ୍ୟ କାମ-ଉପାସନାର ପ୍ରଭବ ଲକ୍ଷ୍ୟ କରାଯାଇ ଥାଏ । ପଞ୍ଚମକାର ପୂଜାବିଧିରେ ଏହା ପ୍ରତିଫଳିତ ହୋଇଥିବା କଥା ଡକ୍‌ଟର କାହ୍ନୁଚରଣ ମିଶ୍ର ତାଙ୍କର 'ଦି କଲ୍‌ଟ ଅଫ୍ ଜଗନ୍ନାଥ' (The Cult of Jagannath ) ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି । "The fifth, i e Maithuna which consists of peculiar kind

of dancing by Devadasis (Utkachnrutya). But according to some this maithuna aspect is represented by the Aparajita flower. This flower is concieved as yoni."[୪୮୫] ଡକ୍ଟର ଗୟା ଚରଣ ତ୍ରିପାଠୀ ମଧ୍ୟ ତାଙ୍କର ଆଲୋଚନାରେ ଦର୍ଶାଇଛନ୍ତି ଯେ ଶ୍ରୀଜଗନ୍ନାଥ ମନ୍ଦିରରେ ଭୁବନେଶ୍ୱରୀ ବା ସୁଭଦ୍ରାଙ୍କ ପୂଜା ସହିତ କାମ ପୂଜାର ଅନେକ ସାମ୍ୟ ରହିଅଛି । ସେ କହନ୍ତି—In my opinion the term Jagannatha was used for the erotic-tantric form of Vishnu-Purusottama because this word has had a long association with the Tantrism and esoteric practices."[୪୮୬]

ଏହି ସକଳ ଆଲୋଚନାରୁ ଜଣାଯାଏ ଯେ କେବଳ ଭାରତବର୍ଷର ଧର୍ମ ଭାବନାରେ ନୁହେଁ, ପୃଥିବୀର ସକଳ ଦେଶର ଧର୍ମ ଭାବନାରେ ଶୃଙ୍ଗାର ବା କାମର ଏକ ବିଶିଷ୍ଟ ଭୂମିକା ଥାନ୍ତୁ । ମାନବର ଅନ୍ତିମ ଲକ୍ଷ୍ୟ ମୁକ୍ତି ବା ନିର୍ବାଣ(?) ଯାହା ହେଉନା କାହିଁକି କାମ ହିଁ ତା' ଜୀବନର ଅବିଚ୍ଛେଦ୍ୟ ଅଙ୍ଗ । ଯୁଗ ଯୁଗ ଧରି ଧର୍ମଯାଜକର ସକଳ ଉପଦେଶ/ନିଷେଧ ସତ୍ତ୍ୱେ ନରନାରୀର ସହଜାତ ମୁଖ୍ୟ ପ୍ରବୃତ୍ତି ସର୍ବ ଦେଶର ଧର୍ମ ଭାବନାକୁ କବଳିତ କରିଅଛି ।

—*—

# ଶୃଙ୍ଗାର ଓ ସଂସ୍କୃତି

ବିଶ୍ୱର ସାଂସ୍କୃତିକ ଇତିହାସରେ ଶୃଙ୍ଗାର ବା କାମ ବିଶିଷ୍ଟ ଓ ଗୌରବମୟ ଭୂମିକାର ଅଧିକାରୀ । କଳା, ସାହିତ୍ୟ, ସଙ୍ଗୀତ, ଶିଳ୍ପ, ଭାସ୍କର୍ଯ୍ୟ ଆଦି ସଂସ୍କୃତିର ସକଳ ବିଭବକୁ ଏହା ଜୀବନୀଶକ୍ତି ଯୋଗାଇଅଛି । ଫ୍ରଏଡୀୟ ଦର୍ଶନ ଅନୁସାରେ–"Eros creates culture in his struggle against the death instinct : he strives to preserve being on an ever larger and richer scale in order to satisfy the life instincts, to protect them from the threat of non-fulfilment, extinction."[୧୮୩] ଅର୍ଥାତ୍ ଜୀବନ ପ୍ରବୃତ୍ତି ଓ ମରଣ ପ୍ରବୃତ୍ତି ମଧ୍ୟରେ ଚିରନ୍ତନ ସଂଘର୍ଷ ହିଁ ମାନବ ଜାତିର ସାଂସ୍କୃତିକ ଇତିହାସ । ସକଳ ସୃଜନୀ ଶକ୍ତିର ମୂଳ ଉତ୍ସ ରୂପେ ଇରସ୍ (Eros) ଯେତେବେଳେ କାର୍ଯ୍ୟ କରେ ସେତେବେଳେ ମରଣ ପ୍ରବୃତ୍ତି ଧ୍ୱଂସାତ୍ମକ ଅଭିପ୍ରାୟରେ ପରିଗ୍ଳଳିତ ହୁଏ । ସୁତରାଂ ପ୍ରଥମର ସଫଳତା ଓ ବିଫଳତା ଉପରେ ମଣିଷର ସାଂସ୍କୃତିକ ଗୌରବ ଓ ଅଗୌରବ ନିର୍ଭରଶୀଳ । ଏହାର ପ୍ରକୃଷ୍ଟ ଉଦାହରଣ ହେଉଛି ଗ୍ରୀକ୍ ସଭ୍ୟତା । ପୃଥିବୀକୁ ଏହାର ଦାନ ଅତୁଳନୀୟ । ପ୍ରଫେସର ଗିଲବର୍ଟ ମୁରେ (Gilbert Murray) ଗ୍ରୀସ୍‌ବାସୀଙ୍କର ଏହି ଅଭୂତପୂର୍ବ କୃତିତ୍ୱର ମୂଳ କାରଣ ନିରୂପଣ କରିବାକୁ ଯାଇ କହିଛନ୍ତି–ଏହା ହେଉଛି ସେମାନଙ୍କ ଦେହ ଓ ମନର ସ୍ୱାଧୀନତା ।" The Greeks were free in thought, free from those internal inhibitions which are more cramping than any chains forged by men and because of their freedom of sex lives were full and complete. This is the greatest of all freedoms and it cannot be divided. If the mind is crippled in

one direction it will be mutilated and crippled in all. The Greeks were free in mind and body and that is why they could express themselves so superlatively in creative work, whether as artist, poet, philosopher or scientist."[୧୮୪]

କେବଳ ଗ୍ରୀକ୍ ସଂସ୍କୃତି ନୁହେଁ, ପୃଥିବୀର ବିଭିନ୍ନ ସଂସ୍କୃତି କ୍ଷେତ୍ରରେ ଏହା ହିଁ ସତ୍ୟ । କାମର ପରିତୃପ୍ତି ବିନା ଜୀବନର ବିକାଶ ଅସମ୍ଭବ । ଜୀବନର ବିକାଶ ହିଁ ସାଂସ୍କୃତିକ ବିକାଶର ସହଚର । କାମର ଅବଦମନ ମନକୁ ବିକଳାଙ୍ଗ କରି ଦିଏ । ବିକଳାଙ୍ଗ ମନ କେବେ ମହତ ଚିନ୍ତା ବା ମହତ କାର୍ଯ୍ୟ କରିବାକୁ ସକ୍ଷମ ହୋଇ ନ ପାରେ ।

ସଂସ୍କୃତିର ବିଭିନ୍ନ ବିଭବରେ ଶୃଙ୍ଗାର ଚେତନା କିପରି ପ୍ରତିଫଳିତ ତାହାର ସମ୍ୟକ୍ ଧାରଣା ଦେବା ଆବଶ୍ୟକ । ଗ୍ରୀକ୍ ଦେବୀ ଆଫ୍ରୋଡ଼ାଇଟ୍‌ଙ୍କ ଭଇଂଗ ମୂର୍ତ୍ତି ସମ୍ପର୍କରେ ଅନେକ ଧାର୍ମିକ ବ୍ୟାଖ୍ୟା ଦିଆ ଯାଇଅଛି । କିନ୍ତୁ କ୍ଲାସିକାଲ୍ ଓ ହେଲେନିଷ୍ଟିକ୍ ଆର୍ଟିଷ୍ଟମାନେ ଏହାକୁ ସୌମ୍ୟତାର ଭଙ୍ଗୀ (Gesture of modesty) ବୋଲି ସ୍ୱୀକାର କରନ୍ତି । ସେମାନଙ୍କ ମତରେ ଯୋନି ଆଡ଼କୁ ନଇଁ ଆସିଥିବା ହାତ ସଂଭବତଃ ଆଦିମ ପ୍ରଜନନ ମୂର୍ତ୍ତି (Primitive fertility idols) ର ଇଂଗିତ ବହନ କରେ । କିମ୍ବା ଏହା ପ୍ରାଚ୍ୟ ପ୍ରଭାବହେତୁକ ନିଛକ ନାରୀତ୍ୱର ଅନାବିଳ ପରିପ୍ରକାଶ ହୋଇପାରେ ।

ନିଉଗିନି, ପୋଲିନେସିଆ, ଇଣ୍ଡୋନେସିଆ, ଆଫ୍ରିକା, ଦକ୍ଷିଣ-ଆମେରିକାର ଧାର୍ମିକ ଚିତ୍ରକଳା ସମୂହ ଭାରତୀୟ ମନ୍ଦିର ମୂର୍ତ୍ତି ପରି ଅତ୍ୟନ୍ତ ଶୃଙ୍ଗାରଧର୍ମୀ । ଆମ ଦେଶର ମିଥୁନ ମୂର୍ତ୍ତି ଗୁଡ଼ିକରେ କଳାର ଉତ୍କର୍ଷ ଫୁଟି ଉଠିଥିଲେ ହେଁ ସେ ସବୁରେ ଯୌନତାର ପ୍ରାଚୁର୍ଯ୍ୟ ପରିଲକ୍ଷିତ । ମ୍ୟାକ୍ସ ପଲ ଫାଉଚେଷ୍ଟ (Max Pol Fouchest) କହନ୍ତି- "However all this may be, Hindu art was certainly enriched with a wealth of erotic themes beyond

comparison."[୧୮୬] ଖଜୁରହ ଓ କୋଣାର୍କ ଏହାର ଚରମ ନିଦର୍ଶନ ବହନ କରେ । ବହୁ ସମାଲୋଚକ ଏ ସମ୍ପର୍କରେ ଆଲୋଚନା କରି ଭିନ୍ନ ଭିନ୍ନ ସିଦ୍ଧାନ୍ତରେ ପହଞ୍ଚିଛନ୍ତି । ମୁଲକ ରାଜ ଆନନ୍ଦଙ୍କ ମତରେ- ଅତୀତରେ ଭାରତବର୍ଷର ସମାଜ ଓ ଜୀବନ କିପରି ସୁସ୍ଥ ଓ ସ୍ୱାଭାବିକ, ସୁନ୍ଦର ଓ ଆନନ୍ଦମୟ ଥିଲା ତାହାର ପରିଚୟ ଏଥିରୁ ମିଳେ । ଏ ପ୍ରସଙ୍ଗରେ ସେ ହିନ୍ଦୁ ଓ ବୌଦ୍ଧ ସଭ୍ୟତାର 'ଟେଣ୍ଡାର ହ୍ୟୁମାନିଜିମ୍'ବିଷୟ ଉଲ୍ଲେଖ କରିଛନ୍ତି ।[୧୮୭] ବିଦଗ୍ଧ ପଣ୍ଡିତ ଆନନ୍ଦ କୁମାର ସ୍ୱାମୀ ଏହାକୁ ଭାରତୀୟ କଳାର ଯୌନ ରହସ୍ୟବାଦ (Sex-mysticism) ବୋଲି କହନ୍ତି ।" They appear in Indian Temple Sculpture simply because voluptuous ecstasy has also due place in life : and those who interpreted life were artists. To them such figures appeared appropriate equally for happiness they represented and for their deeper symbolism."[୧୮୮]

ଐତିହାସିକ ଡକ୍‌ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ଆଲୋଚନା ସତ୍ୟର ଅଧିକ ସମୀପବର୍ତ୍ତୀ । ଉତ୍କଳୀୟ ମନ୍ଦିର ଗାତ୍ରାଙ୍କିତ ନଗ୍ନ ମୂର୍ତ୍ତିମାନଙ୍କର ସ୍ୱରୂପ ବିଶ୍ଳେଷଣ ସମ୍ପର୍କିତ ତାଙ୍କର ଯୁକ୍ତି ବିଶେଷ ଭାବେ ଇତିହାସ ଭିତ୍ତିକ । ଲୌକିକ କିଂବଦନ୍ତୀ ତଥା ପୂର୍ବସୂରିମାନଙ୍କ ମତ ଖଣ୍ଡନ କରି ସେ ଏହାକୁ ଗୋଟିଏ ଯୁଗର ନିର୍ଦ୍ଦିଷ୍ଟ ସାଂସ୍କୃତିକ ପୃଷ୍ଠଭୂମି ଉପରେ ପ୍ରତିଷ୍ଠା କରିବାକୁ ଯାଇଛନ୍ତି । ଭୌମ ରାଜତ୍ୱ କାଳରେ ମହାଯାନ ବୌଦ୍ଧଧର୍ମ ଓଡ଼ିଶାରେ ରାଜପୃଷ୍ଠପୋଷକତା ଲାଭ କରି ଅତ୍ୟନ୍ତ ଲୋକପ୍ରିୟ ହୋଇଥିଲା । ଏହି ଧର୍ମ ଥିଲା କେତେଗୁଡ଼ିଏ ସମଧର୍ମୀ ମତବାଦ (ବୌଦ୍ଧ,ତନ୍ତ୍ର, ପାଶୁପତ ଆଦି)ର ସମ୍ମିଶ୍ରଣ । ଏ ସମସ୍ତ ଧାରାର ଉପାସକଗଣ ସିଦ୍ଧିଲାଭ ନିମନ୍ତେ (ସାଧନା ମାର୍ଗର କିଛି କିଛି ପାର୍ଥକ୍ୟ ସତ୍ତ୍ୱେ) ମୁକ୍ତ ଯୌନ ସମ୍ଭୋଗକୁ ମାଧ୍ୟମ ରୂପେ ଗ୍ରହଣ କରି ନେଇଥିଲେ । ତାଙ୍କ ଭାଷାରେ– It is to this debased form of religion that the origin of the obscene figures ought to be traced. Having once been allowed to exist in the temples of a particular period, they acquired the force of Convention. "[୧୮୯]

ନେପାଳର ମନ୍ଦିରମାନଙ୍କରେ ମଧ୍ୟ ବହୁ ଶୃଙ୍ଗାରଧର୍ମୀ ମୂର୍ତ୍ତି ଦେଖିବାକୁ ମିଳେ । ଏଗୁଡ଼ିକ କାଠ ଖୋଦାଇ ହୋଇ ବିଭିନ୍ନ ସ୍ଥାନରେ ସଂଯୁକ୍ତ ହୋଇଅଛି । ଗବେଷକଗଣ ଏଗୁଡ଼ିକର ମୂଳ ହେତୁ ନିରୂପଣ କରିବାକୁ ଯାଇ ଏହାକୁ ଧାର୍ମିକ ପ୍ରଭବ ସଂଭୂତ ବୋଲି କହିଛନ୍ତି । ମୂର୍ତ୍ତିଗୁଡ଼ିକର ଗଠନ ପରିପାଟୀରେ କଳାତ୍ମକତା ଓ ସାବଲୀଳତାର ଅଭାବ ଥିଲେ ମଧ୍ୟ ଶୃଙ୍ଗାରିକତା ବା ନଗ୍ନତାର ମାତ୍ରା ଅତ୍ୟଧିକ । "Although falling short of the scale and magnificence of the art of Khajuraho and Orissa, the art of Nepal dwells lovingly on erotic representations, frequently including deviant forms of sexual practice."[୧୯୦]

ୟୁରୋପୀୟ କ୍ୟାଥୋଲିକ ଚର୍ଚ୍ଚମାନଙ୍କରେ ସ୍ୱଳ୍ପ ହେଲେ ବି ଏହି ଜାତୀୟ ସାଜସଜ୍ଜା ରହିଥିବାର ଓ୍ୱିଟ୍‌କୋସ୍କି (Witkowski) ବର୍ଣ୍ଣନା କରିଛନ୍ତି ।[୧୯୧] ଜଣାଯାଏ ପୃଥିବୀର ସବୁଦେଶର ଶିଳ୍ପ ଓ ସ୍ଥାପତ୍ୟ ସହିତ ଶୃଙ୍ଗାର ଚେତନା ଅତି ନିବିଡ଼ ଭାବରେ ଜଡ଼ିତ । ଅର୍ଥାତ୍ ଆଦିମ କାମ ନାନା ରୂପରେ ନାନା ଭଙ୍ଗୀରେ ଏହି ସକଳ କ୍ଷେତ୍ରକୁ ଅଧିକାର କରିଅଛି ।

ମନୋବିଜ୍ଞାନୀଗଣ ତୀର୍ଥ ପୀଠ ଓ ଧାର୍ମିକ ଆଗ୍ରହ ସମୂହର ବିଶ୍ଳେଷଣ କଲାବେଳେ ସେଥିରେ କାମର ପ୍ରଚ୍ଛନ୍ନରୂପ ଲକ୍ଷ୍ୟ କରିଛନ୍ତି । ପ୍ରସ୍ତର ସ୍ତମ୍ଭ, ଉପାସନାମନ୍ଦିରର ଗମ୍ବୁଜାକାର ଶୀର୍ଷ, ବେଦୀମୂଳର ଆକୃତି, କ୍ରସ, ସ୍ୱସ୍ତିବାଚକ ଚିହ୍ନ, ଚୈତ୍ୟ ସ୍ତୂପ, ପିରମିଡ୍, କୋଣାକୋଣି, କରନ୍ୟାସ ପ୍ରଭୃତି ବିଭିନ୍ନ କ୍ଷେତ୍ରରେ ନାରୀ/ପୁରୁଷ ଜନନେନ୍ଦ୍ରିୟର ପ୍ରତୀକାତ୍ମକତା ଭାବ୍‌କଳ୍ପମାନ । ଏପରିକି ସବୁ ଦେଶର ବିବାହ-ମୁଦ୍ରିକା ବିନିମୟ ପ୍ରଥାରେ ମଧ୍ୟ ଯୌନ ମିଳନର ଗୂଢ଼ ଉଦ୍ଦେଶ୍ୟ ଲୁକ୍କାୟିତ ।[୧୯୨]

ରୋମକ ଭାଷାରେ ଏକ ଠାରୁ ଦଶ ସଂଖ୍ୟା ମଧ୍ୟରେ ପ୍ରେମ ଜୀବନକୁ ପ୍ରତୀକାତ୍ମକ କରିବାର ଚେଷ୍ଟା ମଧ୍ୟ କରାଯାଇଛି ।

ଏକ (୧) ହେଉଛି ଲିଙ୍ଗ ଓ ଶୂନ (0) ହେଉଛି ଯୋନିର ପ୍ରତୀକ । ସୁତରାଂ ଏ ଦୁଇଟିର ମିଳନ ହେଉଛି ପୁରୁଷ ଓ ନାରୀର ମିଳନ ।[୧୯୩]

ସାହିତ୍ୟ ରାଜ୍ୟରେ ଶୃଙ୍ଗାରର ପ୍ରତିଷ୍ଠା ଅସପନ୍ନ। ନରନାରୀର ପ୍ରେମ ଓ ବିରହ ଯୁଗ ଯୁଗ ଧରି ସବୁଦେଶର ସାହିତ୍ୟକୁ ପ୍ରେରଣା ଦେଇ ଆସୁଛି । କେଉଁ ଗ୍ରାମୀଣ କବିର ଅକୃତ୍ରିମ କବିତା ବିଳାସରେ ହେଉ ଅଥବା କେଉଁ ମହାକବିର ବର୍ଣ୍ଣାଢ୍ୟ ମହାକାବ୍ୟ ପୃଷ୍ଠାରେ ହେଉ, ସର୍ବତ୍ର ସେଇ ଶାଶ୍ୱତ ଆଦିମ ପ୍ରବୃତ୍ତିର ଜୟ ଜୟକାର । ଅଗ୍ନି ପୁରାଣକାର କହିଛନ୍ତି–

ଶୃଙ୍ଗାରୀ ଚେତ୍ କବିଃ କାବ୍ୟେଜାତଂ ରସମୟଂ ଜଗତ୍
ସ ଚେତ୍ କବି ର୍ବୀତରାଗୋ ନୀରସଂ ବ୍ୟକ୍ତମେବତତ୍ ।[୧୯୪]

(କବି ଶୃଙ୍ଗାରୀ ହେଲେ କାବ୍ୟ ଜଗତ ରସମୟ ହୋଇ ଉଠେ । ସେ ଯଦି ବୀତରାଗ ହୁଅନ୍ତି ତାହାହେଲେ ସମସ୍ତ କିଛି ନୀରସ ମନେହୁଏ ।) ଆଧୁନିକ ଇଂରେଜ ସମାଲୋଚକଙ୍କ ଭାଷାରେ– "It has become difficult to imagine literature without love. Since the middle ages two have depended on each other more and more and their interrelation is now as complex as civilisation."[୧୯୫]

ଏହାର କାରଣ ଅତି ସହଜ । ପ୍ରେମ ହିଁ ମଣିଷକୁ ଦିଏ ବ୍ୟକ୍ତିତ୍ୱର ପ୍ରଥମ ଆସ୍ୱାଦ । ପ୍ରାଥମିକ ପର୍ଯ୍ୟାୟରେ ମଣିଷ ତା'ର ସ୍ୱାଭାବିକ ଜୈବିକ ପ୍ରବୃତ୍ତି ଦ୍ୱାରା ପରିଚାଳିତ ହୁଏ । ତାହା ମଧ୍ୟରେ ଆତ୍ମରକ୍ଷା ଓ ବଂଶ ବିସ୍ତାର ଭଳି ପ୍ରଚ୍ଛନ୍ନ କାମନା କାର୍ଯ୍ୟ କରୁଥାଏ । କିନ୍ତୁ ଜୀବଜଗତର ଅନ୍ୟ ସକଳ ସଭ୍ୟ କେବଳ ଉକ୍ତ ଦୁଇ ଲକ୍ଷ୍ୟରେ ଗତି କରୁଥିବାବେଳେ ମଣିଷକୁ ତା'ର ସଭ୍ୟତା ଓ ସଂସ୍କୃତି ପ୍ରତି ସଚେତନ ହେବାକୁ ପଡ଼େ । ସୁତରାଂ ନାନା ସଂସ୍କାର ଓ ଆଦର୍ଶର ଅନୁରୋଧରେ ଯେତେବେଳେ ପ୍ରବୃତ୍ତିର ଉର୍ଦ୍ଧ୍ୱାୟନ ବା ରୂପାନ୍ତର ଘଟେ, ସେତେବେଳେ କେବଳ କାମ (Sex)

ଜୀବନର ସର୍ବସ୍ୱ ନହୋଇ ବ୍ୟକ୍ତିର ତ୍ୟାଗ, ସହିଷ୍ଣୁତା, ସୌନ୍ଦର୍ଯ୍ୟବୋଧ ଆଦି ବିମୂର୍ତ୍ତ ଭାବନା ସହିତ ମିଶି ଏକ ନୂତନ ଭାବଲୋକ ସୃଷ୍ଟିକରେ । ଏଇ ଭାବଲୋକରୁ ହିଁ ସାହିତ୍ୟର ଜନ୍ମ । ସୁତରାଂ ଜୀବନ ସହିତ ଶୃଙ୍ଗାର ଏବଂ ଶୃଙ୍ଗାର ସହିତ ସାହିତ୍ୟର ସମ୍ବନ୍ଧ ଏପରି ମୌଳିକ ଯେ ତାହାକୁ ବିଚ୍ଛିନ୍ନ କରି ଦେଖିବା ଆଦୌ ସମ୍ଭବ ନୁହେଁ । ଆଉ ଜଣେ ସମାଲୋଚକ ଏହି ସତ୍ୟ ସମ୍ପର୍କରେ କହିଛନ୍ତି—"Any literary work that lays emphasis on the part played by love in our lives is erotic. Literature could not exist without dwelling on the love interest." ୧୯୭

ସକଳ ଦେଶର ଗଦ୍ୟ ଓ ପଦ୍ୟ ସୃଷ୍ଟିରେ ଜୀବନର ସୀମାହୀନ ଜଟିଳତା ଏଇ କାମ ଭାବନାକୁ କେନ୍ଦ୍ରକରି ଗଢି ଉଠିଛି । ଗ୍ରୀସର ସୋଫୋକ୍ଲିସ୍, ଆରିଷ୍ଟୋଫେନସ୍; ଇଟାଲୀର ଦାନ୍ତେ,ପେଟ୍ରାର୍କ, ବୋକାସିଓ; ରୋମର ଓଭିଡ୍; ପେଟ୍ରୋନିଅସ୍; ବିଲାତର ଚସର, ସେକ୍ସପିଅର; ଭାରତର କାଳିଦାସ, ଶ୍ରୀହର୍ଷ, ଜୟଦେବ ପ୍ରଭୃତି ପୃଥିବୀର ପ୍ରତ୍ୟେକ ଶ୍ରେଷ୍ଠ ଓ ବରେଣ୍ୟ ସ୍ରଷ୍ଟା କେହି ଶୃଙ୍ଗାର ଚିତ୍ରଣରୁ ନିରସ୍ତ ହୋଇ ନାହାନ୍ତି । ବରଂ ସେମାନେ ସେମାନଙ୍କ ସୃଷ୍ଟି ମାଧ୍ୟମରେ ମାନବୀୟ ଅନୁଭୂତିର ବିପୁଳ ରାଜ୍ୟର ଦ୍ୱାର ଜୀବନ-ଜିଜ୍ଞାସୁମାନଙ୍କ ପାଇଁ ଉନ୍ମୁକ୍ତ କରିଦେଇ ଯାଇଛନ୍ତି ।

'ଖ୍ରୀଷ୍ଟୀୟ ରହସ୍ୟବାଦ (Christian Mysticism)ରେ ଏକ ଆଧ୍ୟାତ୍ମିକତାର ପରିମଣ୍ଡଳ ଅନୁଭବ କରାଯାଉଥିଲେ ମଧ୍ୟ ତା'ର ନିମ୍ନ ପ୍ରଦେଶରେ ପାର୍ଥିବ ଚେତନାର ସ୍ୱର ସୁସ୍ପଷ୍ଟ । ପ୍ରୁଡେଣ୍ଟିଅସ୍ (Prudentius), ଆମ୍ବ୍ରୋଜ୍(Ambrose),ଅଗଷ୍ଟାଇନ୍ (Augustine)ଙ୍କ ଭଳି ବହୁ ସନ୍ଥକବି ସେମାନଙ୍କ ଭକ୍ତି କବିତା ମାଧ୍ୟମରେ ମହିମାମୟ ଈଶ୍ୱରଙ୍କ ଗୁଣ ଗାନ କରିଯାଇଛନ୍ତି । ସମାଲୋଚକଙ୍କ ଆଖିରେ କିନ୍ତୁ ତା'ର ସ୍ୱରୂପ ଛପିଯାଇନାହିଁ । " Mystical Expression is based upon the physical,through the process of allegory or symbolic raising, such as we observed in the hymns of Vanantius Fortunatus and Prudentius.''୧୯୭

ସୁଫି ସାଧନା ମାର୍ଗରେ ଯେଉଁ ରହସ୍ୟବାଦର ଧାରା ଦେଖିବାକୁ ମିଳେ, ସେଥିରେ ମଧ୍ୟ ଆଧ୍ୟାତ୍ମିକତାର ଆବରଣ ତଳେ ଦେହୀ ଜୀବନର ବାର୍ତ୍ତା ସୁରକ୍ଷିତ । ଏ ପ୍ରସଙ୍ଗରେ କୁହାଯାଇଛି–" Especially do the Islamic mystical poets exhaust all the resources of erotic imagery in order to describe subtleties of passsion that is wholly pure and spiritual ? Sometimes the same style may be deliberately adapted as a mask for other sentiments or as an artistic device".[198] ଭାରତୀୟ ବୈଷ୍ଣବ କବିମାନଙ୍କ ରାଧାକୃଷ୍ଣ ଲୀଳା ବର୍ଣ୍ଣନା ଏ କ୍ଷେତ୍ରରେ ଆମର ସ୍ମରଣୀୟ । ସେଥିରେ ଭକ୍ତି ଭାବନା ସହିତ ପ୍ରେମ ଭାବନାର ଏପରି ମନୋଜ୍ଞ ସମ୍ମିଶ୍ରଣ ହୋଇଛି ଯେ ତାହାକୁ ନିଛକ ଭକ୍ତି ବା ନିଛକ ପ୍ରେମ ରୂପେ ଅଭିହିତ କରିବା ସମ୍ଭବ ନୁହେଁ ।

ରୋମାଣ୍ଟିକ୍ କବିଗୋଷ୍ଠୀ ପ୍ରେମକୁ ଜୀବନର ମୁଖ୍ୟ ଅବଲମ୍ବନ ରୂପେ ସ୍ୱୀକାର କରିଯାଇଛନ୍ତି । ସେମାନଙ୍କ ପ୍ରେମ ଦୃଷ୍ଟି ଈଶ୍ୱରୀୟ ଆତ୍ମ ନିବେଦନରେ ପରିଣତ ହୋଇନାହିଁ କିମ୍ବା ପାଶବିକ କାମନାବୃତ୍ତିରେ ହଜିଯାଇନାହିଁ । ମଣିଷର ସ୍ୱାଭାବିକ ଦୈହିକ ଓ ମାନସିକ ଆକର୍ଷଣକୁ କୌଣସି ବାଧିତ ନୈତିକତା (Imposed morality)ର ମାନଦଣ୍ଡରେ ବିଗ୍ରହ ନକରି ସେମାନେ ତା'ର ନିସର୍ଗ ସୌନ୍ଦର୍ଯ୍ୟ ବନ୍ଦନା ନିମନ୍ତେ ବ୍ୟାକୁଳ ହୋଇ ଉଠିଛନ୍ତି । ବାଇରନ୍‌ଙ୍କ କବିତାର ଗୋଟିଏ ଅଂଶ ଏଠାରେ ଉଦ୍ଧାର କରଯାଇପାରେ–

"Man's love is of man's life a thing apart
'T is woman's whole existence."[199]

ଏତଦ୍‌ବ୍ୟତୀତ ଅବଦମିତ ପ୍ରେମର ଚିତ୍ର ଅଙ୍କନରେ ସେମାନେ ଯଥେଷ୍ଟ ସଫଳତା ଅର୍ଜନ କରିଛନ୍ତି । ଯୌନ ପ୍ରତୀକ ଅନ୍ତରାଳରେ ତାହା ଏପରି ନୀରବ ଅଭିବ୍ୟକ୍ତି ଲାଭ କରିଛି ଯେ ସେଥିରୁ ସତ୍ୟ ଆବିଷ୍କାର ଏକ ଜଟିଳ ବ୍ୟାପାର ହୋଇ ପଡ଼ିଛି । ଶେଲିଙ୍କର 'ଟୁ ଏ ସ୍କାଇଲାର୍କ', କିଟସ୍‌ଙ୍କର 'ଟୁ ଏ ନାଇଟିଙ୍ଗେଲ', ପୋଙ୍କର 'ଦି ରାଭେନ୍' କବିତା ଏହି ପର୍ଯ୍ୟାୟର ।[200]

ଆଧୁନିକ ଯୁଗର କବି ଓ କବିତାର ଶ୍ରେଷ୍ଠ ପ୍ରତିନିଧି ହେଉଛନ୍ତି 'ଟି. ଏସ୍. ଏଲିଅଟ୍ (T S Eliot) ଓ ତାଙ୍କର କାବ୍ୟଗ୍ରନ୍ଥ 'ଦି ୱେଷ୍ଟ ଲ୍ୟାଣ୍ଡ' (The Waste Land)' । ସେ ଏଇ କାବ୍ୟଗ୍ରନ୍ଥରେ ଯୁଦ୍ଧୋତ୍ତର ମଣିଷର ହତାଶା; ପ୍ରେମହୀନତା ଓ ଅବିଶ୍ୱାସର ଏକ ବାସ୍ତବ ଓ ସଫଳ ରୂପ ଅଙ୍କନ କରିଯାଇଛନ୍ତି । ୱେଷ୍ଟ ଲ୍ୟାଣ୍ଡର ପୃଥିବୀ ହେଉଛି ବାରିହୀନ ବଂଧ୍ୟା ଭୂମି ଓ ମୃତର ସମାଧି । ଏଠାରେ ଜୀବନର ସବୁଠାରୁ ବଡ଼ ଅଭାବ ହେଉଛି ମାନବୀୟ ପ୍ରେମ; ଯାହା ପରିବାର, ସମାଜ ଓ ଜାତିକୁ ଆପଣାର କରି ରଖିପାରେ । "× × The Waste Land, is spiritually empty world— and the emptiness is no a result, at least here, of man's falling away from God, but man's falling away from man, or better yet, falling away from woman."[201] ଏଲିଅଟଙ୍କ କାବ୍ୟକୃତି ସମୂହ ବିଶ୍ୱ ସାହିତ୍ୟକୁ ଗଭୀର ଭାବେ ପ୍ରଭାବିତ କରିଛି ଏବଂ ପ୍ରତ୍ୟେକ ଦେଶର ସାହିତ୍ୟରେ ଏହି ମାନବିକ ସଙ୍କଟର ସ୍ୱର ଆଜି ସୁସ୍ପଷ୍ଟ ।

ସାହିତ୍ୟ ପରି କଳା କ୍ଷେତ୍ରରେ ଶୃଙ୍ଗାର ଚର୍ଯାର ଭୂମିକା ମଧ୍ୟ ଗୁରୁତ୍ୱପୂର୍ଣ୍ଣ । ଭାରତୀୟ ବିଚାରଧାରା ଅନୁସାରେ ଏହି କଳାର ଏକମାତ୍ର ଲକ୍ଷ୍ୟ ହେଉଛି ରସାସ୍ୱାଦ । ପ୍ରତିମା କଳାର ମୁଦ୍ରା-ବିନିଯୋଗ ଓ ଚିତ୍ରକଳାର ରୂପ ନିର୍ମାଣ ଆଦି ବିବିଧ ଯୋଜନାରେ ସେହି ରସତତ୍ତ୍ୱର ମହତ୍ତ୍ୱ ଉପଲବ୍ଧ ।[202] ବିଷ୍ଣୁଧର୍ମୋତ୍ତର, ସମରାଙ୍ଗଣ ସୂତ୍ରଧର ଓ ଶିଳ୍ପରତ୍ନ ପ୍ରଭୃତି ଗ୍ରନ୍ଥରେ ଚିତ୍ର ବିଦ୍ୟାବିଷୟକ ରସ ଓ ରସ ଦୃଷ୍ଟିର ବିଶଦ ଆଲୋଚନା ଦେଖାଯାଏ ।

ଅଜନ୍ତାର ଭିତ୍ତି ଚିତ୍ରାବଳୀ,ରାଜସ୍ଥାନୀ ଶୈଳୀରେ ଅଙ୍କିତ ବାରମାସା, ରାସଲୀଳା ଓ ରାଧାକୃଷ୍ଣ ପ୍ରେମଲୀଳା ଚିତ୍ର ଏବଂ ଓଡ଼ିଶାରେ ବହୁଳ ଭାବେ ମିଳିଥିବା 'ଗୀତଗୋବିନ୍ଦ' ପୋଥିଚିତ୍ରର ଶୃଙ୍ଗାରଧର୍ମୀ କଳା ନୈପୁଣ୍ୟ ଅତୀବ ସରସ ଓ ଉପଭୋଗ୍ୟ ।[203]

*

# ଶୃଙ୍ଗାର ଓ କାମଶାସ୍ତ୍ର

କାମ ବା ନାରୀ ପୁରୁଷର ଦେହୋପଭୋଗକୁ ଆଧାର କରି ଭାରତୀୟ ମନୀଷା ଏକ ସୁଦୃଢ଼ ଶାସ୍ତ୍ରୀୟ ପରମ୍ପରର ପ୍ରତିଷ୍ଠାତା । ସୁଖଭୋଗ ସହିତ ସାମାଜିକ ଶୃଙ୍ଖଳା, ଉନ୍ନତ ରୁଚିବୋଧ ଓ ମହତ୍ତର ଆଦର୍ଶର ଅନୁଶୀଳନ କରିବା ଏହି ଶାସ୍ତ୍ରର ପରମ ଲକ୍ଷ୍ୟ । ଏହା ହିଁ କାମଶାସ୍ତ୍ର । ବାତ୍ସାୟନ 'କାମ ସୂତ୍ର' ଗ୍ରନ୍ଥ ଶେଷରେ ଘୋଷଣା କରିଛନ୍ତି ଯେ—ଧର୍ମ, ଅର୍ଥ ଓ କାମର ଲୋକ ପ୍ରସିଦ୍ଧ ମର୍ଯ୍ୟାଦା ରଖି ଯେଉଁ ବ୍ୟକ୍ତି ଏହି ଶାସ୍ତ୍ରଜ୍ଞାନ ହାସଲ କରେ ସେ ଜିତେନ୍ଦ୍ରିୟ ହୁଏ । [୨୦୪]

ବାତ୍ସାୟନଙ୍କ ପୂର୍ବରୁ ଶ୍ୱେତକେତୁ, ଉଦ୍ଦାଳକ, ବାଭ୍ରବ୍ୟ, ଦତ୍ତକ ଚାରାୟଣ, ଘୋଟକ, ଗୋନର୍ଦୀୟ, ଘୋଟକମୁଖ, କୁଚୁମାର ପ୍ରଭୃତି ଆଚାର୍ଯ୍ୟଗଣ କାମଶାସ୍ତ୍ରର ବିଭିନ୍ନ ବିଭବ ଉପରେ ବହୁଳ ଚର୍ଚ୍ଚା କରିଥିବା ଜଣାଯାଏ । ତାଙ୍କ ପରେ କୋକକ୍କ 'ରତିରହସ୍ୟ,' ଭିକ୍ଷୁ ପଦଶ୍ରୀ 'ନାଗର ସର୍ବସ୍ୱ', କବି ଶେଖର ଜ୍ୟୋତିରିଶ୍ୱର 'ପଞ୍ଚଶାୟକ', କଲ୍ୟାଣମଲ୍ଲ 'ଅନଂଗରଂଗ', ପ୍ରୌଢ଼ଦେବ ମହାରାଜ 'ରତିରତ୍ନ ପ୍ରଦୀପିକା', ଜୟଦେବ 'ରତିମଞ୍ଜରୀ' ଆଦି ଗ୍ରନ୍ଥ ରଚନା କରି ଏହି ଶାସ୍ତ୍ରର ନାନାବିଧ ବିକାଶ ଘଟାଇଛନ୍ତି । କିନ୍ତୁ ବାତ୍ସାୟନଙ୍କ 'କାମସୂତ୍ର' ସରଳ ବୋଧଗମ୍ୟ ହୋଇପାରିଥିବାରୁ ଜନସମାଜରେ ଏହାର ପ୍ରତିଷ୍ଠା ଓ ଲୋକପ୍ରିୟତା ସୁବିପୁଳ । ଭାରତୀୟ କାବ୍ୟ ସାହିତ୍ୟ ଉପରେ ଏହି ଗ୍ରନ୍ଥର ପ୍ରଭାବ ମଧ୍ୟ ଅପରିସୀମ । [୨୦୫]

'କାମସୂତ୍ର' ସାତଗୋଟି ଅଧିକରଣରେ ବିଭକ୍ତ; ଯଥା—ସାଧାରଣ, ସାମ୍ପ୍ରୟୋଗିକ, କନ୍ୟାସଂପ୍ରଯୁକ୍ତକ, ଭାର୍ଯ୍ୟାଧିକାରିକ, ପାରଦାରିକ, ବୈଶିକ ଓ ଔପନିଷଦିକ । ଓଡ଼ିଆ କାବ୍ୟ ସାହିତ୍ୟ ଅଧ୍ୟୟନ କାଳରେ ଏସବୁର

ଉପଯୋଗିତା ଏକାନ୍ତ ଅପରିହାର୍ଯ୍ୟ । ଆମ ଆଲୋଚନାର ସୁଗମତା ଦୃଷ୍ଟିରୁ ଏଠାରେ କେତୋଟି ପ୍ରସଙ୍ଗର ସଂକ୍ଷିପ୍ତ ପରିଚୟ ପ୍ରଦତ୍ତ ।

ନାଗରକ ବୃତ୍ତ– ବିଦ୍ୟା ଅଧ୍ୟୟନ ସମାପନାନ୍ତର ପୁରୁଷ ଗୃହସ୍ଥାଶ୍ରମରେ ପ୍ରବେଶପୂର୍ବକ ନାଗରକ ବିଧି ଆଚରଣ କରିବା ଶାସ୍ତ୍ର ସମ୍ମତ । ନାଗରକର ନିବାସ ଓ ତା'ର ସାଜସଜ୍ଜା, ଦିନଚର୍ଯ୍ୟା, ବିନୋଦନ ଏବଂ ଉପନାଗରକ ବୃତ୍ତ ଏହାର ଅନ୍ତର୍ଗତ । [୨୦୬]

ଶାସ୍ତ୍ରୋକ୍ତ ନାଗରକ ବୃତ୍ତ ତତ୍କାଳୀନ ସମାଜ ଓ ସଂସ୍କୃତିର ଏକ ଯଥାର୍ଥ ଚିତ୍ର ପ୍ରଦାନ କରେ । ଜଣାଯାଏ ସାହିତ୍ୟ, ସଂଗୀତ ଓ କଳା ପ୍ରତି ଆଦର ସେ ଯୁଗରେ ବିଦଗ୍ଧ ଜୀବନର ବିଶିଷ୍ଟ ବିଭବ ରୂପେ ପରିଚିତ ଥିଲା । ସଂଭୋଗ ଓ ବିଳାସ ପ୍ରତି ଗଭୀର ଆସକ୍ତି ଏବଂ ବେଶ୍ୟା ବା ଗଣିକାମାନଙ୍କ ପ୍ରତି ଉଚ୍ଚମାନ୍ୟତା ସାମାଜିକ ଜୀବନ ପ୍ରବାହକୁ ରୁଚିଶୀଳ ଓ ରସାଳ କରିଥିଲା । ଓଡ଼ିଆ ରୀତିକାବ୍ୟର ନାୟକ ଓ ତା'ର ପରିବେଶ ସହିତ ନାଗରକ ବୃତ୍ତର ଅନେକ ସାମଞ୍ଜସ୍ୟ ଦେଖାଯାଏ । [୨୦୭]

## ନାୟିକା ଭେଦ–

(କ) ସାମାଜିକ ଭେଦ- କାମଶାସ୍ତ୍ରରେ ମୁଖ୍ୟତଃ ତିନି ପ୍ରକାର ନାୟିକା ସୁପରିଚିତ । (୧) କନ୍ୟା (୨) ପୁନର୍ଭୂ (୩) ବେଶ୍ୟା । ଏତଦ୍ ଭିନ୍ନ (୪) ପାକ୍ଷିକୀ (ଗୋଣିକାପୁତ୍ର) (୫) ବିଧବା (ଘୋଟକମୁଖ) ୬) ପ୍ରବ୍ରଜିତା (ସୁବର୍ଣ୍ଣନାଭ) (୭) ଗଣିକା ଦୁହିତା ବା ପରିଚାରିକା (ଘୋଟକମୁଖ) (୮) କୁଳ ଯୁବତୀ (ଗୋନର୍ଦ୍ଦୀୟ) ମଧ୍ୟ ନାୟିକାଭେଦର ଅନ୍ତର୍ଭୁକ୍ତ । ବାତ୍ସାୟନଙ୍କ ମତରେ ନାୟିକା ଚାରିପ୍ରକାର (ଯଥା–କନ୍ୟା, ପୁନର୍ଭୂ, ବେଶ୍ୟା ଓ ପରକୀୟା) । [୨୦୮]

(ଖ) ଲିଙ୍ଗ ଭେଦ– ବାତ୍ସାୟନଙ୍କ ମତରେ ଏହା ତିନି ପ୍ରକାର । ମୃଗୀ, ବଡ଼ବା ଓ ହସ୍ତିନୀ । [୨୦୯] ଅନ୍ୟତ୍ର ପଦ୍ମିନୀ, ଚିତ୍ରିଣୀ, ଶଂଖିନୀ ଓ ହସ୍ତିନୀ ଭେଦରେ ଚାରି ପ୍ରକାର ନାୟିକାର ଉଲ୍ଲେଖ ଦେଖାଯାଏ । [୨୧୦]

(ଗ) ରତିକାଳୀନ ଭବ ଭେଦ (୩ ପ୍ରକାର)– ମନ୍ଦବେଗା, ମଧ୍ୟବେଗା, ଚଣ୍ଡବେଗା ।[211]

(ଘ) ସ୍ଖଳନ ଭେଦ (୩ ପ୍ରକାର)– ଶୀଘ୍ରକାଳା, ମଧ୍ୟକାଳା, ଚିରକାଳା ।[212]

## ନାୟକ ଭେଦ–

(କ) ସାଧାରଣ ଭେଦ–ସାର୍ବଲୌକିକ ।
(ଖ) ଗୋପନୀୟତା ଭେଦ–ସାଧାରଣ ଓ ପ୍ରଚ୍ଛନ୍ନ । } ୨୧୩
(ଗ) ଗୁଣଭେଦ–ଉତ୍ତମ, ମଧ୍ୟମ ଓ ଅଧମ ।

(ଘ) ଲିଙ୍ଗ ଭେଦ–ଶଶ, ବୃଷ ଓ ଅଶ୍ୱ ।[214] ଅନ୍ୟତ୍ର ଶଶ, ମୃଗ, ବୃଷ ଓ ଅଶ୍ୱ ଭେଦରେ ଏହା ଚାରି ପ୍ରକାର ।[215]

(ଙ) ରତିକାଳୀନ ଭବ ଭେଦ– ମନ୍ଦ ବେଗ, ମଧ୍ୟବେଗ, ଚଣ୍ଡବେଗ ।[216]

(ଚ) ସ୍ଖଳନ ଭେଦ–ଶୀଘ୍ରକାଳ, ମଧ୍ୟକାଳ, ଚିରକାଳ ।[217]

## ସଂଭୋଗର ଅଙ୍ଗ–

ବାଭ୍ରବ୍ୟଙ୍କ ମତରେ ଏହା ଆଠଗୋଟି; ଯଥା ଆଲିଙ୍ଗନ, ଚୁମ୍ବନ, ନଖଚ୍ଛେଦ, ଦଶନଚ୍ଛେଦ, ସଂବେଶନ, ସୀତ୍କୃତ, ପୁରୁଷାୟିତ ଓ ଔପରିଷ୍ଟକ । ପୁନଶ୍ଚ ଏ ସମସ୍ତ ଆଠ ଆଠ ପ୍ରକାର ହୋଇଥିବାରୁ ଏହା ଚଉଷଠି ପ୍ରକାର ।[218]

ବାତ୍ସାୟନଙ୍କ ମତରେ (ଆଲିଙ୍ଗନାଦି) ପ୍ରତ୍ୟେକକୁ ଆଠ ଆଠ ଭାଗରେ ବିଭକ୍ତ କରାଯାଇନପାରେ । ଏ କ୍ଷେତ୍ରରେ କେଉଁଠାରେ ନ୍ୟୂନତା ବା କେଉଁଠାରେ ଆଧିକ୍ୟ ପରିଦୃଷ୍ଟ । ତା' ଛଡ଼ା ପ୍ରହଣନ, ବିରୁତ ପୁରୁଷୋପସୃପ୍ତ ଚିତ୍ରରତ ଆଦି ଉପରୋକ୍ତ ଭେଦର ଅନ୍ତର୍ଗତ ନୁହେଁ ।

କିନ୍ତୁ ପୂର୍ବୋକ୍ତ 'ଚତୁଃଷଷ୍ଠି' ଶାସ୍ତ୍ର ସମ୍ମତ ନହେଲେ ହେଁ ବିଶେଷ ଭାବେ ଲୋକ ସମର୍ଥିତ ।[219]

ଆଲିଙ୍ଗନ—ବାଭ୍ରବ୍ୟଙ୍କ ମତରେ ଏହା ଆଠ ପ୍ରକାର । ପ୍ରାକ୍ ସମାଗମକାଳୀନ ଚାରି ପ୍ରକାର (ସ୍ପୃଷ୍ଟକ, ବିଦ୍ଧକ, ଉଦ୍‌ଘୃଷ୍ଟକ, ପୀଡ଼ିତକ) ଓ ସଂପ୍ରୟୋଗକାଳୀନ ଚାରି ପ୍ରକାର (ଲତା ବେଷ୍ଟିତକ, ବୃକ୍ଷାଧିରୂଢକ, ତିଳତଣ୍ଡୁଳକ ଓ କ୍ଷୀର ନୀରକ ।[220]

ସୁବର୍ଣ୍ଣନାଭ ଆଲିଙ୍ଗନର ଆଉ ଚାରିଗୋଟି ଭେଦ ଉଲ୍ଲେଖ କରିଛନ୍ତି; ଯଥା—ଉରପଗୂହନ, ଜଘନୋପଗୂହନ, ସ୍ତନାଲିଙ୍ଗନ ଓ ଲଲାଟିକା । [221]

ଚମ୍ବନ—ନାୟକ ନାୟିକା ଅନୁରାଗ ବଶବର୍ତ୍ତୀ ହୋଇ ପରସ୍ପର ଚୁମ୍ବନ ପୂର୍ବକ ପ୍ରୀତିସୁଖ ଅନୁଭବ କରିଥାନ୍ତି । ଏହା ଅନେକ ପ୍ରକାର ।

(କ) ସ୍ଥାନ ଭେଦ (୮ ପ୍ରକାର)—ଲଲାଟ, ଅଳକ, କପୋଳ, ନେତ୍ର, ବକ୍ଷ, ସ୍ତନ, ଓଷ୍ଠ ଓ ମୁଖ— ଏହି ସକଳ ସ୍ଥାନରେ ଅର୍ପିତ ଚୁମ୍ବନ । ଏହା ସର୍ବଜନ ସମ୍ମତ । [222]

(ଖ) ଦେଶ ଭେଦ— ଦେଶ ଭେଦରେ ଚୁମ୍ବନ-ସ୍ଥାନର ପାର୍ଥକ୍ୟ ପରିଲକ୍ଷିତ । ଲାଟଦେଶୀୟ ଅଧିବାସୀଗଣ ନାୟିକାର ଉରସଂଧି, ବାହୁମୂଳ ତଥା ନାଭିମୂଳରେ ଚୁମ୍ବନ ଦେବାକୁ ଅଧିକ ପସନ୍ଦ କରିଥାନ୍ତି ।[223]

ପ୍ରକାର ଭେଦ—(୧) କନ୍ୟା ଚୁମ୍ବନ (୩ ପ୍ରକାର)—ନିମିତ୍ତକ, ସ୍ଫୁରିତକ ଓ ଘଟ୍ଟିତକ ।

(୨) ମୁଖ ଚୁମ୍ବନ(୪ପ୍ରକାର)-ସମ, ତୀର୍ଯକ୍, ଉଦ୍‌ଭ୍ରାନ୍ତ, ଅବପୀଡ଼ିତକ ।

(୩) ଓଷ୍ଠ ଚୁମ୍ବନ (୩ ପ୍ରକାର)— ଉତ୍ତର ଚୁମ୍ବିତ ସଂପୁଟକ, ଜିହ୍ୱାଯୁଦ୍ଧ ।

(୪) ସ୍ଥାନ ନିର୍ଦ୍ଦିଷ୍ଟ ଚୁମ୍ବନ (୪ ପ୍ରକାର)—ସମ, ପୀଡ଼ିତ, ଅଂଚିତ, ମୃଦୁ ।

(୫) ଅବସ୍ଥାନୁସାରୀ ଚୁମ୍ବନ (୩ ପ୍ରକାର)—ରାଗୋଦ୍ଦୀପକ, ଚଳିତକ, ପ୍ରାତିବୋଧକ ।

(୬) ଅଭିପ୍ରାୟାତ୍ମକ ଚୁମ୍ବନ (୪ ପ୍ରକାର )—ଛାୟାଚୁମ୍ବନ ସଂକ୍ରାନ୍ତକ, ହସ୍ତାଙ୍ଗୁଳିଚୁମ୍ବନ ଅଥବା ପାଦାଙ୍ଗୁଳି ଚୁମ୍ବନ, ଉତ୍ତରଚୁମ୍ବନ । [୨୨୪]

ନଖକ୍ଷତ— ଅନୁରାଗ ବୃଦ୍ଧି ହେଲେ ନାୟକ ନାୟିକା ପରସ୍ପର ଚୁମ୍ବନ ଆଲିଙ୍ଗନ ସହ ନଖକ୍ଷତ ଦ୍ୱାରା ଆନନ୍ଦଲାଭ କରିଥାନ୍ତି । ପ୍ରଥମ ସମାଗମ ସମୟରେ, ପ୍ରବାସରୁ ଫେରିଲା ପରେ, ପ୍ରବାସ ଯାତ୍ରା କାଳରେ, କ୍ରୋଧ ପ୍ରଶମିତ ହେଲା ପରେ ବା କାମୋନ୍ମତ୍ତ ଅବସ୍ଥାରେ ସାଧାରଣତଃ ଏହାର ପ୍ରୟୋଗ ହୋଇଥାଏ । କିନ୍ତୁ ଚଣ୍ଡବେଗ ନାୟକ ସର୍ବଦା ଏହାର ପ୍ରୟୋଗ କରିଥାଏ । ନଖକ୍ଷତର ଭେଦ—

(କ) ଆକୃତି ଭେଦ (୮ ପ୍ରକାର)—ଆଚ୍ଛୁରିତକ, ଅର୍ଦ୍ଧଚନ୍ଦ୍ର, ମଣ୍ଡଳ, ଲେଖା, ବ୍ୟାଘ୍ରନଖ, ମୟୂରପଦକ, ଶଶପ୍ଳୁତକ, ଉତ୍ପଳପତ୍ର ।

(ଖ) ସ୍ଥାନ ଭେଦ (୬ ପ୍ରକାର)—କାଖ, ସ୍ତନ, ଗଳା, ପିଠି, ଜଘନ, ଉରୁ, ସୁବର୍ଣ୍ଣନାଭଙ୍କ ମତରେ ନାୟକ ନାୟିକା କାମପ୍ରବୃତ୍ତ ହେଲେ ସ୍ଥାନାସ୍ଥାନ ବିଚାର କରନ୍ତି ନାହିଁ । [୨୨୫]

ଦଶନ କ୍ଷତ—ଅନୁରାଗର ଅଭିବୃଦ୍ଧି ପାଇଁ ନଖକ୍ଷତ ପରି ଦଶନ କ୍ଷତ ମଧ୍ୟ ଅତି ଉତ୍କୃଷ୍ଟ ଉପଚାର । ଉତ୍ତରୋଷ୍ଠ, ଅନ୍ତର୍ମୁଖ, ନୟନ ଅତିରିକ୍ତ ଅନ୍ୟ ସମସ୍ତ ଉପଯୁକ୍ତ ସ୍ଥାନ ଦନ୍ତକ୍ଷତ ପାଇଁ ଅନୁକୂଳ । ପ୍ରକାର ଭେଦ— ଗୂଢ଼କ, ଉଚ୍ଛୁନକ, ବିନ୍ଦୁ, ବିନ୍ଦୁମାଳା, ପ୍ରବାଳମଣି, ମଣିମାଳା, ଖଣ୍ଡାଭ୍ରକ, ବରାହଚର୍ବିତକ । [୨୨୬]

ସଂବେଶନ—ନାୟକ ନାୟିକାଙ୍କ ଜାତିଭେଦ ଅନୁସାରେ ଶଶ, ବୃଷ ଇତ୍ୟାଦି ) କାମଶାସ୍ତ୍ରକାର ଗଣ ସଂବେଶନର ବିବିଧ ରୂପ ଉଲ୍ଲେଖ କରିଯାଇଛନ୍ତି ; ଯଥା—ଉତ୍ଫୁଲ୍ଲକ, ବିଜୃମ୍ଭିତକ, ଇନ୍ଦ୍ରାଣିକ, ସଂପୁଟକ, ବେଷ୍ଟିତକ, ବାଡ଼ବକ, ବେଣୁବିଦାରିତକ ଇତ୍ୟାଦି । [୨୨୭]

ପ୍ରହଣନ ଓ ସୀତ୍କୃତ—ପ୍ରହଣନ ବା ଆଘାତ ପ୍ରଦାନ ସୁରତ ବ୍ୟାପାରକୁ ରାଗବର୍ଦ୍ଧକ ଓ ସୁଖମୟ କରିଥାଏ । ଏହାର ସ୍ଥାନ—ସ୍କନ୍ଧ, ଶିର, ସ୍ତନାନ୍ତର, ପୃଷ୍ଠ, ଜଘନ ଓ ପାର୍ଶ୍ୱ । ପୀଡ଼ାଦାୟକ ହେଲେ ହେଁ ନାରୀ ପକ୍ଷରେ ଏହା ବରଣୀୟ ।

ପ୍ରକାର ଭେଦ—ଅପହସ୍ତକ, ପ୍ରସୃତକ, ମୁଷ୍ଟି, ସମତଳକ । [୨୨୮]

ନାରୀଠାରେ ପ୍ରହଣନ ପୀଡ଼ାରୁ ଜାତ କ୍ଲେଶ ଓ ଭବପ୍ରାପ୍ତି ସୂଚକ ଶବ୍ଦକୁ ସୀତ୍କୃତ କୁହାଯାଏ । ଏହା ସାତ ପ୍ରକାର—ହିଂକାର, ସ୍ତନିତ, କୂଜିତ, ରୁଦିତ, ସୁତ୍କୃତ,ଦୁତ୍କୃତ, ଓ ଫୁତ୍କୃତ ।[୨୨୯] ଅମ୍ବାର୍ଥକ (ମୋଆଲୋ,ବୋଉଲୋ ଇତ୍ୟାଦି), ବାରଣାର୍ଥକ (ନା, ନାହିଁ ଇତ୍ୟାଦି), ମୋକ୍ଷଣାର୍ଥକ ଓ ଅଳମର୍ଥକ ଶବ୍ଦ ମଧ୍ୟ ସ୍ତ୍ରୀ ଏ କ୍ଷେତ୍ରରେ ପ୍ରୟୋଗ କରିଥାଏ ।

ପୁରୁଷାୟିତ—ରତି ଲୀଳାରେ ନାରୀ ଯେତେବେଳେ ପୁରୁଷ ଭୂମିକାରେ କାର୍ଯ୍ୟ କରେ ସେତେବେଳେ ପୁରୁଷାୟିତ ବା ବିପରୀତ ହୁଏ । ତିନୋଟି କାରଣ ଏଥିପାଇଁ ମୁଖ୍ୟତଃ ଦାୟୀ । (୧) ପୁରୁଷର ବାରମ୍ବାର ସହବାସ ଜନିତ ଶ୍ରାନ୍ତି (୨) ସ୍ତ୍ରୀର ସ୍ୱଇଚ୍ଛାନୁସାରେ ବିକଳ୍ପ ଯୋଜନା ପାଇଁ ଆଗ୍ରହ (୩) ପୁରୁଷର କୁତୂହଳ । [୨୩୦]

ଓଡ଼ିଆ ରୀତି କାବ୍ୟରେ ଅନେକତ୍ର ପୁରୁଷାୟିତର ବର୍ଣ୍ଣନା ପ୍ରଦତ୍ତ ।[୨୩୧] କାମଶାସ୍ତ୍ର ପ୍ରଭବରେ ସେ ସକଳ ଅଂଶ ଯେ ସମୃଦ୍ଧ—ଏହା ନିଃସନ୍ଦେହ ।

ଏତଦ୍‌ବ୍ୟତୀତ ରଣରମ୍ଭ ଓ ରତାବସାନ, ବିବାହ ସିଦ୍ଧାନ୍ତ, ପତ୍ନୀ ବିବରଣ, ପରକୀୟା ସଂଭୋଗ, ଦୂତୀ ପ୍ରସଂଗ, ବେଶ୍ୟା ବିଳାସ, ଔଷଧି ସେବନ ଆଦି ଶୃଙ୍ଗାର ଚର୍ଯ୍ୟା ସଂପର୍କିତ ବିବିଧ ବିଧି ବିଧାନ 'କାମସୂତ୍ର'ରେ ବିଶଦ ଭାବେ ବର୍ଣ୍ଣିତ ।

ଶେଷକଥା–ସଂସ୍କୃତ ସାହିତ୍ୟ ପରି ପ୍ରାନ୍ତୀୟ ସାହିତ୍ୟ ଉପରେ କାମଶାସ୍ତ୍ରର ପ୍ରଭାବ ଅପ୍ରତିହତ । ଓଡ଼ିଆ ରୀତି ଯୁଗର କବିଗଣ କାମଶାସ୍ତ୍ର ନିକଟରେ ସେମାନଙ୍କର ଅକୁଣ୍ଠିତ ଋଣ ସ୍ୱୀକାର କରି ଯାଇଛନ୍ତି । ଶିଶୁଶଙ୍କରଙ୍କ 'ଅତି କୁଶଳେ କାମଶାସ୍ତ୍ର ଫଳ, ତାଙ୍କ ପରୀକ୍ଷେ ହୋଇଲା ସୁଫଳ' କିଂବା ଭଞ୍ଜଙ୍କର 'ବାତ୍ସାୟନ ଋଷିଙ୍କି ଯେ ରସ ଅଗୋଚର, ଗୀତେ କହେ ଉପଇନ୍ଦ୍ର ଭଞ୍ଜ ବୀରବର' ଆଦି ଉକ୍ତିରୁ ଉକ୍ତ ଶାସ୍ତ୍ରର ସ୍ପଷ୍ଟ ପ୍ରଭାବ ସହଜରେ ଅନୁମେୟ । ଡକ୍ଟର ବେଣୀମାଧବ ପାଢୀ ତାଙ୍କର 'ଭଞ୍ଜୀୟ କାବ୍ୟ ଭାବନା' ଗ୍ରନ୍ଥରେ ଭଞ୍ଜଙ୍କ କାବ୍ୟ ସମୂହ ବିଶେଷତଃ 'ଲାବଣ୍ୟବତୀ' କାମଶାସ୍ତ୍ରକୁ କିପରି ଅନୁସରଣ କରିଛି ତା'ର ବିଶଦ ଆଲୋଚନା କରିଛନ୍ତି । [୭୩୨] ସୁତରାଂ ମଧ୍ୟଯୁଗୀୟ କାବ୍ୟାଲୋଚନା ପ୍ରସଂଗରେ କାମଶାସ୍ତ୍ର ଅଧ୍ୟୟନର ଉପାଦେୟତା ଅତୀବ ମହତ୍ୱପୂର୍ଣ୍ଣ । ଏହା ଫଳରେ କବିର ଆହରଣ ଓ ମୌଳିକତା, ଶାସ୍ତ୍ରୀୟ ପ୍ରୟୋଗର ସଫଳତା ଓ ବିଫଳତା ତଥା ଯୁଗମାନସ ଓ ସାମାଜିକ ରୁଚିବୋଧ ଆଦି ବହୁବିଧ ରହସ୍ୟର ଦ୍ୱାର ଉଦ୍‌ଘାଟନ କରାଯାଇପାରିବ ।



# ଶୃଙ୍ଗାର ଓ ମନୋବିଜ୍ଞାନ

ବିଶିଷ୍ଟ ମନୋବିଜ୍ଞାନୀ ମ୍ୟାକ୍‌ଡୁଗାଲ୍ କହନ୍ତି– ମଣିଷ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ କେତେଗୁଡ଼ିଏ ସହଜାତ ପ୍ରବୃତ୍ତିଦ୍ୱାରା ପରିଚାଳିତ । ସେଗୁଡ଼ିକ ତା'ର ବ୍ୟକ୍ତିଗତ ତଥା ସମଷ୍ଟିଗତ ସକଳ ପ୍ରକାର ଚିନ୍ତା ଓ କାର୍ଯ୍ୟର ଉତ୍ସ । ତାଙ୍କ ମତରେ ଆବେଗ ସହଜାତ ପ୍ରବୃତ୍ତିର ଅପରିହାର୍ଯ୍ୟ ଉପାଦାନ ଏବଂ ଗୋଟିଏ ଗୋଟିଏ ମୌଳିକ ଆବେଗ ପ୍ରତ୍ୟେକ ସହଜାତ ପ୍ରବୃତ୍ତିର ଅନୁଗାମୀ । ସେ ମୋଟ ଚଉଦଗୋଟି ସହଜାତ ପ୍ରବୃତ୍ତି ଏବଂ ପ୍ରତ୍ୟେକ ଅନୁଗାମୀ ଆବେଗର ନାମୋଲ୍ଲେଖ କରିଯାଇଛନ୍ତି । ସେଗୁଡ଼ିକ ହେଲ– ୨୩୩

ସହଜାତ ପ୍ରବୃତ୍ତି (Instincts) — ମୌଳିକ ଆବେଗ (Primary Emotions).

(୧) ପଳାୟନ ପ୍ରବୃତ୍ତି Instinct of Escape) – ଭୟ (Fear)
(୨) ସଂଗ୍ରାମ ପ୍ରବୃତ୍ତି(Instinct of Combat) –କ୍ରୋଧ(Anger)
(୩) ବିତୃଷ୍ଣା ପ୍ରବୃତ୍ତି ( Instinct of Repulsion ) –ବିରକ୍ତି (Disgust)
(୪) ବାତ୍ସଲ୍ୟ ପ୍ରବୃତ୍ତି (Parental Instinct ) – ସ୍ନେହ (Tender feeling)
(୫) ଅନୁନୟ ପ୍ରବୃତ୍ତି Instinct of Appeal) –ଦୁଃଖ (Distress)
(୬) ଯୌନ ପ୍ରବୃତ୍ତି (Sex Instinct) –କାମ (Lust, Love)
(୭) କୌତୂହଳ ପ୍ରବୃତ୍ତି(Instinct of Curiosity ) –ବିସ୍ମୟ (Wonder)

୮) ଖାଦ୍ୟାନ୍ୱେଷଣ ପ୍ରବୃତ୍ତି (Instinct of food seeking) — କ୍ଷୁଧା (Hunger)

୯) ଯୂଥ ପ୍ରବୃତ୍ତି (Gregarious Instinct) — ନିଃସଙ୍ଗତା ବା ଏକାକୀତ୍ୱବୋଧ (Feeling of Loneliness)

୧୦) ଆତ୍ମପ୍ରତିଷ୍ଠା ପ୍ରବୃତ୍ତି (Instinct of Self-assertion) — ଆତ୍ମଗରିମାବୋଧ (Feeling of Superiority).

୧୧) ବଶ୍ୟତା ପ୍ରବୃତ୍ତି(Instinct of submission) — ହୀନମନ୍ୟତାବୋଧ(Feeling of Inferiority).

୧୨) ସଂଗ୍ରହ ପ୍ରବୃତ୍ତି (Instinct of Acquisition) — ଅଧିକାର ବୋଧ (Feeling of Ownership).

୧୩) ସଂଗଠନ ପ୍ରବୃତ୍ତି (Instinct of Construction) — ସୃଜନାନନ୍ଦ (Feeling of Creativeness)

୧୪) ହାସ୍ୟ ପ୍ରବୃତ୍ତି (Instinct of Laughter) — କୌତୁକବୋଧ(Feeling of Amusement).

ପରବର୍ତ୍ତୀ କାଳରେ ଉପରୋକ୍ତ ଚଉଦଗୋଟି ପ୍ରବୃତ୍ତି ସହିତ ଅନ୍ୟ ତିନିଗୋଟି ସହଜାତ ପ୍ରବୃତ୍ତି ଓ ତତ୍ ଅନୁଗାମୀ ମୌଳିକ ଆବେଗ ସଂଯୋଜିତ, ଯଥା—

୧୫) ବିଶ୍ରାମ ପ୍ରବୃତ୍ତି (Instinct of Rest ) — କ୍ଳାନ୍ତିବୋଧ (Fatigue).

୧୬) ଆରାମ ପ୍ରବଣତା(Instinct of Ease) — ଦୁଃଖ ବିମୁଖତା (Adversion to Pain

୧୭) ଅନୁସଂଧାନ ପ୍ରବଣତା(Instinct of Exploration) — ଭ୍ରମଣ ସ୍ପୃହା (Desire for Travel).

ମନୁଷ୍ୟ ଓ ଇତର ପ୍ରାଣୀ ଉଭୟେ ଏହି ସକଳ ପ୍ରବୃତ୍ତିର ଅଧିକାରୀ । କିନ୍ତୁ ମାନବୀୟ ସହଜାତ ପ୍ରବୃତ୍ତି ମୂଳରେ ଜ୍ଞାନମୂଳକ ଉପାଦାନ ନିହିତ ଥିବାରୁ (ଶିକ୍ଷା ଓ ଅଭିଜ୍ଞତା ଇତ୍ୟାଦି) ତାହାର ନାନା ପରିବର୍ତ୍ତନ ଦେଖାଯାଏ । ଯେତେବେଳେ ଏକାଧିକ ପ୍ରବୃତ୍ତି ଯୁଗପତ୍ କାର୍ଯ୍ୟ କରେ ସେତେବେଳେ ମିଶ୍ର ଆବେଗଗତ ଉତ୍ତେଜନା ଅନୁଭୂତ ହୁଏ ଏବଂ ଏହା ମଧ୍ୟରେ ମୌଳିକ ଆବେଗର କିଛି ଗୁଣ ଉପସ୍ଥିତ ଥାଏ ।

ସାହିତ୍ୟର ରସତତ୍ତ୍ୱ ଓ ମନୋବିଜ୍ଞାନ ପ୍ରତ୍ୟେକର ଦୃଷ୍ଟିଭଂଗୀ ସଂପୂର୍ଣ୍ଣ ପୃଥକ ହୋଇଥିବାରୁ ପରସ୍ପର ମଧ୍ୟରେ ସଠିକ ସଂବଧ ସ୍ଥାପନ କରିବା ସଂଭବ ନୁହେଁ । ଖାଦ୍ୟାନ୍ୱେଷଣ ପ୍ରବୃତ୍ତି, ସଂଗ୍ରହ ପ୍ରବୃତ୍ତି ବା ବିଶ୍ରାମ ପ୍ରବୃତ୍ତି ସାହିତ୍ୟ ସିଦ୍ଧାନ୍ତ କ୍ଷେତ୍ରରେ ବିଶେଷ ଗୁରୁତ୍ୱ ପୂର୍ଣ୍ଣ ସ୍ଥାନ ଦାବୀ କରେ ନାହିଁ । ସେହିପରି ସତ୍ୟ, ଶିବ, ସୁନ୍ଦରର ଆରାଧନା ସମୟରେ ମନ ମଧ୍ୟରେ ଯେଉଁ ପ୍ରଶାନ୍ତି ଭାବ ଜାଗ୍ରତ ହୁଏ, ତାହା କୌଣସି ସହଜାତ ପ୍ରବୃତ୍ତିର ଅନ୍ତର୍ଗତ ନୁହେଁ । କିନ୍ତୁ ରତି, ହାସ, କ୍ରୋଧ, ଶୋକ, ଭୟ, ଜୁଗୁପ୍ସା ଓ ବିସ୍ମୟ- ଏହି ସାତଗୋଟି ସ୍ଥାୟୀଭାବକୁ ସମଧର୍ମୀ ମୌଳିକ ଆବେଗ ଗୁଡ଼ିକ ଯଥା– ( Lust, Love, Amusement, Anger, Distress, Fear, Disgust, Wonder) ସହ ତୁଳନା କରାଯାଇପାରିବ ।

ଆବେଗ – ମ୍ୟାକ୍ଡୁଗାଲ ଆବେଗକୁ ତିନି ଭାଗରେ ବିଭକ୍ତ କରିଛନ୍ତି ।[୨୩୪]

୧ ) ମୌଳିକ ଆବେଗ ( Primary Emotions ) –ଏହାର ସଂଖ୍ୟା ସତର ଗୋଟି । ( କିଂଚିତ୍ ପୂର୍ବରୁ ଆଲୋଚିତ )

୨) ଗୌଣ ବା ମିଶ୍ର ଆବେଗ (Secondary or Blended Emotions) –ଏହା ହେଉଛି ଏକାଧିକ ମୌଳିକ ଆବେଗର ସଂମିଶ୍ରଣ । ଯେପରି କ୍ରୋଧ, ଭୟ ଓ ବିରକ୍ତି ମିଳିତ ହୋଇ ଘୃଣା ସୃଷ୍ଟି କରେ ।

୩) ବ୍ୟୁତ୍ପନ୍ନ ବା ଉଦ୍ଭୂତ ଆବେଗ (Derived Emotions)– ଏହା ସହ ସହଜାତ ପ୍ରବୃତ୍ତିର କୌଣସି ସଂବଧ ନାହିଁ । ଇଚ୍ଛାମୂଳକ ଭାବପ୍ରବଣତା ହିଁ ଏହାର କାରଣ । ଆଶା, ଉଦ୍‌ବେଗ, ଅନୁଶୋଚନା ଆଦି ଏହି ଶ୍ରେଣୀର ।

ସାହିତ୍ୟ ଶାସ୍ତ୍ରୋକ୍ତ ତେତିଶଗୋଟି ସଂଚାରୀ ଭାବ ମଧ୍ୟରୁ କେତୋଟିକୁ ପୂର୍ବୋକ୍ତ ତ୍ରିବିଧ ଆବେଗ ଓ ଅନ୍ୟ କେତୋଟିକୁ ଆବେଗ ରହିତ ମାନସିକ ଅବସ୍ଥାର ଅନ୍ତର୍ଭୁକ୍ତ କରାଯାଇପାରେ (ଯଥା-ଗର୍ବ—ମୌଳିକ ଆବେଗ; ଚିନ୍ତା, ହର୍ଷ ଆଦି -ଉଦ୍ଭୂତ ଆବେଗ : ଅସୂୟା, ବିଷାଦଆଦି— ମିଶ୍ରଆବେଗ । ) ଡକ୍‌ଟର ରାକେଶ ଗୁପ୍ତା ତାଙ୍କର "ସାଇକୋଲୋଜିକାଲ ଷ୍ଟଡ଼ିଜ୍ ଇନ୍ ରସ"( Psychological Studies in Rasa) ଗ୍ରନ୍ଥରେ ସଂଚାରୀ ଭାବ ସମୂହର ଏକ ମନୋବୈଜ୍ଞାନିକ ବିଶ୍ଳେଷଣ କରିଛନ୍ତି । ତାଙ୍କ ମତରେ ସେଗୁଡ଼ିକ ଚାରି ଶ୍ରେଣୀର । [୨୩୫]

(୧ ) ମାନସିକ ଆବେଗ ସଂବଳିତ ଭାବ (mental affection)— ଶଙ୍କା, ହର୍ଷ, ଦୈନ୍ୟ, ଉଗ୍ରତା, ଚିନ୍ତା, ତ୍ରାସ, ଅସୂୟା, ଅମର୍ଷ, ଗର୍ବ, ବ୍ରୀଡା; ଆବେଗ,ବିଷାଦ, ଔତ୍ସୁକ୍ୟ, ତର୍କ (୧୪ଟି) ।

(୨) ଆବେଗ ରହିତ ଭାବ (Unemotional feelings)—ନିର୍ବେଦ ଧୃତି, ମତି, ଅବହିତ୍‌ଥା (୪ଟି) ।

(୩) ଦୈହିକ ସଂବେଦନଶୀଳ ଭାବ (Feeling of organic sensation)ଗ୍ଲାନି, ଶ୍ରମ,ନିବୋଧ,ଅଳସତା,ବ୍ୟାଧି (୫ଟି) ।

(୪) ଭାବ ରହିତ ଅବସ୍ଥା (Cannot be feeling or bhaba ଜଡତା, ମରଣ, ମଦ, ସ୍ମୃତି, ସ୍ୱପ୍ନ, ନିଦ୍ରା, ଅପସ୍ମାର, ମୋହ, ଉନ୍ମାଦ, ଚପଳତା (୧୦ଟି) ।

ଅନୁଭୂତ—ମାନସିକ କ୍ରିୟା ଚିନ୍ତନ (Thinking), ଅନୁଭୂତି (Feeling)ଏବଂ ଇଚ୍ଛା(Willing) ଏଇ ତିନି ଭାଗରେ ବିଭକ୍ତ । ଅଭିଜ୍ଞତାର ପାରମ୍ପର୍ଯ୍ୟ ଦିଗରୁ ପ୍ରଥମେ କୌଣସି ବିଷୟରେ ଚିନ୍ତନ ଆରମ୍ଭ ହୁଏ । ତତ୍‌ପରେ ଏହା ବ୍ୟକ୍ତିଠାରେ ସୁଖ ବା ଦୁଃଖର ଅନୁଭୂତି ସୃଷ୍ଟି କରେ । ଓ ଶେଷରେ ତାହା ଇଚ୍ଛା ବା କର୍ମପ୍ରବୃତ୍ତି ଉଦ୍ରେକ କରେ ।

ମ୍ୟାକ୍‌ଡୁଗାଲ ବାର ପ୍ରକାର ଅନୁଭୂତିର ନାମୋଲ୍ଲେଖ କରିଛନ୍ତି (ଯଥା–Joy, Sorrow, Chargin' Disappointment, Surprise, Regret, Remorse, Confidence. Hope, Anxiety, Despondency, Despair).୨୩୬ ତାଙ୍କ ମତରେ ଏ ସମସ୍ତ ଉଦ୍ଭୂତ ଆବେଗ ପର୍ଯ୍ୟାୟଭୁକ୍ତ । ଏ ପ୍ରସଙ୍ଗରେ ସାହିତ୍ୟ ଶାସ୍ତ୍ରୋକ୍ତଭାବ ସକଳ କିପରି ମନୋବିଜ୍ଞାନ ଦ୍ୱାରା ସମର୍ଥିତ ତାହା ବିମୃଶ୍ୟ ।

ମନୋବୃତ୍ତି–ମନୋବିଜ୍ଞାନୀ ସାଣ୍ଡ (Shand) କହନ୍ତି ମନୋବୃତ୍ତି ହେଉଛି କୌଣସି ବିଷୟକୁ କେନ୍ଦ୍ରକରି ଗଢି ଉଠିଥିବା ଆବେଗମୂଳକ ପ୍ରବଣତାର ଏକ ସଂହତି ( An organised system of emotional tendencies centred about some subject) ।୨୩୭ ମନୋବିଦ୍‌ଗଣମନୋବୃତ୍ତିକୁ ମୁଖ୍ୟତଃ ତିନିଭାଗରେ ବିଭକ୍ତ କରିଛନ୍ତି ।ଯଥା– ସତ୍ୟାଶ୍ରୟୀ(Intellectual Sentiment ସୌନ୍ଦର୍ଯ୍ୟାଶ୍ରୟୀ (Aesthetic Sentiment), ନୀତିବୋଧାଶ୍ରୟୀ (Moral Sentiment ।

ସାହିତ୍ୟ ଦୃଷ୍ଟି ବିଶେଷ ଭାବରେ ସୌନ୍ଦର୍ଯ୍ୟାଶ୍ରୟୀ ମନୋବୃତ୍ତି ସହ ସଂଶ୍ଳିଷ୍ଟ । ଏହା ଏକ ବିଶୁଦ୍ଧ ଜିଜ୍ଞାସା । ବିମଳ ଆନନ୍ଦାନୁଭବ ମଧ୍ୟରେ ପରମ ପରିତୃପ୍ତି ଏହାର ଲକ୍ଷ୍ୟ । ସୁନ୍ଦରର ଉପାସନାରେ ଧ୍ୟାନସ୍ଥ ହେବା ଲାଗି ଏହା ବ୍ୟକ୍ତିକୁ ଉଦ୍‌ବୁଦ୍ଧ କରେ ।

ସୁନ୍ଦରର ତିନୋଟି ଉପାଦାନ– ଇନ୍ଦ୍ରିୟଗ୍ରାହ୍ୟତା, ସଂଗତି ଓ ନିର୍ଦ୍ଦେଶ୍ୟବ୍ୟଞ୍ଜନା । ସାଗରର ନୀଳିମା କିମ୍ବା ସଂଗୀତର ତାନ ସର୍ବପ୍ରଥମେ ଇନ୍ଦ୍ରିୟଭୋଗ୍ୟ ହୋଇ ମନ ମଧ୍ୟରେ ଗଭୀର ପ୍ରଶାନ୍ତିର ରୂପରାଜ୍ୟ ସୃଷ୍ଟି କରେ । କୌଣସି ସୁନ୍ଦର ମୂର୍ତ୍ତି ବା ସୁନ୍ଦରୀ ନାରୀର ଅଙ୍ଗ ବିନ୍ୟାସରେ ନିହିତ ସଙ୍ଗତି ସକଳ ବ୍ୟକ୍ତି ପକ୍ଷରେ ଆକର୍ଷଣର ବସ୍ତୁ । ଶାରଦୀୟ ଚନ୍ଦ୍ରିକା, କୋକିଳର କୂଜନ, କୁସୁମର ରସ ଭୋଗରେ ନିଃଶେଷ ହୁଏ ନାହିଁ କି ବର୍ଣ୍ଣନାରେ ଧରାଦିଏ ନାହିଁ; କେବଳ ବ୍ୟଞ୍ଜନାରେ ହିଁ ଅବଗତ ହୁଏ ।

ଶୃଙ୍ଗାର ଓ ସୌନ୍ଦର୍ଯ୍ୟ ମଧ୍ୟରେ କିପରି ନିତ୍ୟ ସଂବଧ ବର୍ତ୍ତମାନ ସେକଥା ପୂର୍ବେ ଆଲୋଚନା କରଯାଇଛି । ସୁତରାଂ ରୀତି କାବ୍ୟର କବିଗଣ ପ୍ରାକୃତିକ ସୁଷମା ତଥା ନର ନାରୀର ଅଙ୍ଗ ସୌନ୍ଦର୍ଯ୍ୟ ଚିତ୍ରଣରେ ଯେଉଁ ସୌନ୍ଦର୍ଯ୍ୟାଶ୍ରୟୀ ମନୋବୃତ୍ତିର ପରିଚୟ ଦେଇ ଯାଇଛନ୍ତି ତାହାର ଯଥାର୍ଥ ସମୀକ୍ଷା ଆବଶ୍ୟକ ।

ସଂବେଦନ–ବହିର୍ଜଗତର ଜ୍ଞାନ ଲାଭ ନିମନ୍ତେ ମନୁଷ୍ୟ ତା'ର ଇନ୍ଦ୍ରିୟ ଉପରେ ନିର୍ଭର କରେ । କୌଣସି ଉଦ୍ଦୀପକ ଇନ୍ଦ୍ରିୟ ମାଧ୍ୟମରେ ମସ୍ତିଷ୍କ ଓ ସ୍ନାୟୁତନ୍ତ୍ରୀରେ ପ୍ରତିକ୍ରିୟା ସୃଷ୍ଟିକଲେ ମନରେ ସଂବେଦନ ସୃଷ୍ଟି ହୁଏ । ଏହା ଏକ ପ୍ରକାର ବସ୍ତୁକେନ୍ଦ୍ରିକ ମାନସିକ ଅବସ୍ଥା (Objective mental state).

ସଂବେଦନ ତିନି ଭାଗରେ ବିଭକ୍ତ । (୧) ଇନ୍ଦ୍ରିୟ ସଂବେଦନ (Special Sensation) । ଯଥା–ଦୃଷ୍ଟିଗତ (Visual), ଶ୍ରବଣ ଗତ (Auditory), ସ୍ପର୍ଶଗତ (Tactual), ଘ୍ରାଣଗତ (Olfactory) ଏବଂ ସ୍ୱାଦଗତ (Gustatory) (୨) ଦୈହିକ ସଂବେଦନ (Organic Sensation) । ଯଥା–ଦେହଗତ କ୍ରିୟା କଳାପ ଜନିତ କ୍ଷୁଧା,ତୃଷା,କ୍ଳାନ୍ତି ଇତ୍ୟାଦି (୩) ପେଶୀଗତ ସଂବେଦନ (Muscular Sensation) ।

ବର୍ତ୍ତମାନ ଉଦ୍ଦୀପକ (Stimulus) ଓ ତା'ର ସଂବେଦନ ପ୍ରକ୍ରିୟାକୁ ବିଭାବ ଓ ଅନୁଭାବ ରୂପେ ଗ୍ରହଣ କରଯାଇପାରେ । ବିଭାବର ଆଲମ୍ବନ ଅଂଶଟି ବ୍ୟକ୍ତି ବିଶେଷ (ନାୟକ/ନାୟିକା) ଏବଂ ଉଦ୍ଦୀପନ ଅଂଶଟି ଚନ୍ଦ୍ର, କୋକିଳ, ଉପବନ ଆଦି ଉଦ୍ଦୀପକ ସମୂହ । ସେହିପରି ଅନୁଭାବ ଅନ୍ତର୍ଗତ ଆଙ୍ଗିକ, ବାଚିକ ଓ ସାତ୍ତ୍ୱିକ ଭାବ ସକଳ ସଂବେଦନର ତ୍ରିବିଧ ଭେଦ ମଧ୍ୟରେ ଗଣିତ ।

ମନଃସମୀକ୍ଷଣ ( Psycho-analysis) – ମନୋବିଜ୍ଞାନୀ ଫ୍ରଏଡ୍ ତିନୋଟି ମାନସିକ ସ୍ତରର ସଂଧାନ କରିଯାଇଛନ୍ତି ।

୧) ସଚେତନ (Conscious) (୨) ଅର୍ଦ୍ଧଚେତନ (Pre-conscious) ୩) ଅଚେତନ (Unconscious)। ତାଙ୍କ ମତରେ ଏଇ ଅଚେତନ ମନ ହିଁ ଆମର ସକଳ ଅବଦମିତ କାମନା ବାସନାର ଆଶ୍ରୟ ସ୍ଥଳ । ସମାଜ ବା ନୀତିର ଅନୁମୋଦନ ଲାଭ କରିନପାରି ଏ ସମସ୍ତ ଅଚେତନ ସ୍ତରରେ ବସା ବାନ୍ଧିଥାନ୍ତି । ସ୍ମୃତି ଶକ୍ତି ସାହାଯ୍ୟରେ ଏହାର ସ୍ୱରୂପ ଖୋଜି ପାଇବା ସଂଭବ ନୁହେଁ । ଫ୍ରଏଡ୍ କହନ୍ତି–ଆମର ସକଳ କାମନା ବାସନା କାମଜ । ଏଗୁଡ଼ିକ ସ୍ୱାଭାବିକ ରୀତିରେ ଚରିତାର୍ଥ ହୋଇ ନପାରି ଅବଦମିତ ହୋଇ ରହେ ଏବଂ ଆମର ସ୍ୱପ୍ନ ଓ ମାନସିକ ବିକାର ମାଧ୍ୟମରେ ଆତ୍ମପ୍ରକାଶ କରେ ।

ଅଚେତନ ମନର କାମନା ବାସନା ଯେତେବେଳେ ସ୍ୱପ୍ନ ରୂପ ଧାରଣ କରେ, ସେତେବେଳେ ତାହା କେତେଗୁଡ଼ିଏ ପ୍ରତୀକର ଆଶ୍ରୟ ନିଏ । ଫ୍ରଏଡ୍ ଏଇ ସବୁ ପ୍ରତୀକର ଏକ ଦୀର୍ଘ ତାଲିକା ପ୍ରଦାନ କରିଛନ୍ତି । ତାଙ୍କର ସିଦ୍ଧାନ୍ତ ହେଲା–ସ୍ୱପ୍ନର ଅଧିକାଂଶ ପ୍ରତୀକ ହେଉଛି ଯୌନ ପ୍ରତୀକ (Sex symbol) ।[୨୩୮] ଲାଠି, ଛତା, ବନ୍ଧୁକ, ପିସ୍ତଲ, ପେନ୍‌ସିଲ୍ ପ୍ରଭୃତି ପୁଂ-ଜନନେନ୍ଦ୍ରିୟର ପ୍ରତୀକ ଏବଂ ବାକ୍‌ସ, ଦ୍ୱାର, ଗୁମ୍ଫା ପ୍ରଭୃତି ସ୍ତ୍ରୀ-ଜନନେନ୍ଦ୍ରିୟର ପ୍ରତୀକ ।

ମନୋବିଶ୍ଳେଷଣ ମାଧ୍ୟମରେ ଫ୍ରଏଡ୍ ମଣିଷଠାରେ ଦୁଇଟି ଆଦିମ ପ୍ରବୃତ୍ତିର ସଂଧାନ କରିଛନ୍ତି –(୧) ଅହଂ ପ୍ରବୃତ୍ତି (Ego Instinct) (୨) କାମ ପ୍ରବୃତ୍ତି (Sex instinct) । ଫ୍ରଏଡ୍‌ୀୟ ଭାଷାରେ ଏହି କାମ ପ୍ରବୃତ୍ତିକୁ କୁହାଯାଏ ଲିବିଡ଼ୋ (Libido) । ଏହାର ଅର୍ଥ କିନ୍ତୁ ଅତ୍ୟନ୍ତ ବ୍ୟାପକ । ସକଳ ପ୍ରକାର ପ୍ରୀତି ଅର୍ଥାତ୍ ପିତା ମାତା, ଭାଇ ବଂଧୁ, ଜ୍ଞାତି କୁଟୁମ୍ବ, ପୁତ୍ର କନ୍ୟା ସମସ୍ତଙ୍କ ପ୍ରତି ସ୍ନେହ ମମତାର ଅଫୁରନ୍ତ ପ୍ରକାଶ ଏହି ଲିବିଡ଼ୋର ଅନ୍ତର୍ଗତ ।

ବ୍ୟକ୍ତି ଜୀବନରେ ଏହି ଲିବିଡ଼ୋର ନାନା ରୂପାନ୍ତର ଦେଖାଯାଏ; ଯଥା– ଶୈଶବୀୟ କାମ (Infantile Sexuality),

ଆତ୍ମକାମ (Narcissism), ସମକାମିତା (Homesexuality), ବିପରୀତ କାମିତା (Heterosexuality), ମାତୃ ସଂସକ୍ତି (Oedipus complex), ପିତୃସଂସକ୍ତି (Electra Complex) ମର୍ଷ କାମ Masochism), ଧର୍ଷକାମ (Sadism), ଇଦମ୍ (Id), ଅହମ୍ (Ego), ପରାହମ୍ (Super Ego), ଇତ୍ୟାଦି । ଆଧୁନିକ ସାହିତ୍ୟ ସମାଲୋଚନା କ୍ଷେତ୍ରରେ ଏହିସବୁ ସିଦ୍ଧାନ୍ତର ପ୍ରୟୋଗ ଏକାନ୍ତ ବିଜ୍ଞାନସମ୍ମତ ଓ ଉପାଦେୟ ।



ପାଦଟୀକା-

୧ । ଧ୍ୱନ୍ୟାଲୋକ (ଓଡ଼ିଶା ସାହିତ୍ୟ ଏକାଡ଼େମୀ) : ୨।୭-ପୃ ୬୮

୨ । ମା ନିଷାଦ ପ୍ରତିଷ୍ଠାଂତ୍ୱମଗମଃ ଶାଶ୍ୱତୀଃ ସମାଃ
ଯତ୍କ୍ରୌଞ୍ଚମିଥୁନାଦେକମବଧୀଃ କାମମୋହିତମ୍ ।

୩ । ବାଚସ୍ପତ୍ୟମ୍ (ଷଷ୍ଠଭାଗ) : ପୃ ୫୧୩୮

୪ । ଶବ୍ଦ କଳ୍ପଦ୍ରୁମ (୫ମ କାଣ୍ଡ) : ପୃ ୧୩୪
ଓଡ଼ିଆ ଭାଷାକୋଷ : ପୃ ୭୭୭୦
ବଂଗଳା ବିଶ୍ୱକୋଷ : ପୃ ୫୩୬
ହିନ୍ଦି ଶବ୍ଦ ସାଗର : ପୃ ୧୯୨୮

୫ । ସୁଖ ପ୍ରାୟେଷ୍ଟ ସମ୍ପନ୍ନ ଋତୁ ମାଲ୍ୟାଦି ସେବକଃ
ପୁରୁଷା ପ୍ରମଦାଯୁକ୍ତ ଶୃଙ୍ଗାର ଇତି ସଂଜ୍ଞିତଃ ।
ନାଟ୍ୟଶାସ୍ତ୍ର : ୬/୪୬

୬ । ରମ୍ୟଦେଶ କଳାକାଳ ବେଶ ଭୋଗାଦି ସେବନୈଃ
ପ୍ରମୋଦାତ୍ମା ରତିଃ ସୈବ ଯୁନୋରନ୍ୟୋନ୍ୟ ରକ୍ତଯୋଃ ।
ପ୍ରହୃଷ୍ୟମାଣା ଶୃଙ୍ଗାରେ ମଧୁରାଙ୍ଗ ବିଚେଷ୍ଟିତୈଃ ।
ଦଶରୂପ : ୪।୪୮

୭ । ରସୋଽଭିମାନୋଽହଂକାରଃ ଶୃଙ୍ଗାର ଇତି ଗୀୟତେ ।

ସରସ୍ୱତୀ କଣ୍ଠାଭରଣ : ୫।୧

୮ । ଅପ୍ରାତିକୂଲ୍ୟିକତୟା ମନସୋ ମୁଦାଦେର୍ଯସଂସ୍ୱିଦୋଽ-

ନୁଭବହେତୁରିହାଭିମାନଃ

ଜ୍ଞେୟୋ ରସଃ ସ ରସନୀୟତୟାମ୍ଭଶକ୍ତେ ରତ୍ୟାଦି-

ଭୂମନିପୁନର୍ବିତଥା ରସୋକ୍ତିଃ ।

ଶୃଙ୍ଗାର ପ୍ରକାଶ : ୧।୯

୯ । ଶୃଙ୍ଗହି ମନ୍ମଥୋଭେଦସ୍ତଦାଗମନ ହେତୁକଃ

ଉତ୍ତମ ପ୍ରକୃତି ପ୍ରାୟୋ ରସଃ ଶୃଙ୍ଗାର ଇଷ୍ୟତେ ।

ସାହିତ୍ୟ ଦର୍ପଣ (୩ୟ ପରିଚ୍ଛେଦ)—ପୃ ୨୧୭

୧୦ । ତତ୍ର ଶୃଙ୍ଗାରସ୍ୟ ସ୍ତ୍ରୀ ପୁଂସାବାଲମ୍ବନେ, ଚନ୍ଦ୍ରିକା—ବସନ୍ତ—

ବିବିଧୋପବନ—

ରହଃ ସ୍ଥାନାଦୟ ଉଦ୍ଦୀପନ ବିଭାବାଃ,ତନ୍ମୁଖାବଲୋକନ—

ତଦ୍‌ଗୁଣଶ୍ରବଣ

କୀର୍ତ୍ତନାଦୟୋଽନ୍ୟେ ସାତ୍ତ୍ୱିକଭବାସ୍ତାନୁଭବାଃ

ସ୍ମୃତି ଚିନ୍ତାଦୟୋ ବ୍ୟଭିଚାରିଣଃ ।

ରସ ଗଂଗାଧର (ପ୍ରଥମ ଆନନ)—ପୃ ୧୪୮

୧୧ । ପୁଂସଃ ସ୍ତ୍ରିୟାଃ ସ୍ତ୍ରିୟାଃ ପୁଂସି ସଂଯୋଗଂ ପ୍ରତି ଯା ସ୍ପୃହା

ସ ଶୃଙ୍ଗାର ଇତି ଖ୍ୟାତୋ ରତିକ୍ରୀଡ଼ାଦି କାରଣମ୍ ।

ଶବ୍ଦ କଳ୍ପଦ୍ରୁମ (୫ମ ଖଣ୍ଡ)—ପୃ ୧୩୮

୧୨ । ସ୍ତ୍ରୀ ପୁଂସୟୋରନ୍ୟୋନ୍ୟାଲମ୍ବନଃ ପ୍ରେମାଖ୍ୟାଚିତ୍ତବୃତ୍ତି

ବିଶେଷୋ ରତିଃ

ସ୍ଥାୟିଭାବଃ । ଗୁରୁଦେବତା ପୁତ୍ରାଦ୍ୟାଲମ୍ବନସ୍ତୁ ବ୍ୟଭିଚାରୀ ।

ରସ ଗଙ୍ଗାଧର : ୧ମ ଆନନ—ପୃ ୧୪୧

୧୩ । କାନ୍ତା ବିଷୟେ ତୁ ବ୍ୟକ୍ତା ଶୃଙ୍ଗାରଃ ।.

କାବ୍ୟ ପ୍ରକାଶ : ୪।୩୫ ବୃତ୍ତି–ପୃ ୧୨୫

୧୪ । କାମସ୍ତଦଗ୍ରେ ସମବର୍ତତାଧି ମନସୋ ରେତଃ ପ୍ରଥମଂ ଯଦାସୀତ୍
ସତୋ ବଂଧୁମସତି ନିରବିନ୍ଦନ୍ ହୃଦି ପ୍ରତୀଷ୍ୟା କବୟୋ ମନୀଷା ।

ଋଗ୍‌ବେଦ : ୧୦।୧୨୯।୪

୧୫ । କାମୋଜଜ୍ଞେ ପ୍ରଥମୋ ନୈନଂ ଦେବା ଆପୁଃ ପିତରେ ନ ମର୍ତ୍ୟାଃ
ତତସ୍ତ୍ୱମସି ଜ୍ୟାୟାନ୍ ବିଶ୍ୱହା ମହାଂସ୍ତସ୍ମୈ ତେ କାମ ନମ ଇତି
କୃଣୋମି ।

ଅଥର୍ବ ବେଦ : ୯।୨।୧୯

୧୬ । ଧର୍ମାବିରୁଦ୍ଧୋ ଭୂତେଷୁ କାମୋଽସ୍ମି ଭରତର୍ଷଭ ।

ଗୀତା–୭।୧୧

୧୭ । କାମମୟ ଏବାୟଂ ପୁରୁଷଃ ।

ବୃହଦାରଣ୍ୟକ ଉପନିଷଦ : ୪।୪।୫

୧୮ । } ଅକାମସ୍ୟ କ୍ରିୟା କାଚିଦ୍
ଦୃଶ୍ୟତେ ନେହ କର୍ହିଚିତ୍
୧୯ । ଯଦ୍ୟଦ୍ଧି କୁରୁତେ କିଂଚିତ୍ତତ୍କାମସ୍ୟ
ଚେଷ୍ଟିତମ୍ ।

ମନୁସ୍ମୃତି : ୨।୪

୨୦ । ପ୍ରେଏଡେର ଭାଲବାସା : ପୃ ୮୮-୮୯

୨୧ । ଶିବ ପୁରାଣ (ଧର୍ମ ସଂହିତା)–
ଆନନ୍ଦ ମମୃତଂ ଦିବ୍ୟଂ ପରଂବ୍ରହ୍ମ ତଦୁଚ୍ୟତେ

× × ×

ପରମାତ୍ମେତି ଗୁପ୍ତ୍ୟକ୍ତ ବିକାରଃ କାମ ସଂଜ୍ଞିତାଃ । ୮।୧୬–୧୮।

୨୧ । ପ୍ରାୟେଣ ସର୍ବଭବାନାଂ କାମାନ୍ନିଷ୍ପତ୍ତିରିଷ୍ୟତେ
ସଚେଚ୍ଛାଗୁଣ ସଂପନ୍ନୋ ବହୁଧା କାମ ଇଷ୍ୟତେ ।
ନାଟ୍ୟଶାସ୍ତ୍ର : ୨୪।୯୪

୨୨ । ଋଗ୍‌ବେଦ [ହିରଣ୍ୟଗର୍ଭସୂକ୍ତ] : ୧୦।୧୨୧

୨୩ । ଅଥର୍ବବେଦ : ୩।୨୯।୪
ଯୋ ଦେବୋ ବିଶ୍ୱାଦ୍‌ଯମୁ କାମମାହୁର୍ଯଂଦାତାରଂ
ପ୍ରତିଗୃହ୍‌ଣନ୍ତମାହୁଃ
ଯୋ ଧୀରଃ ଶକ୍ରଃ ପରିଭୂରଦାଭ୍ୟସ୍ତେଭ୍ୟୋ ଅଗ୍ନିଭ୍ୟୋ
ହୂତମସ୍ତ୍ୱେତ[redacted]

୨୪ । ତୈତ୍ତିରୀୟୋପନିଷଦ : ବଲ୍ଲୀ ୨/ଅନୁବାକ୍ ୬

୨୬ । ବୃହଦାରଣ୍ୟକ ଉପନିଷଦ : ୬।୨।୧୩

୨୭ । ଅନିର୍ବଚନୀୟ ପ୍ରେମ ସ୍ୱରୂପମ୍ । ମୂକାସ୍ୱାଦନବତ୍ ।
ନାରଦ ଭକ୍ତିସୂତ୍ର : ୫୧-୫୨

୨୮ । ଆତ୍ମେନ୍ଦ୍ରିୟ ପ୍ରୀତିବାଂଛା ତାରେ ବଲି କାମ
କୃଷ୍ଣେନ୍ଦ୍ରିୟ ପ୍ରୀତି ବାଂଛା ଧରେ ପ୍ରେମ ନାମ
× × ×
ଅତଏବ କାମ ପ୍ରେମେ ବହୁତ ଅନ୍ତର
କାମ ଅନ୍ଧତମ ପ୍ରେମ ନିର୍ମଳ ଭାସ୍କର ।
ଚୈତନ୍ୟ ଚରିତାମୃତ : ୧ ।୪ ।୧୬୫ ଓ ୧୭୧

୨୯ । ଉନ୍ମଜ୍ଜନ୍ତି ନିମଜ୍ଜନ୍ତି ପ୍ରେମ୍‌ଣ୍ୟଖଣ୍ଡରସତ୍ୱତଃ
ସର୍ବେ ରସାଶ୍ଚ ଭବାଶ୍ଚ ତରଂଗାଇବ ବାରିଧୌ ।
ଅଲଂକାର କୌସ୍ତୁଭଂ
(Bhoja's Sringar Prakas, Ed by V.Raghaban
ପୃ ୪୧୭ରୁ ଉଦ୍ଧୃତ)

୩୦ । ସର୍ବଥାଧ୍ୱଂସରହିତଂ ସତ୍ୟପିଧ୍ୱଂସ କାରଣମ୍
ଯଦ୍ଭବ ବନ୍ଧନଂ ଯୂନୋଃ ସ ପ୍ରେମାପରିକୀର୍ତ୍ତିତ୍ତ
ଉଜ୍ଜ୍ୱଳ ନୀଳମଣି: ସ୍ଥାୟୀଭବ/ ୬

୩୧ । ଇଷ୍ଟାର୍ଥ ବିଷୟାପ୍ରାପ୍ତ ରତିଃ ସମୁପଜାୟତେ
ସୌମ୍ୟତ୍ୱାଦଭିନେୟା ସା ବାଙ୍‌ମାଧୁର୍ଯ୍ୟାଙ୍ଗଚେଷ୍ଟିତୈଃ ।
ନାଟ୍ୟଶାସ୍ତ୍ର:୭/୯

୩୨ । ବ୍ୟତିଷଜତି ପଦାର୍ଥାନାନ୍ତରଃ କୋଽପିହେତୁ
ର୍ନଖଲୁ ବହିରୁପାଧୀନ୍ ପ୍ରୀତୟଃ ସଂଶ୍ରୟନ୍ତେ
ବିକସତି ହି ପତଙ୍ଗସ୍ୟୋଦୟେ ପୁଣ୍ଡରୀକଂ
ଦ୍ରବତି ଚ ହିମରଶ୍ମା ବୁଦ୍‌ଗତେ ଚନ୍ଦ୍ରକାନ୍ତଃ ।
ଉତ୍ତର ରାମଚରିତ: ୬/୧୨

୩୩ । Shakespeare Complete works
(Sonnet cxvi ) p.1122

୩୪ । କ୍ଷଣେ କ୍ଷଣେ ଯନ୍ନବତାମୁପୈତି ତଦେବ ରୂପଂ ରମଣୀୟ ତାୟାଃ
ଶିଶୁପାଳ ବଧ:୪/୧୭

୩୫ । ଚିଲିକା (ରାଧାନାଥ ଗ୍ରନ୍ଥାବଳୀ :ପୃ ୧୫୨ )

୩୬ । ଯଃ କୌମାର ହରଃ ସ ଏବ ହି ବରସ୍ତା ଏବ ଚୈତ୍ରକ୍ଷପା
ସ୍ତେ ଚୋନ୍ମୀଳିତ ମାଳତୀସୁରଭୟଃ ପ୍ରୌଢାଃ କଦମ୍ବାନିଳାଃ
ସାଚୈବାସ୍ମି ତଥାପି ତତ୍ର ସୁରତ ବ୍ୟାପାର ଲୀଳା ବିଧୌ
ରେବା ରୋଧସି ବେତସୀତରୁତଳେ ଚେତଃ ସମୁତ୍‌କଣ୍ଠତେ ।
କାବ୍ୟପ୍ରକାଶ–ପୃ ୧୩ (ଉଦ୍ଧୃତ)

୩୭ । କାବ୍ୟ ଓ କଳାକାର–ପୃ ୩୮ (ଉଦ୍ଧୃତ)

୩୮ । ତତ୍ରୈବ : ପୃ ୧୧୦ (ଉଦ୍ଧୃତି)

୩୯ । ଚନ୍ଦ୍ରଭଗା (ରାଧାନାଥ ଗ୍ରନ୍ଥାବଳୀ–ପୃ ୫୦)

୪୦ । ତ୍ରିବିଧାକୃତି ଶୃଙ୍ଗାରେ ଜ୍ଞେୟୋ ଧର୍ମାର୍ଥକାମକୃତଃ ।
ନାଟ୍ୟଶାସ୍ତ୍ର : ୨୦।୭୨

୪୧ । ନାଟ୍ୟଶାସ୍ତ୍ର: ୨୦/୭୩

୪୨ । ତତ୍ରୈବ : ୨୦/୭୪

୪୩ । ତତ୍ରୈବ : ୨୦/୭୫

୪୪ । ଶୃଙ୍ଗାର ପ୍ରକାଶ: ୨୧ଶ ଅଧ୍ୟାୟ(ଦ୍ରଷ୍ଟବ୍ୟ-Bhoja's Sringar Prakas—Ed. by V. Raghaban : P. 40)

୪୫ । ତସ୍ୟ ଦ୍ୱେ ଅଧିଷ୍ଠାନେ ସମ୍ଭୋଗ ବିପ୍ରଲମ୍ଭଶ୍ଚ ।
ନାଟ୍ୟଶାସ୍ତ୍ର ୬/୪୫ କାରିକା

୪୬ । ଅଯୋଗ ବିପ୍ରଯୋଗଶ୍ଚ ସମ୍ଭୋଗଶ୍ଚେତି ସ ତ୍ରିଧା ।
ଦଶରୂପ : ୪/୫୮

୪୭ । ସମ୍ଭୋଗ ବିପ୍ରଲମ୍ଭଶ୍ଚ ଶୃଙ୍ଗାରୋ ଦ୍ୱିବିଧଃ ସ୍ମୃତଃ ।
ଅଗ୍ନିପୁରଣ: ଅଳଂକାର ଭଗ–୬/୪

୪୮ । ତତ୍ର ଶୃଙ୍ଗାରସ୍ୟ ଦୌ ଭେଦୌ ସମ୍ଭୋଗ ବିପ୍ରଲମ୍ଭଶ୍ଚ ।
କାବ୍ୟପ୍ରକାଶ: ୪ର୍ଥ ଉଲ୍ଲାସ–ପୃ୧୧୧

୪୯ । ବିପ୍ରଲମ୍ଭୋଽଥ ସମ୍ଭୋଗ ଇତ୍ୟେଷ ଦ୍ୱିବିଧୋ ମତଃ ।
ସାହିତ୍ୟ ଦର୍ପଣ (୩ୟ ପରିଚ୍ଛେଦ)–ପୃ ୨୧୮

୫୦ । ଅନ୍ୟୋନ୍ୟସ୍ୟ ସଚିତ୍ତାବନୁଭବୌ ନାୟକୌ ଯଦିଦ୍ଧ ମୁଦୌ
ଆଲୋକନ ବଚନାଦି ସ ସର୍ବଃ ସମ୍ଭୋଗ ଶୃଙ୍ଗାରଃ ।
କାବ୍ୟାଳଂକାର (ରୁଦ୍ରଟ :୧୩/୧

୫୧ । ସମ୍ଭୋଗ ସଙ୍ଗତୟୋର୍ବିଯୁକ୍ତୟୋର୍ଯଶ୍ଚ ବିପ୍ରଲମ୍ଭଃଶୌ
ପୁନରପ୍ୟେଷ ଦ୍ୱିଧା ପ୍ରଚ୍ଛନ୍ନ ଶ୍ଚ ପ୍ରକାଶଂ ଶ୍ଚ ।
କାବ୍ୟାଲଂକାର (ରୁଦ୍ରଟ):୧୨/୬

୫୨ । ସମ୍ଭୋଗୋ ବିପ୍ରଲମ୍ଭଶ୍ଚ ଶୃଙ୍ଗାରେ ଦ୍ୱିବିଧଃ ସ୍ମୃତଃ
ପ୍ରଚ୍ଛନ୍ନ ଶ୍ଚ ପ୍ରକାଶ ଶ୍ଚ ତାବପି ଦ୍ୱିବିଧୌ ପୁନଃ ।
ଅଗ୍ନିପୁରାଣ: ଅଳଂକାର ଭଗ ୬/୪

୫୩ । ତତ୍ରାଦ୍ୟ ପରସ୍ପରବଲୋକନାଲିଙ୍ଗନାଧରପାନ–ପରି ଚୁମ୍ବନାଦ୍ୟନ-
ନ୍ତତ୍ୱାଦ ପରିଚ୍ଛେଦ୍ୟ ଏକ ଏବ ଗଣ୍ୟତେ ।
କାବ୍ୟପ୍ରକାଶ:୪ର୍ଥ ଉଲ୍ଲାସ–ପୃ୧୧୧

୫୪ । କାମୋପଗ୍ରହଃ ସମ୍ଭୋଗଃ ସ୍ତ୍ରୀପୁଂସୟୋଃ ସୁଖମ୍ ।
ଭାବ ପ୍ରକାଶ

୫୫ । କାମ ସ ଏଷ ସମ୍ଭୋଗ ସ ଚ ଚତୁର୍ଧା ବିଭଜ୍ୟତେ ।
ଭାବ ପ୍ରକାଶ ।

୫୬ । ପରସ୍ପରସ୍ୟୋପଗ୍ରହୌ ପୂନୋର୍ଯତ୍ ସାଧ୍ୱସାଦିଭିଃ
ମିତଂ ପ୍ରକ୍ରୁଜ୍ୟତେ ଭୋଗେ ପ୍ରଥମେ ସ ଦିତା ଭବେତ୍ ।
ଭାବ ପ୍ରକାଶ ।

୫୭ । ପ୍ରସାଦେଽପି ବ୍ୟଲୀକାଦିସ୍ମୃତେଃ କୋପାନୁବର୍ତନାତ୍
ସଂକର୍ଯତେ ଯଃ ସଂଭୋଗ ସ୍ତସ୍ମାତ୍ ସଂକର ଇରିତଃ ।
ଭାବ ପ୍ରକାଶ ।

୫୮ । ସଂପନ୍ନ କାମୈରୟାତୈଃ ପ୍ରୋଷିତୈରୁପ ଭୁଜ୍ୟତେ
ସଂପନ୍ନମେବ ସଭ ସ୍ୱାତସମ୍ପନ୍ନ ଇତି କଥ୍ୟତେ ।
ତତ୍ରୈବ ।

୫୯ । ପ୍ରତ୍ୟୁଜ୍ଜୀବନହର୍ଷାଦେଃ ପ୍ରବୃଦ୍ଧୋ ମୃତ ଜୀବତୋଃ
ଦୀପନାତିଶୟୈ ଦୀପ୍ତଃ ସଂଭୋଗଃ ସ୍ୟାତ୍‌ସମୃଦ୍ଧିମାନ ।
ଭବ ପ୍ରକାଶ ।

୬୦ । ଶୃଙ୍ଗାର ପ୍ରକାଶ : ୨୩ଶ ଅଧ୍ୟାୟ (ଦ୍ରଷ୍ଟବ୍ୟ– Bhoja's Sringar Prakas Ed. by V. Raghaban P.44)

୬୧ । ଦର୍ଶନ ସ୍ପର୍ଶନାଦୀନି ନିଷେବତେ ବିଳାସିନୌ ।
ଯତ୍ରାନୁରକ୍ତାବନ୍ୟୋନ୍ୟଂ ସମ୍ଭୋଗୋଽୟମୁଦାହୃତଃ ।
× × ×
ସଂଖ୍ୟା ତୁମ ଶକ୍ୟତୟା ଚୁମ୍ବନା ପରିରମ୍ଭଣାଦି ବହୁଭେଦାତ୍
ଆୟମେକ ଏବ ଧୀରୈଃ କଥିତଃ ସମ୍ଭୋଗ ଶୃଙ୍ଗାରଃ ।।
ସାହିତ୍ୟ ଦର୍ପଣ : ୩ୟ ପରିଚ୍ଛେଦ–ପୃ ୨୩୯-୨୪୦

୬୨ । ତତ୍ର ଶୃଙ୍ଗାର ଦ୍ୱିବିଧ × × × ବିଯୁକ୍ତଷ୍ଟାସ୍ତୁତିଧୀଃ ।।
ରସ ଗଙ୍ଗାଧର : ୧ମ ଆନନ–ପୃ ୧୫୦

୬୩ । ଭବୋ ଯଦା ରତିର୍ନାମ ପ୍ରକର୍ଷମଧିଗଚ୍ଛତି
ନାଧି ଗଚ୍ଛତି ଗ୍ରଭୀଷ୍ଟଂ ବିପ୍ରଲମ୍ଭସ୍ତଦୋଚ୍ୟତେ ।
ସରସ୍ୱତୀ କଣ୍ଠାଭରଣ : ୫।୪୫

୬୪ । ନବିନା ବିପ୍ରଲମ୍ଭେନ ସମ୍ଭୋଗଃ ପୁଷ୍ଟିମଶ୍ନୁତେ
କଷାୟିତେ ହି ବସ୍ତ୍ରାଦୌ ଭୂୟାନ ରଗୋଽନୁଷଜ୍ୟତେ ।
ସରସ୍ୱତୀ କଣ୍ଠାଭରଣ :୫।୫୨

୬୫ । ପୂର୍ବାନୁରଗୋ ମାନଶ୍ଚ ପ୍ରବାସଃ କରୁଣଶ୍ଚ ସ
ପୁରୁଷଃ ସ୍ତ୍ରୀ ପ୍ରକାଶ୍ଚେଷୁ ଚତୁଃ କାଣ୍ଡଃ ପ୍ରକାଶତେ ।
ସରସ୍ୱତୀ କଣ୍ଠାଭରଣ : ୫/୪୬

୬୬ । ଶୃଙ୍ଗାର ପ୍ରକାଶ : ୨୩ଶ ଅଧ୍ୟାୟ (ଦ୍ରଷ୍ଟବ୍ୟ Bhoja's Sringar Prakas Ed. by V. Raghaban P . 44)

୬୭ । ଅପରସ୍ତୁ ଅଭିଳାଷ ବିରହେର୍ଷ୍ୟା–ପ୍ରବାସ–ଶାପ ହେତୁକ
ଇତି ପଞ୍ଚବିଧଃ ।
କାବ୍ୟ ପ୍ରକାଶ : ୪ର୍ଥ ଉଲ୍ଲାସ–ପୃ ୧୧୩

୬୮ । ଶଙ୍କାଦି ବ୍ୟଭିଚାରୀ ସତାପାଦ୍ୟନୁଭବୋଽଭିଳାଷମାନ ପ୍ରବାସ-
ରୂପୋ ବିପ୍ରଲମ୍ଭଃ ॥
କାବ୍ୟାନୁଶାସନ : ୨ୟ/୩୦

୬୯ । ବିପ୍ରଲମ୍ଭାଭିଧାନୋ ଯଃ ଶୃଙ୍ଗାରଃ ସ ଚତୁର୍ବିଧଃ
ପୂର୍ବାନୁରାଗମାନାଖ୍ୟଃ ପ୍ରବାସ କରୁଣାତ୍ମକଃ ।
ଅଗ୍ନିପୁରାଣ : ଅଳଂକାର ଭାଗ ୬/୫

୭୦ । ଯତ୍ରତୁ ରତିଃ ପ୍ରକୃଷ୍ଟା ନାଭୀଷ୍ଟ ମୁପୈତି ବିପ୍ରଲମ୍ଭୋଽସୌ ।
ଅଭୀଷ୍ଟଂ ନାୟକଂ ନାୟିକାଂ ବା ।
ସ ଚ ପୂର୍ବରାଗ ମାନ ପ୍ରବାସ କରୁଣାତ୍ମକଶ୍ଚତୁର୍ଧାସ୍ୟାତ୍ ।
ସାହିତ୍ୟ ଦର୍ପଣ : ୩ୟ ପରିଚ୍ଛେଦ–ପୃ ୨୧୯

୭୧ । ପ୍ରାଗସଂଗତୟୋର୍ଯୂନୋରଭିଳାଷଃ ପ୍ରବର୍ତ୍ତତେ
ସକଳରମଣୀୟୋଽନୁରାଗଃ ସ ଉଚ୍ୟତେ ।
ସରସ୍ୱତୀ କଣ୍ଠାଭରଣ : ୫।୪୭

୭୨ । ଶ୍ରବଣାଦର୍ଶନାଦ୍‌ବାପି ମିଥଃ ସରୂଢରାଗୟୋଃ
ଦଶାବିଶେଷୋ ଯୋଽପ୍ରାପ୍ତୌ ପୂର୍ବରାଗଃ ସ ଉଚ୍ୟତେ ।
ଶ୍ରବଣଂ ତୁ ଭବେତ୍ତତ୍ର ଦୂତ ବନ୍ଦୀସଂଖୀମୁଖାତ୍
ଇନ୍ଦ୍ରଜାଲେ ଚ ଚିତ୍ରେ ଚ ସାକ୍ଷାତ୍ ସ୍ୱପ୍ନେ ତୁ ଦର୍ଶନମ୍ ।
ସାହିତ୍ୟ ଦର୍ପଣ : ୩ୟ ପ : ପୃ ୨୧୯–୨୨୦

୭୩ । ଅଭିଳାଷଶ୍ଚିନ୍ତା ସ୍ମୃତିଗୁଣକଥାନୋଦ୍‌ବେଗ ସଂପ୍ରଳାପାଶ୍ଚ
ଉନ୍ମାଦୋଽଥ ବ୍ୟାଧି ଜଡ଼ତା ମୃତିରିତି ଦଶାତ୍ର କାମଦଶାଃ ।
ସାହିତ୍ୟ ଦର୍ପଣ–୩ୟ ପ : ପୃ ୨୨୦

୭୪ । ରସବିଚ୍ଛେଦ ହେତୁତ୍ୱାନ୍ମରଣଃ ନୈବ ବର୍ଣ୍ଣ୍ୟତେ
ଜାତପ୍ରାୟଂ ତୁ ତଦ୍‌ବାଚ୍ୟଂ ଚେତସାକାଂକ୍ଷିତଂ ତଥା
ବର୍ଣ୍ଣ୍ୟତେଽପି ଯଦି ପ୍ରତ୍ୟୁଜ୍ଜୀବିତଂ ସ୍ୟାଦଦୂରତଃ ।
ସାହିତ୍ୟ ଦର୍ପଣ-୩ୟ ପ : ପୃ ୨୨୪

୭୫ । ନୀଳୀ କୁସୁମ୍ଭଂ ମଞ୍ଜିଷ୍ଠା ପୂର୍ବରାଗୋଽପିଚ ତ୍ରିଧା
ସାହିତ୍ୟ ଦର୍ପଣ—୩ୟ ପ : ପୃ ୨୨୭

୭୬ । ତତ୍ର ନାତ୍ୟତି ଶୋଭତେ ଯନ୍ନାପୈତି ପ୍ରେମ ମନୋଗତମ୍
ତନ୍ନୀଳୀ ରାଗମାଖ୍ୟାତଂ ଯଥା ଶ୍ରୀରାମ ସୀତୟୋଃ ।
ସାହିତ୍ୟ ଦର୍ପଣ—୩ୟ ପ : ପୃ ୨୨୭

୭୭ । କୁସୁମ୍ଭରାଗଂ ତତ୍ ପ୍ରାହୁର୍ଯଦପୈତି ଚ ଶୋଭତେ ।
ସାହିତ୍ୟ ଦର୍ପଣ-୩ୟ ପ : ପୃ ୨୨୭

୭୮ । ମଞ୍ଜିଷ୍ଠାରାଗମାହୁସ୍ତଦ୍ ଯନ୍ନାପୈତ୍ୟତି ଶୋଭତେ ।
ସାହିତ୍ୟ ଦର୍ପଣ—୩ୟ ପ : ପୃ ୨୨୭

୭୯ । ଦୈବ ପାରବଶ୍ୟାଭ୍ୟାମାଦ୍ୟୋ ଦ୍ୱିଧା ।
କାବ୍ୟାନୁଶାସନ : ୨/୩୧

୮୦ । କାବ୍ୟ ପ୍ରକାଶ :୪ର୍ଥ ଉଲ୍ଲାସ ପୃ୧୧୪

୮୧ । ମାନଃ ସ ନାୟକେ ଯଂ ବିକାରମାଯାତି ନାୟିକା ସେର୍ଷ୍ୟା ।
ଉଦିଶ୍ୟ ନାୟିକାନ୍ତର ସମ୍ବନ୍ଧ ସମୁଦଭବଂ ଦୋଷଂ ।
କାବ୍ୟାଳଂକାର(ରୁଦ୍ରଟ) : ୧୪ଶ ଅଧ୍ୟାୟ

୮୨ । ଦେଶଂ କାଳଂ ପାତ୍ରଂ ପ୍ରସଂଗମବ ଗମକମେତ୍ୟ ସବିଶିଷ୍ଟମ୍
ଜନୟତ କୋପମସାଧ୍ୟଂ ସୁଖସାଧ୍ୟଂ ଦୁଃଖସାଧ୍ୟଂ ବା ।
କାବ୍ୟାଳଂକାର(ରୁଦ୍ରଟ):୧୪/୧୭

୮୩ । ଅହେରିବ ଗତିଃ ପ୍ରେମ୍‌ଣଃ ସ୍ୱଭବ କୁଟିଳେତି ସଃ
ଅହେତୋର୍ମେତି ନେତ୍ୟୁଭ୍ରେର୍ହେତୁର୍ବା ମାନ ଉଚ୍ୟତେ ।
ସରସ୍ୱତୀ କଣ୍ଠାଭରଣ:୫/୪୮

୮୪ । ମାନଃ କୋପଃ ସ ତୁ ଦ୍ୱେଧା ପ୍ରଣୟେର୍ଷ୍ୟା ସମୁଦ୍‌ଭବଃ ।
ସାହିତ୍ୟ ଦର୍ପଣ:୩ୟ : ପ–ପୃ୨୨୮

୮୫ । ଅନୁନୟପର୍ଯନ୍ତାସହତ୍ୱେ ତ୍ୱସ୍ୟ ନ ବିପ୍ରଲମ୍ଭଭେଦତା,
କିନ୍ତୁ ସମ୍ଭୋଗ ସଗ୍ଚର୍ଯାଖ୍ୟଭାବତ୍ୱମ୍ ।
ସାହିତ୍ୟ ଦର୍ପଣ:୩ୟ ପ–ପୃ୨୨୯

୮୬ । ପତ୍ୟୁରନ୍ୟ ପ୍ରିୟାସଙ୍ଗେ ଦୃଷ୍ଟେଽଥାନୁମିତେ ଶ୍ରୁତେ
ଇର୍ଷ୍ୟାମାନୋ ଭବେତ୍ ସ୍ତ୍ରୀଣାଂ ତତ୍ରତ୍ୱନୁମିତି ସ୍ତ୍ରିଧା ॥
ଉତ୍ସ୍ୱପ୍ନାୟିତ ଭୋଗାଙ୍କ ଗୋତ୍ରସ୍ଖଳନ ସମ୍ଭବା ॥
ସାହିତ୍ୟ ଦର୍ପଣ:୩ୟ ପ–ପୃ୨୩୧

୮୭ । ସାମ ଭେଦୋଽଥ ଦାନଂ ଚ ନତ୍ୟୁପେକ୍ଷେ ରସାନ୍ତରମ୍ ।
ସାହିତ୍ୟ ଦର୍ପଣ: ୩ୟ ପ–ପୃ୨୩୨

୮୮ । ବଂଗଳା ବିଶ୍ୱକୋଷ : ପୃ ୫୩୭

୮୯ । ଯାସ୍ୟତି ଯାତି ଗତୌ ଯତ୍‌ପରଦେଶଂ ନାୟକ ପ୍ରବାସୋଽସୌ
ଏଷ୍ୟତ୍ୟେ ତ୍ୟାୟାତୋ ଯର୍ଥତ୍ୱଂ ସ୍ୱୋଽନ୍ୟଥା ଚ ଗୃହାନ୍ ।
କାବ୍ୟାଲଂକାର (ରୁଦ୍ରଟ) : ୧୪/୬୬

୯୦ । ଦେଶାନ୍ତରଦିଭିର୍ଯୂନୌର୍ବ୍ୟବଧାନଂ ଚିଗୟ ଯତ୍
ନବୋଽନୁରାଗେ ପ୍ରୌଢ଼େ ବା ପ୍ରବାସଃ ସେ ଭିଧୀୟତେ ।
ସରସ୍ୱତୀ କଣ୍ଠାଭରଣ : ୫।୮୯

୯୧ । ପ୍ରବାସ ଭିନ୍ନ ଦେଶତ୍ଂ
କାର୍ଯ୍ୟ ଶାପ ସଭ୍ରମୈଃ ପ୍ରବାସଃ ।

କାବ୍ୟାନୁଶାସନ

୯୨ । ପ୍ରବାସୋ ଭିନ୍ନ ଦେଶତ୍ଂ କାର୍ଯ୍ୟାଚ୍ଛାପାଚ୍ଚ ସଭ୍ରମାତ୍
ତତ୍ରାଙ୍ଗ ଚେଳ ମାଳିନ୍ୟ ମେକବେଣୀ ଧୃରଂ ଶିରଃ
ନିଶ୍ୱାସୋଚ୍ଛ୍ୱା ସରୁଦିତ ଭୂମିପାତାଦି ଜାୟତେ ।

ସାହିତ୍ୟ ଦର୍ପଣ–୩ୟ ପ : ପୃ ୨୩୪

୯୩ । କିଂଚ × × × ଦଶ ସ୍ମରଦଶାଇହ ।

ସାହିତ୍ୟ ଦର୍ପଣ–୩ୟ ପ . ପୃ ୨୩୪

୯୪ । ଭବୀ ଭବନ୍ ଭୂତ ଇତି ତ୍ରିଧା ସ୍ୟାଉତ୍ତ କାର୍ଯ୍ୟଜଃ ।

ସାହିତ୍ୟ ଦର୍ପଣ–୩ୟ ପ : ପୃ ୨୩୬

୯୫ । ସଭ୍ରମୋ ଦିବ୍ୟ ମାନୁଷ ନିର୍ଘାତୋତ୍ପାତଜଃ ।

ସାହିତ୍ୟ ଦର୍ପଣ–୩ୟ ପ : ପୃ ୨୩୮

୯୬ । କରୁଣସ୍ତୁ ଶାପ କ୍ଳେଶ ବିନିପାତ ନେଷ୍ଟଜନ ବିପ୍ରଯୋଗ
ବିଭବନାଶ ବଧ ବନ୍ଧନ
ସମୁତ୍ଥୋ ନିରପେକ୍ଷ ଭବ–ଔତ୍ସୁକ୍ୟ ଚିନ୍ତା ସମୁତ୍ଥଃ
ସାପେକ୍ଷଭବୋ
ବିପ୍ରଲମ୍ଭକୃତଃ । ଏବମନ୍ୟଃ କରୁଣଃ ଅନ୍ୟଶ୍ଚ ବିପ୍ରଲମ୍ଭ ଇତି ।

ନାଟ୍ୟଶାସ୍ତ୍ର : ୬ଷ୍ଠ ଅଧ୍ୟାୟ/୪୫ କାରିକ

୯୭ । କରୁଣଃ ସ ବିପ୍ରଲମ୍ଭେ ଯାତ୍ରାନ୍ତତରୌ ମ୍ରିୟତେ ନାୟକୟୋଃ
ଯଦିବା ମୃତକଳ୍ପଃ ସ୍ୟାଉତ୍ରାନ୍ୟସ୍ତଦ୍ଗତଂ ପ୍ରଲେପତ୍ ।

କାବ୍ୟାଳଂକାର (ରୁଦ୍ରଟ) : ୪/୩୪

୯୮ । ଲୋକାନ୍ତର ଗତେ ଯୂନି ବଲ୍ଲଭେ ବଲ୍ଲଭା ଯଦା
ଭୃଶଂ ଦୁଃଖାୟତେ ଦୀନଃ କରୁଣଃ ସ ତଦୋଚ୍ୟତେ ।
ସରସ୍ୱତୀ କଣ୍ଠାଭରଣ : ୫।୫୦

୯୯ । ଯୂନୋରେକତରସ୍ମିନ୍ ଗତବତି ଲୋକାନ୍ତରଂ ପୁନର୍ଲଭ୍ୟେ
ବିମନାୟତେ ଯଦୈକସ୍ତଦା ଭବେତ୍ କରୁଣ ବିପ୍ରଲମ୍ଭାଖ୍ୟଃ
ସାହିତ୍ୟ ଦର୍ପଣ-୩ୟ ପ : ପୃ ୨୩୮

୧୦୦ । ପୁନରଲଭ୍ୟେ ଶରୀରାନ୍ତରେଣ ବା ଲଭ୍ୟେ ତୁ
କରୁଣାଖ୍ୟ ଏବ ରସଃ ।
ସାହିତ୍ୟ ଦର୍ପଣ—୩ୟ ପ : ପୃ ୨୩୯

୧୦୧ । ଶୋକ ସ୍ଥାୟିତୟା ଭିନ୍ନୋ ବିପ୍ରଲମ୍ଭାଦୟଂ ରସଃ
ବିପ୍ରଲମ୍ଭେ ରତିଃ ସ୍ଥାୟୀ ପୁନଃ ସଂଭୋଗ ହେତୁକଃ ।
ସାହିତ୍ୟ ଦର୍ପଣ-୩ୟ ପ : ପୃ ୨୩୯

୧୦୨ । ପ୍ରିୟସ୍ୟ ସନ୍ନିକର୍ଷେହପି ପ୍ରେମୋତ୍କର୍ଷ ସ୍ୱଭାବତଃ
ଯା ବିଶ୍ଳେଷଧିୟାର୍ତ୍ତିସ୍ତଂ ପ୍ରେମ ବୈଚିତ୍ର୍ୟମୁଚ୍ୟତେ ।
ଉଜ୍ଜ୍ୱଳ ନୀଳମଣି : ଶୃଙ୍ଗାରଭେଦ/୫୭ ପୃ ୯୧୨

୧୦୩ । ତତ୍ର ଶୃଙ୍ଗାରୋନାମ ରତ ସ୍ଥାୟିଭବ ପ୍ରଭବ
ଉଜ୍ଜ୍ୱଳ ବେଷାତ୍ମକଃ ।
ନାଟ୍ୟଶାସ୍ତ୍ର ୬।୪୫ କାରିକା

୧୦୪ । ଯଥା ହି ସମାନଲକ୍ଷଣାସ୍ତୁଲ୍ୟ ପାଣିପାଦୋଦର ଶରୀରଃ ×××
ଯଥା ନରେନ୍ଦ୍ରେ ।
ବହୁ ଜନ ପରିବାରୋଽପି ସନ୍ ସ ଏବ ନାମ ଲଭତେ,
ନ୍ୟାୟଃ ସୁମହାନପି
ପୁରୁଷଃ, ତଥା ବିଭବାନୁଭବ ବ୍ୟଭିଚାରିପରିବୃତଃ ସ୍ଥାୟୀଭାବେ ।
ରସ ନାମ ଲଭତେ ।
ନାଟ୍ୟଶାସ୍ତ୍ର : ୬।୭ କାରିକା

୧୦୫ । ତତ୍ର ସଂଭୋଗ ସ୍ତାବତ୍ ଋତୁମାଲ୍ୟାନୁଲେପନାଲଂକାରେଷ୍ଟଜନ ବିଷୟବର ଭବନୋପଭୋଗୋପବନଗମନାନୁଭବନ ଶ୍ରବଣ ଦର୍ଶନ କ୍ରୀଡ଼ାଲୀଳାଦିଭିର୍ବିଭୋବୈରୁପଦ୍ୟତେ ।

ନାଟ୍ୟଶାସ୍ତ୍ର : ୬।୪୫ କାରିକା

୧୦୬ । ପ୍ରମୋଦାତ୍ମା ରତିଃ ନାମ ସୈବ ଯୂନୋଽର୍ନ୍ୟୋନ୍ୟରକ୍ତୟୋଃ ।

ଦଶରୂପ ୪।୫୬

୧୦୭ । ତତ୍ର ରତିର୍ମନୋନୁକୂଳେଽର୍ଥେ ମନସଃ ପ୍ରବଣାୟିତାମ୍ ।

ସାହିତ୍ୟ ଦର୍ପଣ·୩ୟ ପ : ପୃ ୨୧୫

୧୦୮ । ସଂଗ୍ରହିଣ ପ୍ରଧାନାନି ଦେବାଦି ବିଷୟା ରତିଃ

ସାହିତ୍ୟ ଦର୍ପଣ : ୩ୟ ପ : ପୃ ୨୬୫

୧୦୯ । କାନ୍ତା ବିଷୟା ତୁ ବ୍ୟକ୍ତା ଶୃଙ୍ଗାରଃ ।

କାବ୍ୟପ୍ରକାଶ : ୪ର୍ଥ ଉଲ୍ଲାସ ପୃ ୧୨୫

୧୧୦ । · ବହବୋଽର୍ଥା ବିଭାବ୍ୟନ୍ତେ ବାଗଙ୍ଗାଭିନୟାଶ୍ରିତାଃ ଅନେନ ଯସ୍ମାତେନାୟଂ ବିଭାବ ଇତି ସଂଜ୍ଞିତଃ ।

ନାଟ୍ୟଶାସ୍ତ୍ର : ୭।୪

୧୧୧ । ବିଭାବ୍ୟତେ ହି ରତ୍ୟାଦିର୍ଯତ୍ର ଯେନ ବିଭାବ୍ୟତେ ବିଭାବ ନାମ ସ ଦ୍ୱେଧାଲମ୍ବନୋଦ୍ଦୀପନାତ୍ମକଃ ।

ଅଗ୍ନିପୁରାଣ : ଅଳଂକାର ଭାଗ : ୩/୩୪

୧୧୨ । ଜ୍ଞାୟମାନତୟାଃ ତତ୍ର ବିଭାବୋ ଭାବ·ପୋଷକୃତ୍ ।

ଦଶରୂପ : ୪।୨

୧୧୩ । ରତ୍ୟାଦ୍ୟୁଦ୍‌ବୋଧକାଲୋକେ ବିଭବାଃ କାବ୍ୟନାଟ୍ୟୟୋଃ ।
ସାହିତ୍ୟ ଦର୍ପଣ : ୩ୟ ପ : ପୃ ୧୦୮

୧୧୪ । ରତ୍ୟାଦିଭବବର୍ଗୋଽୟଂ ଯମାଶ୍ରିତ୍ୟୋପଜାୟତେ
ଆଲମ୍ବନ ବିଭର୍ବୋଽସୌ ନାୟକାଦିଭବସ୍ତଥା ।
ଅଗ୍ନିପୁରାଣ : ଅଳଂକାର ଭଗ ୩।୩୫

୧୧୫ । ଆଲମ୍ବନଂ ନାୟକାଦିସ୍ତମାଲମ୍ବ୍ୟରସୋଦ୍‌ଗମାତ୍ ।
ସାହିତ୍ୟ ଦର୍ପଣ—୩ୟ ପ : ପୃ ୧୧୦

୧୧୬ । ଉଦ୍ଦୀପନ ବିଭବାସ୍ତେ ସଂସ୍କାରୈର୍ବିବିଧୈଃ ସ୍ଥିତାଃ
ଆଲମ୍ବନ ବିଭବେଷ୍ଟୁ ଭବାନୁଦ୍ଦୀପୟନ୍ତି ଯେ ।
ଅଗ୍ନିପୁରାଣ : ଅଳଂକାର ଭଗ ୩।୪୦

୧୧୭ । ଉଦ୍ଦୀପନ ବିଭବାସ୍ତେରସମୁଦ୍ଦୀପୟନ୍ତି ଯେ ।
ସାହିତ୍ୟ ଦର୍ପଣ-୩ୟ ପ : ପୃ ୧୮୪

୧୧୮ । ଶୃଙ୍ଗାର ପ୍ରକାଶ—୧୬ଶ ଅଧ୍ୟାୟ (ଦ୍ରଷ୍ଟବ୍ୟ Bhoja's Sringar Prakas Ed. by V. Raghaban P. 33)

୧୧୯ । ବାଗଙ୍ଗଭିନୟେନେହ ଯତସ୍ତ୍ୱର୍ଥୋଽନୁଭବ୍ୟତେ
ବାଗଙ୍ଗୋପାଙ୍ଗ ସଯୁକ୍ତ ସ୍ତ୍ୱନୁଭବସ୍ତତଃ ସ୍ମୃତଃ ।
ନାଟ୍ୟଶାସ୍ତ୍ର ୭।୫

୧୨୦ । ଅନୁଭବୋ ଭବ ବୋଧକଃ
ଅମରକୋଷ । ସ୍ୱର୍ଗବର୍ଗ ୬ଷ୍ଠ ପରିଛେଦ—ପୃ. ୫୧

୧୨୧ । ଅନୁଭବୋବିକାରସ୍ତୁଭବ ସସଚନାମ୍ଭକଃ । ଦଶରୂପ ୪।୩

୧୨୨ । ଉଦ୍‌ବୁଦ୍ଧଂ କାରଣୈଃ ସ୍ୱୈଃ ସ୍ୱୈର୍ବହିର୍ଭାବଂ ପ୍ରକାଶୟନ୍
ଲୋକେ ଯଃ କାର୍ଯ୍ୟରୂପଃ ସୋଽନୁଭାବଃ କାବ୍ୟ ନାଟ୍ୟୟୋଃ ।
ସାହିତ୍ୟ ଦର୍ପଣ-୩ୟ ପ : ପୃ ୧୮୫

୧୨୩ । ବିଭାବୈର୍ଗୃହୀତୋ ଯୋଽର୍ଥ ସ୍ତ୍ୱନୁଭାବେନ ଗମ୍ୟତେ
ବାଗଙ୍ଗ ସତ୍ତ୍ୱାଭିନୟୈଃ ସ ଭାବ ଇତି ସଂଜ୍ଞିତଃ ।
ନାଟ୍ୟଶାସ୍ତ୍ର : ୭।୧

୧୨୪ । ଶୃଙ୍ଗାର ପ୍ରକାଶ—୧୭ଶ ଅଧ୍ୟାୟ(ଦ୍ରଷ୍ଟବ୍ୟ 'Bhoja's Sringar Prakas' Ed. by V. Raghaban P. 34)

୧୨୫ । ମନୋବ୍ୟାପାର ଭୂୟିଷ୍ଠୋ ମନଆରମ୍ଭଉଚ୍ୟତେ
ଦ୍ୱିବିଧଃ ପୌରୁଷଃ ସ୍ତ୍ରୈଣ ଇଦୃଶୋଽପି ପ୍ରସିଧ୍ୟତି ।
ଅଗ୍ନିପୁରାଣ ଅଳଂକାର ଭାଗ ୩/୪୪ ପୃ ୧୫୨

୧୨୬ । ଭାବାନାମଳଂକାର ଅଂଗଜାଶ୍ଚ ସ୍ୱଭାବଜାଃ
ତଦ୍ରୂପାଃ ସାତ୍ତ୍ୱିକା ଭାବାସ୍ତଥା ଚେଷ୍ଟାପରାଅପି ।
ତଦ୍ରୂପା ଅନୁଭାବ ସ୍ୱରୂପାଃ ।
ସାହିତ୍ୟ ଦର୍ପଣ : ୩ୟ ପ : ପୃ ୧୮୬

୧୨୭ । ତତ୍ରୈବ : ପୃ ୧୮୭(ସାତ୍ତ୍ୱିକଭାବ),ପୃ ୧୬୨(ଅଙ୍ଗଜ ଅଳଂକାର),
ପୃ ୧୬୯ (ସ୍ୱଭାବଜ ଅଳଂକାର)

୧୨୮ । ବି ଅଭି ଇତ୍ୟେତାବୁପସର୍ଗୌ । ଚର ଗତୌ ଧାତୁଃ ।
ବିବିଧାଭିମୁଖ୍ୟେନ ରସେଷୁ ଚରନ୍ତୀତି ବ୍ୟଭିଚାରିଣଃ ।
ନାଟ୍ୟଶାସ୍ତ୍ର : ୭/୨୭

୧୨୯ । ସାହିତ୍ୟ ଦର୍ପଣ-୩ୟ ପ : ପୃ ୧୮୮-୨୧୨

୧୨୯ । (କ) ନାଟ୍ୟଶାସ୍ତ୍ର : ୨୪।୧୯

୧୩୦ । ତତ୍ରୈବ : ୨୪।୧୫୧

୧୩୧ । ତତ୍ରୈବ : ୨୪।୧୫୩

୧୩୨ । ତତ୍ରୈବ : ୨୪।୧୫୬

୧୩୩ । ତତ୍ରୈବ : ୨୪।୨୧୦-୨୨୧

୧୩୪ । ତତ୍ରୈବ : ୨୫।୧୮

୧୩୫ । ତତ୍ରୈବ : ୨୫।୪୩-୫୩

୧୩୬ । ତତ୍ରୈବ : ୩୪।୩୧-୩୪

୧୩୭ । ତତ୍ରୈବ : ୩୪।୨୭

୧୩୮ । ତତ୍ରୈବ : ୨୪।୨୩୦

୧୩୯ । ଶୃଙ୍ଗାର ପ୍ରକାଶ-୧୫ଶ ଅଧ୍ୟାୟ

୧୪୦ । ତତ୍ରୈବ—୨୧ଶ ଅଧ୍ୟାୟ

(୧୩୯–୧୪୦:) ଦ୍ରଷ୍ଟବ୍ୟ 'Bhoja's Sringar Prakas' Ed.by V.Rághavan P. 32,40

୧୪୧ । ଦଶରୂପ ୨/୨୪-୩୫ ପୃ ୪୮-୫୨

୧୪୨ । ସାହିତ୍ୟ ଦର୍ପଣ-୩ୟ ପ : ପୃ ୧୨୯-୧୫୬

୧୪୩ । ଉଜ୍ଜ୍ୱଳ ନୀଳମଣି : (ନାୟିକା ଭେଦ)—ପୃ ୧୩୮—୨୧୨

୧୪୪ । ଭକ୍ତିରସ ତରଙ୍ଗିଣୀ : ପୃ ୧୪୪-୧୪୫

୧୪୫ । ନାଟ୍ୟଶାସ୍ତ୍ର ୨୫।୫୪

୧୪୬ । ତତ୍ରୈବ : ୩୪।୨

୧୪୭ । ତତ୍ରୈବ : ୩୪।୧୮-୧୯

୧୪୮ । ଶୃଙ୍ଗାର ପ୍ରକାଶ : ୧୫ ଅଧ୍ୟାୟ

୧୪୯ । ତତ୍ରୈବ : ୨୧ଶ ଅଧ୍ୟାୟ

ଦ୍ରଷ୍ଟବ୍ୟ Bhoja's Sringar Prakas Ed. by V.Raghavan P. 31,40

୧୫୦ । ଦଶରୂପ : ୨।୧—୧୪ ପୃ ୪୦—୪୫

୧୫୧ । ସାହିତ୍ୟ ଦର୍ପଣ ୩ୟ ପ : ପୃ ୧୧୧-୧୧୭ (ନାୟକ), ପୃ ୧୧୭ (ସହାୟକ) ପୃ ୧୨୧ (ଅନ୍ତପୁର ସହାୟକ)

୧୫୨ । ଉଜ୍ଜ୍ୱଳ ନୀଳମଣି : ନାୟକ ଭେଦ । ପୃ ୧୦-୪୮

୧୫୩ । ଭକ୍ତିରସ ତରଙ୍ଗିଣୀ : ପୃ ୧୩୩

୧୫୪ । Studies in Nayak Nayika Bheda · P. 27

୧୫୫ । ସାହିତ୍ୟ ଦର୍ପଣ : ୩ୟ ପ : ପୃ ୧୨୪

୧୫୬ । ତତ୍ରୈବ : ପୃ ୧୨୪

୧୫୭ । ତତ୍ରୈବ : ପୃ ୧୮୨

୧୫୮ । ଉଜ୍ଜ୍ୱଳ ନୀଳମଣି ଦୂତୀଭେଦ (କ) ପୃ ୨୩୨, (ଖ) ପୃ ୨୬୯-୭୩ (ଗ) ପୃ ୨୭୪

୧୫୯ । ସାହିତ୍ୟ ଦର୍ପଣ : ୩ୟ ପ : ପୃ ୨୬୯

୧୬୦ । ଔଚିତ୍ୟ ବିଚ୍ଚର ଚର୍ଚ୍ଚା । ୧୬

୧୬୧ । ସାହିତ୍ୟ ଦର୍ପଣ : ୭ମ ପ : ପୃ—୬୬୫

୧୬୨ । The Wonder That was India · P. 24

୧୬୩ । ଛାନ୍ଦୋଗ୍ୟ ଉପନିଷଦ : ୨ୟ ଅଧ୍ୟାୟ/୧୨ଶ ଖଣ୍ଡ ୧-୨ (ଏକାଦଶୋପନିଷଦଃ—ପୃ ୨୨୮)

୧୬୪ । ବୃହଦାରଣ୍ୟକ ଉପନିଷଦ ୬ଷ୍ଠ ଅଧ୍ୟାୟ, ୧ମ ବ୍ରାହ୍ମଣ/୧୩,
(ତତ୍ରୈବ : ପୃ ୬୫୨)

୧୬୫ । ସାହିତ୍ୟାଦର୍ଶ : ପୃ ୨୬

୧୬୬ । ତତ୍ରୈବ : ପୃ ୨୬

୧୬୭ । Eros Kalos P. 96

୧୬୮ । ତତ୍ରୈବ : ପୃ ୯୬

୧୬୯ । ତତ୍ରୈବ : ପୃ ୧୦୧

୧୭୦ । ତତ୍ରୈବ : ପୃ ୧୦୧

୧୭୧ । Genesis I/27-28

୧୭୨ । Genesis II/23-24

୧୭୩ । Genesis XXX 1

୧୭୪ । Genesis XIX

୧୭୫ । GenesisXXXVIII 9-10

୧୭୬ । Ratilila : P.42

୧୭୭ । ସିତ ଶୋଣ ବିନ୍ଦୁଯୁଗଳଂ × ×
ଭବତି ମହାର୍ଦ୍ଧିପୁର ସୁନ୍ଦରୀ ରୂପଃ ।
କାମକଳା ବିଳାସ/୬-୮

୧୭୮ । ହିନ୍ଦୁତ୍ୱ : ପୃ ୪୯୪

୧୭୯ । ତତ୍ରୈବ : ପୃ ୪୯୫

୧୮୦ । ବଙ୍ଗଳା ବିଶ୍ୱକୋଷ ପୃ : ୨୯୫ ୨୯୬

୧୮୧ । The Cult of Jagannath. P 153

୧୮୨ । The Cult of Jagannath and The Regional Tradition of Orissa : P. 53

୧୮୩ । Eros & Civilisation P. 108-109

୧୮୪ । Sacrifice To Attis P. 322

୧୮୫ । Eros Kalos P. 64

୧୮୬ । Erotic Sculpture of India : P. 10

୧୮୭ । ଦେଶ (ବଂଗଳା)–୧୪ ଏପ୍ରିଲ, ୧୯୭୯ : ପୃ୪୧

୧୮୮ । Ananga Ranga : P. xvii

୧୮୯ । Archaelogical Remains of Bhubaneswar: P. 105

୧୯୦ । Ratilila : P. 146

୧୯୧ । ତତ୍ରୈବ :ପୃ ୧୫୬

୧୯୨ । ଫ୍ରୟେଡ଼େର ଭଲବାସା (ବଙ୍ଗଳା) : ପୃ ୧୦୩

୧୯୩। ତତ୍ରୈବ : ପୃ ୧୦୩

୧୯୪ । ଅଗ୍ନିପୁରଣ : ଅଳଂକାର ଭଗ—୩।୧୦

୧୯୫ । The Characters of Love P. 3

୧୯୬ । The Erotic Motive in Literture : P. 15

୧୯୭ । The Cruelest Month : P. 141

୧୯୮ । Encyclopaedia of Religion and Ethics : p.177

୧୯୯ । ଇଂଗଳା ସାହିତ୍ୟେର ଇତିବୃତ୍ତ ଓ ମୂଲ୍ୟାୟନ:(ବଂଗଳା)-ପୃ ୨୭୩

୨୦୦ । The Erotic Motive in Literature : P. 119
୨୦୧ । The Eros And the Romantic: P. 170
୨୦୨ । ଭାରତୀୟ ସ୍ଥାପତ୍ୟ : ପୃ ୫୬୫
୨୦୩ । Indian Painting · P. 36 (ଅଜନ୍ତା), P 92,93 (ରାଜସ୍ଥାନୀ): P. 84 (ଗୀତ ଗୋବିନ୍ଦ)
୨୦୪ । କାମସୂତ୍ର : ୬।୨।୫୬
୨୦୫ । ତତ୍ରୈବ : ପୃ ୪ (ମୁଖବଂଧ)
୨୦୬ । ତତ୍ରୈବ : ୧୪ର୍ଥ ଅଧ୍ୟାୟ
୨୦୭ । ଲାବଣ୍ୟବତୀ : ୩ ୧ଶ ଛାନ୍ଦ
୨୦୮ । କାମସୂତ୍ର : ୧।୫।୩-୨୬
୨୦୯ । ତତ୍ରୈବ : ୨।୧।୧
୨୧୦ । ତତ୍ରୈବ : ପୃ ୮୫
୨୧୧ । ତତ୍ରୈବ . ୨।୧।୫୬
୨୧୨ । ତତ୍ରୈବ : ୨।୧।୮
୨୧୩ । ତତ୍ରୈବ : ୧।୫।୨୮
୨୧୪ । ତତ୍ରୈବ : ୨।୧।୧
୨୧୫ । ତତ୍ରୈବ : ପୃ ୮୫
୨୧୬ । ତତ୍ରୈବ : ୨।୧।୬
୨୧୭ । ତତ୍ରୈବ : ୨।୧।୮
୨୧୮ । ତତ୍ରୈବ : ୨।୨।୪
୨୧୯ । କାମସୂତ୍ର : ୨ । ୨ । ୫

୨୨୦ । ତତ୍ରୈବ : ୨ । ୨ । ୬, ୧୪

୨୨୧ । ତତ୍ରୈବ : ୨ । ୨ । ୨୩-୨୪

୨୨୨ । ତତ୍ରୈବ : ୨ । ୩ । ୪

୨୨୩ । ତତ୍ରୈବ : ୨ । ୩୫

୨୨୪ । ତତ୍ରୈବ : ୨ । ୩ । ୭-୩୧

୨୨୫ । ତତ୍ରୈବ : ୨ । ୪ । ୪-୬

୨୨୬ । ତତ୍ରୈବ : ୨ । ୫ । ୪

୨୨୭ । ତତ୍ରୈବ : ୨।୬।୮-୨୮

୨୨୮ । ତତ୍ରୈବ : ୨।୭।୩

୨୨୯ । ତତ୍ରୈବ : ୨।୭।୬

୨୩୦। ତତ୍ରୈବ ୨।୮।୧-୩

୨୩୧ । ଲବଣ୍ୟବତୀ : ୩୩।୨୦-୩୦

୨୩୨ । ଭଂଜୀୟ କାବ୍ୟ ଭାବନା : ପୃ ୬୦-୭୭

୨୩୩। ମନୋବିଦ୍ୟା : ପ୍ରବୃତ୍ତି ଅଧ୍ୟାୟ (ବଙ୍ଗଳା)

୨୩୪ । ତତ୍ରୈବ : ଆବେଗ ଅଧ୍ୟାୟ

୨୩୫ । Psychological Studies in Rasa: P. 145

୨୩୬ । ତତ୍ରୈବ : ପୃ ୧୦୮

୨୩୭ । ମନୋବିଦ୍ୟା : ପୃ ୫୮୦

୨୩୮ । ତତ୍ରୈବ : ପୃ ୩୪୮

*

# ଶୃଙ୍ଗାର ଚେତନାର ପରଂପରା

## —ବିଶ୍ୱ ସାହିତ୍ୟ

ସୁମେରୀୟ ସାହିତ୍ୟ— ଏସିଆ ମାଇନରରେ ବାସକରୁଥିବା ପ୍ରାଚୀନ ସୁମେରୀୟ ଜାତି ସାହିତ୍ୟ ସୃଷ୍ଟିରେ ପ୍ରଥମେ ମନୋନିବେଶ କରିଥିଲେ ବୋଲି ଇତିହାସରୁ ଜଣାଯାଏ ।[୧] ମିଳୁଥିବା ପ୍ରମାଣରୁ ଦେଖାଯାଏ ଯେ ଆଜକୁ ପ୍ରାୟ ଚାରିହଜାର ବର୍ଷ ପୂର୍ବେ ସେମାନଙ୍କର ପ୍ରଥମ ପ୍ରେମ କବିତା ରଚିତ ଏବଂ ଏକ ପବିତ୍ର ବିବାହ ଅନୁଷ୍ଠାନରେ ଗୀତ ହୋଇଥିଲା । ଏହି ଉତ୍ସବରେ ପ୍ରେମ ଓ ପ୍ରଜନନର ଦେବୀ ଇନାନ୍ନା (Inanna)ଙ୍କ ଜଣେ ସେବିକା (Priestess ଙ୍କୁ ରାଜା ନିଜର ପତ୍ନୀ ରୂପେ ବରଣ କରିଥିଲେ । କବିତାଟି ହେଲା—

You have captivated me, Let me stand
trembling before you,
Bridegroom, I would be taken by you
to the bed Chamber,
You have captivated me, Let me stand
trembling before you,
Lion I would be taken by you
to the bed Chamber.

× × × × ×

Because you love me
give me, pray, of your caresses,
my lord God, my protector,
My shu-sin who gladdens Enlit's heart
give me, pray of your caresses [୨]

କବିତାଟିର ଭବ ଅତି ସରଳ । ନାରୀ ପ୍ରାଣର ସ୍ୱାଭବିକ ପ୍ରେମ ପ୍ରଚଣ୍ଡତା ଓ ସ୍ୱାମୀ ପ୍ରତି ଗଭୀର ଭକ୍ତି ଏଥିରେ ରୂପାୟିତ । ମିଳନକାମୀ ନାରୀ ପ୍ରାଣର ପ୍ରଥମ ଉଚ୍ଚାରଣ ସାହିତ୍ୟ ସୃଷ୍ଟିର ଏଇ ଆଦିମ ଜାତକରେ ଦେଖିବାକୁ ମିଳେ ।

ଗ୍ରୀକ୍ ସାହୃତ୍ୟ—କଳା, ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ପ୍ରାଚୀନ ଗ୍ରୀସ୍ ଶ୍ରେଷ୍ଠ ସ୍ଥାନର ଅଧିକାରୀ । କିନ୍ତୁ ଗ୍ରୀକ୍ ସାହିତ୍ୟରେ ପ୍ରେମ ବା କାମର ସ୍ଥାନ ସ୍ୱତନ୍ତ୍ର । ଏହା ହେଉଛି ସମକାମିତା ଅର୍ଥାତ୍ ନର ପ୍ରତି ନର ବା ନାରୀ ପ୍ରତି ନାରୀର ପ୍ରେମ । ଆଧୁନିକ କାଳରେ ଏକ ପ୍ରକାର କାମ ବିକୃତି ରୂପେ ସ୍ୱୀକୃତ ହୋଇଥିଲେ ହେଁ ଗ୍ରୀକ୍‌ମାନଙ୍କ ନିକଟରେ ଏହା ଉଚ୍ଚସ୍ଥାନ ଲଭ କରିଥିଲା । ସକ୍ରେଟିସ ତାଙ୍କର ଶିଷ୍ୟଙ୍କ ସହ, ନାରୀ କବି ସାପୋ ତାଙ୍କର ବାନ୍ଧବୀଙ୍କ ସହ ସମକାମିତାରେ ଲିପ୍ତ ଥିଲେ ବୋଲି ଇତିହାସ ସାକ୍ଷ୍ୟ ଦିଏ । ଏଥିରୁ ଜଣାଯାଏ ନର ନାରୀର ଦେହ ମନ ସଂପର୍କିତ ପ୍ରେମର ଧାରଣା ଗ୍ରୀସ୍ ଦେଶରେ ବିକାଶ ଲଭ କରିପାରିନଥିଲା । ନାରୀର ମନସ୍ତତ୍ତ୍ୱ ଓ ହୃଦୟର ରହସ୍ୟ ଉଦ୍‌ଘାଟନ କରିବାରେ ଗ୍ରୀକ୍ କବିର ଜ୍ଞାନ ସୀମାବଦ୍ଧ । ନର-ନାରୀର ପ୍ରେମାନୁଭୂତି ସଂପର୍କରେ ସେ ଏକାନ୍ତ ଉଦାସୀନ । ଗ୍ରୀକ୍ ପ୍ରେମ କବିତାରେ ଯାହା ଦେଖିବାକୁ ମିଳେ ତାହା ନିଛକ ଦେହ ଉନ୍ମାଦନା । ଦେହର ସୀମା ଅତିକ୍ରମ କରି ପ୍ରେମକୁ ଏକ ଇନ୍ଦ୍ରିୟୋତ୍ତର ସୁଷମା ମଣ୍ଡିତ କରିବାରେ କବିର ଅସାମର୍ଥ୍ୟ ସର୍ବତ୍ର ପ୍ରକାଶିତ ।

କିନ୍ତୁ ଏକଥା ସତ ଯେ କାମର ପ୍ରଚଣ୍ଡ ପ୍ରଭବ ସଂପର୍କରେ ସେମାନେ ଅତ୍ୟନ୍ତ ସଚେତନ ଥିଲେ । ଅଥଚ ତାହା କେବଳ ଜୈବିକ ପ୍ରୟୋଜନ ମଧ୍ୟରେ ସୀମିତ ଥିଲା । ଗ୍ରୀକ୍ କବି ଓ ନାଟ୍ୟକାରମାନଙ୍କ ନିକଟରେ ନରନାରୀର ପ୍ରେମ ଥିଲା ଏକାନ୍ତ ଅନାଦରଣୀୟ ।

ଗ୍ରୀକ୍ ଟ୍ରାଜେଡ଼ିରେ ଏହା ଥିଲା ଅପାଂକ୍ତେୟ । କେବଳ ୟୁରିପାଇଡ଼ସ୍ (Euripides) ତାଙ୍କ 'ହିପୋଲିଟାସ' (Hypolytus) ନାଟକର ଫିଡ୍ରା (Phaedra) ଚରିତ୍ରରେ ନରନାରୀ ପ୍ରେମର ଯେଉଁ ଚିତ୍ର ଆଙ୍କିଥିଲେ ତାହା ଥିଲା ଏକଦିଗଦର୍ଶୀ । ଅର୍ଥାତ୍ ନାରୀ ଚରିତ୍ରରେ ପ୍ରେମର ସକଳ ଉତ୍ତାପ, ଈର୍ଷା ଓ ସଂଘର୍ଷ ପୂରି ରହିଥିବାବେଳେ ପୁରୁଷ ଥିଲା କିପରି ନିର୍ବିକାର । ତଥାପି ଏରିଷ୍ଟୋଫେନସ୍ (Aristophanes) ତାଙ୍କ 'ଦି ଫ୍ରଗସ୍' (The Frogs) ନାଟକର ଏସ୍କାଇଲସ୍ (Aeschylus) ଚରିତ୍ର ମୁହଁରେ ୟୁରିପାଇଡ଼ସ୍‌ଙ୍କୁ ଏ ପ୍ରକାର ନାରୀ ଚରିତ୍ର ସୃଷ୍ଟି ପାଇଁ ଦୋଷୀ ସାବ୍ୟସ୍ତ କରିଛନ୍ତି । "Hence Aristophanes in the Character of Aeschylus attacked the degeneracy of Euripides in exhibiting on the stage the lust of Phaedra and Stheneboed" [୩] ଗ୍ରୀକ୍ ସାହିତ୍ୟରେ ନୂତନ ଯୁଗର ସୃଷ୍ଟି ପର୍ଯ୍ୟନ୍ତ ପ୍ରାୟ ଏଇଧାରା ହିଁ ପ୍ରଚଳିତ ଥିଲା ।

ପ୍ରାଚୀନ ଗ୍ରୀକ୍ ଗୀତି କବିତାରେ ସମକାମିତାର ଜୟଗାନ ବହୁଳ ପରିମାଣରେ ଦେଖିବାକୁ ମିଳେ । ଏହାକୁ ଉପେକ୍ଷା କଲେ ଆମକୁ ଗ୍ରୀସ୍‌ର ଶ୍ରେଷ୍ଠ ଗୀତି କବି ସାପ୍‌ପୋ (Sappho)ଙ୍କର ଅପୂର୍ବ ସୁନ୍ଦର କାବ୍ୟାସ୍ୱାଦରୁ ବଞ୍ଚିତ ହେବାକୁ ପଡ଼ିବ । ଖ୍ରୀ. ପୂ. ୬୧୫ରେ ତାଙ୍କର ଜନ୍ମ । ଇତିହାସ ଅପେକ୍ଷା କିମ୍ବଦନ୍ତୀରୁ ହିଁ ତାଙ୍କ ଜୀବନର ସବିଶେଷ ପରିଚୟ ମିଳେ । ଦଳେ ସୁନ୍ଦରୀ ତରୁଣୀଙ୍କ ଗହଣରେ ସେ ସମୟ ଅତିବାହିତ କରିବାକୁ ସୁଖକର ମଣୁଥିଲେ । ସେମାନଙ୍କ ମଧ୍ୟରୁ କାହା କାହା ପ୍ରତି ତାଙ୍କର ଗଭୀର ଆସକ୍ତି ଥିବାର ପ୍ରମାଣ ଅନେକ କବିତାରୁ ମିଳେ । ତାଙ୍କ ଜନ୍ମସ୍ଥାନ ଲେସ୍‌ବସ୍ (Lesbos) ଦ୍ୱୀପର ନାମରୁ ଲେସ୍‌ବିଆନିଜମ୍ (Lesbianism) ବା ନାରୀ ସମକାମିତା ଶବ୍ଦର ଉତ୍ପତ୍ତି । [୪] ସାପ୍‌ପୋଙ୍କ ପ୍ରେମ କବିତାର ପୂର୍ଣ୍ଣାଙ୍ଗ ରୂପ ଆଜି ଅଜ୍ଞାତ । ପ୍ରଚଣ୍ଡ ନିନ୍ଦା ଓ ପ୍ରତିବାଦ ସତ୍ତ୍ୱେ ମାତ୍ର କେତେଗୋଟି କବିତା କାଳଗର୍ଭରୁ ରକ୍ଷା ପାଇଅଛି । 'ଆଫ୍ରୋଡ଼ାଇଟ୍‌ଙ୍କ ପ୍ରତି' (Ode to Aphrodite) ତାଙ୍କର ଅତ୍ୟନ୍ତ ପ୍ରସିଦ୍ଧ କବିତା । କବିତାଟିର ଇଂରାଜୀ ଅନୁବାଦ ଏହିପରି—

Throned in splendour, immortal 'Aphrodite,
wile-weaving Child of Zeus,
I supplicate you,
Break not my heart with suffering
and sorrow .... [୬]

ଗ୍ରୀକ୍ ସଭ୍ୟତାର ଉର୍ବରତମ ଯୁଗରେ ସମକାମିତା ହିଁ ସମ୍ମାନର ଶୀର୍ଷତମ ସ୍ଥାନ ଲାଭ କରିଥିଲା । ତା'ର ପ୍ରତିଫଳନ ଘଟିଥିଲା ଯୁଗ ସାହିତ୍ୟରେ । ବହୁକାଳ ଅନ୍ତେ ହେଲେନିକ୍ ଯୁଗରେ ଆଲେକ୍‌ଜାଣ୍ଡ୍ରିଆକୁ କେନ୍ଦ୍ର କରି ପ୍ରେମ କବିତାର ସ୍ୱାଭାବିକ ଧାରା ଗଢି ଉଠିଥିଲା । କ୍ରମ ବର୍ଦ୍ଧମାନ ବୈଦେଶିକ ପ୍ରଭାବ ଓ ସମାଜରେ ନାରୀର ପରିବର୍ତ୍ତିତ ଭୂମିକା ଥିଲା ଏହି କବିତାର ପ୍ରେରଣା-ଉତ୍ସ ।

ପ୍ରସଂଗକ୍ରମେ ଗ୍ରୀସ୍‌ର ପ୍ରସିଦ୍ଧ ଡାୟୋନିସାସ୍ ଉତ୍ସବ (Dionysus Festival) କଥା ଭୁଲିଗଲେ ଚଳିବ ନାହିଁ । ଗ୍ରୀକ୍ ଟ୍ରାଜେଡ଼ି ଓ କମେଡ଼ିର ମୂଳ ବୀଜ ଏହିଠାରେ ନିହିତ । ଏହି ଉତ୍ସବରେ ଯେଉଁ ସବୁ ସଂଗୀତର ପ୍ରଚଳନ ଥିଲା, ସେଗୁଡ଼ିକ ଆଜିର ସାମାଜିକ ମାନଦଣ୍ଡରେ ଘୋର ଅଶ୍ଳୀଳ ବୋଲି ବିବେଚିତ ହେବ । କିନ୍ତୁ ଗ୍ରୀକ୍ ଜୀବନର ଉଦ୍ଦାମ କାମ ପ୍ରବଣତା ଏଇ ସଂଗୀତଗୁଡ଼ିକରେ ପ୍ରତିଫଳିତ ।

ମିଶ୍ରୀୟ ସାହିତ୍ୟ–ପୃଥିବୀର ଅନ୍ୟତମ ପ୍ରାଚୀନ ସଭ୍ୟତାର ପୀଠ ରୂପେ ମାନବ ଇତିହାସକୁ ମିଶରର ଦାନ ଅତୁଳନୀୟ । ମିଶରୀୟ ସାହିତ୍ୟର ପ୍ରାଚୀନତମ ଉଲ୍ଲେଖ ପ୍ରାୟ ଖ୍ରୀ. ପୂ ୩୫୦୦ ବର୍ଷ ପୂର୍ବରୁ ଦେଖିବାକୁ ମିଳେ । କିନ୍ତୁ ପ୍ରେମ ବା ପ୍ରେମ ଦେବତାର ପ୍ରସଂଗ ଖ୍ରୀ. ପୂ. ୧୪୦୦ ଆଗରୁ କେଉଁଠାରେ ଦେଖାଯାଏ ନାହିଁ । ପ୍ରେମ କବିତାର ଯେଉଁ ସବୁ ନମୁନା ଅଦ୍ୟାବଧି ମିଳିଅଛି ସେସବୁରେ ଲୋକ କବିତା (Folk Poetry)ର ଉପାଦାନ ପ୍ରଚୁର । କୃତ୍ରିମତା ଓ କ୍ଳାସିକ ସାହିତ୍ୟର କ୍ଳାନ୍ତିକର ବର୍ଣ୍ଣନା ପ୍ରବଣତା ରହିତ ସେଇ କବିତା ଗୁଡ଼ିକରେ ଆବେଗର ତୀବ୍ରତା ଓ ବକ୍ତବ୍ୟର ସରଳତା ଉପଲବ୍ଧି କରଯାଏ । ସେଗୁଡ଼ିକ ମୁଖ୍ୟତଃ ସଂଗୀତଧର୍ମୀ ହୋଇଥିବାରୁ ଅତ୍ୟନ୍ତ ଲୋକପ୍ରିୟ ହେବା ସ୍ୱାଭାବିକ ।

ପ୍ରାଚୀନ କାଳରେ ମିଶରୀୟ ଜୀବନ ଯାତ୍ରା ମାତୃପ୍ରଧାନ ସମାଜ ବ୍ୟବସ୍ଥାର ନିୟନ୍ତ୍ରଣାଧୀନ ଥିଲା । କିନ୍ତୁ କୃଷି ସଭ୍ୟତାର ଅଭ୍ୟୁଦୟ କ୍ରମେ ତାହା ପିତୃପ୍ରଧାନ ହୋଇ ଉଠିଲା । ବିବାହ ପଦ୍ଧତିରେ ମଧ୍ୟ ପରିବର୍ତ୍ତନ ଦେଖାଗଲା । ପୂର୍ବର ରକ୍ତସଂପର୍କହୀନ (exogamous) ବିବାହ ଧାରା କାଳକ୍ରମେ ରକ୍ତସଂପର୍କିତ (Endogamous) ବିବାହ ଧାରାରେ ରୂପାନ୍ତରିତ ହେଲା । କୃଷି କାର୍ଯ୍ୟରେ ସାହାଯ୍ୟ କରିବା ନିମନ୍ତେ ଭଉଣୀ (Sister or half Sister) କୁ ବିବାହ କରିବା ପ୍ରଥା କ୍ରମେ ସାମାଜିକ ସ୍ୱୀକୃତି ଲାଭ କରିଥିଲା । ସୁତରାଂ ମିଶରୀୟ ପ୍ରେମ କବିତାରେ ଭାଇ ଓ ଭଉଣୀ ଯଥାକ୍ରମେ ପ୍ରେମିକ ଓ ପ୍ରେମିକାର ସ୍ଥାନ ଗ୍ରହଣ କଲେ । "Hence in the poems the regular name for the 'lover' is brother or sister as in the song of songs the fairest among women is called sister or kinswoman."[୬]

ମିଶରୀୟମାନେ ପ୍ରାଣ ଧର୍ମରେ ଥିଲେ ଚିର ଚଞ୍ଚଳ । ଆନନ୍ଦ ଉପଭୋଗ ପ୍ରତି ସେମାନଙ୍କର ଶ୍ରଦ୍ଧା ଥିଲା ଅତୀବ ଗଭୀର । ହଜାର ହଜାର ବର୍ଷବ୍ୟାପୀ ଜୀବନର ଧାରାକୁ ଅବ୍ୟାହତ ରଖିବା ଲାଗି ମିଶରୀୟ ରାଜାଗଣ ପିରମିଡ୍ ଗର୍ଭରେ ଶାୟିତ ରହୁଥିଲେ । ସେ ଦେଶରେ ନାରୀର ଜୀବନ ଥିଲା ସ୍ୱାଧୀନ । ସମାଜର ସକଳ କ୍ଷେତ୍ରରେ ସେମାନେ ପୁରୁଷ ସହ ସମାନ ଆସନର ଅଧିକାରିଣୀ ଥିଲେ । ଏପରିକି ଯୌନ ସଂପର୍କ ତଥା ପତି ନିର୍ବାଚନରେ ସେମାନଙ୍କର ଅଖଣ୍ଡ ସ୍ୱାଧୀନତା ଥିଲା । ସୁତରାଂ ଜୀବନ ପ୍ରତି ନିବିଡ ମମତା ଏବଂ ପ୍ରେମମଗ୍ନତା ମିଶରୀୟମାନଙ୍କୁ ଦେହ ଓ ମନର ଅନ୍ତରଙ୍ଗ ଆସ୍ୱାଦନରେ ବଶୀଭୂତ କରିପାରିଥିଲା । ତେଣୁ ମିଶରୀୟ ପ୍ରେମ କବିତାରେ କାମର ଗନ୍ଧ ଅପେକ୍ଷା ପ୍ରେମର ଗନ୍ଧ ଅଧିକ । ପ୍ରାଚୀନ ପ୍ୟାପିରସ ପୃଷ୍ଠାରେ ଲିଖିତ ଗୋଟିଏ କବିତାର ସାରମର୍ମ ଏଠାରେ ଉଦ୍ଧାର କରାଯାଉଛି ।

"ସେ ନାରୀ ଅତୁଳନୀୟା, ଜଗତରେ ସବୁଠାରୁ ରୂପମୟୀ ସେ ।
ସେ ଦେବୀ, ସର୍ବଶୁଭ ସମ୍ବତ୍ସରର ପ୍ରଥମ ପ୍ରଭାତରେ ତା'ର ଆବିର୍ଭାବ ।

ରୂପ ତାର ସର୍ବଜୟୀ, ଜ୍ୟୋତିର୍ମୟ ଦେହ, କମନୀୟ ଆଖି, ମଧୁର ଓଷ୍ଠ, ଦୀର୍ଘ ଗ୍ରୀବା, ଦ୍ୟୁତିମୟ ସ୍ତନବୃନ୍ତ, ଅକୃତ୍ରିମ ବୈଦୂର୍ଯ୍ୟର କେଶରାଶି, ସୁବର୍ଣ୍ଣର ବାହୁ, ପଦ୍ମକଳିର ଅଙ୍ଗୁଳି, କ୍ଷୀଣ କଟି, ନିବିଡ ନିତମ୍ବ, ପଦ ଯୁଗରେ ରୂପର ଉଚ୍ଛଳତା, ପୃଥିବୀ ପୃଷ୍ଠରେ ତା'ର ଗତି ଲସ୍ୟ ଲୀଳାମୟ । ତା'ର ରୂପରେ ପୁରୁଷ ବିମୋହିତ, ସମ୍ବିତ୍‌ହୀନ । ସେ ଯାହାକୁ ଆଶ୍ରୟ ଦିଏ ତା'ର କି ଆନନ୍ଦ ।''[୭]

ହିବ୍ରୁ ସାହିତ୍ୟ–ପ୍ରାଚୀନ ଆରବୀୟ ଓ ମିଶରୀୟମାନଙ୍କ ପରି ହିବ୍ରୁ ସମାଜରେ ମଧ୍ୟ ନାରୀର ସ୍ୱାଧୀନତା ଥିଲା ଅଖଣ୍ଡ । ବିବାହ ପୂର୍ବରୁ ପ୍ରେମ କରିବା ଏବଂ ପତି ନିର୍ବାଚନରେ ମତଦାନ କରିବାକୁ ସେ କେବେ କୁଣ୍ଠାବୋଧ କରୁ ନ ଥିଲା ।[୮] କିନ୍ତୁ ଆଶ୍ଚର୍ଯ୍ୟର କଥା– ପ୍ରାୟ ତିନି ହଜାର ବର୍ଷର ପ୍ରାଚୀନ ହିବ୍ରୁ ସାହିତ୍ୟରେ ଶୃଙ୍ଗାର ଚେତନାର ପରଂପରା ଏକାନ୍ତ ଦୁର୍ବଳ । କେବଳ 'ଓଲଡ୍ ଟେଷ୍ଟାମେଣ୍ଟ' (Old Testament)ର କେତେକ ସ୍ଥାନରେ ଯୌନ ସମ୍ପର୍କର ଚିତ୍ର ପରିଦୃଷ୍ଟ । 'ଷ୍ଟୋରି ଅଫ୍ ଲଟ୍' (Story of Lot) କିମ୍ବା 'ଓନାନସ୍ ସିଡ୍ ଫଲିଙ୍ଗ୍' (Onana's Seed Falling) କିମ୍ବା 'ଇଭସ୍ କରପ୍‌ସନ୍ ଅଫ୍ ଆଦାମ୍' (Eve's Corruption of Adam) ଆଦି କେତୋଟି ଉଦାହରଣରେ କାମର ପ୍ରଚଣ୍ଡତା ଉପଲବ୍ଧ । କିନ୍ତୁ ନର-ନାରୀର ସ୍ୱାଭାବିକ ଆକର୍ଷଣ ଏବଂ ମୁଗ୍ଧ ମଧୁର ଯୌବନାନୁଭୂତିର ଚିତ୍ର ଆମେ ଦେଖୁ 'ଦି ସଂଗ୍ ଅଫ୍ ସୋଲେମନ୍' (The Song of Solomon ଗ୍ରନ୍ଥରେ । ଧର୍ମଯାଜକଗଣ ଏ ସବୁର ଆଧ୍ୟାତ୍ମିକ ଭାଷ୍ୟ ତିଆରି କରିଥିଲେ ହେଁ ଏଗୁଡ଼ିକ ଯେ ଖାଣ୍ଟି ଲୌକିକ କବିତା ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ସବୁ ଦେଶର ପ୍ରାଚୀନ ସାହିତ୍ୟରେ ନାନା ପ୍ରକ୍ଷେପ ପରି 'ଦି ସଂଗ ଅଫ୍ ସୋଲେମନ୍' ସେଥିରୁ ମୁକ୍ତ ନୁହେଁ । ଏ ସବୁ ସତ୍ତ୍ୱେ ପ୍ରେମ କବିତା ରୂପେ ଏ ଗୁଡ଼ିକର ସୌନ୍ଦର୍ଯ୍ୟ ଅତୁଳନୀୟ । ଉଗ୍ର ଧର୍ମଭାବାପନ୍ନ ଇହୁଦି ଜାତିର ମୁକ୍ତ ହୃଦୟ ଏଥିରେ ସ୍ୱଚ୍ଛ ପ୍ରତିଫଳିତ ହୋଇଥିବା ସତ୍ତ୍ୱେ ଗୀତଗୁଡ଼ିକ ଅଶେଷ ମୂଲ୍ୟବାନ । ଗୋଟିଏ କବିତାର କିୟଦଂଶ ଏଠାରେ ଉଦ୍ଧାର କରାଯାଉଛି–

"How beautiful are thy feet with shoes, O prince's daughter ! the joints of thy thighs are like jewels, the work of the hands of a cunning workman.

The navel is like a round goblet, which wanteth not liquor, thy belly is like a heap of wheat set about with lilies.

Thy two breasts are like two young roes that are twins.

How fair and how pleasant art thou,
O love, for delights ! [୯]

ପ୍ରାୟ ଖ୍ରୀଷ୍ଟୀୟ ୧୦ମ ଶତାବ୍ଦୀ ପର୍ଯ୍ୟନ୍ତ ଧର୍ମ-ପ୍ରଭାବହୀନ ମୁକ୍ତ ମାନବିକ ପ୍ରେମର କବିତା ହିବ୍ରୁ ସାହିତ୍ୟରେ ଦେଖା ଦେଇନଥିଲା । ପରେ ପରେ ସ୍ପେନର କବିଗଣ ଅସୀମ ଦୁଃସାହସିକତା ସହକାରେ ମାନୁଷୀ ପ୍ରେମର ଗାଥା ଗାଇବାକୁ ଆଗଭର ହୋଇଆସିଥିଲେ । ଏତିକିବେଳେ ହିବ୍ରୁ ସାହିତ୍ୟ ଯଥାର୍ଥତଃ ମାନବିକ ହୃଦୟର ଆବେଗ ଓ ଉଷ୍ଣତାରେ ପ୍ରଥମ ଥର ପାଇଁ ଆନ୍ଦୋଳିତ ହୋଇ ଉଠିଥିଲା । ଏହା ମୂଳରେ ଥିଲା ଆରବୀ ସାହିତ୍ୟର ପ୍ରତ୍ୟକ୍ଷ ପ୍ରଭାବ ଏବଂ ଆଙ୍ଗିକ ଓ ଆତ୍ମିକଗତ ବୈଚିତ୍ର୍ୟର ଦୁର୍ବାର ଆକର୍ଷଣ । କିନ୍ତୁ ସକଳ ପ୍ରଚେଷ୍ଟା ସତ୍ତ୍ୱେ ହିବ୍ରୁ ସାହିତ୍ୟ ଚିରକାଳ ପ୍ରେମ କାଙ୍ଗାଳ ।

ଆରବୀୟ ସାହିତ୍ୟ—ଆରବବାସୀର ଜୀବନ ବେଦୁଇନର ଜୀବନ । ମରୁଚାରୀ ବେଦୁଇନର ସଂଗ୍ରାମୀ ଜୀବନରେ ପ୍ରେମ, ସୁରା ଓ ସଂଗୀତର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ସଭ୍ୟତାମୋଦୀ ଜୀବନର ଘନଘଟା ତା'ର ପ୍ରାଣକୁ ଅସ୍ଥିର କରିନାହିଁ । ମୃତ୍ୟୁର ସମ୍ମୁଖୀନ ହେବାକୁ ସେ ଚିର ଅକୁଣ୍ଠିତ । ନିଜର ଶକ୍ତି ଓ ସାମର୍ଥ୍ୟ ଉପରେ ପ୍ରଚଣ୍ଡ ବିଶ୍ୱାସ ରଖି ସେ ନାରୀକୁ ଜୟ 'କରି ଆସିଛି, ପ୍ରେମ ନିବେଦନ କରି ନୁହେଁ ।

ସମାଜରେ ନାରୀର କର୍ତ୍ତୃତ୍ୱ ଓ ଅଧିକାର ଥିଲା ଅପରିସୀମ । [୨୦] ତେଣୁ ତା’ ପାଇଁ ଯୁଦ୍ଧରେ ପ୍ରାଣଦେବାକୁ ବେଦୁଇନ୍ କେବେ ପଶ୍ଚାତ୍‌ପଦ ହୋଇ ନାହିଁ କିମ୍ବା ତା’ର ମହିମାଗାନ କରିବାକୁ ସଙ୍କୋଚବୋଧ କରି ନାହିଁ ।

ପ୍ରାକ୍-ମହମ୍ମଦୀୟ ଆରବୀୟ କବିତାର ସ୍ୱରୂପ ଥିଲା ପୂର୍ଣ୍ଣତଃ ମୌଖିକ । ଦ୍ୱିତୀୟ ଓ ତୃତୀୟ ଶତାବ୍ଦୀରେ ଇସ୍‌ଲାମ ଶକ୍ତିର ଆରବ ଅଧିକାର ସଙ୍ଗେ ସଙ୍ଗେ କବିତା ସବୁ ସଂଗୃହୀତ ହୋଇ ଲିଖିତ ରୂପ ଧାରଣ କଲା । ସେଇସବୁ ସଂଗ୍ରହ ମଧ୍ୟରେ ହମାସା (Hamasa), ମୁଲ୍ଲାକାତ (Muallakat),ମୁଫଦ୍ଦଲିୟାତ (Mufaddaliyat),ଦ୍ୱିଓ୍ୱାନସ୍ (Diwans), କିତାବ-ଅଲ୍-ଅଘାନି (Kitab-al-Aghani) ଆଦି ଖୁବ୍ ପ୍ରସିଦ୍ଧ । [୨୧] ଏଇସବୁ ପ୍ରାଚୀନ ଆରବୀୟ କବିତାରେ ପ୍ରେମର ଗୌରବମୟ ଚିତ୍ର ବହୁ ସ୍ଥଳରେ ଦେଖିବାକୁ ମିଳେ । ପ୍ରତିଟି କାସିଦା (Kasida) ବା ସଂବୋଧ କବିତା (Ode)ରେ କୌଣସି ନାରୀ ପ୍ରତି କବିର ଅନ୍ତରଙ୍ଗ ପ୍ରେମ ଓ ତା’ର ବିଚ୍ଛେଦରେ ହୃଦୟର ବ୍ୟାକୁଳତା ପ୍ରକାଶିତ । କିଟା (Kita) ବା ଗୀତିଧର୍ମୀ କବିତାଗୁଡ଼ିକରେ ପ୍ରେମ ହିଁ ମୁଖ୍ୟ ବସ୍ତୁ । ଏଗୁଡ଼ିକ କୌଣସି ସଂବୋଧ କବିତାର ଅଂଶ ବିଶେଷ । ମୁଲ୍ଲାକାତ (Muallakat) ର ସାତଟିଯାକ କବିତା ପ୍ରେମଭିତ୍ତିକ । ହମାସା (Hamasa)ର ୮୮୪ ଗୋଟି କବିତା ମଧ୍ୟରୁ ୧୨୪ଟି କବିତା ଏହି ଗୋତ୍ରୀୟ ।

ଏହିସବୁ କବିତାରୁ ଦେଖାଯାଏ ଯେ ପ୍ରାକ୍-ମହମ୍ମଦୀୟ ଆରବୀୟ ସମାଜ ପିତୃପ୍ରଧାନ ହୋଇଥିଲେ ମଧ୍ୟ ଆଦିମ ମାତୃପ୍ରଧାନ ଜୀବନ ଯାତ୍ରା ପଦ୍ଧତିର ବହୁ ସୂଚନା ଏଥିରେ ରକ୍ଷିତ । ବେଦୁଇନ୍‌ର ଯୌନ ଜୀବନ ଥିଲା ଅବାଧ ଓ ସ୍ୱାଧୀନ । ନାରୀ ନିଜ ଇଚ୍ଛାରେ ପତି ନିର୍ବାଚନ କରୁଥିଲା । ଏପରିକି ଅନ୍ୟ ଗୋଷ୍ଠୀରୁ ପ୍ରେମିକ ବରଣ କରିବା ତଥା ତାକୁ ନିଜ ତମ୍ବୁକୁ ନିମନ୍ତ୍ରଣ କରିବା ଥିଲା ତା’ର ଇଚ୍ଛାଧୀନ । ବସନ୍ତ ଋତୁର ଆଗମନରେ ନାରୀପୁରୁଷ ଦଳ ଦଳ ହୋଇ , ବିସ୍ତୃତ ଉପତ୍ୟକାରେ ଇତସ୍ତତଃ ଭ୍ରମଣ କରିବା ସଙ୍ଗେ ସଙ୍ଗେ ବହୁ ଗୋଷ୍ଠୀ ସହ ଘନିଷ୍ଠ ସମ୍ପର୍କ

ସ୍ଥାପନ କରିବାର ସୁଯୋଗ ଲାଭ କରୁଥିଲେ । ଫଳତଃ ସେମାନଙ୍କ ମଧ୍ୟରେ ପ୍ରେମର ବିକାଶ ରକ୍ଷିବଦ୍ଧ ନହୋଇ ବୈଚିତ୍ର୍ୟମୟ ହୋଇ ଉଠୁଥିଲା ।

ଇସଲାମ ଶକ୍ତିର ଆବିର୍ଭାବ ପରେ ଆରବୀୟ ଧର୍ମ ଓ ସମାଜ ଜୀବନ କଠୋର ନିୟମ ଶୃଙ୍ଖଳାରେ ଆବଦ୍ଧ ହେଲା । କିନ୍ତୁ ସେଇ ପ୍ରେମ, ସୁରା ଓ ସଂଗୀତ ପିଆସୀ ବେଦୁଇନର ମନ ଚିରକାଳ ବେଦୁଇନ ହୋଇ ରହିଗଲା । ସୁତରାଂ ପରବର୍ତ୍ତୀ କାଳରେ ଆରବୀୟ ସାହିତ୍ୟ ପୁଣି ଜୀବନ ମମତାରେ ହେଲା ମଧୁମୟ । ଷଷ୍ଠ ଶତାବ୍ଦୀର କବି ଇବନ କୋଲଥୁମ୍‌ଙ୍କ କବିତା 'ସୁରାଦିଅ' କିମ୍ବା ଅଷ୍ଟମ ଶତାବ୍ଦୀର କବି ଆବଦଲ୍ ସାଲମ୍ ବିନ୍ ର ଗୋଯାନଙ୍କ କବିତା 'ସାକୀପ୍ରତି'—ଏହାର ବିଶିଷ୍ଟ ଉଦାହରଣ ।

ରୋମୀୟ ସାହିତ୍ୟ— ପ୍ରାଚୀନ ରୋମର ଜୀବନ ଚର୍ଯ୍ୟା ଥିଲା ଦେହବାଦୀ । ଅନ୍ୟ ପକ୍ଷରେ ରୋମାନମାନେ ଥିଲେ ଅତ୍ୟନ୍ତ ଯୁଦ୍ଧପ୍ରିୟ । ଗ୍ରୀସ୍ ଓ ରୋମ ମଧ୍ୟରେ ମୌଳିକ ପାର୍ଥକ୍ୟ ଏହି ଯେ ଗ୍ରୀକ୍‌ମାନେ ଥିଲେ ଐତିହ୍ୟଧର୍ମୀ; କିନ୍ତୁ ରୋମାନ୍‌ମାନେ ଥିଲେ ଇନ୍ଦ୍ରିୟଧର୍ମୀ । ସୁତରାଂ ଗ୍ରୀସ୍‌ର କଳା ଓ ସଂସ୍କୃତିରେ ଯେଉଁ ସୌନ୍ଦର୍ଯ୍ୟବୋଧ, କଳାତ୍ମକତା ଓ ଜୀବନ ପ୍ରୀତି ଦୃଷ୍ଟିଗୋଚର ହୁଏ, ତାହା ରୋମାନ୍ ସଂସ୍କୃତିରେ ଦୁର୍ଲଭ । ଗ୍ରୀକ୍ ଐତିହ୍ୟ ସହ ପରିଚିତ ହେବା ପୂର୍ବରୁ ରୋମାନମାନଙ୍କ ସାହିତ୍ୟ ସୃଷ୍ଟି ଥିଲା ପ୍ରାୟ ବୈଚିତ୍ର୍ୟହୀନ । ପରବର୍ତ୍ତୀ କାଳରେ ତହିଁରେ ଅନୁକରଣ ଓ ସମନ୍ୱୟର ଛାପ ସୁସ୍ପଷ୍ଟ । କିନ୍ତୁ ପ୍ରେମାନୁଭୂତିର ଲଳିତ ଆବେଦନ କିମ୍ବା ଅପୂର୍ବ ବ୍ୟଞ୍ଜନା ସେମାନଙ୍କ କାବ୍ୟ ଜଗତରେ ଗଭୀର ପ୍ରଭାବ ବିସ୍ତାର କରିପାରିଲା ନାହିଁ ।

ପ୍ରେମ କବିତା ରଚନା କ୍ଷେତ୍ରରେ କବି କାତୁଲାସ (Catullus) ଆମର ପ୍ରଥମେ ସ୍ମରଣୀୟ । ଯୌବନରେ କ୍ଲଡ଼ିଆ (Clodia) ନାମ୍ନୀ ଜନୈକା କନସଲ-ପତ୍ନୀଙ୍କ ପ୍ରତି ତାଙ୍କର ଗଭୀର ଆସକ୍ତି ପ୍ରକାଶ ପାଇଥିଲା । ପରମା ରୂପବତୀ, ସଭ୍ରାନ୍ତ ବଂଶୀୟା ବୁଦ୍ଧିମତୀ ସେହି ମହିଳା ଥିଲେ ସମାଜରେ ଅଶେଷ ଖ୍ୟାତିର ଅଧିକାରିଣୀ । ତାଙ୍କ ଉଦ୍ଦେଶ୍ୟରେ

ରଚିତ କବିତାଗୁଡ଼ିକ ପଢି ସେ ବିଶେଷ ଆନନ୍ଦିତା ହେଉଥିଲେ । କିନ୍ତୁ ପ୍ରେମ ବଂଧନରେ ବାଂଧି ହୋଇ ରହିବାକୁ ତାଙ୍କର ସମ୍ମତି ମିଳିଲା ନାହିଁ । ଦୀର୍ଘକାଳ ଦ୍ୱନ୍ଦ୍ୱ ଓ ପରିଶେଷରେ ସଂସାର ପ୍ରତି ବିରାଗ ହେଲା କବିଙ୍କ ପ୍ରେମର ଟ୍ରାଜିକ ପରିଣତି । 'ପୋଏମସ୍ ଟୁ ଲେସ୍‌ବିଆ, (Poems to Lesbia) କବିତା ଗ୍ରନ୍ଥରେ ସେ ତାଙ୍କର ଏଇ ପ୍ରେମ କାହାଣୀ ଲିପିବଦ୍ଧ କରିଯାଇଛନ୍ତି ।[୧୨] ବୈକ୍ତିକ ଆବେଗର ପ୍ରତ୍ୟକ୍ଷ ଅଭିବ୍ୟକ୍ତି ଓ ଲଜ୍ଜାୟିତ ପ୍ରେମର ବାସ୍ତବ ଚିତ୍ରଣ ପାଇଁ ସେ ସର୍ବକାଳୀନ ପ୍ରଶଂସାର ଅଧିକାରୀ । ଅନ୍ୟତମ ରୋମୀୟ କବି ହୋରେସ୍ (Horace) ଥିଲେ ଅତ୍ୟନ୍ତ ଦାର୍ଶନିକ ଭାବ ପନ୍ନ । ତାଙ୍କର କବିତା ସମୂହରେ ପ୍ରେମ, ସୁରା ଓ ଦେବତାମାନଙ୍କ ଜୟଗାନ ଦେଖିବାକୁ ମିଳେ । ପ୍ରେମ ପ୍ରସଂଗଗୁଡ଼ିକରେ ଅନୁଭୂତି ଓ ଆନ୍ତରିକତାର ଅଭାବ ଏକାନ୍ତ ଭାବେ ଲକ୍ଷ୍ୟଣୀୟ ।[୧୩]

ରୋମୀୟ ସାହିତ୍ୟ ଜଗତରେ ଅନ୍ୟ ଜଣେ ବିଶ୍ୱ ପ୍ରସିଦ୍ଧ କବି ହେଉଛନ୍ତି ଓଭିଡ୍ (Ovid) । ତାଙ୍କର'ଆର୍ଟ ଅଫ୍ ଲଭ' (Art of Love) ଗ୍ରନ୍ଥଟି କାବ୍ୟାୟିତ ରତିଶାସ୍ତ୍ର ଛଡ଼ା ଆଉ କିଛି ନୁହେଁ । ନର-ନାରୀ ଯୌନ ସଂପର୍କର ବିଶଦ ବିବରଣୀ, ଶରୀର ଯତ୍ନବିଧି, ବସ୍ତ୍ରାଳଂକାର ମଣ୍ଡନ କଳା ଆଦି ନାନାବିଧ ପ୍ରସଂଗର ଅବତରଣାରେ ଏହା ସମୃଦ୍ଧ । ଇଂରାଜୀରେ ଅନୂଦିତ ସେଇ କାବ୍ୟର କେତେକାଂଶ ଏଠାରେ ଉଦ୍ଧାର କରାଯାଉଛି—

"Duty is all very well, but lets not
confuse it with pleasure,
I do not want my girl doing her
duty for me,
What I like to hear are the words
of utter abandon,
Words that say "not too soon"
words that say "wait just a while." [୧୪]

"Press the couch with your knees and bend
your neck .backward a little
If your view, full-length, seems what a
lover should crave.
If your breasts and thighs are lovely
to look at
Let the man stand and the girl lie
on a slant on the bed" [୧୪]

ଗ୍ରୀକ ସାହିତ୍ୟରେ ପ୍ରେମ ଅପେକ୍ଷା କାମର ଚିତ୍ରଣ ହିଁ ମୁଖ୍ୟ । ନର-ନାରୀର ଦେହଭୋଗକୁ ବିଦେହ ଚେତନାରେ ରସାଣିତ କରି ନ ପାରିବାର ଅଗୌରବ ଗ୍ରୀକ କବିର ଭାଗ୍ୟକୁ ଚିର ବିଡ଼ମ୍ବିତ କରିଛି ।

ଫାରସୀ ସାହିତ୍ୟ—ଗ୍ରୀସ୍ ଓ ଭାରତ ଭଳି ଇରାନ ମଧ୍ୟ ପ୍ରାଚୀନ ସଭ୍ୟତାର ପୀଠଭୂମି । ଇସ୍‌ଲାମ୍ ଶାସନ ଫଳରେ ସେ ଦେଶର ଜୀବନଧାରା ବ୍ୟାପକ ପରିବର୍ତ୍ତନର ସମ୍ମୁଖୀନ ହୋଇଥିଲା । ଧର୍ମର କଠୋର ଗଣ୍ଡି ଭିତରେ ଇରାନୀମାନେ ବାନ୍ଧି ହୋଇ ପଡ଼ିଥିଲେ ସତ; କିନ୍ତୁ ସେମାନଙ୍କର ମାନସିକ ସ୍ୱାତନ୍ତ୍ର୍ୟ କୌଣସି ବଂଧନକୁ ସ୍ୱୀକାର କଲା ନାହିଁ । ସେଇ ମାନସିକତାର ଭିତ୍ତି ଉପରେ ପାରସ୍ୟର ସାହିତ୍ୟ ଓ ସଙ୍ଗୀତ ଆବେଗ, ଉଚ୍ଛଳତା ଓ କମନୀୟତାରେ ହୋଇ ଉଠିଥିଲା ପ୍ରାଣବନ୍ତ ଓ ରସମୟ ।

ଫାରସୀ ସାହିତ୍ୟରେ ପ୍ରେମ କବିତାର ପ୍ରାଚୁର୍ଯ୍ୟ ଦେଖାଯାଏ । ଏ ପ୍ରସଙ୍ଗରେ ସୁଫୀ ଧର୍ମ ଓ ସାଧନା କଥାଟି ଏକାନ୍ତ ଉଲ୍ଲେଖଯୋଗ୍ୟ । କାରଣ ଏଇ କବିତାଗୁଡ଼ିକୁ ଏକ ସଂଗରେ ଧର୍ମୀୟ କବିତା ବା ଆଧ୍ୟାତ୍ମିକ ଚେତନା ସଂବଳିତ କବିତା ହିସାବରେ ଗ୍ରହଣ କରାଯାଇପାରେ । ସୁଫୀ ଧର୍ମରେ ଈଶ୍ୱର ସାକୀ ରୂପେ ପରିକଳ୍ପିତ । ସୁତରାଂ ପାରସ୍ୟବାସୀଙ୍କ ସୁରା ଓ ସାକୀ ପ୍ରୀତିରେ ଈଶ୍ୱର ପ୍ରୀତି ଓ ଜୀବନ ପ୍ରୀତି ଓତଃପ୍ରୋତ ଭାବେ ଜଡ଼ିତ ।[୧୬] ଭକ୍ତ ଓ ଭଗବାନ, ଆତ୍ମା ଓ ପରମାତ୍ମାର ସମ୍ପର୍କ ନର-ନାରୀର

ଯୌନ ସମ୍ପର୍କ ଉପରେ ପ୍ରତିଷ୍ଠିତ ହୋଇଥିବାରୁ କବିତାରୁ ଧର୍ମକୁ ବା ଧର୍ମରୁ କବିତାକୁ ନିର୍ବାସିତ କରିବା ଅସମ୍ଭବ । ସେ ଯାହା ହେଉନା କାହିଁକି ସାହିତ୍ୟ ସମାଲୋଚନା କ୍ଷେତ୍ରରେ ଏହି ଜାତୀୟ ରସୋଚ୍ଛଳ କବିତା ସମୂହ ନିଶ୍ଚିତ ଭାବରେ ପ୍ରାକୃତ ଜୀବନର ଗାଥା ରୂପେ ହିଁ ସ୍ୱୀକୃତ ହୋଇଆସିଛି ।

ସାହାନାମା (Shah-Nameh)ର ରଚୟିତା ଫିରଦୌସି (Firdausi) ପାରସୀ ସାହିତ୍ୟର ସର୍ବଶ୍ରେଷ୍ଠ କବି । ପ୍ରାଚୀନ ଇରାନର ସଂସ୍କୃତି ଓ ଐତିହ୍ୟକୁ ଆମୂଳ କରି ସେ ତାଙ୍କର କାବ୍ୟ ଜଗତକୁ ଅକ୍ଷୟ ଐଶ୍ୱର୍ଯ୍ୟରେ ମଣ୍ଡିତ କରିଯାଇଛନ୍ତି । ଫିରଦୌସିଙ୍କ ବହୁ କବିତାରେ ପ୍ରେମର ମହିମା ଉଦ୍‌ଘୋଷିତ ।[୧୭]

ଦ୍ୱାଦଶ ଶତାବ୍ଦୀର କବି ଓ ଗଣିତଜ୍ଞ ଓମର ଖୟାମ (Omar Khayam) ପ୍ରେମ ଓ ମଦିରାର ପରମ ସ୍ତାବକ ରୂପେ ବିଶ୍ୱବିଦିତ । ପାର୍ଥିବ ସୌନ୍ଦର୍ଯ୍ୟ ପ୍ରତି ଗଭୀର ଆସକ୍ତି ଓ ଦାର୍ଶନିକ ଚେତନା ତାଙ୍କ 'ରୁବାୟତ୍' ଗୁଡ଼ିକୁ ହୃଦୟଗ୍ରାହୀ ଓ ବୁଦ୍ଧିଦୀପ୍ତ କରିଛି । ଫିଜ୍‌ଜେରାଲ୍ଡ୍(Fitzgerald)ଙ୍କ ଅନୁବାଦ ମାଧ୍ୟମରେ ତାଙ୍କର ଜନପ୍ରିୟତା ବହୁଗୁଣିତ ଓମରଙ୍କ କବିତାର ଗୋଟିଏ ପ୍ରସିଦ୍ଧ ଛତ୍ର ହେଲା—

"A book of verses underneath the bough
A jug of wine, a loaf of bread and thou .."[୧୮]

ଚତୁର୍ଦ୍ଦଶ ଶତାବ୍ଦୀର ପ୍ରସିଦ୍ଧ କବି ସାମସ୍-ଉଦ୍-ଦିନ୍ ମହମ୍ମଦ ହାଫିଜ୍ (Shams-Ud-din Muhammad Hafiz)ଙ୍କ କବିତାରେ ସୁରା, ସାକୀ, ଫୁଲ ଓ ନାଇଟିଙ୍ଗେଲ୍ ପ୍ରତି ନିବିଡ଼ ମମତା ପ୍ରକାଶିତ । କେତେକ କବିତାରେ ପ୍ରେମର ଅନ୍ତରଙ୍ଗ ଅନୁଭୂତିକୁ ରୂପ ଦେଇଥିବା ବେଳେ, ଆଉ କେତେକ କବିତାରେ ସେ ଦେହ-ସାନ୍ନିଧ୍ୟ ବିଳାସୀ ହୋଇ ଉଠିଛନ୍ତି । ତାଙ୍କ କବିତାର ଗୋଟିଏ ଛତ୍ର ହେଲା—

"Thy rosy limbs, unless I may embrace
Lose for my longing eyes full half their grace"[୧୯]

କବିତାଗୁଡ଼ିକ ଅନେକ କ୍ଷେତ୍ରରେ ରୂପକାତ୍ମକ ଓ ରହସ୍ୟାତ୍ମକ ବୋଲି ବ୍ୟାଖ୍ୟା କରଯାଇଛି । କିନ୍ତୁ କବି ହୃଦୟର ପ୍ରେମ ଘନ ଅଭିବ୍ୟକ୍ତି ଯେ ଏ ସବୁରେ ରୂପାୟିତ, ଏହା ନିଃସନ୍ଦେହ ।

ଚୀନା ସାହିତ୍ୟ—ଧର୍ମ ଓ ଦର୍ଶନ ଜଗତକୁ ଚୀନା ଜାତିର ବିଶିଷ୍ଟ ଅବଦାନ ବିଶ୍ୱସ୍ୱୀକୃତ । ତା'ର ସାହିତ୍ୟ ସୃଷ୍ଟି ମଧ୍ୟ ଅସାଧାରଣ ଗୌରବର ଅଧିକାରୀ । ଦେହ ପ୍ରୀତି ଓ ହୃଦୟପ୍ରୀତି ଚୀନର ଜୀବନ ଭୂମିକୁ ରସସିକ୍ତ କରିଥିଲେ ହେଁ କାବ୍ୟସୃଷ୍ଟିରେ କେଉଁଠି ହେଲେ ଯୌନ ଉଚ୍ଛୃଙ୍ଖଳତା ସ୍ଥାନ ପାଇନାହିଁ । ଆନନ୍ଦ ଓ ବେଦନାର ଅଭିବ୍ୟକ୍ତିରେ ସେ ଦେଶର କବି ଯେପରି ନିପୁଣତା ଦେଖାଇଅଛି, ସେହିପରି ତହିଁରେ ରୁଚିଶୀଳତା ଓ ଶାଳୀନତାର ଉତ୍କର୍ଷ ପ୍ରତିପାଦିତ କରିଛି । କୌଣସି ଯୁଗରେ ଏହି ଆଦର୍ଶର ବ୍ୟତିକ୍ରମ ଘଟିନାହିଁ । ସୁତରାଂ କାମ ଓ ପ୍ରେମ, ଶରୀର ଓ ମନ, ଭୋଗ ଓ ତ୍ୟାଗର ଆଶ୍ଚର୍ଯ୍ୟ ସମନ୍ୱୟରେ ତା'ର ପ୍ରେମ ରଚନା ଗୌରବାନ୍ୱିତ ।

କିଂବଦନ୍ତୀରୁ ଜଣାଯାଏ ଯେ କନ୍‌ଫୁସିଅସ ଚୀନର ପ୍ରାଚୀନତମ କବିତାଗ୍ରନ୍ଥ ଶି-ଚିଙ୍ଗ୍‌ର ସଂକଳକ । ଏହାର ଅନେକ କବିତା ଲୋକସଙ୍ଗୀତ ଧର୍ମୀ । ପ୍ରେମ କବିତାଗୁଡ଼ିକ ଜାତୀୟ ଜୀବନ ଜିଜ୍ଞାସାର ଉତ୍ସ । କନ୍‌ଫୁସିଅସ୍ କୁଆଁଡ଼ ଏ ସମସ୍ତ ପଢ଼ିବା ପାଇଁ ତାଙ୍କର ପୁତ୍ର ପୋ-ୟୁକୁ ଉତ୍ସାହିତ କରୁଥିଲେ । ସେ କହୁଥିଲେ— "ଏଗୁଡ଼ିକ ସକଳ ରହସ୍ୟର ଗୁଞ୍ଜିକାଠି ପରି । ଯିଏ ଏହା ପଢ଼େନା ତା'ର ଭବିଷ୍ୟତ ଅନ୍ଧକାରମୟ ।"[୨୦]

ପ୍ରାଚୀନ ଚୀନର ଅଧିକାଂଶ କବି ରାଜଜୀବୀ । ଶିକ୍ଷା, ଦୀକ୍ଷା ଓ ବଂଶ ମର୍ଯ୍ୟାଦା ଦୃଷ୍ଟିରୁ ସେମାନେ ଆଭିଜାତ୍ୟର ଉଚ୍ଚ ପର୍ଯ୍ୟାୟରେ ଅଧିଷ୍ଠିତ ଥିଲେ । ଅନେକ ରାଜକବି-ମଧ୍ୟ କବିତା ରାଜ୍ୟରେ ନିଜ ନିଜର ସୁଖ୍ୟାତି

ଅବ୍ୟାହତ ରଖି ଯାଇଛନ୍ତି । ହାନ୍ ବଂଶର ସମ୍ରାଟ ଉ-ତି ଏବଂ କାଓ-ତି ଏମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ । ଏହି ବଂଶର ପତନ ପରେ ଅଶାନ୍ତି ଉପଦ୍ରୁତ ଚୀନରେ ଜଣେ ମହାକବିଙ୍କର ଆବିର୍ଭାବ ହୋଇଥିଲା । ତାଙ୍କ ନାମ ତାଓ ୟୁୟାନ୍ ମିଙ୍ଗ୍ । ଏହାଙ୍କ କବିତା ସୃଷ୍ଟିରେ କିଞ୍ଚିତ୍ ବ୍ୟତିକ୍ରମ ଦେଖିବାକୁ ମିଳେ । ତାହା ହେଉଛି ପ୍ରେମ କବିତା ରଚନା କ୍ଷେତ୍ରରେ ତାଙ୍କର ପରଂପରା ବିରୋଧୀ ମନୋଭାବ ।

ତାଙ୍ଗ ଯୁଗ ଚୀନ ଇତିହାସର ସୁବର୍ଣ୍ଣଯୁଗ । ଏହି ସମୟରେ ଶିଳ୍ପ, ସାହିତ୍ୟ, ସଂସ୍କୃତି କ୍ଷେତ୍ରରେ ଅଭୂତପୂର୍ବ ବିକାଶ ସାଧିତ ହୋଇଥିଲା । ଗୁଙ୍ଗ-ଲିଉ-ଲିଙ୍ଗ, ଲି-ପୋ, ଟୁ-ଫୁ, ତୁ-ମୁ ପ୍ରଭୃତି କେତେଜଣ ଏ ଯୁଗର ପ୍ରସିଦ୍ଧ କବି । ଲି-ପୋ ଓ ତୁ ଫୁଙ୍କ ବହୁ କବିତାରେ ଚୀନା ପ୍ରେମ ଜୀବନର ବୈଶିଷ୍ଟ୍ୟ ପ୍ରତିଫଳିତ । ସୁଙ୍ଗ ଯୁଗର ନାରୀ କବି ଲି-ଛିଙ୍ଗଙ୍କ କବିତାରେ ପ୍ରେମ ହିଁ ମୁଖ୍ୟ ବିଷୟବସ୍ତୁ ରୂପେ ଗୃହୀତ । ପ୍ରେମର ଅନୁଭୂତି ତୀବ୍ର ହେଲେ ହେଁ ଚୀନା କବି ତାକୁ ସକଳ ଅନୁଭୂତିର ଊର୍ଦ୍ଧ୍ୱରେ ସ୍ଥାନ ଦେବାକୁ ପ୍ରୟାସୀ ହୋଇନାହିଁ । ବିରହର କରୁଣ ମଧୁର ସୌନ୍ଦର୍ଯ୍ୟ ଅଙ୍କନରେ ତା'ର ସିଦ୍ଧି ଅତୁଳନୀୟ । ପ୍ରତୀକ୍ଷା ଓ ବିଚ୍ଛେଦର ବେଦନାମୟ ଅନୁଭୂତି ଚୀନା ପ୍ରେମ କବିତାର ବିଶିଷ୍ଟ ବିଭବ ।[୨୯]

ଅନ୍ୟାନ୍ୟ–ବିଶ୍ୱ ସାହିତ୍ୟର ଇତିହାସରେ ଶୃଙ୍ଗାର ଚେତନାର ପରଂପରା ଏପରି ବ୍ୟାପକ ଯେ ତା'ର ବିଶଦ ବିବରଣୀ ଏଠାରେ ଉପସ୍ଥାପିତ କରିବା ସଂଭବ ନୁହେଁ । କେବଳ ସୂଚନାତ୍ମକ ଭାବରେ କେତୋଟି ବିଶିଷ୍ଟ ସାହିତ୍ୟ ଓ କେଇଜଣ ବରେଣ୍ୟ ସ୍ରଷ୍ଟାଙ୍କୁ ଆଲୋଚନା ପରିସଭୁକ୍ତ କରାଯାଇଛି ମାତ୍ର । ମଣିଷର ଆଦିମ କାମ ପ୍ରବୃତ୍ତିକୁ ଆଧାର କରି ସାହିତ୍ୟ ସୃଷ୍ଟିରେ ଜୀବନ ଦୃଷ୍ଟି, ମାନସିକତା ଓ ପ୍ରକାଶଭଙ୍ଗୀର ବହୁ ବୈଚିତ୍ର୍ୟ ଦୃଷ୍ଟିଗୋଚର ହୁଏ । ସୁଫୀ କବି ସୁରା ଓ ସାକୀର ମହିମା ଗାନ କଲାବେଳେ ହୁଏତ ଈଶ୍ୱରୀୟ ଚେତନାରେ ଅଭିଭୂତ ହୋଇ ଯାଇପାରେ । ଅଥଚ ଜଣେ ଜର୍ମାନ୍ କବି ଯେତେବେଳେ ମୁକ୍ତ କଣ୍ଠରେ ଗାଇପାରେ–

"If I owned the world from the sea to the Rhine. I'd give it away if I could hoid the queen of England."[୨୨] ଗ୍ରୀକ୍ କବି ନର-ନାରୀ ପ୍ରେମକୁ ଗୌଣ ମନେକରି ସମକାମିତାର ଜୟଗାନ କଲବେଳେ, ବେଦୁଇନ୍ କବି ପ୍ରିୟତମାର କୋଳରେ ଅନ୍ୟ ପୁରୁଷକୁ ଦେଖି ମଧ୍ୟ ନିର୍ବିକାର । ଚୀନା ଜବି ନିଜର ପ୍ରେମାନୁଭୂତିକୁ ସଂଯମ ଓ ଶାଳୀନତା ଭିତରେ ବାଂଧି ରଖିବାକୁ ତତ୍ପର ଥିଲବେଳେ ମିଶରୀୟ କବି ପ୍ରେମର ତନ୍ମୟତାରେ ନିଜକୁ ହଜାଇ ଦିଏ ।

ଇଟାଲୀୟ କବି ଦାନ୍ତେ (Dante) ଓ ପେଡ୍ରାକ (Petrach)– ଦୁଇ ଜଣଙ୍କ ମଧ୍ୟରେ କି ବିରାଟ ବ୍ୟବଧାନ । ନଅବର୍ଷ ବୟସରେ ଦାନ୍ତେଙ୍କର ସମବୟସ୍କା ବିୟେଟ୍ରିସ (Beatrice) ଙ୍କ ସହ ପ୍ରଥମ ଓ ତାପରେ କେଇଥର ମାତ୍ର ସାକ୍ଷାତ । ରୂପମୁଗ୍ଧ କବି ଦେହ କାମନାର ଊର୍ଦ୍ଧ୍ୱରେ ସୃଷ୍ଟି କରନ୍ତି ଡ଼ିଭାଇନ୍ କମେଡ଼ି (Divine Comedy) [୨୩] । କିନ୍ତୁ ପେଡ୍ରାକଙ୍କ ପ୍ରଣୟିନୀ ଲରା (Laura)– କି ରହସ୍ୟମୟ ତା'ର ଜୀବନ ବୃତ୍ତ । ସେ କେଉଁ ଦେହଧାରୀ ମାନବୀ ନା କେଉଁ ଅମୂର୍ତ୍ତ କଳ୍ପନା ? ସେ କ'ଣ ଅନ୍ୟର ବିବାହିତା ପତ୍ନୀ ନା ଅନୂଢ଼ା ସୁନ୍ଦରୀ ? ସଂପର୍କ ଦେହୀ ନା ବିଦେହୀ ? ପେଡ୍ରାର୍କ କହନ୍ତି–ଲରଙ୍କର ପ୍ରଥମ ଦର୍ଶନରେ ହିଁ ସେ କବି ପାଲଟି ଗଲେ । [୨୪] ଏଇ ଲରଙ୍କର ପ୍ରେମ ପାଗଳ କବି ଗଣି ଗଣି କବିତାରେ ବ୍ୟର୍ଥ ପ୍ରଣୟକୁ ଇନ୍ଦ୍ରିୟୋତ୍ତର ଚେତନାରେ ରୂପାନ୍ତରିତ କରି ଜାତିର ସାହିତ୍ୟକୁ ବିପୁଳ ଗୌରବରେ ମଣ୍ଡିତ କରିଯାଇଛନ୍ତି ।

ଚସର୍ (Chaucer), ସେକ୍ସପିଅର (Shakespeare) ଓ ମିଲ୍‌ଟନ (Milton)–ଇଂରଜି ସାହିତ୍ୟର ଏଇ ଖ୍ୟାତିବାନ ସ୍ରଷ୍ଟାଗଣଙ୍କ ସୃଷ୍ଟିରେ ଶୃଙ୍ଗାର ଚେତନାର ବିପୁଳ ବିକାସ ମଧ୍ୟ ଲକ୍ଷ୍ୟ କରଯାଇପାରେ । ଚସରଙ୍କ 'ଟ୍ରୟଲସ ଓ କ୍ରିସିଡ୍' (Troilus and Criseyde) କାବ୍ୟର ନାୟିକା କ୍ରିସିଡ୍ ନିଜର ଏକନିଷ୍ଠ ପ୍ରେମିକ ଟ୍ରୟଲସକୁ ପରିତ୍ୟାଗ କରି ଗ୍ରୀକ୍ ବୀର ଡ଼ାୟମିଡ଼ସ୍ ନିକଟରେ ଆତ୍ମସମର୍ପଣ କରିଛି ।[୨୫]

ସାଧାରଣ ଦୃଷ୍ଟିରେ ଏହା ବିଶ୍ୱାସଘାତକତା ହୋଇଥିଲେ ହେଁ ନାରୀର ପ୍ରେମ ଓ ତା'ର ମନସ୍ତତ୍ତ୍ୱ ଦୃଷ୍ଟିରୁ ଚରିତ୍ରଟି ଏକାନ୍ତ ଉଲ୍ଲେଖଯୋଗ୍ୟ । 'କ୍ୟାଣ୍ଟରବରୀ ଟେଲସ୍' (Canterbury Tales)ର ଜଣେକା ନାୟିକା (Wife of Bath) ନିର୍ବିକାର ଚିତ୍ତରେ ସ୍ୱଭୋଗଲିପ୍ସା । ଡେଭିଡ୍ ଲୋଥ୍ (David Loth)ଙ୍କ ଭାଷାରେ– "Chaucer has nowhere feels called upon to apologize when the wife of Bath tells how she managed her five husbands, her companions are not shocked when she quotes herself as saying, for example—

What ails you that grumble so and groan ?

Is it because you'd have my cunt alone?"[୨୭]

ସେକ୍‌ସପିଅରଙ୍କ କମେଡ଼ି (Comedy) ସମୂହ ପ୍ରେମ ଓ ଯୌବନର ଜୟଗାନରେ ମୁଖର । 'ଅଥେଲୋ' (Othello), ଆଣ୍ଟୋନି ଓ କ୍ଲିଓପେଟ୍ରା (Antony and Cleopatra) ଭଳି ନାଟକଗୁଡ଼ିକ ପ୍ରେମର ଟ୍ରାଜିକ ପରିଣତି ଉପରେ ପ୍ରତିଷ୍ଠିତ ।

ମିଲ୍‌ଟନ୍‌ଙ୍କ 'ପାରଡ଼ାଇସ୍ ଲଷ୍ଟ' (Paradise Lost) ମହାକାବ୍ୟର ବିଷୟବସ୍ତୁ ହେଉଛି ବାଇବେଲୀୟ ଆଦାମ ଓ ଇଭର ମିଳନ କାହାଣୀ । ଏଇ କାହାଣୀରେ ସର୍ପ (Serpent)ର ଉପସ୍ଥିତିକୁ ସମାଲୋଚକଗଣ ଏକ ଯୌନ ପ୍ରତୀକ ରୂପେ ଗ୍ରହଣ କରିଅଛନ୍ତି । "When AEschylus wrote his play of Prometheus stealing the fire or Milton used Biblical material of Eve tempted by the serpent, they were probably ignorant of the sexual association of fire and the serpent in ancient times. But their own works thus become symbolical." [୨୮]

## ଶେଷକଥା–

ଏହିପରି ଭବରେ ଦେଖିଲେ ଏହା ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ଶୃଙ୍ଗାର ଚେତନା ହିଁ ମୁଖ୍ୟତଃ ଧର୍ମୀୟ ଓ ଧର୍ମ ନିରପେକ୍ଷ–ସକଳ ପ୍ରକାର ସାହିତ୍ୟ-ସୃଷ୍ଟିର ପ୍ରେରଣାର ଉତ୍ସ । ସ୍ରଷ୍ଟାର ସଚେତନ ବା ଅଚେତନ ମନ ଏହାର ପୃଷ୍ଠଭୂମିରେ କାର୍ଯ୍ୟ କରିଥାଏ । ପ୍ରାଚୀନ କାଳଠାରୁ ଆଧୁନିକ କାଳ ପର୍ଯ୍ୟନ୍ତ ସମାଜ ଓ ଶାସନ ବ୍ୟବସ୍ଥାର ବିବିଧ ପରିବର୍ତ୍ତନ ସତ୍ତ୍ୱେ କାମ ବା ଲିବିଡ଼ୋ (Libido)ର ଭୂମିକା ମାନବ ଜୀବନରେ ଅପରିବର୍ତ୍ତନୀୟ ହୋଇ ରହିଛି ଓ ତା'ର କଳାଶକ୍ତି ସାହିତ୍ୟ ଧାରକୁ ନିୟନ୍ତ୍ରଣ କରୁଅଛି ।



# ଭାରତୀୟ ସାହିତ୍ୟ

ବୈଦିକ ସାହିତ୍ୟ–ଭାରତୀୟ ସାହିତ୍ୟ ପରିପ୍ରେକ୍ଷୀରେ ମାନବୀୟ କାମ ଚେତନାର ଆଦିମ ନିଦର୍ଶନ ଋଗ୍‌ବେଦର ସମ୍ବାଦ ସୂକ୍ତରେ ଦେଖିବାକୁ ମିଳେ । ଏହାର ଦଶମ ମଣ୍ଡଳରେ ଥିବା ଦୁଇଟି ଦୀର୍ଘ ଓ ପ୍ରାୟ ସମ୍ପୂର୍ଣ୍ଣ ଉପାଖ୍ୟାନ (ଯଥା– ଯମ ଯମୀ [୨୮] ଓ ପୁରୁରବା ଉର୍ବଶୀ [୨୯] ସମ୍ବାଦ) ବିଶେଷ ଭାବେ ଉଲ୍ଲେଖଯୋଗ୍ୟ । ପ୍ରଥମଟିର ବିଷୟ ବସ୍ତୁ ହେଉଛି ଭଗିନୀ ଯମୀର ଭାଇ ଯମ ପ୍ରତି ପ୍ରବଳ କାମଜ ଆକର୍ଷଣ ଏବଂ ଯମର ପ୍ରତ୍ୟାଖ୍ୟାନ । ଯୌବନମତ୍ତା ଭଗିନୀର ଭାଇ ନିକଟରେ ଶାରୀରିକ ମିଳନ ପ୍ରସ୍ତାବ ଅତୀବ ନଗ୍ନ ଓ ବିକୃତ ବୋଧହେଲେ ହେଁ କାବ୍ୟିକ ବ୍ୟଞ୍ଜନା ଓ ପ୍ରବୃତ୍ତିର ସ୍ୱାଭାବିକ ଅଭିବ୍ୟକ୍ତି ଦୃଷ୍ଟିରୁ ଏହା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଯମୀର ନିଃସଙ୍କୋଚ ଉତ୍ତେଜିତ ଆହ୍ୱାନକୁ ଯମ ଗର୍ହିତ କାର୍ଯ୍ୟ କହି ପ୍ରତ୍ୟାଖ୍ୟାନ କରିବା ସଙ୍ଗେ ସଙ୍ଗେ ଅନ୍ୟ କାହାକୁ ବରଣ କରିବା ନିମନ୍ତେ ତାକୁ ଉପଦେଶ ଦେଇଛି । କିନ୍ତୁ ସେ ଏଥିରେ ସନ୍ତୁଷ୍ଟ ନହୋଇ ପୁନରାୟ ଆହ୍ୱାନ ଜଣାଇଛି–

' କିଂ ଭ୍ରାତା ସଦ୍ୟଦନାଥଂ ଭବତି କିମୁ ସ୍ୱସା
ଯନ୍ନିର୍ଋତି ନିଗଚ୍ଛାତ୍'' ।[୩୦]

(ଅର୍ଥାତ୍ ଭାଇ ଥାଉ ଥାଉ ମୁଁ ଅନାଥିନୀ । ମୁଁ କିପରି ଭଉଣୀ ଯେ ଭାଇ ପାଖରେ ଥାଇ ସନ୍ତାପ ଭୋଗ କରୁଛି ।) ଏଥର ମଧ୍ୟ ଯମ ପୂର୍ବ ଭଳି ତା'ର ଆହ୍ୱାନକୁ ପ୍ରତ୍ୟାଖ୍ୟାନ କରିଛି । ଫଳତଃ କ୍ଷୁବ୍ଧ ଓ ନିରାଶ ଯମୀ ଦ୍ୱାରା ସେ ଭର୍ତ୍ସିତ । ଏଥିରୁ ଜଣାଯାଏ ବୈଦିକ କବି କାମଭାବନାକୁ ଆବରଣହୀନ ଭାବରେ ପ୍ରକାଶ କରିବାକୁ କୁଣ୍ଠିତ ହୋଇନାହିଁ । ସତ୍ୟର ଅନାବିଳ ପରିପ୍ରକାଶ ଏବଂ ନୀତିମୟ ପରିସମାପ୍ତି ହେତୁ କାହାଣୀଟିର ଉଚ୍ଚାଙ୍ଗ ମୂଲ୍ୟ ସ୍ୱୀକୃତ । ମୈତ୍ରାୟଣୀ ସଂହିତାରେ ଯମ ଯମୀ ପ୍ରସଂଗ ଭିନ୍ନ ରୂପରେ ପ୍ରଦର୍ଶିତ । ଏଠାରେ ଯମର ମୃତ୍ୟୁ ଓ ଯମୀର

ଶୋକକୁ ଭିତ୍ତିକରି ଦେବତାମାନଙ୍କ ଦ୍ୱାରା ଦିବା ଗଭୀର ସୃଷ୍ଟି ବିଷୟ ବର୍ଣ୍ଣିତ । ଏହି ସୂକ୍ତର ଉଲ୍ଲେଖ ଆଉ କେଉଁଠାରେ ମିଳୁନଥିବାରୁ ପରବର୍ତ୍ତୀ କାଳର ଲେକରୁଚିରେ ଏହା ବର୍ଣ୍ଣିତ ହୋଇଥିବା ସଂଭବ ।

ଦ୍ୱିତୀୟଟି ହେଉଛି ଉର୍ବଶୀ—ପୁରୁରବା ଉପାଖ୍ୟାନ । ସାହିତ୍ୟିକ ତଥା ମାନବିକ ଆବେଦନ ଦୃଷ୍ଟିରୁ ଏହି କାହାଣୀର ଶାଶ୍ୱତ ମୂଲ୍ୟବୋଧ ଅତୁଳନୀୟ । ଅମର୍ତ୍ତ୍ୟ ଲଳନା ଉର୍ବଶୀ ଚାରିଟି ସମ୍ବତ୍ସର ରାଜା ପୁରୁରବାଙ୍କ ସହ ଅତିବାହିତ କଲା ପରେ ତାଙ୍କୁ ପରିତ୍ୟାଗ କରି ଚାଲିଯାଉଛନ୍ତି । ପ୍ରଣୟ ପାଗଳ ରାଜାଙ୍କର ସକଳ ଆକୁଳ ନିବେଦନ ବ୍ୟର୍ଥତାରେ ପର୍ଯ୍ୟବସିତ । ଦୁହିଁଙ୍କର ଉକ୍ତି ପ୍ରତ୍ୟୁକ୍ତି ମଧ୍ୟରେ ନିବିଡ଼ ପ୍ରେମର ମଧୁର ଅନୁଭବ ତଥା ନାରୀ ପୁରୁଷର ହୃଦୟବୃତ୍ତି ଯଥାର୍ଥ ଭାବେ ଚିତ୍ରିତ । ପରିତ୍ୟାଗ କରି ନଯିବା ପାଇଁ ଉର୍ବଶୀଙ୍କୁ ପୁରୁରବାଙ୍କର ନିବେଦନରେ ସୂକ୍ତଟି ଆରମ୍ଭ ହୋଇଅଛି—

ହୟେ ଜାୟେ ମନସା ତିଷ୍ଠ ଘୋରେ
ବଚାଂସି ମିଶ୍ରା କୃଣବାବହୈ ନୁ
ନ ନୌ ମନ୍ତ୍ରା ଅନୁଦିତା ସ ଏତେ
ମୟସ୍କରନ୍ ପରତରେ ଚ ନାହନ୍ ।[୩୨]

(ଆଗୋ କୋପବତୀ ଜାୟା ! ତୁମେ ଟିକିଏ ରୁହ । କିଛି କଥାବାର୍ତ୍ତା ହେଉ (ଆମ ଦୁଇଜଣଙ୍କ ମଧ୍ୟରେ) । ଆମ ମନର କଥା– ଯାହା କେବେ ଆଗରୁ କୁହାଯାଇନାହିଁ । ଯାହା ଭବିଷ୍ୟତରେ ସୁଖ ଦେବ ନାହିଁ । )

ଏହାର ଉତ୍ତରରେ ଉର୍ବଶୀ କହିଛନ୍ତି—

କିମେତା ବାଚା କୃଣବା ତବାହଂ
ପ୍ରାକ୍ରମିଷ ମୁଷସାମଗ୍ରିୟେବ
ପୁରୁରବଃ ପୁନରସ୍ତଂ ପରେହି
ଦୁରାପନା ବାତ ଇବାହମସ୍ମି ।[୩୩]

(ଅର୍ଥାତ୍ ତୁମର କଥା ଅନୁସାରେ ମୋର କିଛି କହିବାର ନାହିଁ । ସ୍ବପ୍ନର ପ୍ରଥମ ପ୍ରଭାତ ପରି ମୁଁ ତମ ନିକଟରୁ ଚାଲି ଆସିଅଛି । ହେ ପୁରୁରବା ! ଏଥର ତୁମେ ଘରକୁ ଫେରିଯାଅ । ବାୟୁ ପରି ମୁଁ ଅଧରା ।)

ପୁରୁରବା ଅତୀତର ସକଳ ସୁଖଭୋଗ ସ୍ମରଣ କରାଇଦେବା ସତ୍ତ୍ୱେ ଉର୍ବଶୀଙ୍କ ମତର ପରିବର୍ତ୍ତନ ହୋଇନାହିଁ । ସେ ଯଥା ସମୟରେ ଗର୍ଭସ୍ଥ ସନ୍ତାନକୁ ରାଜାଙ୍କ ନିକଟରେ ପହଞ୍ଚାଇ ଦେବା ପାଇଁ କେବଳ ପ୍ରତିଶ୍ରୁତି ପ୍ରଦାନ କରିଛନ୍ତି । ଅମର୍ତ୍ତ୍ୟ ନାରୀ ପାଇଁ ବ୍ୟାକୁଳ ହେବା ଉଚିତ୍ ନୁହେଁ— ଏହାହିଁ ତାଙ୍କର ରାଜାଙ୍କ ଉଦ୍ଦେଶ୍ୟରେ ଏକମାତ୍ର ସାନ୍ତ୍ୱନା ବାଣୀ । ପୁରୁରବାଙ୍କ ଆତ୍ମହତ୍ୟା ସଂକଳ୍ପରେ ମଧ୍ୟ ସେ ଅବିଚଳିତା । ନାରୀ ହୃଦୟର ନିଷ୍ଠୁର ସତ୍ୟ ପ୍ରକାଶ କରିବାକୁ ତାଙ୍କର ତିଳେମାତ୍ର କୁଣ୍ଠାବୋଧ ନାହିଁ । ସେ କହିଛନ୍ତି— ନାରୀ ଚିରକାଳ କାହାର ସଖ୍ୟ ପ୍ରତି ଅନୁରକ୍ତ ହୋଇପାରେ ନାହିଁ । ଗଧିଆ ବାଘ ପରି ତା'ର ହୃଦୟ । 'ସାଲା ବୃକାଣାଂ ହୃଦୟାନି ଏତା' ।[୩୪]

ଡ଼ଃ ସୁକୁମାର ସେନଙ୍କ ଭାଷାରେ— "ଋଗ୍‌ବେଦେର ଏଇ ଉର୍ବଶୀ ପୁରୁରବା ସୂକ୍ତଟି କବିତା ହିସାବେ ଅତ୍ୟନ୍ତ ଜୋରାଲୋ—ବାସ୍ତବ, ହୃଦୟୋଷ୍ଣ, ଉଜ୍ଜ୍ୱଳ ପ୍ରେମେର କବିତା— ବୈଦିକ ଭାଷାର କଠିନ ଶୁକ୍ତିପୁଟେ ଆଧୃତ ଏକଟି ଚିରନ୍ତନ କବିତା ।"[୩୫] ପୁରୁରବା ଉର୍ବଶୀ କାହାଣୀ ପରବର୍ତ୍ତୀ କାଳରେ ଶତପଥ ବ୍ରାହ୍ମଣ, ମହାଭାରତ, ହରିବଂଶ, ଭାଗବତ, ବିଷ୍ଣୁ ପୁରାଣ, ବାୟୁ ପୁରାଣ, ବ୍ରହ୍ମ ପୁରାଣ, ବିଷ୍ଣୁ ଧର୍ମୋତ୍ତର ଆଦି ଗ୍ରନ୍ଥରେ କାଳାନୁସାରୀ ଓ ଭାବାନୁସାରୀ ରୂପାନ୍ତର ଲାଭ କରିଅଛି ।[୩୬] ସୋମଦେବଙ୍କ 'କଥା ସରିତ୍ ସାଗର'ରେ ଏହା କିଂଚିତ୍ ଭିନ୍ନ ରୂପରେ ଚିତ୍ରିତ । ଋଷିଙ୍କ ଅଭିଶାପରୁ ପରସ୍ପର ବିଚ୍ଛେଦ ଏବଂ ବଦରିକାଶ୍ରମରେ ରାଜା ପୁରୁରବାଙ୍କ ବିଷ୍ଣୁ ଉପାସନା ଫଳରେ ଦୁହିଙ୍କର ପୁନର୍ମିଳନ-ଏଥିରେ ବର୍ଣ୍ଣନା କରାଯାଇଛି ।

ଉପରୋକ୍ତ ଦୁଇଟି ସଂବାଦ ସୂକ୍ତ ଅତିରିକ୍ତ ଋଗ୍‌ବେଦର ବହୁ ସ୍ଥଳରେ ଶୃଙ୍ଗାର ଚେତନାର ଚିହ୍ନ ପରିଲକ୍ଷିତ । 'କକ୍ଷବାନ ଋଷିଙ୍କ କନ୍ୟା

ଘୋଷା ପ୍ରଥମ ଯୌବନରେ କୁଷ୍ଠ ବ୍ୟାଧିଗ୍ରସ୍ତା ହୋଇ ପ୍ରିୟ ଲାଭରୁ ବଞ୍ଚିତା । କିନ୍ତୁ ଅଶ୍ୱିନୀକୁମାରଙ୍କୁ ପ୍ରାର୍ଥନା କରି ସେ ରୋଗମୁକ୍ତ ହେବା ସଙ୍ଗେ ସଙ୍ଗେ ପ୍ରିୟ ମିଳନ ସୁଖ ଅନୁଭବ କରିବାକୁ ସମର୍ଥା ହୋଇଅଛି । ଯୌବନ-ଉତ୍କଣ୍ଠିତା ଘୋଷାର ପ୍ରାର୍ଥନାରେ ବୈଦିକ ନାରୀ ପ୍ରାଣର ପ୍ରଣୟାକାଂକ୍ଷା ସ୍ୱପ୍ନ-ମଧୁର-ସୌନ୍ଦର୍ଯ୍ୟ ବିଭୂଷିତ ।[୩୭] ଠିକ୍ ସେହିପରି ଭୋଗସ୍ପୃହାହୀନ ଉଦାସୀନ ସ୍ୱାମୀ ନିକଟରେ ଋଷିପତ୍ନୀ ଲୋପାମୁଦ୍ରାଙ୍କ ଦେହ କାମନାର ଅକପଟ ଅଭିବ୍ୟକ୍ତି ଅତ୍ୟନ୍ତ ହୃଦୟସ୍ପର୍ଶୀ ।[୩୮] ମିଳନକାମୀ ସ୍ତ୍ରୀର ବେଦନାବୋଧ ଏଠାରେ ଏକାନ୍ତ ବ୍ୟକ୍ତିଗତ ହେଲେ ହେଁ ତାହା ନାରୀତ୍ୱର ଚିରନ୍ତନ ଆକୁତିରେ ମର୍ଯ୍ୟାଦାୟିତ ।

ଋଷି ଅର୍ଚ୍ଚାନନଙ୍କ ପୁତ୍ର ଶ୍ୟାବାଶ୍ୱ ଓ ରାଜା ରଥବୀତିଙ୍କ କନ୍ୟା ମନୋରମା,[୩୯] ସୂର୍ଯ୍ୟା ଓ ସୋମ[୪୦] ପ୍ରଭୃତିଙ୍କ ବିବାହ ପ୍ରସଂଗ ଋଗ୍‌ବେଦର ବିଭିନ୍ନ ସ୍ଥଳରେ ବର୍ଣ୍ଣିତ । ଦେହ ସୌନ୍ଦର୍ଯ୍ୟର ଆକର୍ଷଣ, ପ୍ରେମର ଅଭିବ୍ୟଞ୍ଜନା ଓ କାମ-ଜୀବନର ଅକପଟ ରୂପ ଏହି ସକଳ କ୍ଷେତ୍ରରେ ପ୍ରକାଶିତ ।

ଅଥର୍ବ ବେଦର ବହୁ ମନ୍ତ୍ର ନର-ନାରୀର ପାର୍ଥିବ ସଂଭୋଗ କାମନା ଆଧାରିତ । ପ୍ରଜନନ ନିମିତ୍ତ ପୁରୁଷ ସଂକୋଚହୀନ ଭାଷାରେ ସ୍ତ୍ରୀକୁ ସଂବୋଧନ କରି ଗୋଟିଏ ସ୍ଥଳରେ କହିଛି—

ଦେବାଅଗ୍ରେ ନ୍ୟପଦ୍ୟନ୍ତ ପତ୍ନୀଃ ସମ ସ୍ପୃଶନ୍ତତନ୍ୱସ୍ତନୂଭିଃ
ସୂର୍ଯ୍ୟେବ ନାରି ବିଶ୍ୱରୂପା ମହିତ୍ୱା ପ୍ରଜାବତୀ ପତ୍ୟା ସଂ ଭବେହ ।[୪୧]

ହେ ସ୍ତ୍ରୀ, ବିଦ୍ୱାନ ଲୋକମାନେ ପତ୍ନୀ ପ୍ରାପ୍ତି ଅନନ୍ତର ତାହାର ଶରୀରରେ ନିଜ ଶରୀରକୁ ମିଶାଇ ଦେଇଥାନ୍ତି । ହେ ଐଶ୍ୱର୍ଯ୍ୟଶାଳିନୀ, ହେ ସନ୍ତାନାଭିଳାଷିଣୀ, ତୁ ମଧ୍ୟ ତୋର ସ୍ୱାମୀ ସହ ମିଳିତ ହ ।)

କାମ ଭାବନାରେ ନାରୀ ମଧ୍ୟ ଏଠାରେ ଅଧୀର । ସେ ପୁରୁଷକୁ ଅକୁଣ୍ଠିତ ଆହ୍ୱାନ ଦେଇ ପାରେ—

ଆରୋହୋର ମୂପ ଘସ୍ୱ ହସ୍ତଂ ପରିଷ୍ୱଜସ୍ୱ
ଜାୟାଂ ସୁମନସ୍ୟମାନଃ
ପ୍ରଜାଂ କୃଣ୍ୱାଥାମିହ ମୋଦ ମାନୌ ଦୀର୍ଘଂ
ବାମାୟୁଃ ସବିତା କୃଣୋତୁ । ୫୨

(ହେ ପୁରୁଷ, ତୁ ମୋର ଜଘନ ଉପରକୁ ଆ । ପ୍ରସନ୍ନଚିତ୍ତ ହୋଇ ପତ୍ନୀକୁ ଭିଡ଼ି ଧର । ଆନନ୍ଦ ମନରେ ସନ୍ତାନ ଉତ୍ପନ୍ନ କର । ସବିତା ଦେବ ତୋର ଆୟୁ ବୃଦ୍ଧି କରନ୍ତୁ ।)

ପୁରୁଷ ଈଶ୍ୱରଙ୍କୁ ପ୍ରାର୍ଥନା କରି କହୁଛି—

ତା' ପୂଷଂଛିବତମାମେରୟସ୍ୱ ଯସ୍ୟାଂ ବୀଜଂ ମନୁଷ୍ୟାଃବପନ୍ତି
ଯା ନ ଉରୁ ଉଶତି ବିଶ୍ରୟାତି ଯସ୍ୟାମୁଶନ୍ତଃ ପ୍ରହରେମ ଶେପଃ ।୫୩

(ହେ ପରମେଶ୍ୱର, ଆଜି ମୋତେ ମୋର ପତ୍ନୀଠାରେ ବୀଜ ବପନ କରିବାକୁ ହେବ । ତାହାକୁ ପ୍ରେରଣ କର । ମୁଁ କାମନା କରୁଥିବା ତାହାର ଉରୁ ଦେଶ ସେ ଉନ୍ମୁକ୍ତ କରୁ ଏବଂ ଯଥାବିଧି ମୁଁ ମୋର ଜନନେନ୍ଦ୍ରିୟ ପ୍ରବେଶ କରାଏ ।)

ଉପରୋକ୍ତ ଉଦାହରଣ ଗୁଡ଼ିକରେ କାମ କ୍ରୀଡ଼ାର ଚିତ୍ର ଅତ୍ୟନ୍ତ ସ୍ପଷ୍ଟ । ଏତଦ୍‌ଭିନ୍ନ ବହୁ ଆଭିଚାରିକ ମନ୍ତ୍ରରେ ନାରୀ ପୁରୁଷର ପ୍ରଣୟ ବ୍ୟାପାର ମୁଖ୍ୟସ୍ଥାନ ଅଧିକାର କରିଅଛି । ଗୋଟିଏ ସ୍ଥାନରେ ନିଜର ପ୍ରିୟତମାକୁ ଅପହରଣ କରିନେବା ନିମିତ୍ତ ମନ୍ତ୍ର ବିଧାନ ଉଲ୍ଲିଖିତ । ଯଥା—

ସ୍ୱପ୍ତୁ ମାତା ସ୍ୱପ୍ତୁ ପିତା ସ୍ୱପ୍ତୁ ସ୍ୱପ୍ତୁ ଶ୍ୱା ସ୍ୱପ୍ତୁ ବିଶ୍‌ପତିଃ
ସ୍ୱପନ୍ତସୈ ଜ୍ଞାତୟଃ ସ୍ୱପ୍ତୁୟମିତୋ ଜନଃ । ୫୪

(ମାତା ଶୋଇପଡୁ, ପିତା ଶୋଇପଡୁ, ଘରର କୁକୁର ଶୋଇପଡୁ, ଘରର ଜ୍ୟେଷ୍ଠ ପୁରୁଷ ଶୋଇପଡୁ ଅନ୍ୟାନ୍ୟ ଜ୍ଞାତି କୁଟୁମ୍ବମାନେ ଶୋଇ ପଡ଼ନ୍ତୁ ଏବଂ ପାର୍ଶ୍ୱବର୍ତ୍ତୀ ଘରର ଅନ୍ୟାନ୍ୟ ବ୍ୟକ୍ତିମାନେ ଶୋଇ ପଡ଼ନ୍ତୁ ।)

ପତିକୁ ବଶୀଭୂତ କରି ରଖିବା ପାଇଁ ଦେବତାମାନଙ୍କ ଉଦ୍ଦେଶ୍ୟରେ ପତ୍ନୀର ମନ୍ତ୍ରପାଠ ଗୋଟିଏ ସ୍ଥଳରେ ପରିଦୃଷ୍ଟ ।

ଉନ୍ମାଦୟତ ମରୁତ ଉଦନ୍ତରିକ୍ଷ ମାଦୟ
ଅଗ୍ନ ଉନ୍ମାଦୟା ତ୍ୱମସୌ ମାମନୁଶୋଚତୁ । [୫୪]

(ହେ ମରୁତ ! ମୋର ପତିକୁ ଉନ୍ମତ୍ତ କରିଦିଅ । ହେ ଅନ୍ତରୀକ୍ଷ ! ହେ ଅଗ୍ନି ! ମୋର ପତିକୁ ପାଗଳ କରିଦିଅ । ଯେପରିକି ସେ କେବଳ ମୋତେ ହିଁ ଚିନ୍ତା କରିବେ ।)

ଅଥର୍ବ ବେଦରେ ବହୁବିଧ ଆଭିଚାରିକ ମନ୍ତ୍ର ବିଧାନ ଦେଖିବାକୁ ମିଳେ । ପ୍ରେମିକାର ଅନିଚ୍ଛା ସତ୍ତ୍ୱେ ତାକୁ ପ୍ରେମ କରିବା ପାଇଁ ବାଧ୍ୟ କରିବା, ସପତ୍ନୀକୁ ବଶ କରିବା, ପତିର ସ୍ନେହ ଆକର୍ଷଣ କରିବା, କୌଣସି ସ୍ତ୍ରୀକୁ ବନ୍ଧ୍ୟା କରିଦେବା, କୌଣସି ପୁରୁଷକୁ ନପୁଂସକ କରିଦେବା ଆଦି ବିବିଧ କାର୍ଯ୍ୟ ସିଦ୍ଧି ନିମିତ୍ତ ମନ୍ତ୍ରର ବ୍ୟବହାର ସେ ଯୁଗରେ ପ୍ରଚଳିତ ଥିବାର ଜଣାଯାଏ । [୫୬] ଏଥିରୁ ବୈଦିକ ନାରୀ ଓ ପୁରୁଷର ଯୌନ-ଜୀବନ ବ୍ୟାପାର ସହଜ ଅନୁମେୟ ।

ବ୍ରାହ୍ମଣ ଗ୍ରନ୍ଥଗୁଡ଼ିକରେ ଶୃଙ୍ଗାର ଚେତନାର ପ୍ରକାଶ ଆଦୌ ସ୍ୱାଭାବିକ କିମ୍ବା ପ୍ରତ୍ୟକ୍ଷ ନୁହେଁ । ଧାର୍ମିକ ବିଧି ବିଧାନ ଓ କର୍ମକାଣ୍ଡ ନିରୂପଣରେ ଏହା ଏପରି ଭାବରେ ଭାରାକ୍ରାନ୍ତ ଯେ ଏଥିରୁ ଜୀବନର ସରସତା ଖୋଜି ପାଇବା ଦୁଷ୍କର । 'ଶତପଥ ବ୍ରାହ୍ମଣ'ର ପୁରୁରବା ଉର୍ବଶୀ କାହାଣୀ କିଞ୍ଚିତ୍ ପାର୍ଥକ୍ୟ ସହ ଋଗ୍‌ବେଦୀୟ ସମ୍ବାଦ ସୂକ୍ତକୁ ଅନୁସରଣ କରିଛି । ଅପ୍‌ସରାମାନଙ୍କ ନୃତ୍ୟ, ଗୀତ ଓ ସୌନ୍ଦର୍ଯ୍ୟର ବର୍ଣ୍ଣନା ତଥା ରେତ ସଂରକ୍ଷଣର ପ୍ରଶଂସା ଏଥିରେ ଦେଖିବାକୁ ମିଳେ । ସ୍ତ୍ରୀ ଗ୍ରହଣ ଓ ସନ୍ତାନ ଉତ୍ପାଦନ ବିନା ପୁରୁଷ ପୂର୍ଣ୍ଣତା ଲାଭ କରିପାରେ ନାହିଁ ଏବଂ ପତ୍ନୀହୀନ ପୁରୁଷ ଯଜ୍ଞ କର୍ମର ଅଧିକାରୀ ନୁହେଁ ବୋଲି 'ଶତପଥ'ରେ ମଧ୍ୟ ଉଲ୍ଲିଖିତ । [୫୭] ବ୍ରାହ୍ମଣ ଗ୍ରନ୍ଥ ସଂପର୍କରେ ଏସ୍. କେ. ଦେ କିନ୍ତୁ

ଯଥାର୍ଥରେ କହିଛନ୍ତି—"Eroticism also played an unmistakable part in some of the fertility rites described in the Bramhans, but eroticism here was subservient to religious theory and practice and never came into prominence." [୪୮]

ଉପନିଷଦରେ ଯେଉଁ କେତୋଟି ପ୍ରେମାଖ୍ୟାନର ଉଲ୍ଲେଖ ମିଳେ ତା' ମଧ୍ୟରେ 'ସତ୍ୟକାମ-ଜାବାଳ' [୪୯] ପ୍ରସଂଗ ଅତ୍ୟନ୍ତ ଚିତ୍ତାକର୍ଷକ । ସତ୍ୟକାମ ବ୍ରହ୍ମଜ୍ଞାନ ଲାଭ ନିମିତ୍ତ ଗୁରୁଙ୍କ ଦ୍ୱାରା ଆଦିଷ୍ଟ ହୋଇ ନିଜର ମାତା ଜାବାଳାଙ୍କୁ ସ୍ୱଗୋତ୍ର ସମ୍ପର୍କରେ ପ୍ରଶ୍ନ କରିଥିଲେ । ମାତା କପଟ ନକରି ଉତ୍ତର ଦେଲେ ଯେ ବହୁ ସ୍ଥାନ ଭ୍ରମଣ ଓ ବହୁ ପୁରୁଷ ପରିଚର୍ଯ୍ୟାପୂର୍ବକ ତାଙ୍କର ସନ୍ତାନ ଲାଭ ହୋଇଅଛି । ସୁତରାଂ ପୁତ୍ରର ଗୋତ୍ର ତାଙ୍କୁ ଅଜଣା । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ ସେ କାଳରେ ନାରୀର କାମ ଚର୍ଯ୍ୟା ଅବାଧ ସ୍ୱାଧୀନତା ଲାଭ କରିଥିଲା ଏବଂ ସମାଜରେ ତାହା କେବେହେଲେ ନିନ୍ଦିତ ହେଉନଥିଲା ।

ସମଗ୍ର ବୈଦିକ ସାହିତ୍ୟ ଅନୁଶୀଳନରୁ ଜଣାଯାଏ ଯେ ବିବାହ ଓ ପ୍ରଣୟ ବ୍ୟାପାରରେ ନାରୀ ପୁରୁଷର ଜୀବନଧାରା ସ୍ୱଚ୍ଛନ୍ଦ ଥିଲା । "The Society was free and marriage signified a union between two fully developed people. Girls attained puberty in their fathers' house and many were allowed to remain unmarried if they so wished as was evident at the Samana Festival or in existence of women Rishis." [୫୦] ଏତଦ୍‌ଭିନ୍ନ ଦେବତା, ଋଷି, ଅପ୍‌ସରା ନିର୍ବିଶେଷରେ ସମସ୍ତେ ଆଦିମ କାମ ବାସନାର ବଶୀଭୂତ ହେବା ଏ ପ୍ରସଙ୍ଗରେ ଉଲ୍ଲେଖନୀୟ । ନାରୀର ସୌନ୍ଦର୍ଯ୍ୟ ଓ ଅଳଂକାର ଭୂଷଣାଦି ବର୍ଣ୍ଣନା କରିବାରେ ବୈଦିକ କବି ଅକୁଣ୍ଠିତ ଆଗ୍ରହ ପ୍ରକାଶ କରିଯାଇଛି । ପୁରୁଷ ପକ୍ଷରେ ବହୁପତ୍ନୀ ଗ୍ରହଣର ପ୍ରମାଣ [୫୧] ଥିଲେ ହେଁ ନାରୀ

ପକ୍ଷରେ ବହୁପତି ଗ୍ରହଣର ସ୍ପଷ୍ଟ ସୂଚନା ଋଗ୍‌ବେଦରେ ମିଳେ ନାହିଁ । କୁମାରୀ, ପୁତ୍ର, ଜାର, ଉପପତି, ସଙ୍କେତ ସ୍ଥଳ ଆଦିର ଉଲ୍ଲେଖରୁ ବୁଝାଯାଏ ଯେ ସେ କାଳରେ ଅବୈଧ ପ୍ରଣୟର ପ୍ରଚଳନ ଥିଲା । ସ୍ଥଳ ବିଶେଷରେ ତ୍ୟାଗ ଓ ଆଦର୍ଶ ଭିତ୍ତିକ ପ୍ରେମର ଚିତ୍ର ଏଥିରେ ଅଙ୍କିତ । ଅଭିସାର, ଅଗମ୍ୟାଗମନ, ସତୀତ୍ୱନାଶ, ବୈବାହିକ ଅବିଶ୍ୱାସ, ଗର୍ଭପାତ ଇତ୍ୟାଦିର ଉଲ୍ଲେଖକୁ ତତ୍‌କାଳୀନ ମୁକ୍ତ ଯୌନ-ଜୀବନର ସଙ୍କେତ ରୂପେ ଗ୍ରହଣ କରଯାଇପାରେ । 'ମୈତ୍ରାୟଣୀ ସଂହିତା'ର ଗୋଟିଏ ସ୍ଥାନରେ ନାରୀକୁ ମଦ୍ୟ ଓ ଦ୍ୟୂତକ୍ରୀଡ଼ା ସହ ତୁଳନା କରଯାଇଛି ।[୪୭] ବୈଦିକ କାଳର ଶେଷ ଭାଗରେ ତା'ର ପ୍ରତିଷ୍ଠା ଓ ମହତ୍ତ୍ୱ ହ୍ରାସ ପାଇଥିବା ଏଥିରୁ ଅନୁମାନ କରଯାଏ ।

ପୌରାଣିକ ସାହିତ୍ୟ—ଭାରତୀୟ ମହାକାବ୍ୟ ଓ ପୁରାଣମାନଙ୍କରେ ବହୁବିଧ ପ୍ରେମାଖ୍ୟାନ ଉଲ୍ଲିଖିତ । ଗୋଟିଏ ଗୋଟିଏ କାହାଣୀ ମଧ୍ୟ ବହୁ ପୁରାଣରେ କିଂଚିତ୍ ପରିବର୍ତ୍ତନ ସହ ବର୍ଣ୍ଣିତ ହୋଇଅଛି (ଯଥା-ପୁରୁରବା-ଉର୍ବଶୀ ଆଖ୍ୟାନ) । ଧାର୍ମିକ ଓ ନୈତିକ ତତ୍ତ୍ୱ ପ୍ରତିପାଦନ ନିମନ୍ତେ ଏହା ଉଦ୍ଦିଷ୍ଟ ଥିବାରୁ ପ୍ରେମର ସ୍ୱାଭାବିକ ଦିଗ ପ୍ରତି ଏଥିରେ ଯଥାର୍ଥ ଧ୍ୟାନ ଦିଆଯାଇ ନାହିଁ । ଏସବୁ ସତ୍ତ୍ୱେ ପୁରାଣର ବହୁ ସ୍ଥଳ ଶୃଙ୍ଗାରିକତାର ବିଭୂତିରେ ଅନୁରଂଜିତ ।

ମହାକାବ୍ୟମାନଙ୍କ ମଧ୍ୟରୁ ରାମାୟଣର ପ୍ରଭାବ ଭାରତୀୟ ସମାଜ-ଜୀବନ ଉପରେ ଅପ୍ରତିହତ । ଏହାର ମୁଖ୍ୟ କଥାବସ୍ତୁ ହେଉଛି ଦାମ୍ପତ୍ୟ ପ୍ରେମର ଗୌରବ ପ୍ରଖ୍ୟାପନ । ବିଭିନ୍ନ ସ୍ଥଳରେ ବର୍ଣ୍ଣିତ ଆଖ୍ୟାନ ସକଳ ଦେହଭୋଗକୁ ଆଶ୍ରୟ କରିଥିଲେ ହେଁ ଏହି ସବୁର ପରିଣତି ନୈତିକତା ଓ ଆଦର୍ଶମୁଖୀ । ଇନ୍ଦ୍ର-ଅହଲ୍ୟା କିମ୍ବା ଋଷ୍ୟଶୃଙ୍ଗ-ଗଣିକା ପ୍ରସଙ୍ଗାଦି ଏହି ଜାତୀୟ । କେବଳ ସୁନ୍ଦରକାଣ୍ଡ ଏ କ୍ଷେତ୍ରରେ ଏକମାତ୍ର ବ୍ୟତିକ୍ରମ । ବର୍ଣ୍ଣନାନୁସାରେ ଭରତ ନିଜର ସେନାନୀ ସହ ବନବାସୀ ରାମଚନ୍ଦ୍ରଙ୍କୁ ଫେରାଇ ଆଣିବା ପାଇଁ ଯାଉଥିବାବେଳେ ବାଟରେ ଭରଦ୍ୱାଜ ମୁନିଙ୍କ

ଆତିଥ୍ୟ ଗ୍ରହଣ କରିଥିଲେ । ସେମାନଙ୍କ ଅଭ୍ୟର୍ଥନା ଉଦ୍ଦେଶ୍ୟରେ ଗୋଟିଏ ରାତ୍ରି ପାଇଁ ଯେଉଁ ବ୍ୟାପକ ଆୟୋଜନ କରଯାଇଥିଲା, ସେଥିରେ ନନ୍ଦନକାନନ ନିବାସୀ ବିଂଶତି ସହସ୍ର ରମଣୀ କେବଳ ରତି ବିହାର ନିମିତ୍ତ ନିୟୋଜିତା ହୋଇଥିଲେ । [୪୩] ରାବଣର ଅନ୍ତଃପୁର ଚିତ୍ରଣରେ କବି ଯେଉଁ ଶୃଙ୍ଗାରଧର୍ମୀ ଚିତ୍ର ଉପସ୍ଥାପିତ କରିଛନ୍ତି ତାହା ଯେ କୌଣସି ବିଳାସୀ ରାଜପୁରୀର ନୈଶ ଜୀବନ ଛଡ଼ା ଅନ୍ୟକିଛି ନୁହେଁ । [୪୦] ଅପହୃତା ସୀତାଙ୍କ ବିଚ୍ଛେଦରେ ରାମଙ୍କର ବିରହ ବିଳାପ ଯେ କୌଣସି ପାଠକର ହୃଦୟ ଦ୍ରବିତ କରେ । ପ୍ରେମ କବିତାର ସଫଳତା ବିଗ୍ଭରରେ ଏହା ଶାଶ୍ୱତ ମହିମାଭିଷିକ୍ତ । [୪୪] ସୀତାଙ୍କ ଚରିତ୍ରରେ ରୂପ ଓ ଗୁଣ ସୌନ୍ଦର୍ଯ୍ୟର ଉତ୍କର୍ଷ ଆରୋପିତ କରି କବି ତାଙ୍କୁ ସର୍ବକାଳୀନ ମହୀୟସୀ ନାରୀର ବିଜୟ ଟିକା ପିନ୍ଧାଇ ଦେଇଛନ୍ତି । ପ୍ରକୃତି ବର୍ଣ୍ଣନାରେ 'ରାମାୟଣ'କାର ଅସୀମ ସଫଳତାର ଅଧିକାରୀ । କିଷ୍କିନ୍ଧାକାଣ୍ଡରେ ବସନ୍ତ, ବର୍ଷା ଓ ଶରତ କାଳର ଚିତ୍ର ଅତୀବ ଚିତ୍ତାକର୍ଷକ । ଶରତ ଋତୁର ବର୍ଣ୍ଣନା ପ୍ରସଙ୍ଗରେ କବି ପ୍ରକୃତିକୁ ନାରୀ ସହ ତୁଳନା କରିଛନ୍ତି । ଯଥା—

ରାତ୍ରିଃ ଶଶାଙ୍କୋଦିତ ସୌମ୍ୟବକ୍ତ୍ରା
ତାରାଗଣୋନ୍ମୀଳିତ ଚାରୁନେତ୍ରା
ଜ୍ୟୋତ୍ସ୍ନାଂଶୁକ ପ୍ରାବରଣା ବିଭାତି
ନାରୀବ ଶୁକ୍ଳାଂଶୁକ ସଂବୃତାଙ୍ଗୀ । [୪୬]

(ଶାରଦୀୟ ରାତ୍ରି ଶୁଭ୍ରବସ୍ତ୍ରାବୃତା ରମଣୀ ପରି ଶୋଭା ପାଉଅଛି । ଉଦିତ ଚନ୍ଦ୍ରମା ତାହାର ସୌମ୍ୟ ବଦନ, ଉନ୍ମୀଳିତ ନକ୍ଷତ୍ରରାଜି ତା'ର ସୁଶୋଭିତ ନୟନ ଏବଂ ଜ୍ୟୋତ୍ସ୍ନା ତାହାର ଆବରଣ ।)

ଭାରତୀୟ ସମାଜରେ ବିଶେଷ ଆଦୃତ ବହୁ ପ୍ରେମାଖ୍ୟାନର ଆଦିରୂପ ମହାଭାରତରେ ଦେଖିବାକୁ ମିଳେ ; ଯଥା— ନଳ-ଦମୟନ୍ତୀ, ଦୁଷ୍ୟନ୍ତ-ଶକୁନ୍ତଳା, ଅର୍ଜୁନ-ସୁଭଦ୍ରା, କଚ-ଦେବଯାନୀ, ଭୀମ-ହିଡ଼ିମ୍ବା,

ଶାନ୍ତନୁ-ଗଙ୍ଗା, ପରାଶର-ସତ୍ୟବତୀ, ପ୍ରସଙ୍ଗାବଳି । ହରିବଂଶ ପୁରାଣରେ ଉଷା-ଅନିରୁଦ୍ଧ, ରୁକ୍ମିଣୀହରଣ, ପ୍ରଦ୍ୟୁମ୍ନ-ପ୍ରଭାବତୀ ପ୍ରଭୃତି ବହୁ ସୁପରିଚିତ ପ୍ରଣୟ କାହାଣୀ ବର୍ଣ୍ଣିତ ।

ମହାଭାରତ ଓ ହରିବଂଶର ବହୁ ପ୍ରେମ ପ୍ରସଙ୍ଗ ପରବର୍ତ୍ତୀ ପୁରାଣ ସାହିତ୍ୟରେ ମଧ୍ୟ ସ୍ଥାନ ଲାଭ କରିଛି । ଦୁଷ୍ୟନ୍ତ-ଶକୁନ୍ତଳା ଉପାଖ୍ୟାନ ଭାଗବତର ନବମ ସ୍କନ୍ଧରେ ପରିଦୃଷ୍ଟ । କାଳିଦାସଙ୍କ 'ଅଭିଜ୍ଞାନ ଶାକୁନ୍ତଳମ' ନାଟକରେ ଏହା ଅପୂର୍ବ ସାହିତ୍ୟିକ ମର୍ଯ୍ୟାଦାଭିଷିକ୍ତ । ଉଷା-ଅନିରୁଦ୍ଧ ଉପାଖ୍ୟାନ ବ୍ରହ୍ମବୈବର୍ତ୍ତ ପୁରାଣ , ବିଷ୍ଣୁ ପୁରାଣ, ଶିବ ପୁରାଣ, ବ୍ରହ୍ମ ପୁରାଣ, ଅଗ୍ନି ପୁରାଣ, ଶ୍ରୀମଦ୍‌ଭାଗବତ ତଥା ସୋମଦେବଙ୍କ 'କଥା ସରିତ ସାଗର'ରେ ଦେଖାଯାଏ । ଏହି କାହାଣୀଟି ବୈଦିକ ପୁରୁରବା-ଉର୍ବଶୀ ଆଖ୍ୟାନ ପରି ପୁରାଣ କାଳରେ ବିଶେଷ ପ୍ରସିଦ୍ଧି ଲାଭ କରିଥିବା ମନେହୁଏ ।

ଏହି ସବୁ ଉପାଖ୍ୟାନରେ ପୁରୁଷର ଶକ୍ତି ଓ ବୀରତ୍ୱ ହିଁ ପ୍ରେମର ଆଧାର ରୂପେ ଗୃହୀତ । ଅର୍ଜୁନଙ୍କର ଚିତ୍ରାଙ୍ଗଦା, ଉଲୁପୀ ଓ ସୁଭଦ୍ରାଙ୍କ ସହ ପ୍ରଣୟ ବ୍ୟାପାର ଏହି ଧାରଣା ଦୃଢ଼ୀଭୂତ କରେ । ସ୍ୱର ସୁନ୍ଦରୀ ଉର୍ବଶୀ ମଧ୍ୟ ତାଙ୍କର ପ୍ରଣୟାକାଂକ୍ଷିଣୀ । ଅର୍ଜୁନ ତାଙ୍କର ଆହ୍ୱାନକୁ ପ୍ରତ୍ୟାଖ୍ୟାନ କରିଥିବା ହେତୁ ଅଭିଶାପଗ୍ରସ୍ତ ।[୫୭] ଅନ୍ୟ ପକ୍ଷରେ ଭୀମ ହିଡ଼ିମ୍ବକୁ ଯୁଦ୍ଧରେ ପରାସ୍ତ କରି ପ୍ରଣୟାସ୍ପଦା ହିଡ଼ିମ୍ବାକୁ ବିବାହ କରିଛନ୍ତି । ପ୍ରଣୟ ବ୍ୟାପାରରେ ସ୍ୱୟଂ ଶ୍ରୀକୃଷ୍ଣ ମଧ୍ୟ ଶକ୍ତି ଓ ସଂଗ୍ରାମରେ ବିଶ୍ୱାସୀ । ରୁକ୍ମିଣୀଙ୍କୁ ହରଣ କରି ସେ ତାଙ୍କୁ ଅଷ୍ଟପାଟବଂଶୀ ମଧ୍ୟରେ ସ୍ଥାନ ଦେଇଛନ୍ତି । ଅର୍ଜୁନଙ୍କର ସୁଭଦ୍ରା ହରଣ ପଶ୍ଚାତ୍‌ଭାଗରେ ତାଙ୍କର ସମର୍ଥନ ହିଁ କାର୍ଯ୍ୟକାରୀ ହୋଇଛି । ସୁତରାଂ ପୁରାଣ ଯୁଗର ପୁରୁଷ ପକ୍ଷରେ ବହୁନାରୀ ବରଣ ବା ହରଣ ଥିଲା ବୀରତ୍ୱସୂଚକ । ଡକ୍‌ଟର ଗଣପତି ଗୁପ୍ତ ଏହି ମହାଭାରତୀୟ କାମଚର୍ଯ୍ୟାକୁ 'ଶୌର୍ଯ୍ୟ-ପ୍ରଧାନ-ଶୃଙ୍ଗାର' ନାମରେ ଅଭିହିତ କରିଛନ୍ତି ।[୫୮]

ପ୍ରେମ, ଭୋଗ ଓ ବିବାହ ପ୍ରସଙ୍ଗରେ ମହାଭାରତର ନାରୀ ବହୁବିଧ ବୈଶିଷ୍ଟ୍ୟର ଅଧିକାରିଣୀ । କୁନ୍ତୀ କୁମାରୀ ଅବସ୍ଥାରେ ମାତୃତ୍ୱ ଲାଭ କରି କର୍ଣ୍ଣଙ୍କୁ ଜନ୍ମ ଦେଇଛନ୍ତି । ଋଷି ପରାଶର ଅଚଳୋବତୀ କନ୍ୟା ସତ୍ୟବତୀଙ୍କ ସହ ସଂଭୋଗଲିପ୍ସୁ ହେବାକୁ ଆକୁଣ୍ଠିତ । ଦ୍ରୌପଦୀଙ୍କ ପାଞ୍ଚ ପତି ବରଣ କିମ୍ବା କୁନ୍ତୀଙ୍କର ଭିନ୍ନ ଭିନ୍ନ ଦେବତାଙ୍କ ଔରସରୁ ସ୍ୱଗର୍ଭରେ ସନ୍ତାନ ଧାରଣ– ସମାଜ ସ୍ୱୀକୃତ । ଗାନ୍ଧାରୀ ନିଜ ପିତାଙ୍କ ଦ୍ୱାରା ଜଣେ ଅନ୍ଧ ବ୍ୟକ୍ତିଙ୍କ ହସ୍ତରେ ସମର୍ପିତା । ଧନ ବିନିମୟରେ ଶଲ୍ୟ ନିଜ ଭଉଣୀ ମାଦ୍ରୀଙ୍କୁ ପାଣ୍ଡୁଙ୍କ ସହ ବିବାହ ବଂଧନରେ ବାନ୍ଧି ଦେଇଛନ୍ତି । ଚିତ୍ରବୀର୍ଯ୍ୟ ଓ ବିଚିତ୍ର-ବିର୍ଯ୍ୟଙ୍କ ମୃତ୍ୟୁରେ ବିଧବାପତ୍ନୀ ଅମ୍ବା ଓ ଅମ୍ବାଳିକା ବଂଶରକ୍ଷା ନିମନ୍ତେ ବ୍ୟାସଦେବଙ୍କ ସହ ମିଳିତ ହୋଇ ସନ୍ତାନ ଉତ୍ପାଦନ କରିବାକୁ କୁଣ୍ଠାବୋଧ କରିନାହାନ୍ତି । ମୃତ ସଂଜୀବନୀ ବିଦ୍ୟାଭିଳାଷୀ କଚର ଛଳନା ନିକଟରେ ଦେବଯାନୀର ବିଶୁଦ୍ଧ ପ୍ରେମ ବ୍ୟର୍ଥତାରେ ଜଳି ଯାଇଛି । କିନ୍ତୁ ମହାଭାରତର ନଳ-ଦମୟନ୍ତୀ କାହାଣୀ ଅତୀବ ରମଣୀୟ ।[୬୯] କଳ୍ପନାର ଅପୂର୍ବ ସମାବେଶ ସହ ମାନବୀୟ ସୌନ୍ଦର୍ଯ୍ୟ, ହୃଦୟର ନିବିଡ଼ ଅନୁଭୂତି ଓ ତ୍ୟାଗପୂତ ଆଦର୍ଶର ମଧୁର ସମନ୍ୱୟରେ ଏହା ଚିରଜୀବନ ଲାଭ କରିଛି ।

ନଳ-ଦମୟନ୍ତୀ କାହାଣୀ ପରି ଅଳ୍ପ କେତୋଟି ଆଖ୍ୟାନକୁ ବାଦ ଦେଇ ମହାଭାରତର ଶୃଙ୍ଗାର ଜୀବନ ଅଧ୍ୟୟନ କଲେ ଜଣାଯାଏ ଯେ ତତ୍କାଳୀନ ସମାଜରେ ନାରୀର ମର୍ଯ୍ୟାଦା ଯଥୋଚିତ ଆସନ ଲାଭ କରିନାହିଁ । ପୁରୁଷର ଅତିକାମୁକତା, ଉଚ୍ଛୃଙ୍ଖଳତା ଓ ବିଳାସିତା ନିକଟରେ ପ୍ରଣୟର ସ୍ୱାଭାବିକ ହୃଦୟମୂଲ୍ୟ ଉପହସିତ ହୋଇଅଛି । ମହାକାବ୍ୟର ନାରୀ ଓ ପୁରୁଷର ପ୍ରେମ-ଜୀବନ ସମ୍ବନ୍ଧରେ ଏସ୍. କେ ଦେଙ୍କ ମନ୍ତବ୍ୟ ଏଠାରେ ଆମର ପ୍ରଣିଧାନଯୋଗ୍ୟ । "What is principally idealised in the Epics is Conjugal love and marraige: but the obligation of Chastity was laid on the weaker sex, and practically no limits were set to the licence of man"[୭୦]

ପୁରାଣଗୁଡ଼ିକ ଧର୍ମ ଓ ନୈତିକତାର ପ୍ରତିଷ୍ଠା ନିମନ୍ତେ ରଚିତ ହୋଇଥିଲେ ହେଁ ସେସବୁରେ ଦେବଦେବୀମାନଙ୍କ ଅସଂଯତ କାମ ପ୍ରବଣତାର ଅଭାବ ନାହିଁ । ଏପରିକି ପ୍ରଜାପତି ବ୍ରହ୍ମା ମଧ୍ୟ ସେଥିରୁ ମୁକ୍ତ ହୋଇ ପାରିନାହାନ୍ତି । କାଳିକାପୁରାଣରେ ବର୍ଣ୍ଣିତ ଅଛି ଯେ ବ୍ରହ୍ମା କାମପୀଡ଼ିତ ହୋଇ ଉଦ୍‌ଗତ ଇନ୍ଦ୍ରିୟ ଅବସ୍ଥାରେ ନାରୀମାନଙ୍କର ପଶ୍ଚାତ୍‌ଧାବନ କରୁଥିଲେ । ଏକଦା ତାଙ୍କୁ ନିଜର କନ୍ୟା ସନ୍ଧ୍ୟା ନିକଟରେ ଏହିପରି ଏକ ଅପ୍ରୀତିକର ଅବସ୍ଥାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ୬୨ ଅନ୍ୟ ଏକ କାହାଣୀରେ ବର୍ଣ୍ଣିତ ଅଛି ଯେ ସେ ସୁରସୁନ୍ଦରୀ ଅମୋଘକୁ ଦେଖି କାମମୋହିତ ହୋଇଯାଇଥିଲେ । ୬୩

ମହାଯୋଗୀ ଶିବ ମଧ୍ୟ ପୁରାଣରେ କାମୁକ ଓ ଲଂପଟ ରୂପେ ଯେପରି ଚିତ୍ରିତ ହୋଇଛନ୍ତି, ତାହା ଭାବିଲେ ବିସ୍ମିତ ହେବାକୁ ପଡ଼େ । 'ଶିବ ପୁରାଣ'ରେ ବର୍ଣ୍ଣିତ ଅଛି ଯେ ଏକଦା ବାଣାସୁର ନଗରରେ ବାସ କରୁଥିବା ସମୟରେ ଶିବ କାମପୀଡ଼ିତ ହୋଇ କୈଳାସରୁ ସୁସଜ୍ଜିତା ଗୌରୀଙ୍କୁ ଆଣିବା ନିମନ୍ତେ ନନ୍ଦୀଙ୍କୁ ଆଦେଶ ଦେଲେ । ଗୌରୀଙ୍କ ଆସିବା ପାଇଁ ଯେଉଁ କେତୋଟି ମୁହୂର୍ତ୍ତ ଦରକାର, ସେଇ ସମୟତକ ଅତିବାହିତ କରିବା ଶିବଙ୍କ ପକ୍ଷରେ ଅସମ୍ଭବ ହୋଇପଡ଼ିଲା । ସୁତରାଂ ତାଙ୍କର କାମ ସନ୍ତାପ ଦୂର କରିବା ନିମନ୍ତେ ଅପ୍‌ସରାଗଣ ଛଦ୍ମବେଶ ଧାରଣ କରି ନାନାବିଧ କାମକ୍ରୀଡ଼ା ଦ୍ୱାରା ତାଙ୍କର ସନ୍ତୋଷ ବିଧାନ କରିଥିଲେ । ୬୩ ଦେବଦାରୁ ବନରେ ଶିବଙ୍କୁ ଦର୍ଶନ କରି ମୁନିପତ୍ନୀଗଣ ଯେପରି ଭାବରେ ସ୍ଖଳିତବସନା, ପତିତାଭରଣା ଓ ମଦନୋନ୍ମତ୍ତା ହୋଇଥିଲେ ଏବଂ ସ୍ୱଜନ ଓ ପରିଜନ ପରିତ୍ୟାଗ ପୂର୍ବକ ତାଙ୍କର ଅନୁଗମନ କରିଥିଲେ ୬୪ ତାହା ଶ୍ରୀକୃଷ୍ଣଙ୍କ ରାସଲୀଳା ସ୍ମରଣ କରାଇଦିଏ । ଶିବପୁରାଣରେ ଆହୁରି ବର୍ଣ୍ଣିତ ଅଛି ଯେ ଗୌରୀ ଅନୁଚରୀ ପରିବୃତା ହୋଇ ତାଙ୍କର ସ୍ତ୍ରୀଲଂପଟ ସ୍ୱାମୀଙ୍କ ପରସ୍ତ୍ରୀ-ସମାଗମ, ମୁନିପତ୍ନୀମାନଙ୍କ ଦୁଃଶୀଳତା ଏବଂ ସାଧ୍ୱୀ ସ୍ତ୍ରୀମାନଙ୍କର ଧୈର୍ଯ୍ୟଶୀଳତା ଦର୍ଶନ ନିମନ୍ତେ ସେହି ଦେବଦାରୁ ବନରେ ପ୍ରବେଶ କରିଥିଲେ । ୬୫

ସୁତରାଂ ସମଗ୍ର ପୁରାଣ ସାହିତ୍ୟରେ ଦେବତା, ମାନବ, ଗନ୍ଧର୍ବ, ଅପ୍‌ସରା, ମୁନିଋଷି ସମସ୍ତେ ଶୃଙ୍ଗାର ଲୀଳାର ଅଧୀନ । ମନେହୁଏ ପୁରାଣକାରଗଣ ମାନବୀୟ ଆଦିମ ପ୍ରବୃତ୍ତିର ପ୍ରଚଣ୍ଡ କ୍ରିୟାଶୀଳତା ମର୍ମେ ମର୍ମେ ଅନୁଭବ କରିଥିଲେ । ଯୁଗାନୁରୋଧରେ ସାହିତ୍ୟ ସୃଷ୍ଟିର ଆଦର୍ଶ ଯାହା ହେଉନା କାହିଁକି ସେମାନଙ୍କ ରଚନାକୁ କାମ ବା ଶୃଙ୍ଗାର ଚେତନା ପରୋକ୍ଷରେ ଯେ କବଳିତ କରି ରଖିଥିଲା, ଏହା ନିଃସନ୍ଦେହ ।

**କାବ୍ୟ ସାହିତ୍ୟ**–ସଂସ୍କୃତ ସାହିତ୍ୟର କାବ୍ୟଯୁଗ ହିଁ ଯଥାର୍ଥତଃ ଶୃଙ୍ଗାର ଚେତନାର ମଧୁର ଅଭିବ୍ୟକ୍ତିରେ ମଞ୍ଜୁଳ । ପତଞ୍ଜଳିଙ୍କ 'ମହାଭାଷ୍ୟ'ରେ ପ୍ରଦତ୍ତ ଉଦାହରଣଗୁଡ଼ିକରୁ କେତେକ ପ୍ରେମାଖ୍ୟାନର ସୂଚନା ମିଳେ ; ଯଥା– ଯବକ୍ରୀତ, ପ୍ରିୟଙ୍ଗୁ, ଯଯାତି, ବାସବଦତ୍ତା ଓ ସୁମନୋତ୍ତରା ପ୍ରଭୃତି । ଯଯାତିଙ୍କ ପରିଚୟ ମହାଭାରତରେ ଦେଖାଯାଏ । ବାସବଦତ୍ତା ଉପାଖ୍ୟାନ ସଂସ୍କୃତ ଓ ପ୍ରାକୃତ ନାଟକର ବିଷୟବସ୍ତୁ ରୂପେ ଗୃହୀତ ହୋଇ ଯଥେଷ୍ଟ ଲୋକପ୍ରିୟତା ଅର୍ଜନ କରିଅଛି । [୨୬]

ସଂସ୍କୃତ କାବ୍ୟଧାରାର ଆଦି ଉତ୍ସ ଅଶ୍ୱଘୋଷଙ୍କ ରଚନାରେ ଲକ୍ଷ୍ୟ କରାଯାଏ । ତାଙ୍କ ରଚିତ 'ସୌନ୍ଦରନନ୍ଦ' ମହାକାବ୍ୟର ବିଷୟ ବସ୍ତୁ ହେଉଛି– ବୁଦ୍ଧଙ୍କ ବୈମାତ୍ରେୟ ଭାଇ ନନ୍ଦଙ୍କର ଭୋଗ ବିଳାସ ପରିତ୍ୟାଗ ଓ ବୁଦ୍ଧଙ୍କ ଶିଷ୍ୟତ୍ୱ ବରଣ ତଥା ପ୍ରବ୍ରଜ୍ୟା ଗ୍ରହଣ । ଏହାର ଚତୁର୍ଥ ସର୍ଗ ହୃଦୟସ୍ପର୍ଶୀ ବର୍ଣ୍ଣନାରେ ଅନୁରଣିତ । ନନ୍ଦ ନିଜର ପତ୍ନୀ ସୁନ୍ଦରୀଙ୍କ ସହ ବିଳାସ ପ୍ରମତ୍ତ ଥିଲାବେଳେ ବୁଦ୍ଧ ତାଙ୍କର ଦେଖା ନପାଇ ଫେରିଯାଇଛନ୍ତି । ଏକଥା ଜାଣିବା ମାତ୍ରେ ନନ୍ଦ ତାହାଙ୍କୁ ସାକ୍ଷାତ କରିବା ପାଇଁ ଯିବାକୁ ଉଦ୍ୟତ; କିନ୍ତୁ ସ୍ତ୍ରୀଙ୍କ ସମ୍ମତି ବିନା ସେ ଯିବେ କିପରି ? ଏହି ଅବସ୍ଥାର ଚିତ୍ରଣ କରିବାକୁ ଯାଇ କବି ଲେଖିଛନ୍ତି–

ତଂ ଗୌରବଂ ବୁଦ୍ଧଗତଂ ଚକର୍ଷ
ଭାର୍ଯ୍ୟାନୁରାଗଃ ପୁନରାଚକର୍ଷ
ସୋଽନିଶ୍ଚୟାତ୍ ନାପି ଯଯୌ ନ ତସ୍ଥୌ
ତରଂ ସ୍ତରଂଗେଷ୍ୱିବ ରାଜହଂସଃ ।[୨୭]

ଅଶ୍ୱଘୋଷଙ୍କ 'ବୁଦ୍ଧଚରିତ' କାବ୍ୟ ବୁଦ୍ଧ ଜୀବନୀ ଆଧାରିତ । ବୁଦ୍ଧଙ୍କ ମହାଭିନିଷ୍କ୍ରମଣ ଘଟଣାର ଚିତ୍ର ଅଙ୍କନ କରିବାକୁ ଯାଇ କବି ସୁପ୍ତସ୍ତା ବିଳାସିନୀମାନଙ୍କର ଯେଉଁ ବର୍ଣ୍ଣନା ଦେଇଛନ୍ତି ତା'ହା ଅତ୍ୟନ୍ତ ରମଣୀୟ–

ନବହାଟକ ଭୂଷଣାସ୍ତଥାନ୍ୟା
ବସନଂ ପୀତମନୁତ୍ତମଂ ବସାନଂ
ଅବଶା ଘନ ନିଦ୍ରୟା ନିପେତୁର୍ଗଜଭଗ୍ନାଇବ
କର୍ଣ୍ଣିକାର ଶାଖାଃ । ୬୮

ଧାର୍ମିକ ତତ୍ତ୍ୱ ପ୍ରଚାର ଦୁଇଟି ଯାକ ଗ୍ରନ୍ଥର ଲକ୍ଷ୍ୟ ହୋଇଥିଲେ ହେଁ ସ୍ଥାନେ ସ୍ଥାନେ କାବ୍ୟିକ ସୁଷମା ଓ ଜୀବନର ସ୍ପର୍ଶ ଏତେ ଗଭୀର ଯେ ତାହା ପାଠକର ଶ୍ରଦ୍ଧା ଦୃଷ୍ଟି ଆକର୍ଷଣ କରେ ।

ସଂସ୍କୃତ କାବ୍ୟ ଜଗତର ଉଜ୍ଜ୍ୱଳ ଭାସ୍କର ହେଉଛନ୍ତି କବି କାଳିଦାସ । ତାଙ୍କ ରଚନାରେ ପ୍ରେମ, ସୌନ୍ଦର୍ଯ୍ୟ ଓ ପ୍ରକୃତି ଅଭିନବ ରୂପ ରସରେ ରସାଣିତ । ଶିବଙ୍କୁ ପାଇବା ପାଇଁ ପାର୍ବତୀଙ୍କର କଠୋର ତପସ୍ୟା କିମ୍ବା ଶକୁନ୍ତଳାଙ୍କର ଦୁଷ୍ୟନ୍ତଙ୍କ ପ୍ରତି ଉଦାର ପ୍ରେମ ଭାରତୀୟ ଆଧ୍ୟାତ୍ମିକ ଓ ସାଂସ୍କୃତିକ ଚେତନା ଦ୍ୱାରା ପରିପୁଷ୍ଟ । ୬୯ 'ମେଘଦୂତ'ରେ ବିରହୀ ଯକ୍ଷର ପ୍ରଣୟ ଭାବନା କିମ୍ବା 'ଋତୁ ସଂହାର'ରେ ପ୍ରକୃତି ଓ ମାନବର ନୈସର୍ଗିକ ସମ୍ବନ୍ଧ କବି କଳ୍ପନାର ଅପୂର୍ବ ବିଳାସରେ ମୂର୍ତ୍ତିମନ୍ତ । 'କୁମାର ସମ୍ଭବ'ରେ ରତି ବିଳାପ କିମ୍ବା 'ରଘୁବଂଶ'ରେ ଅଜ ବିଳାପ–ଦୁଇଟି ଅଂଶ ବିଶୁଦ୍ଧ ପ୍ରେମ କବିତାର ମହିମାରେ ଚିର ଉଜ୍ଜ୍ୱଳ । ୭୦ ମାନବୀୟ ସୌନ୍ଦର୍ଯ୍ୟ ବିଶେଷତଃ ନାରୀ ସୌନ୍ଦର୍ଯ୍ୟ ଚିତ୍ରଣରେ କାଳିଦାସଙ୍କ ସକଳ ଶକ୍ତି ନିୟୋଜିତ । ନିରାଭରଣା ବଲ୍‌କଳିନୀ ଶକୁନ୍ତଳାଙ୍କର ରୂପ ବର୍ଣ୍ଣନା କରିବାକୁ ଯାଇ କବି ତାଙ୍କୁ ଶୈବାଳଯୁକ୍ତ କମଳ ଏବଂ କଳଙ୍କଯୁକ୍ତ ଚନ୍ଦ୍ରମା ସହିତ ତୁଳନା କରିଛନ୍ତି ।

ସରସିଜମନୁବିଦ୍ଧଂ ଶୈବାଳେନାପି ରମ୍ୟଂ
ମଳିନମପି ହିମାଂଶୋର୍ଲକ୍ଷ୍ମ ଲକ୍ଷ୍ମୀ ତନୋତି
ଇୟମଧିକମନୋଜ୍ଞା ବଲ୍‌କଳେନାପି ତନ୍ୱୀ
କିମିବ ହି ମଧୁରଣାଂ ମଣ୍ଡନଂ ନାକୃତୀନାମ୍ । ୭୧

'କୁମାର ସମ୍ଭବ'ରେ ପାର୍ବତୀଙ୍କର ଦେହ ସୌନ୍ଦର୍ଯ୍ୟ ବର୍ଣ୍ଣନା ଯେପରି ବିସ୍ତୃତ ସେହିପରି ଲଳିତ ଭାବନା ସମନ୍ୱିତ । ତପସ୍ୟାରତା ଉମାଙ୍କର ଅଂଗସୌଷ୍ଠବର ଭାବ ବ୍ୟଞ୍ଜନା ଏଠାରେ ଲକ୍ଷ୍ୟ କରାଯାଇପାରେ ।

ସ୍ଥିତାଃ କ୍ଷଣଂ ପକ୍ଷ୍ମସୁ ତାଡ଼ିତାଧରାଃ
ପୟୋଧରୋତ୍ସେଧନିପାତ ଚୂର୍ଣ୍ଣିତାଃ
ବଳୀଷୁ ତସ୍ୟାଃ ସ୍ଖଳିତାଃ ପ୍ରପେଦିରେ
ଚିରେଣ ନାଭିଂ ପ୍ରଥମୋଦବିନ୍ଦବଃ । [୭୨]

(ବର୍ଷାର ବିନ୍ଦୁ ସବୁ ଚକ୍ଷୁର ପଲକରେ କ୍ଷଣମାତ୍ର ରହି ଅଧର ସ୍ପର୍ଶ କରୁଛି । ତତ୍‌ପରେ ସ୍ତନ ଉପରେ ପତିତ ହୋଇ ଚୂର୍ଣ୍ଣୀଭୂତ ହେଉଅଛି ଓ ତ୍ରିବଳୀ ଅତିକ୍ରମ କରି ନାଭିରଂଧ୍ରରେ ଅଟକି ଯାଉଛି ।) ଏହି ଶ୍ଳୋକରେ କବି ପାର୍ବତୀଙ୍କ ପକ୍ଷ୍ମର ଚିକ୍‌କଣତା, ଅଧରର କୋମଳତା, ସ୍ତନର କଠୋରତା ଓ ଉନ୍ନତି, ତ୍ରିବଳୀର ସୁସ୍ପଷ୍ଟତା ତଥା ନାଭିର ଗଭୀରତା ବିବୃତ କରି ସାମଗ୍ରିକ ନାରୀ ସୌନ୍ଦର୍ଯ୍ୟ ଚିତ୍ରଣର ପରକାଷ୍ଠା ଦର୍ଶାଇଛନ୍ତି ।

'କୁମାର ସମ୍ଭବ'ର ଅଷ୍ଟମ ସର୍ଗରେ ଉମା ଓ ଶିବଙ୍କର ସୁରତ ବିଳାସ କାମୁକତା ଓ ରସିକତାର ଗଣ୍ଡି ଅତିକ୍ରମ କରି ପାରିନାହିଁ । ଦେବତାର ସକଳ ମହିମା ଏଠାରେ ବିପର୍ଯ୍ୟସ୍ତ । ସମକାଳୀନ ସାମାଜିକ ବିଳାସ ବିଭବର ଅନୁରୋଧରେ କବି ଏଇ ପ୍ରସଙ୍ଗଟିର ଅବତାରଣା କରିଥାଇପାରନ୍ତି କିମ୍ବା ଜୀବନର ମୁକ୍ତ ସୌନ୍ଦର୍ଯ୍ୟ ପରିବେଷଣରେ ଅଭିଳାଷୀ ହୋଇ ସେ ଦେବତା ଚରିତ୍ରରେ ମର୍ତ୍ତ୍ୟ ମାନବର ଅବତରଣ କରାଇଛନ୍ତି । ଅନ୍ୟତ୍ର ତାଙ୍କର ପ୍ରେମ ଓ ଶୃଙ୍ଗାର ଦୃଷ୍ଟି ରୂପ ଓ ରସର ସୁକୁମାର ଐଶ୍ୱର୍ଯ୍ୟରେ ବିଭୂଷିତ । ଡକ୍‌ଟର ଉମା ଶଙ୍କର ତିୱାରୀଙ୍କ ମତରେ– "ବିଷୟାନନ୍ଦବି ସଙ୍କଟୋନ୍ମୁଖତା ତଥା ରାଗାତ୍ମକ ସୁକୁମାରତା ସେ ଉପଲବ୍ଧ ହୋନେବାଲୀ ଶାନ୍ତି କି ମହିମା କା ନିରୂପଣ କାଳିଦାସକେ ପ୍ରେମ ଚିତ୍ରଣ କା ମୁଖ୍ୟ ଉଦ୍ଦେଶ୍ୟ ହୈ ।" [୭୩]

ଭବଭୂତି ତାଙ୍କର 'ଉତ୍ତର ରାମଚରିତ' ,ଓ 'ମାଳତୀମାଧବ' ଗ୍ରନ୍ଥରେ ପ୍ରେମର ଅଖଣ୍ଡ ଗୌରବ ପ୍ରତିଷ୍ଠା କରିଯାଇଛନ୍ତି । ସେଥିରେ ପ୍ରେମର ଗୌରବ ବିଚ୍ଛେଦର କଳଙ୍କରେ ଦୂଷିତ ହୋଇ ନାହିଁ । ତେଣୁ ରାମାୟଣ-ପରଂପରାକୁ ଭ୍ରୂକ୍ଷେପ ନ କରି ସେ ତାଙ୍କ 'ଉତ୍ତର ରାମଚରିତ' ଗ୍ରନ୍ଥରେ ରାମ ଓ ସୀତାଙ୍କର ପୁନର୍ମିଳନ ବର୍ଣ୍ଣନା କରିଛନ୍ତି । ଏସ୍. କେ. ଦେ କହନ୍ତି–"... The Uttara-rama-charita of Bhavabhuti idealises conjugal love in a way which is unparalled in Sanskrit or perhaps in any literature."[୭୮] 'ମାଳତୀ ମାଧବ' ନାଟକର ସଂଘର୍ଷମୟ ପରିଣତିରେ ସେହିପରି ବିବାହର ଗୌରବ ଘୋଷଣା କରାଯାଇଛି । ଯଥା–

ପ୍ରେୟୋ ମିତ୍ରଂ ବନ୍ଧୁତା ବା ସମଗ୍ରା
ସର୍ବେ କାମାଃ ଶେବଧିର୍ଜୀବିତଂ ବା
ସ୍ତ୍ରୀଣାଂ ଭର୍ତ୍ତା ଧର୍ମଦାରଶ୍ଚ ପୁଂସା–
ମିତ୍ୟନ୍ୟୋନଂ ବତ୍ସୟୋର୍ଜ୍ଞାତମସ୍ତୁ । [୭୯]

(ସ୍ୱାମୀ ଓ ସ୍ତ୍ରୀ ପରସ୍ପରର ପ୍ରିୟବଂଧୁ । ସେମାନେ ସେମାନଙ୍କର ସକଳ କାମନାର ମଧୁମୟ ସଫଳତା । ସକଳ ମାଧୁର୍ଯ୍ୟର ଜୀବନ ସାଧନା ।) ଦାଶରଥି ଦାସଙ୍କ ଭାଷାରେ– "ସ୍ୱାମୀ, ସ୍ତ୍ରୀ ଓ ସନ୍ତାନର ସଂସାରରେ ସ୍ୱର୍ଗର ଆଶୀର୍ବାଦ ପରି ପ୍ରଣୟର ଯେଉଁ କୋମଳତା ଝରିଯାଏ, ଭବଭୂତି ସେଇ ପ୍ରଣୟର କବି ।" [୭୬]

ପରବର୍ତ୍ତୀ କାଳର ସଂସ୍କୃତ ସାହିତ୍ୟ ରତିବନ୍ଧ ପ୍ରେମ ବର୍ଣ୍ଣନାରେ ମୁଖରିତ । ଶୃଙ୍ଗାରିକତା, ଆଳଂକାରିକତା ଓ କଳ୍ପନା ପ୍ରବଣତା ସାହିତ୍ୟର ମୁଖ୍ୟ ଆଦର୍ଶ ରୂପେ ସ୍ୱୀକୃତ ହେବା ଫଳରେ ଜୀବନର ସ୍ୱାଭାବିକ ସୌନ୍ଦର୍ଯ୍ୟ ପ୍ରତି କବିଗଣ ବିମୁଖତା ପ୍ରକାଶ କରିଅଛନ୍ତି । ବିଳାସମୟ ରାଜଦରବାରର ପୃଷ୍ଠପୋଷକତା ଓ କାବ୍ୟ ସୃଷ୍ଟିର ପ୍ରତିସ୍ପର୍ଦ୍ଧା

ସାହିତ୍ୟର ପ୍ରାଣ ସ୍ରୋତକୁ ସଙ୍କ୍ରମଣ କରିବାଦ୍ୱାରା କଳାର ସ୍ୱଚ୍ଛ ଆଦର୍ଶ ବ୍ୟାହତ ହୋଇଛି । ଭାରବି, ମାଘ ଓ ଶ୍ରୀହର୍ଷ ଏଇ ପରଂପରାର କବି । ପାଣ୍ଡିତ୍ୟ ହିଁ ସେମାନଙ୍କ କାବ୍ୟର ଅଭିଳଷିତ ବସ୍ତୁ । ତେଣୁ କୁହାଯାଏ—

ତାବଦ୍ଭା ଭାରବେର୍ଭାତି ଯାବନ୍ମାଘସ୍ୟ ନୋଦୟଃ
ଉଦିତେ ନୈଷଧେ କାବ୍ୟେ କ୍ୱ ମାଘଃ କ୍ୱ ଚ ଭାରବିଃ ।[୨୭]

ମହାଭାରତରୁ କଥାବସ୍ତୁ ଗ୍ରହଣ କରି ଭାରବି ତାଙ୍କର ଶ୍ରେଷ୍ଠ କାବ୍ୟ 'କିରାତାର୍ଜ୍ଜୁନୀୟମ' ରଚନା କରିଛନ୍ତି । ଅର୍ଜୁନଙ୍କ ଶକ୍ତି ପରୀକ୍ଷା କରିବା ପାଇଁ ଶିବଙ୍କର କିରାତ ବେଶ ଧାରଣ, ମାୟା ବରାହ ଉପରକୁ ଦୁହିଁଙ୍କର ଶର ନିକ୍ଷେପ, ଦୁଇ ଜଣଙ୍କ ମଧ୍ୟରେ ତୁମୂଳ ଯୁଦ୍ଧ ଏବଂ ଅର୍ଜୁନଙ୍କ ଶକ୍ତିରେ ସନ୍ତୁଷ୍ଟ ହୋଇ ଶିବଙ୍କର ପାଶୁପତ ଅସ୍ତ୍ର ପ୍ରଦାନ—ଏହି କାବ୍ୟର ବିଷୟବସ୍ତୁ । ବୀରରସ ଏହାର ଆଧାର ହେଲେ ହେଁ ପର୍ବତ, ଋତୁ ସୂର୍ଯ୍ୟାସ୍ତ ଓ ଜଳକ୍ରୀଡ଼ା ଆଦିର ମନୋରମ ଚିତ୍ରଣ ଏଥିରେ ଦେଖିବାକୁ ମିଳେ । ଅପ୍‌ସରାମାନଙ୍କ ଜଳକେଳି ଦୃଶ୍ୟ ତାହାର ଏକ ବିଶିଷ୍ଟ ଉଦାହରଣ—

ତିରୋହିତାନ୍ତାନି ନିତାନ୍ତମାକୁଳୈରପାଂ ବିହରାଦଳକୈଃ
ପ୍ରସାରିଭିଃ
ଯଯୁର୍ବଧୂନାଂ ବଦନାନି ତୁଲ୍ୟତାଂ ଦ୍ୱିରେଫଂ ବୃନ୍ଦାନ୍ତରିତୈଃ
ସରୋରୁହୈଃ ।[୨୮]

ମାଘ 'ଶିଶୁପାଳ ବଧ' କାବ୍ୟର ସ୍ରଷ୍ଟା । କଥାବସ୍ତୁ ପୁରାଣରୁ ସଗୃହୀତ ହୋଇଥିଲେ ହେଁ ଉପମା, ଅର୍ଥଗୌରବ ଓ ପଦଲାଳିତ୍ୟ (ମାଘେ ସନ୍ତି ତ୍ରୟୋଗୁଣାଃ)— ତାଙ୍କ ସୃଷ୍ଟିକୁ ସମୃଦ୍ଧ କରିଛି । ମାଘଙ୍କ କାବ୍ୟରେ ନାରୀ ରୂପ, ରୈବତକ ପର୍ବତ, ସୂର୍ଯ୍ୟୋଦୟ, ସୂର୍ଯ୍ୟାସ୍ତ, ଜଳକ୍ରୀଡ଼ାଦିର ବିସ୍ତୃତ ଚିତ୍ର ପରିଲକ୍ଷିତ । ଶୃଙ୍ଗାରଧର୍ମୀ ଚିତ୍ର ପ୍ରଦାନ କରିବାରେ ତାଙ୍କର କ୍ଷମତା ଅସୀମ ।

ଶ୍ରୀହର୍ଷଙ୍କ 'ନୈଷଧ'ର କାବ୍ୟ ଗୌରବ ଭାରତୀୟ ବିଦଗ୍ଧ ସମାଜରେ ଅତୁଳନୀୟ । ନଳ-ଦମୟନ୍ତୀଙ୍କ ପ୍ରଣୟ କାହାଣୀ ଏହାର କଥାବସ୍ତୁ । ଶୃଙ୍ଗାର ରସର ବିପୁଳ ବର୍ଣ୍ଣନା ଏହି କାବ୍ୟର ବୈଶିଷ୍ଟ୍ୟ । ଦମୟନ୍ତୀଙ୍କ ଅଂଗ ସୌନ୍ଦର୍ଯ୍ୟ ବର୍ଣ୍ଣନାରେ କବିଙ୍କର ମନୋହର ପରିକଳ୍ପନା ବାସ୍ତବିକ ଲକ୍ଷ୍ୟ କରିବାର କଥା । ନାୟିକାର ନିତମ୍ବ ବର୍ଣ୍ଣନା ପ୍ରସଂଗରେ କବି କହିଛନ୍ତି—

ପୃଥୁବର୍ତ୍ତୁଳନିତମ୍ବ କୃତିହିର ସ୍ୟନ୍ଦନ ଶିଳ୍ପ ଶିକ୍ଷା
ବିଧିରେକକ ଚକ୍ର ଚାରିତାଂ କିମୁ ନିର୍ମିତିମାନୁଥଂରଥମ୍ । ୭୯

(ବିଶାଳ ତଥା ବର୍ତ୍ତୁଳ ନିତମ୍ବ ଦେଖି ମନେହୁଏ ବ୍ରହ୍ମା ସୂର୍ଯ୍ୟଙ୍କ ରଥ ନିର୍ମାଣ କୌଶଳ ଶିକ୍ଷାରୁ କାମଦେବଙ୍କ ନିମନ୍ତେ ଏକ ଚକ୍ର ବିଶିଷ୍ଟ ରଥ ନିର୍ମାଣ କରିଛନ୍ତି କି ?)

କନ୍ଦର୍ପଜ୍ୱାଳା ପୀଡ଼ିତା ଦମୟନ୍ତିଙ୍କର ଅବସ୍ଥା ବର୍ଣ୍ଣନା କରିବାକୁ ଯାଇ ଏକ ସ୍ଥଳରେ ସେ କହିଛନ୍ତି—

ସ୍ମର ହୁତାଶନ ଦୀପିତୟା ତୟା ବହୁ ମୁହୁଃ ସରସଂ
ସରସୀରୁହମ୍,
ଶ୍ରୟିତୁମର୍ଦ୍ଧପଥେ କୃତମନ୍ତର ଶ୍ୱାସିତ
ନିର୍ମିତମର୍ମର ମୁଜ୍ଝିତମ୍ । ୮୦

(କାମାଗ୍ନି ସନ୍ତପ୍ତା ଦମୟନ୍ତୀ ତାପ ଶାନ୍ତି ନିମନ୍ତେ ଥରକୁ ଥର ଆନୀତ ପଦ୍ମସମୂହ ଅର୍ଦ୍ଧ ପଥରେ ତାଙ୍କ ନିଶ୍ୱାସର ଉଷ୍ଣତା ଯୋଗୁଁ ଶୁଷ୍କ ହୋଇ-ଯାଉଥିବାରୁ ସେଗୁଡ଼ିକୁ ଫୋପାଡ଼ି ଦେବାକୁ ପଡୁଥିଲା ।)

ସଂସ୍କୃତ କାବ୍ୟ ଜଗତରେ ଅନ୍ୟ ଜଣେ ଯଶସ୍ୱୀ କବି ହେଉଛନ୍ତି ବାଣଭଟ୍ଟ । ତାଙ୍କ ରଚିତ 'କାଦମ୍ବରୀ'ରେ ଚନ୍ଦ୍ରାପୀଡ ଓ କାଦମ୍ବରୀଙ୍କ

ଜନ୍ମଜନ୍ମାନ୍ତରର ପ୍ରେମ କାହାଣୀ ବର୍ଣ୍ଣିତ । ନାୟିକାର ରୂପଶୋଭା ଚିତ୍ରଣରେ କବି ବିଶେଷ କୃତିତ୍ୱ ପ୍ରଦର୍ଶନ କରିଛନ୍ତି । ନାଭି ସୌନ୍ଦର୍ଯ୍ୟର ଗୌରବ ସେଥିରେ ଏହିପରି ଭାବେ ଉଦ୍‌ଘୋଷିତ—

ପ୍ରଜାପତେଃ ସ୍ପୃଶତୋଽତି ସୌକୁମାର୍ଯ୍ୟାତ୍
ଅଙ୍ଗୁଲୀମୁଦ୍ରାମିବନିମଗ୍ନାଂ ନାଭୀମଣ୍ଡଳୀଂ
ଆବର୍ତ୍ତୀନୀମୁଦ୍‌ବହନ୍ତୀମ୍— [୮୧]

'ହର୍ଷଚରିତ'ର ସ୍ଥାନେ ସ୍ଥାନେ କବିଙ୍କ ଶୃଙ୍ଗାର ରସିକତା ସୀମା ଅତିକ୍ରମ କରିଅଛି । ନାରୀର ରୂପ ସୌନ୍ଦର୍ଯ୍ୟ, ସମ୍ଭୋଗ, ବିପ୍ରଲମ୍ଭ, ପ୍ରକୃତି ଆଦି ଚିତ୍ରଣରେ ବାଣଭଟ୍ଟୀୟ ପ୍ରତିଭାର ଅପୂର୍ବ କୃତିତ୍ୱ ପରିସ୍ଫୁଟିତ । ଏସବୁ ବର୍ଣ୍ଣନାରେ କଳ୍ପନାର ଅତିରଂଜନ ପରିଦୃଷ୍ଟ ହେଲେ ହେଁ ଯୁଗୀୟ ସାହିତ୍ୟ-ଧର୍ମ ଦୃଷ୍ଟିରୁ ଏହାର ମୂଲ୍ୟ ସ୍ୱୀକାର କରିବାକୁ ହେବ ।

**ଗୀତି ସାହିତ୍ୟ**—ସଂସ୍କୃତ ଗୀତି କବିତା ତଥା ପ୍ରକୀର୍ଣ୍ଣ କବିତାରେ ଶୃଙ୍ଗାର ରସର ଅବାଧ ବିକାଶ ଦେଖିବାକୁ ମିଳେ । ଏଇ ଧାରାର ପଥିକୃତ୍ ହେଉଛନ୍ତି କବି ଅମରୁ । 'ଅମରୁ ଶତକ'ରେ ସଂକଳିତ କବିତାଗୁଡ଼ିକ ରସ ସାହିତ୍ୟର ପ୍ରଥାସିଦ୍ଧ ରଚନା ରୂପେ ପରିଗଣିତ ହେଲେ ହେଁ ବିଦଗ୍ଧ ସମାଜର ଏକାନ୍ତ ଉପଭୋଗ୍ୟ । ସ୍ଥାନେ ସ୍ଥାନେ ଅନୁଭୂତିର ସ୍ପର୍ଶ ଏପରି ନିବିଡ଼ ଯେ ସେଠାରେ ଜୀବନର ଉପଲବ୍ଧି ଚରମ ଅବଧି ପ୍ରାପ୍ତ ହୋଇଅଛି । ମାନୀନୀ ପ୍ରତି ସଖୀର ଭର୍ତ୍ସନାମୂଳକ ଗୋଟିଏ କବିତା ଏଠାରେ ଉଦ୍ଧୃତ ।

ଅନାଲୋଚ୍ୟ ପ୍ରେମ୍‌ଣଃ ପରିଣତି ମନାଦୃତ୍ୟ ସୁହୃଦ—
ସ୍ତ୍ୱୟା କାଣ୍ଡେ ମାନଃ କିମିତି ସରଲେ ! ସମ୍ପ୍ରତି କୃତଃ
ସମାକୃଷ୍ଟା ହ୍ୟେତେ ବିରହ ଦହନୋଭାସ୍ୱର ଶିଖାଃ
ସ୍ୱହସ୍ତେନାଙ୍ଗାରସ୍ତଦଲ ମଧୁନାରଣ୍ୟ ରୁଦିତୈଃ । [୮୨]

(ହେ ସରଳେ । ପ୍ରେମର ପରିଣତି ଆଲୋଚନା ନ କରି ସୁହୃଦ୍-ଗଣଙ୍କୁ ଅନାଦର କରି ପ୍ରିୟତମ ଉପରେ କାହିଁକି ମାନ କଲୁ । ତୁ ସ୍ୱହସ୍ତରେ ବିରହାଗ୍ନି—ଉଦ୍ଦୀପ୍ତ ଶିଖ ଅଙ୍ଗାରକୁ ଆଲିଙ୍ଗନ କରୁଛୁ । ବର୍ତ୍ତମାନ ଅରଣ୍ୟ ରୋଦନ କରି ଲାଭ କ'ଣ ?)

ଅମରୁଙ୍କ ପରେ ଏଇ ଧାରାର ଆଉ ଜଣେ କବି ହେଉଛନ୍ତି ଭର୍ତ୍ତୃହରି । 'ଶୃଙ୍ଗାରଶତକ','ନୀତିଶତକ'ଓ 'ବୈରାଗ୍ୟଶତକ'—ତିନୋଟି ଗ୍ରନ୍ଥର ରଚୟିତା ରୂପେ ତାଙ୍କର ପ୍ରସିଦ୍ଧି । ଶୃଙ୍ଗାର ଚିତ୍ରଣରେ ସେ ଅମରୁଙ୍କ ଅପେକ୍ଷା ଉଚ୍ଚତର ପ୍ରତିଭାର ଅଧିକାରୀ ହୋଇ ନଥିଲେ ହେଁ ଆନ୍ତରିକତା ଓ ଆବେଦନଶୀଳତା ଦୃଷ୍ଟିରୁ ତାଙ୍କ କବିତାଗୁଡ଼ିକ ବିଶେଷ ହୃଦୟଗ୍ରାହୀ । ଉଦାହରଣ ସ୍ୱରୂପ—

ଅଦର୍ଶନେ ଦର୍ଶନ ମାତ୍ର କାମା ଦୃଷ୍ଟ୍ବା ପରିଷ୍ୱଙ୍ଗ
ସୁଖୈକ ଲୋଲାଃ
ଆଲିଙ୍ଗିତାୟାଂ ପୁନରାୟତାକ୍ଷ୍ୟାମ୍ ଆଶାସ୍ମହେ
ବିଗ୍ରହୟୋର୍ଭେଦମ୍ । ୮୩

(ପ୍ରିୟତମାକୁ ନ ଦେଖିଲେ ଦେଖିବାର ଅଭିଳାଷ, ଦେଖିଲାପରେ ଆଲିଙ୍ଗନ କରିବାର ଏକାନ୍ତ ଇଚ୍ଛା, ଆଲିଙ୍ଗନ ପରେ ଶରୀର ସହ ଶରୀର ମିଶାଇ ଏକ ହେବାର ଦୁର୍ବାର କାମନା ଜାଗେ ।)

'ଚୌରପଞ୍ଚାଶିକା'ର କବି ବିହ୍ଲଣ ପ୍ରିୟା ବିରହିତ ପ୍ରେମର ମଧୁର ସ୍ମୃତି ଚିତ୍ରଣରେ ସିଦ୍ଧହସ୍ତ । କିମ୍ବଦନ୍ତୀ ଅଛି ଯେ ସେ ଜନୈକା ରାଜକନ୍ୟା ସହ ଗୋପନ ପ୍ରଣୟରେ ଲିପ୍ତ ଥିଲେ ଏବଂ ରାଜା ତାହା ଜାଣିପାରି ତାଙ୍କ ପ୍ରତି ମୃତ୍ୟୁ ଦଣ୍ଡାଦେଶ ବିଧାନ କରିଥିଲେ । କିନ୍ତୁ କବିଖ୍ୟାତି ଯୋଗୁଁ ରାଜକୁମାରୀଙ୍କ ସହ ପରିଶେଷରେ ତାଙ୍କର ବିବାହ ସମ୍ପନ୍ନ ହୋଇଥିଲା । ଏଠାରେ ଉଦ୍ଧୃତ ଗୋଟିଏ ଶ୍ଲୋକରୁ କବି-ପ୍ରତିଭାର ମହନୀୟତା ସହଜରେ ଉପଲବ୍ଧି କରାଯାଇପାରେ । ଏଥିରେ କଣ୍ଠଲଗ୍ନା ପ୍ରିୟତମାର ଚୁମ୍ବନ ଦୃଶ୍ୟ ଅଙ୍କିତ ।

ଅଦ୍ୟାପି ତାଂ ଭୁଜଲତାର୍ପିତ କଣ୍ଠପାଶାଂ
ବକ୍ଷସ୍ଥଳଂ ମମ ବିଧାୟ ପୟୋଧରାଭ୍ୟାମ୍
ଈଷନ୍ନିମୀଳିତ ସୁଲୋଲବିଲୋଚନାନ୍ତାଂ
ପଶ୍ୟାମି ମଦ୍‌ବଦନମନ୍ମୁଦନଂ ପିବନ୍ତୀମ୍ । [୮୪]

(ଅଦ୍ୟାପି ତା'ର ସେଇ ଚୁମ୍ବନ ସମୟର କଣ୍ଠଦେଶରେ ବେଷ୍ଟିତ ଭୁଜଲତା, ବକ୍ଷଦେଶରେ ପିନଦ୍ଧ ସ୍ତନ, ଈଷତ୍ ନିମୀଳିତ ନେତ୍ର ମୁଁ ଦେଖିପାରୁଛି ।)

ସଂସ୍କୃତ କାବ୍ୟ ରାଜ୍ୟରେ ଶୃଙ୍ଗାର ରସର ଉଚ୍ଛଳ ପ୍ରବହମାନା ନଦୀ ହେଉଛି କବି ଜୟଦେବଙ୍କ 'ଗୀତ ଗୋବିନ୍ଦ', 'ଗୀତି ସୌନ୍ଦର୍ଯ୍ୟ' ଓ 'କାବ୍ୟ ସୌନ୍ଦର୍ଯ୍ୟ'–ସକଳ ଦୃଷ୍ଟିରୁ ଏହାର ପ୍ରତିଷ୍ଠା ଅବିସମ୍ବାଦିତ । ରାଧାକୃଷ୍ଣଙ୍କ ପ୍ରଣୟ ରାସ ଏହି କାବ୍ୟର କଥାବସ୍ତୁ । ଅପ୍ରାକୃତ ଲୀଳା ଅନ୍ତରାଳରେ ପ୍ରାକୃତ ପ୍ରଣୟୀ ଜନର ସକଳ ଭାବ ଏଥିରେ ମୂର୍ତ୍ତ ହୋଇ ଉଠିଛି ! କାବ୍ୟର ପ୍ରଥମ ସର୍ଗରେ କବି ଘୋଷଣା କରିଛନ୍ତି–

ଯଦି ହରି ସ୍ମରଣେ ସରସଂ ମନୋ
ଯଦି ବିଳାସ କଳାସୁ କୁତୂହଳମ୍
ମଧୁର କୋମଳ କାନ୍ତ ପଦାବଳୀଂ
ଶୃଣୁ ତଦା ଜୟଦେବ ସରସ୍ୱତୀମ୍ । [୮୫]

ଏହି ଗ୍ରନ୍ଥର ବହୁସ୍ଥଳରେ ଶୃଙ୍ଗାର ଲୀଳାର ରସସିକ୍ତ ଚିତ୍ର ଅଙ୍କିତ । ଭାଷାର ଯାଦୁକରୀ ସଂଯୋଜନା ଏହାକୁ ଅପୂର୍ବ କଳା ଗୌରବରେ ମଣ୍ଡିତ କରିଛି । ରାସଲୀଳାକାଳୀନ ଶ୍ରୀକୃଷ୍ଣଙ୍କ ଗୋପୀ ସମ୍ଭୋଗ ବର୍ଣ୍ଣନାରୁ ଗୋଟିଏ ଉଦାହରଣ ଏଠାରେ ଉପସ୍ଥାପିତ କରାଯାଉଛି–

ଶ୍ଳିଷ୍ୟତି କାମପି ଚୁମ୍ବତି କାମପି କାମପି ରମୟତି ରାମାମ୍
ପଶ୍ୟତି ସସ୍ମିତି ଚାରୁପରାମପରା ମନୁଗଚ୍ଛତି ବାମାମ୍ । [୮୬]

ଅନ୍ୟତ୍ର ରସିକ ଶେଖର କୃଷ୍ଣଙ୍କ ପରିଚୟ ସମ୍ପର୍କରେ କୁହାଯାଇଛି–

ରତିଗୃହଜଘନେ ବିପୁଳପଘନେ ମନସିଜ କନକାସନେ
ମଣିମୟଂ ରସନଂ ତୋରଣହସନଂ ବିକିରତିକୃତବାସନେ । [୮୭]

ଏ. ବି. କିଥ୍ (A B. Keith)ଙ୍କ ଭାଷାରେ– "Jayadeva's work is a masterpiece and it surpasses in its completeness of effect any other Indian poem x x x All the sides of love, save that of utter despair and final separation are brilliantly described" [୮୮]

ସଂସ୍କୃତ ସାହିତ୍ୟର ଶୃଙ୍ଗାର ଚେତନା ପରଂପରାରେ ନାରୀକବିଙ୍କ ଦାନ ସ୍ୱଳ୍ପ ହେଲେ ହେଁ ଅନୁପେକ୍ଷଣୀୟ । ଶୀଲା ଭଟ୍ଟାରିକା, ବିଜ୍ଜକା, ଭାବକଦେବୀ, ବିକଟନିତମ୍ବା, ମାରୁଲା, ଇନ୍ଦୁଲେଖା ପ୍ରଭୃତି ଏ କ୍ଷେତ୍ରରେ ଯଥେଷ୍ଟ କୃତିତ୍ୱ ପ୍ରଦର୍ଶନ କରି ଯାଇଛନ୍ତି । ନାରୀ ପ୍ରାଣର ଆଶା, ଆଶଙ୍କା, ହୃଦୟାବେଗ ସେମାନଙ୍କ କବିତା ସମୂହରେ ମଧୁର ଅଭିବ୍ୟକ୍ତି ଲାଭ କରିଅଛି । ସ୍ୱାଧୀନ ମନୋଭାବ ପ୍ରକାଶ କରିବାରେ ନାରୀ ଅପେକ୍ଷା ପୁରୁଷର ସୁଯୋଗ ବେଶୀ । ସୁତରାଂ ସାହିତ୍ୟରେ ନାରୀକୁ ଘେନି କବିର କଳ୍ପନା ଓ କଥନ ପ୍ରଚୁର ପରିମାଣରେ ପରିଦୃଷ୍ଟ । କିନ୍ତୁ ନାରୀକବିର ରଚନାରେ ପୁରୁଷ-ଭାବନା ଏକାନ୍ତ ସୀମିତ । ନାରୀ ହୃଦୟବୃତ୍ତିର ଅକୃତ୍ରିମ ପ୍ରକାଶ ପ୍ରସଂଗରେ ଶୀଲା ଭଟ୍ଟାରିକାଙ୍କର ଗୋଟିଏ ପ୍ରସିଦ୍ଧ କବିତା ଏଠାରେ ଉଦ୍ଧାର କରାଯାଉଛି–

ଯଃ କୌମାର ହରଃ ସ ଏବ ହି ବରସ୍ତା ଏବ ଚୈତ୍ରକ୍ଷପା
ସ୍ତେ ଚୋନ୍ମୀଲିତ ମାଲତୀ ସୁରଭୟଃ ପ୍ରୌଢ଼ାଃ କଦମ୍ବାନିଲାଃ ।
ସା ଚୈବାସ୍ମି ତଥାପି ତତ୍ର ସୁରତବ୍ୟାପାର ଲୀଳାବିଧୌ
ରେବା ରୋଧସିବେତସୀତରୁତଳେ ଚେତଃ ସମୁତ୍କଣ୍ଠତେ [୮୯]॥

(ଯେ ମୋର କୁମାରୀତ୍ୱ ହରଣ କରିଥିଲେ ସେ ଆଜି ମୋର ବର । ଆଜି ବି ସେଇ ଚୈତ୍ରନିଶି, ବିକଶିତ ମାଳତୀ ସୁରଭି, କଦମ୍ବବଣର ପରିଣେତ ବାୟୁ ଏବଂ ସେଇ ମୁଁ ଆଜି ମଧ୍ୟ ଅଛି । ତଥାପି ସେଇ ରେବା ନଦୀ ତଟର ବେତସୀ ତରୁ ତଳର ସୁରତ ବ୍ୟାପାର ଲୀଳାବିଧି ଲାଗି ମୋର ଚିତ୍ତ ସମୁତ୍‌କଣ୍ଠିତ ହୋଇ ଉଠୁଛି ।)

ସଂସ୍କୃତ ସାହିତ୍ୟର ବିପୁଳ ଭଣ୍ଡାରରୁ ଶୃଙ୍ଗାରଧର୍ମୀ ସକଳ ରଚନାର ଉଲ୍ଲେଖ କରିବା ପ୍ରସ୍ତୁତ ଅଧ୍ୟାୟରେ ସମ୍ଭବ ନୁହେଁ । କେତେକ ବିଶିଷ୍ଟ ସୃଷ୍ଟି ଜରିଆରେ ସେହି ପରଂପରାକୁ ଚିହ୍ନିବାର ପ୍ରୟାସ କରାଯାଇଛି ମାତ୍ର । ଓଡ଼ିଆ ସାହିତ୍ୟର ମଧ୍ୟଯୁଗ ବା ରୀତିଯୁଗର କାବ୍ୟ ପ୍ରେରଣା ତଥା ଶୃଙ୍ଗାର ଚେତନା ଏଇ ସଂସ୍କୃତ ଭିତ୍ତି ନିକଟରେ ଆଙ୍ଗିକ ଓ ଆତ୍ମିକ ଉଭୟ ଦିଗରୁ ଯେ ବହୁଳ ଭାବେ ଋଣୀ, ସେ କାଳର କବିଗଣ ତାହା ମୁକ୍ତ କଣ୍ଠରେ ସ୍ୱୀକାର କରିଯାଇଛନ୍ତି । [୯୦]

ପାଲି ସାହିତ୍ୟ—ପାଲି ସାହିତ୍ୟ ମୁଖ୍ୟତଃ ବୌଦ୍ଧ ଧର୍ମ ଓ ଦର୍ଶନ ଭିତ୍ତିକ ରଚନା । ବୌଦ୍ଧମାନଙ୍କର କାମ ଦେବତା ହେଉଛନ୍ତି ମାର (ବା ମୃତ୍ୟୁ) ।[୯୧] ସୁତରାଂ ପାଲି ସାହିତ୍ୟରେ ମାନବୀୟ ପ୍ରେମର ଉତ୍ସ ସନ୍ଧାନ ବ୍ୟର୍ଥଶ୍ରମ ମାତ୍ର । 'ଥେରୀଗାଥା'ରେ ସଙ୍କଳିତ ଭଦ୍ରାଙ୍କର ଗୋଟିଏ କବିତା ନାରୀ ହୃଦୟର କ୍ଷୀଣତମ ସୂଚନା ବହନ କରେ । [୯୨] ଆଶ୍ଚର୍ଯ୍ୟର କଥା ଯେ କେବଳ 'ଦୀଘ ନିକାୟ'ରେ ଗୋଟିଏ ପୂର୍ଣ୍ଣାଙ୍ଗ ପ୍ରେମ କବିତା ସ୍ଥାନିତ । ବୋଧହୁଏ ସମଗ୍ର ପାଲି ସାହିତ୍ୟରେ ଏହାହିଁ ଏକମାତ୍ର ପ୍ରେମ କବିତା । ଧର୍ମ ସଂପର୍କହୀନ ବିଶୁଦ୍ଧ ପ୍ରେମର ମହିମା କୀର୍ତ୍ତନ ହେଉଛି କବିତାଟିର କଥାବସ୍ତୁ । [୯୩] ମୂଳ ଗ୍ରନ୍ଥ ସହ ସଂବନ୍ଧରହିତ ହୋଇ ଏହା କେଉଁ ଅଜ୍ଞାତ କାରଣ ବଶତଃ ସେଥିରେ ସଂଯୋଜିତ ।

ପ୍ରାକୃତ ସାହିତ୍ୟ—ପ୍ରେମ କବିତାର ପ୍ରାଚୀନତା ଓ ବୈଚିତ୍ର୍ୟମୟ ପରିପ୍ରକାଶ କ୍ଷେତ୍ରରେ ହାଲଙ୍କର ପ୍ରାକୃତ ଗୀତିକା ସଂକଳନ ଗୌରବମୟ ଆସନର ଅଧିକାରୀ । ଏଥିରେ ଶୃଙ୍ଗାର ରସଚର୍ଯ୍ୟାର ସୂକ୍ଷ୍ମତମ ଅନୁଭୂତି

ମଧ୍ୟ କବି ଦୃଷ୍ଟିକୁ ଏଡ଼ାଇ ଯିବାର ଅବସର ପାଇନାହିଁ । ଗ୍ରାମ୍ୟ ଜୀବନ ଆଧାରିତ ପ୍ରେମର ନାନାବିଧ ରୂପ ସଭ୍ୟ-ଶ୍ଳୀଳ ଓ ଅଶ୍ଳୀଳ, ବୈଧ ଓ ଅବୈଧ, ସ୍ଥୂଳ ଓ ପ୍ରାଣବନ୍ତ–ସବୁ କିଛି ଏହି ଗ୍ରନ୍ଥର ପରିସରଭୁକ୍ତ । ଲୋକସାହିତ୍ୟ-ପ୍ରଭବ-ପୁଷ୍ଟ ଏଇ କବିତାଗୁଡ଼ିକ ପରବର୍ତ୍ତୀ କବି ଓ ଆଳଂକାରିକ ସମାଜରେ ଉଚ୍ଚ ପ୍ରଶଂସା ଲାଭ କରିଅଛି । ବିରହିଣୀ ନାୟିକାର ଚିତ୍ର ଦେବାକୁ ଯାଇ 'ଗାଥାସପ୍ତଶତୀ'କାର କହିଛନ୍ତି–

ଣଇ ଜରସ ଛହେ ଜୋବ୍ବଣମ୍ମି ଅଇପବସି ଏସୁ ଦିଅହେସୁ
ଅଣି ଅରାସୁ ଅଗଇସୁ ପୁତ୍ତି କିଂ ଦଛଢମାଣେଣ । [୯୮]

(ନଦୀ ଜଳର ଉଦ୍‌ବେଳଣ ପରି ନାରୀର ଯୌବନ । ଦିନଗୁଡ଼ିକ ଚିରକାଳ ପାଇଁ ଚାଲି ଯାଉଅଛି । ରାତ୍ରି ମଧ୍ୟ ଆଉ ଫେରିବ ନାହିଁ । ଏଇ ଅବସ୍ଥାରେ ମାନ କରି ଲାଭ କ'ଣ ?)

ଗୋଟିଏ ସ୍ଥାନରେ ନାୟିକାର ଦେହ ବିକାରର ଚିତ୍ର ଅତି ରମଣୀୟ ଭାବରେ ଉପସ୍ଥାପିତ–

ଅଛୀଇଁ ତା ଥଇସ୍‌ସଂ ଦୋହିଁ ବି ହିଅ୍ଥେହିଁ ବି ତସ୍‌ସିଂଦିଟ୍‌ଠେ
ଅଙ୍ଗ କଲମ୍ବ କୁସୁମଂ ବ ପୁଲଇୟଂ କହଁ ଣୁ ଢ଼କ୍‌କିସ୍‌ସଂ । [୯୫]

(ତାଙ୍କୁ ଦେଖିଲେ ଚକ୍ଷୁ ଦୁଇଟି ହୁଏତ ଦୁଇ ହାତରେ ଢ଼ାଙ୍କି ଦେବି । କିନ୍ତୁ କଦମ୍ବ କୁସୁମ ପରି ପୁଲକିତ ଅଙ୍ଗକୁ କିପରି ଢ଼ାଙ୍କିବି ?)

'ଗାଥା ସପ୍ତଶତୀ' ସଂପର୍କରେ ଏ. ବି. କିଥ୍ କହନ୍ତି–"Even as it is, it has a spirit of closeness to life and common realities, which is hardly to be seen in Sanskrit poetry".[୯୬]

ପ୍ରାକୃତ ସାହିତ୍ୟ କ୍ଷେତ୍ରରେ ଅନ୍ୟ ଜଣେ ସୁପରିଚିତ ସ୍ରଷ୍ଟା ହେଉଛନ୍ତି ରାଜଶେଖର । ତାଙ୍କ ରଚିତ 'କର୍ପୂରମଂଜରୀ' ନାଟକରେ ରାଜା

ଚନ୍ଦ୍ରପାଳ ଓ କୁନ୍ତଳର ରାଜକନ୍ୟା କର୍ପୂରମଞ୍ଜରୀଙ୍କ ପ୍ରଣୟ କାହାଣୀ ଚିତ୍ରିତ । ନାୟିକାର ସୌନ୍ଦର୍ଯ୍ୟ ବର୍ଣ୍ଣନା ସମ୍ବନ୍ଧୀୟ ଗୋଟିଏ ଉଦାହରଣ ଏଠାରେ ଉଲ୍ଲେଖ କରଯାଉଛି–

ଏକ୍କେଣ ପାର୍ଣିଣିଣେଣ ଣିବେସଅନ୍ତୀ
ବତ୍ଥଇଂ ଘଣଥଣତ୍ଥଇସସମାଣଂ
ଚିରେଲିହିଜ୍ଜଦି ଣ କସସ ବି ମଞ୍ଜମନ୍ତୀ
ଅଣେଣ୍ଣ ଚଂକମଣଦୋ ଚଲିଦଂ କଡ଼ିଲ୍ଲଂ । ୯୭

(ପୃଥୁଳ ପୟୋଧର ଉପରୁ ଖସି ପଡ଼ୁଥିବା ବସ୍ତ୍ରକୁ ଏକ ହାତରେ ତା' ଉପରେ ରଖୁଛି । ବାର ବାର ପଦକ୍ଷେପ ଯୋଗୁଁ କଟିବସ୍ତ୍ର ଢିଲା ହୋଇ ଯାଉଛି । ତେଣୁ ଅନ୍ୟ ହାତରେ ତାହାକୁ ସମ୍ଭାଳି ଧରୁଛି । ଏହି ରୂପ କାହା ହୃଦୟକୁ ପ୍ରଭାବିତ କରୁନାହିଁ ?)

ଅପଭ୍ରଂଶ ସାହିତ୍ୟ–ଅପଭ୍ରଂଶ ସାହିତ୍ୟର ପୃଷ୍ଠଭୂମି ହେଉଛି ପ୍ରାୟତଃ ଜୈନଧର୍ମର ପ୍ରଚାର– ଆଭିମୁଖ୍ୟ । ଜୀବନରେ ଭୋଗ ବିଳାସର ଅସାରତା ପ୍ରତିପାଦନ କରିବା ଲକ୍ଷ୍ୟରେ ଜୈନ ଗ୍ରନ୍ଥକାରଗଣ ଲେଖନୀ ଧାରଣ କରିଥିଲେ । ସୁତରାଂ ଗ୍ରନ୍ଥ ବର୍ଣ୍ଣିତ ଚରିତ୍ରସବୁ ନିର୍ଦ୍ଦିଷ୍ଟ ପଥର ପଥିକ । ସମସ୍ତେ ଯୌବନରେ ସୁଖ ସମ୍ଭୋଗ ଲିପ୍ତ ରହି ପରବର୍ତ୍ତୀ କାଳରେ ଧର୍ମର ଆଶ୍ରୟ ଗ୍ରହଣ କରିଛନ୍ତି । ବିମଳ ସୁରି ରାମାୟଣ, ଗୁଣଭଦ୍ର ରାମାୟଣ, ସୁବଂଧୁ ରାମାୟଣ ଆଦି ପୁରାଣ ତଥା ପଉମଚରିତ, ଯଶହର ଚରିତ, ଣାୟକୁମାର ଚରିତ, କରକଣ୍ଡୁ ଚରିତ, ସୁଦଂସଣ ଚରିତ, ପଉମସିରି ଆଦି କାବ୍ୟ ଅପଭ୍ରଂଶ ସାହିତ୍ୟର ପ୍ରଧାନ ଗ୍ରନ୍ଥ । ହରିବଂଶ କଛୋଡ଼ଙ୍କ ମତରେ– "ଯେ ଚରିତ କାବ୍ୟ ତଥା କଥାତ୍ମକ ଗ୍ରନ୍ଥୋ ପ୍ରାୟ ଧର୍ମକେ ଆବରଣ ମେ ଆବୃତ ହେଁ । ଅଧିକାଂଶ ଚରିତ କାବ୍ୟ ପ୍ରେମାଖ୍ୟାନକ ୟା ପ୍ରେମ ପରକ ହେଁ ।" ୯୮ ଏ ସମସ୍ତ ଚରିତ କାବ୍ୟରେ ନଗର, ଋତୁ, ବିବାହ, ନାୟିକାଭେଦ, ନଖଶିଖ, ରତି, ଶୃଙ୍ଗାର ଆଦିର ମଧୁର ବର୍ଣ୍ଣନା ତଥା ଯକ୍ଷ, ଗନ୍ଧର୍ବ, ମୁନି, ଋଷି ସ୍ୱପ୍ନର ଅବତାରଣା ସ୍ଥଳ

ବିଶେଷରେ ଦେଖିବାକୁ ମିଳେ । ହେମଚନ୍ଦ୍ରଙ୍କ ବ୍ୟାକରଣରେ ଅନେକ ଅପଭ୍ରଂଶ କବିତା ଉଦାହରଣ ରୂପେ ଗୃହୀତ । ଗୋଟିଏ ସ୍ଥଳରେ ଜଣେ ବିରହିଣୀ ନାୟିକାର ଆଲିଙ୍ଗନ କାମନା କିପରି ରମଣୀୟ ଅଭିବ୍ୟକ୍ତି ଲାଭ କରିଛି, ତାହା ଏଠାରେ ଲକ୍ଷ୍ୟ କରଯାଇ ପାରେ—

ଜଇ କେବଁଇ ପାବୀସୁ ପିଉ ଅକିଆ କୁଡ୍ଡ କରୀସୁ
ପାଣୀଉ ନବଇ ସରବ ଜିଂବ ସବ୍ବଂଗେ ପଇସୀସୁ । [୯୯]

(ଯଦି କୌଣସି ପ୍ରକାରେ ପ୍ରିୟକୁ ପାଏ ତେବେ ଅଦ୍ଭୁତ କାଣ୍ଡ କରିବି । ଜଳ ଯେପରି ନୂଆ ସରରେ ପ୍ରବେଶ କରେ ସେହିପରି ତାହାର ସାରା ଦେହରେ ପ୍ରବେଶ କରିବି ।)

ଶେଷ କଥା—ଭାରତୀୟ ସାହିତ୍ୟରେ ଶୃଙ୍ଗାର ଚେତନାର ପରଂପରା କିପରି ବିପୁଳ ଗୌରବ ଦାବୀ କରେ ତାହା ଉପରୋକ୍ତ ଆଲୋଚନାରୁ ସହଜରେ ଅନୁମିତ । ବୈଦିକ କାଳରୁ ଆରମ୍ଭ କରି ଅପଭ୍ରଂଶ କାଳ ପର୍ଯ୍ୟନ୍ତ ଉପର୍ଯ୍ୟୁକ୍ତ ପ୍ରସଂଗର ବିସ୍ତୃତ ଅନୁଶୀଳନ ଏଠାରେ ସମ୍ଭବ ନୁହେଁ । କେବଳ ତାହାର ସମ୍ୟକ୍ ଧାରଣା କରିବା ନିମନ୍ତେ ଏହା ସାମାନ୍ୟ ପ୍ରୟାସ ମାତ୍ର । ବିଶିଷ୍ଟ ଭାରତ-ତତ୍ତ୍ୱବିତ୍ ଏ. ଏଲ୍. ବାସମ୍ (A. L. Basham)ଙ୍କ ଉକ୍ତି ଉଦ୍ଧାର କରି ବର୍ତ୍ତମାନ ଏହି ଅଧ୍ୟାୟର ପରିସମାପ୍ତି ଘୋଷଣା କରଯାଇପାରେ—"The Literature of Hindu India both religious and secular, is full of sexual allusions, sexual symbolism and passages of frank eroticism." [୨୦୦]



# ଓଡ଼ିଆ ସାହିତ୍ୟ

ଲୋକ ସାହିତ୍ୟ—ଲୋକ ସାହିତ୍ୟ ହିଁ ଜନପଦ ଜୀବନ ଚର୍ଯ୍ୟାର ଅକୃତ୍ରିମ ଆଲେଖ୍ୟ । ଗୀତ, କାହାଣୀ, ବ୍ରତକଥା, ଢଗ ଢମାଳୀ, ପ୍ରବାଦ, ପ୍ରବଚନ, ପ୍ରଥା ଓ ପରଂପରା ଆଦିର ବିପୁଳ ପ୍ରବାହରେ ଏହା ସମୃଦ୍ଧ । ଏଥିରେ ବିଦଗ୍ଧ ମନର ଯୁକ୍ତିଶୀଳତା କିମ୍ବା ପ୍ରୟାସ ପ୍ରବଣତାର ଗନ୍ଧ ଦେଖିବାକୁ ମିଳେ ନାହିଁ । କିନ୍ତୁ ଗୋଟିଏ ସଂସ୍କୃତିର ଗତିଶୀଳ ଜୀବନବୋଧ ଓ ସାମାଜିକ ରୂପ ଚିତ୍ରର ଏହା ହେଉଛି ବିଶ୍ୱସ୍ତ ପ୍ରତିନିଧି । ଏ ପ୍ରସଙ୍ଗରେ ବିଶିଷ୍ଟ ସମାଜ ତତ୍ତ୍ୱବିତ୍ ସାମ୍ନାର (Sumner) ଙ୍କ ବିଚାର ଏଠାରେ ଉଲ୍ଲେଖଯୋଗ୍ୟ— "To him, folkways are ways of the folk of the unsophisticated, unanalytic mass of mankind. × × They grow unconsciously; they are not creations of purpose, but they are basic societal forces." ୧୦୧

ଓଡ଼ିଆ ଲୋକ ସାହିତ୍ୟ ପୃଥିବୀର ସକଳ ଦେଶର ଲୋକ ସାହିତ୍ୟ ପରି ଜନ ଜୀବନର ନାନାବିଧ ବୈଚିତ୍ର୍ୟରେ ପରିପୂର୍ଣ୍ଣ । ଆଦିମ କାମ ବା ଶୃଙ୍ଗାର ଚେତନାର ଅନାବିଳ ଅଭିବ୍ୟକ୍ତି ଏହାର ଅନ୍ୟତମ ରସ ସଂପଦ । ଓଡ଼ିଆ ଲୋକଗୀତର ଆଲୋଚନା ପ୍ରସଂଗରେ ଡକ୍‌ଟର କୁଞ୍ଜ ବିହାରୀ ଦାଶ କହନ୍ତି—"ଶତ ଦୁଃଖ ଝଂଝାଳ ମଧ୍ୟରେ ପ୍ରେମ ହିଁ ଲୋକଙ୍କର ଶ୍ରେଷ୍ଠ ଚିତ୍ତ ବିନୋଦନ, ଲୋକଗୀତର ଶ୍ରେଷ୍ଠ ଉପାଦାନ । ଏ ପ୍ରେମ ମଧ୍ୟବିତ୍ତ ଓ ଶ୍ରମିକ ଶ୍ରେଣୀ ମଧ୍ୟରେ ସୀମିତ । ଧନିକ ସମାଜର ପ୍ରେମଚିତ୍ର

ଲୋକଗୀତରେ ଦୁର୍ଲଭ ।"[୧୦୨] ନିମ୍ନ ବର୍ଗୀୟ ସାମାଜିକ ଜୀବନ ଚିତ୍ରର ଏକ ଉଲ୍ଲେଖଯୋଗ୍ୟ ଉଦାହରଣ ହେଉଛି ଭୂୟାଁଜାତି ସଂପର୍କରେ ପ୍ରଚଳିତ ଗୀତ ।

ପାଚିଲା କାଂଗୁ ବାଜିଲା ଗୁଂଗୁ
ଗାଲର ଉପରେ ଗାଲ
ହେଲା ଚଇତ ସରିଲା ଭତ
ଯେଉଁଠି ଖାଲା ସେଇଠି ଗ୍ଳଲ ।[୧୦୩]

ଏହି ଗୀତରେ ପ୍ରେମ ଓ ପରିବେଶ ସହ ଜୀବନ ଅଭିଜ୍ଞତାର ସାର୍ଥକ ରୂପାୟନ ଦେଖିବାକୁ ମିଳେ । ସ୍ୱକୀୟ ଓ ପରକୀୟ ଭେଦରେ ବ୍ୟକ୍ତିଗତ ପ୍ରେମର ଚିତ୍ର ଲୋକଗୀତରେ ଲକ୍ଷ୍ୟ କରାଯାଇପାରେ । ସ୍ୱକୀୟ ପ୍ରେମ ଗୀତରେ ସ୍ୱାମୀର ସୋହାଗ ତାଡ଼ନା, ପ୍ରବାସ, ପାରିବାରିକ ଝଂଝାଟ; ନାନା ଅତ୍ୟାଚାରର ଚିତ୍ର ରୂପାୟିତ ।[୧୦୪] ବେଳେ ବେଳେ ଏହା ରାମ ଓ ସୀତା କିମ୍ବା ଶିବ ଓ ପାର୍ବତୀ ଆଦି ଚରିତ୍ରକୁ ଆଶ୍ରୟ କରିଥିଲେ ହେଁ ପ୍ରେମାନୁଭୂତିର ରୂପ ଲୌକିକ ମର୍ଯ୍ୟାଦାରେ ଅଭିଷିକ୍ତ । ପରକୀୟ ପ୍ରେମଗୀତରେ ସାଧାରଣ ନରନାରୀ ସହ ରାଧାକୃଷ୍ଣ ପ୍ରସଙ୍ଗର ଅବତାରଣା ମଧ୍ୟ ଦେଖିବାକୁ ମିଳେ । ସମାଜ ଓ ପରିବାର ବନ୍ଧନ ଅନ୍ତରାଳରେ ପ୍ରେମିକ ପ୍ରେମିକାର ଅଭିସାର, ମିଳନ, ମାନ, ଅଭିମାନ, ଭୟ ଭୀରୁତା, ସାହସିକତା ଓ ଅସାଧ୍ୟସାଧନ ଆଦି ଏହି ଜାତୀୟ ଗୀତର ମୁଖ୍ୟ ବିଷୟ ।[୧୦୫] ଲୋକ ଗୀତର ପ୍ରେମ ଚିତ୍ର ଅନେକ କ୍ଷେତ୍ରରେ ଶ୍ଳୀଳତାକୁ ଅତିକ୍ରମ କରିଥିବା ମନେହୁଏ । କିନ୍ତୁ ବହୁ ସ୍ଥଳରେ ଏହା ଦେହାତିରିକ୍ତ ସୌନ୍ଦର୍ଯ୍ୟରେ ମଣ୍ଡିତ ହୋଇ ମାନବୀୟ ପ୍ରଣୟାନୁଭୂତିର ମହିମାଲୋକ ସୃଷ୍ଟି କରିଛି । ଉଦାହରଣ ସ୍ୱରୂପ–

ମରିଯିବି ଧନ ତୋହରି କୋଳେ
ପୀରତି ଲଗିଲା ବେଳେ ।[୧୦୬]

ଲୋକ କାହାଣୀଗୁଡ଼ିକରେ ଅଲୌକିକତା, ଅତିରଞ୍ଜନ ଓ କାଳ୍ପନିକତା ବିଶେଷ ରୂପେ ପରିଦୃଷ୍ଟ ହେଲେ ହେଁ ସେ ସବୁରୁ ମଣିଷର ଅନ୍ତର୍ଲୋକ

ଆବିଷ୍କାର କରଯାଇପାରେ । ଡକ୍‌ଟର ନଟବର ସାମନ୍ତରାୟଙ୍କ ଭାଷାରେ– "ଏହା ମଣିଷ ଜାତିର ପ୍ରକୃତି ଓ କୃଷି ସହିତ ଘନିଷ୍ଠଭାବେ ସଂଶ୍ଳିଷ୍ଟ"[୨୦୭] ଶୃଙ୍ଗାର ଚେତନାର ଅଭିବ୍ୟକ୍ତି ପ୍ରସଙ୍ଗରେ ଓଡ଼ିଆ କାହାଣୀଗୁଡ଼ିକୁ ବିଶ୍ଳେଷଣ କଲେ ଅନେକ ରହସ୍ୟ ଉଦ୍‌ଘାଟିତ ହେବ । 'ହଳାହଳ କୁମର' ବା 'ଶଶିସେଣା' ଗଳ୍ପରେ ନାୟକ ନାୟିକାର ପରସ୍ପର ଅଭେଦପ୍ରୀତି 'କଲରେଇ ଫୁଲ' ଗଳ୍ପରେ ଭାଇର ଭଉଣୀକୁ ବିବାହ କରିବା ପାଇଁ ଏକାନ୍ତ ଜିଦ୍, 'ଦୁଇ ସଙ୍ଗାତ' ଗଳ୍ପରେ କେଉଁ ରୂପସୀ କନ୍ୟାକୁ ପାଇବା ଲାଗି ରାଜପୁତ୍ରର ପଣ– ଏଇ ସବୁ କାହାଣୀ ଧାରାରୁ ଆଦିମ କାମ ଭାବନାର ସ୍ୱରୂପ ସଂଧାନ କରାଯାଇ ପାରେ । ମନ୍ତ୍ରବଳରେ ମେଣ୍ଢା ରୂପେ ରହିଥିବା ନାୟକଙ୍କୁ ପ୍ରତ୍ୟହ ରାତ୍ରିରେ ଭେଣ୍ଡା ପୁରୁଷ କରି ତାହା ସହିତ ଅପ୍ସରୁଣୀର ମିଳନ ଈପ୍‌ସିତ ପୁରୁଷକୁ ପ୍ରେମ-ବଶୀଭୂତ୍ କରି ରଖିବା ପାଇଁ ଇତର ସ୍ତ୍ରୀର ମାୟାବିନୀ ରୂପ ଧାରଣ, ପ୍ରେମିକର ପ୍ରତୀକ୍ଷାରେ ପ୍ରେମିକାର ଦୀର୍ଘବ୍ରତ ପାଳନ, ମାଲୁଣୀର ଫୁଲହାରରେ ନାୟକ ନାୟିକାର ପ୍ରେମ ଚିଟାଉ ଆଦାନ ପ୍ରଦାନ–ଏବଂବିଧ କାହାଣୀ ଗଠନ କଳାରେ ଉକ୍ତ ପ୍ରବୃତ୍ତିର ବିବିଧ ସୂଚନା ନିହିତ । ବୈଧ ଓ ଅବୈଧ ପ୍ରେମ, ହରଣ ଓ ବରଣ, ଅଭିସାର ଓ ବ୍ୟଭିଚାରର ଚିତ୍ର ଓଡ଼ିଆ ଲୋକ କାହାଣୀରେ ଅନେକତ୍ର ଦେଖିବାକୁ ମିଳେ ।

ଓଡ଼ିଶାର ଦଣ୍ଡଯାତ୍ରା ପରଂପରାରେ ଲିଙ୍ଗ ଉପାସନାର ପ୍ରାଧାନ୍ୟ ସ୍ୱୀକୃତ । ଏହି ନାଟର ଦୁଇ ମୁଖ୍ୟ ଚରିତ୍ର ପତ୍ର ସଉରା ଓ ପତ୍ର ସଉରାଣୀଙ୍କ ଜନ୍ମ ବୃତ୍ତାନ୍ତ ପ୍ରେମ ଓ ଅବୈଧ ପ୍ରଣୟର ସୁନ୍ଦର ଚିତ୍ର ବହନ କରେ ।[୨୦୮] ନାରୀ ପୁରୁଷର କାମ ସଂପର୍କ ହିଁ ମୁଖ୍ୟତଃ ଶବର ଶବରୁଣୀ ଗୀତରେ ରୂପାୟିତ । ଦଣ୍ଡୁଆମାନଙ୍କ ଗୀତ ଅନେକ କ୍ଷେତ୍ରରେ ଅଶ୍ଳୀଳତା ଦୋଷଯୁକ୍ତ ହୋଇଥିଲେ ମଧ୍ୟ ତାହା ଅତ୍ୟନ୍ତ ରସାଳ ଓ ହୃଦୟଗ୍ରାହୀ । ବ୍ରତଚାରିଣୀର ସ୍ୱାମୀ ବା ସନ୍ତାନ କାମନା ଓ ଫଳପ୍ରାପ୍ତି ଓଷା ଏବଂ ବ୍ରତକଥାର ମୁଖ୍ୟ ବିଭବ ରୂପେ ଗୃହୀତ । ସେହିପରି ମାଇପଙ୍କ ଛଟା[୨୦୯], ବଚନିକା,[୨୧୦] ବାରମାସୀ ଗୀତ[୨୧୧] ପ୍ରଭୃତି ଲୋକ ସାହିତ୍ୟର ବିଭିନ୍ନ କ୍ଷେତ୍ରରେ ଏଇ ଚେତନା ଶରତର ଶିଶିରବିନ୍ଦୁ ପରି ଉଜ୍ଜ୍ୱଳ ଓ ରମଣୀୟ ।

ଅଭିଲେଖ—ଓଡ଼ିଶାର ଅଭିଲେଖଗୁଡ଼ିକରେ ରାଜପ୍ରଶସ୍ତି, ରାଜକୀୟ ଘୋଷଣା, ଦାନପଟ୍ଟା, ଦଲିଲ, ଶାସନନୀତି ଇତ୍ୟାଦିର ଉଲ୍ଲେଖ ଦେଖିବାକୁ ମିଳେ । ସାହିତ୍ୟିକ ମୂଲ୍ୟ କଳନାରେ କେତେକ ଅଭିଲେଖର ଉଚ୍ଚକୋଟୀତା ଲକ୍ଷ୍ୟ କରଯାଇଥାଏ । ଏଗୁଡ଼ିକ ମଧ୍ୟରୁ କେତୋଟିରେ ନାରୀ ସୌନ୍ଦର୍ଯ୍ୟର ବର୍ଣ୍ଣନା ଓ ଶୃଙ୍ଗାର ଭବନାର ମଧୁର ସମନ୍ୱୟ ପରିଲକ୍ଷିତ । ବ୍ରହ୍ମେଶ୍ୱର ଶିଳାଲେଖକୁ ଏଠାରେ ଉଦାହରଣ ରୂପେ ଗ୍ରହଣ କରଯାଇପାରେ ।

ରତ୍ନାଳଂକୃତି ଭୂଷିତାଂଗ ସୁଷମା ଦେଦୀପ୍ୟମାନାଦିବେଃ
କ୍ରୀଡ଼ନ୍ତ୍ୟାସ୍ତଡ଼ିତଃ ସ୍ଥିରଇବ କୁଚ ଶ୍ରୋଣୀଭର ବ୍ୟାକୁଳାଃ
(ସୁଦର୍ଯ୍ୟୋକ୍ଷି) କନୀନିକାଂକାଇବ ଦୃଷ୍ଟାମନ୍ତପ୍ରବିଷ୍ଟାନୃଣା
ମସ୍ମୈ ଚଞ୍ଚଳ କଞ୍ଜଳାଭ(ଭ୍ର) ନୟନା ଦତ୍ତାସ୍ତୟା ଦାରିକାଃ ୧୯୨

(ରତ୍ନାଳଂକାର ଭୂଷିତା, ସ୍ତନ ଜଘନ ଭର ବ୍ୟାକୁଳିତାଃ, କ୍ରୀଡ଼ା ଚଞ୍ଚଳ ସ୍ଥିର ବିଦ୍ୟୁଲ୍ଲତା ତୁଲ୍ୟ ଶୋଭିତା, ଚକ୍ଷୁ ପିତୁଳା ପରି ଦର୍ଶନେନ୍ଦ୍ରିୟ ପ୍ରିୟତର, ଚଞ୍ଚଳ କଞ୍ଜଳାଭ ନୟନା ରମଣୀମାନଙ୍କୁ କୋଲାବତୀ ମନ୍ଦିରର ଦେବଦାସୀ ରୂପେ ନିଯୁକ୍ତ କରିଥିଲେ ।)

ଚର୍ଯ୍ୟା ସାହିତ୍ୟ— ୧୯୦୭ ମସିହାରେ ନେପାଳର ଦରବାର ଲାଇବ୍ରେରୀରୁ ମହାମହୋପାଧ୍ୟାୟ ହର ପ୍ରସାଦ ଶାସ୍ତ୍ରୀଙ୍କ ଦ୍ୱାରା ଆବିଷ୍କୃତ ବୌଦ୍ଧ ସିଦ୍ଧାଚାର୍ଯ୍ୟମାନଙ୍କ ଗୀତିକାଗୁଡ଼ିକ ଭାଷା, ସାହିତ୍ୟ ଓ ଧର୍ମତତ୍ତ୍ୱ ଦୃଷ୍ଟିରୁ ଅତ୍ୟନ୍ତ ମୂଲ୍ୟବାନ । ୧୯୧୬ ମସିହାରେ ବଂଗୀୟ ସାହିତ୍ୟ ପରିଷଦ ତରଫରୁ ଶ୍ରୀଯୁକ୍ତ ଶାସ୍ତ୍ରୀଙ୍କ ସଂପାଦନାରେ ଏହି ଗୀତିକାଗୁଡ଼ିକ ପ୍ରକାଶିତ ହୁଏ । ପରବର୍ତ୍ତୀ କାଳର ବହୁ ଗବେଷକ ବିଭିନ୍ନ ଦୃଷ୍ଟିକୋଣରୁ ଚର୍ଯ୍ୟାର ଆଲୋଚନା କରି ଏହାକୁ ବଙ୍ଗଳା, ଓଡ଼ିଆ, ଆସାମିୟା, ମୈଥିଳୀ, ମାଗଧୀ, ଭୋଜପୁରୀ ଭାଷାର ଆଦିମ ରୂପ ବୋଲି ଦାବୀ ଉପସ୍ଥାପିତ କରନ୍ତି । ଏ ପ୍ରସଙ୍ଗରେ ଓଡ଼ିଆ ଭାଷାତତ୍ତ୍ୱବିତ୍ ଡକ୍‌ଟର କରୁଣାକର କର ଓ ଡକ୍‌ଟର ଖଗେଶ୍ୱର ମହାପାତ୍ରଙ୍କ ଅବଦାନ ବିଶେଷ ଭାବରେ ଉଲ୍ଲେଖଯୋଗ୍ୟ । ଚର୍ଯ୍ୟା ଭାଷାକୁ ଭାରତର ପୂର୍ବାଞ୍ଚଳୀୟ ଭାଷା ସମୂହର ଆଦିମ ଅବସ୍ଥା ରୂପେ

ଗ୍ରହଣ କରିନେଲେ ପ୍ରାଚୀନ ଓଡ଼ିଆ ସାହିତ୍ୟର ଇତିହାସରେ ଏହାର ସ୍ଥାନ ଅବିସମ୍ବାଦିତ ହୋଇ ଉଠେ ।

ଚର୍ଯ୍ୟା ଗୀତିକାଗୁଡ଼ିକ ଅତୁଳନୀୟ ସାହିତ୍ୟିକ ଐଶ୍ୱର୍ଯ୍ୟର ଅଧିକାରୀ । ବିଶେଷତଃ ଶୃଙ୍ଗାର ଓ ମିଳନର ରସଘନ ବର୍ଣ୍ଣନାରେ କେତେକ ଗୀତିକା ଅପୂର୍ବ ଗୌରବ ମଣ୍ଡିତ । ଚର୍ଯ୍ୟାର ରଚନାକାଳୀନ ଉଦ୍ଦେଶ୍ୟ ଧର୍ମତତ୍ତ୍ୱାଭିମୁଖୀ ହୋଇଥିବାରୁ ଆଜି ଆମ ନିକଟରେ ସେସବୁ ଅତୀବ ଗୂଢ଼ ଓ ରହସ୍ୟମୟ । କିନ୍ତୁ ତା'ର ବହିଃରଙ୍ଗ ସୌନ୍ଦର୍ଯ୍ୟ ଯେତିକି ସରସ ସେତିକି ଉପଭୋଗ୍ୟ ।[୧୧୩] ଶବରୀପାଙ୍କ ଗୋଟିଏ ଗୀତିକାରେ ପାର୍ବତ୍ୟ ପ୍ରକୃତିର ନୈସର୍ଗିକ ଶୋଭା ଏବଂ ଉନ୍ମତ୍ତ ଶବରର ଶବରୀ ବାଳିକା ସହ ପ୍ରେମଚର୍ଯ୍ୟା ଚିତ୍ର ଅତ୍ୟନ୍ତ ମନୋମୁଗ୍ଧକର ।

ଉଗ୍ଁ ଉଗ୍ଁ ପାବତ ତହିଁ ବସଇ ଶବରୀ ବାଲୀ
ମୋରଙ୍ଗୀ ପୀଛ ପରହିତା ସବରୀ ଗିବତ ଗୁଞ୍ଜରୀମାଳୀ ॥
ଉମତ ସବରେ ପାଗଲ ସବରେ ମାକର ଗୁଲୀ ଗୁହାଡ଼ ତୋହରି
ଣିଅ ଘରଣୀ ନାମେ ସହଜ ସୁନ୍ଦରୀ ॥ [୧୧୪]

କାହ୍ନୁପାଙ୍କ ଏକ ଗୀତିକାରେ ଜଣେ କାପାଳିକର ନଗର ବାହାରେ ବାସ କରୁଥିବା ଡ଼ୋମ୍ବୀ ପ୍ରତି ପ୍ରଣୟର ଆହ୍ୱାନ ରୂପାୟିତ । ତା'ର ପ୍ରଣୟିନୀ ପାଇଁ ସେ କୁଳ ବ୍ୟବସାୟ ନାଟ ଦେଖାଇବା ଛାଡ଼ିଦେବାକୁ ପ୍ରସ୍ତୁତ । ପ୍ରଣୟ ଲାଭ କରି ନପାରିଲେ ସେ ପ୍ରାଣତ୍ୟାଗ କରିବାକୁ ମଧ୍ୟ କୁଣ୍ଠିତ ନୁହେଁ ।[୧୧୫] କାହ୍ନୁପାଙ୍କ ଅନ୍ୟ ଏକ ଗୀତିକାରେ ବିବାହ ଜନିତ ଆଡ଼ମ୍ବର, ଯୌତୁକ, ଭୋଜିଭାତ ତଥା ବିବାହ ପରେ ବରକନ୍ୟାଙ୍କ ରତିରସରେ କାଳଯାପନ ବିଷୟ ଉଲ୍ଲିଖିତ ।[୧୧୬]

ଗୁଣ୍ଡୁରୀପାଙ୍କ ଗୋଟିଏ ଶୃଙ୍ଗାର ରସୋଜ୍ଜ୍ୱଳ ଗୀତିକାରେ ଯୋଗିନୀର ଘନ ଜଘନ ମେଖଳାର ନିବିଡ଼ ଆଲିଙ୍ଗନ, ବଜ୍ର ଓ ପଦ୍ମର

ମିଳନ ତଥା ମୁଖ ଚୁମ୍ବନ ପୂର୍ବକ ପଦ୍ମ ମଧୁପାନର ଅଦମ୍ୟ ଅଭିଳାଷ ପ୍ରସଙ୍ଗ ବର୍ଣ୍ଣିତ ।

ତିଅଡ୍ଡା ଚୁପି ଜୋଇନି ଦେ ଅଙ୍କବାଳୀ
କମଳ କୁଳିଶ ଘାଣ୍ଟି କରହୁଁ ବିଆଳୀ
ଜୋଇନି ତଇଁ ବିନୁ ଖନ ହିଁ ନ ଜୀବମି
ତୋ ମୁହ ଚୁମ୍ବୀ କମଳ ରସ ପୀବମି । [୧୧୭]

କୁକ୍କୁରୀପାଙ୍କ ଏକ ଚର୍ଯ୍ୟାରେ ଜନୈକା ସ୍ୱାମୀ ପରିତ୍ୟକ୍ତା ହତଭାଗିନୀ ନାରୀର କରୁଣ ଜୀବନ ଚିତ୍ର ଅଙ୍କିତ । [୧୧୮] ଭୁସୁକୁପା ଗୋଟିଏ ଚର୍ଯ୍ୟାରେ ଚଣ୍ଡାଳୀକୁ ଘରଣୀ ରୂପେ ଗ୍ରହଣ କରି ସେ ବଂଗାଳୀ ହୋଇଥିବା କଥା ବର୍ଣ୍ଣନା କରିଛନ୍ତି । [୧୧୯]

ଚର୍ଯ୍ୟାଗୀତିକା ଗୁଡ଼ିକରେ ଜୀବନ ବିନ୍ୟାସର ପରିସର ସ୍ୱଳ୍ପ ହେଲେ ହେଁ ପ୍ରକୃତି, ପ୍ରେମ ଓ ସୌନ୍ଦର୍ଯ୍ୟ ଚେତନାର ଅକପଟ ଓ ନିରାଡ଼ମ୍ବର ରୂପମାଧୁରୀ ଖୁବ୍ ପ୍ରାଣସ୍ପର୍ଶୀ । ଡ଼ୋମ୍ବୁଣୀ, ଶବରୀ, ଚଣ୍ଡାଳୀ ପ୍ରଭୃତି ନିମ୍ନବର୍ଗର ନାରୀମାନଙ୍କ ସହ ପୁରୁଷର ମିଳନ ଭାବନା ସହଜିଆତନ୍ତ୍ର-ସମାଜର ଆଲେଖ୍ୟ ପ୍ରଦାନ କରେ ।

ନାଥ ସାହିତ୍ୟ—ନାଥ ଧର୍ମର ଭିତ୍ତି ହେଉଛି କାମ-ନିବୃତ୍ତି ମାର୍ଗୀ ଯୋଗାଚାରର ସାଧନା । ଏଇ ସାଧନା ତତ୍ତ୍ୱକୁ ଆଶ୍ରୟ କରି ଗଢ଼ି ଉଠିଥିବା ସାହିତ୍ୟର ଆଧ୍ୟାତ୍ମିକ ଜିଜ୍ଞାସା ଓ ସିଦ୍ଧିର ପନ୍ଥା ହିଁ ବିବୃତ । ସାହିତ୍ୟିକ ମୂଲ୍ୟ କଳନାରେ ଉଚ୍ଚକୋଟୀର ବିବେଚିତ ନହେଲେ ମଧ୍ୟ ସମାଜ ଓ ଜୀବନର ଅଭିବ୍ୟକ୍ତି ତଥା ଐତିହାସିକ ବିଚାରରେ ଏହାର ସ୍ଥାନ ଗୁରୁତ୍ୱପୂର୍ଣ୍ଣ । ନାଥ ସାହିତ୍ୟରେ ନାରୀର ସ୍ଥାନ ସୀମିତ । ତ୍ୟାଗ, ଅନାସକ୍ତି ଓ ସନ୍ନ୍ୟାସକୁ ଜୀବନର ଚରମ ଲକ୍ଷ୍ୟ ରୂପେ ସ୍ୱୀକାର କରି ନାଥଧର୍ମ ପୂର୍ବବର୍ତ୍ତୀ ବୌଦ୍ଧ ସିଦ୍ଧାଚାର୍ଯ୍ୟମାନଙ୍କର ଗୁହ୍ୟ ଅଭିଚାର ଓ ଯୌନ ଉଚ୍ଛୃଙ୍ଖଳତା ବିରୁଦ୍ଧରେ ସ୍ୱର

ଉତ୍ତୋଳନ କରିଥିଲ । ଓଡ଼ିଆ ନାଥ ସାହିତ୍ୟରେ 'ଶିଶୁବେଦ', 'ଗୋରେଖ ସହିତା', 'ସପ୍ତାଙ୍ଗ, 'ଯୋଗ ଧାରଣ', 'ଅମରକୋଷ ଗୀତା' ପ୍ରଭୃତି କେତୋଟି ବିଶିଷ୍ଟ ଗ୍ରନ୍ଥ । ଯଶୋବନ୍ତ ଦାସଙ୍କ 'ଗୋବିନ୍ଦ ଚନ୍ଦ୍ର' ଏବଂ ଦୈବଜ୍ଞ ଯୋଗୀନ୍ଦ୍ର ବିପ୍ରଙ୍କ 'ଟୀକା ଗୋବିନ୍ଦଚନ୍ଦ୍ର' କରୁଣ ରସ ଗର୍ଭିତ ଗ୍ରନ୍ଥ ଦୁଇଟି ଅଶେଷ ସାହିତ୍ୟିକ ଖ୍ୟାତିର ଅଧିକାରୀ । ଏସବୁ କୃତିରେ ଶୃଙ୍ଗାର ଚର୍ଯ୍ୟାର ସ୍ଥାନ ନାହିଁ କହିଲେ ଚଳେ । ପ୍ରବୃତ୍ତି ନିରୋଧର ଆଦର୍ଶ ସୃଷ୍ଟି ଲାଗି ବହୁ ସ୍ଥଳରେ ନାରୀସୌନ୍ଦର୍ଯ୍ୟ ଏବଂ ଭୋଗର ଚିତ୍ର ଅଙ୍କିତ । ମୀନନାଥଙ୍କ ସମ୍ପର୍କରେ ଗୋଟିଏ ସୁନ୍ଦର କାହାଣୀ ନାଥ ସାହିତ୍ୟରେ ପରିପୃଷ୍ଟ । ଏକଦା ଗୌରୀ ମହାଦେବଙ୍କ ନିକଟରେ କାମର ଅପରିସୀମ ଶକ୍ତି ବିଷୟକ ସୂଚନା ଦେଇ କହିଲେ ଯେ ନାରୀର କଟାକ୍ଷ ଛଟାରେ ମୁନିଗଣଙ୍କୁ ଅନାୟାସରେ ମୋହିତ କରଯାଇପାରେ । ଏହାର ପରୀକ୍ଷା ନିମିତ୍ତ ମହାଦେବ ଧ୍ୟାନ ବଳରେ ସମସ୍ତ ମୁନିଙ୍କୁ ଏକତ୍ରିତ କଲେ ଏବଂ ଗୌରୀ ମୋହିନୀ ରୂପ ଧାରଣ କରି ସେମାନଙ୍କୁ ଅନ୍ନ ପରିବେଷଣ କରିଥିଲେ । ଦେବୀଙ୍କ ରୂପରେ ମୁଗ୍ଧ ହୋଇ ମୀନନାଥ ତାହାଙ୍କୁ ପାଇବା ପାଇଁ ବ୍ୟାକୁଳ ହୋଇ ଉଠିଲେ । ପରିଣାମତଃ ଗୌରୀଙ୍କଠାରୁ ଅଭିଶାପ ଲଭ କରି ସେ ନାରୀ ରାଜ୍ୟ କଦଳୀ ଦେଶର ରାଜା ହୋଇଥିଲେ । ତାଙ୍କ ପରି ଅନ୍ୟମାନେ ମଧ୍ୟ ଧ୍ୟାନଭ୍ରଷ୍ଟ ହୋଇ ଯଥାରୀତି ଅଭିଶାପ ବରଣ କରିଥିଲେ ।[୧୨୦] କେବଳ ଗୋରଖନାଥ ହିଁ ଥିଲେ ଏହାର ବ୍ୟତିକ୍ରମ । ଓଡ଼ିଆ 'ଗୋରେଖ ସହିତା'ରୁ ମହାମାୟାଙ୍କର ରୂପ ବର୍ଣ୍ଣନା ଏଠାରେ ଉଦ୍ଧାର କଲେ ଅସଂଗତ ହେବନାହିଁ ।

ଆପେ ମହାମାୟା ସେ ଅମୃତଛତି ଭରି
ପାଟେ ପିନ୍ଧି ପାଟେ ସେ ଯେ ଉପରଣ କରି ।
ମୁକୁତା ସୁବର୍ଣ୍ଣ ସରି ଗଜାରେଣ ଭରି
ମୁନିମାନେ ମୋହ ହେଲେ ରୂପ ଅନୁସରି ।

× × × ×

ଅତି ଯେ ମୋହିନୀ ରୂପ ଦେବୀ ପ୍ରକାଶିଲେ
ଯତି ତପୀ ମୁନି ମନ ମାନସ ମୋହିଲେ ।
ପାଷାଣ ହିଁ ଦେଖିଲେ ହୋଇବ ଜରଜର
ଋଷି ତପୀମାନେ ସିନା ମନୁଷ୍ୟମାତର ।[୧୨୧]

କିନ୍ତୁ ବିରୂପାକ୍ଷ ନାଥଙ୍କ ଜନ୍ମ ଓ ଯୋଗସାଧନାର ବିବରଣୀ ଅତୀବ ବିସ୍ମୟକର । ବିଧବା ବ୍ରାହ୍ମଣୀ ଓ ନୀଚ୍ଚ ଶୂଦ୍ରର ଅବୈଧ ପ୍ରଣୟରୁ ଜାତ ଏହି ସନ୍ତାନ ମାତୃହରଣ ଓ ସୁରପାନ ଭଳି ଗର୍ହିତ କାର୍ଯ୍ୟରେ ଲିପ୍ତ ହୋଇ ପରେ ଯୋଗୀଶ୍ୱରୀ ହେବ—ଦୈବଜ୍ଞମାନଙ୍କର ଉକ୍ତ ଭବିଷ୍ୟତବାଣୀ ସତ୍ୟରେ ପରିଣତ ହୋଇଥିଲା । ଏ ବିଷୟରେ 'ଗୋରେଖ ସଂହିତା'କାର ଯେଉଁ ବର୍ଣ୍ଣନା ଦେଇଛନ୍ତି, ତାହା ଏହିପରି—

ବହୁତ ଦିନ ତା'ର ପିତା ଘରେ ଥିଲା
କାମ କଷ୍ଟ ବାଧା ତା'ର ଅଙ୍ଗ ସହି ନପାରିଲା ।
ସ୍ୱୈରି ରତି କରଇଲା ନୀଚ୍ଚାଶୂଦ୍ର ତୁଲେ
କେତେହେଂକ ଦିନେ ଗର୍ଭେ ବାଳକ ରହିଲେ ।

ପୁତ୍ର ଜନ୍ମପରେ ଦୈବଜ୍ଞମାନଙ୍କ ଭବିଷ୍ୟତ ବାଣୀ—

ପ୍ରଥମ ହୁଂ ମାତାକୁ ଯେ କରିବ ରମଣ
ଦ୍ୱିତୀୟରେ ସୁରପାନ କରିବ ଯେ ପୁଣ ।
ତୃତୀୟରେ ପୁତ୍ର ତୋର ଯୋଗୀଶ୍ୱର ହେବ
ତେବେ ସିନା ମହାଆତ୍ମା କାରଣ ପାଇବ ।[୧୨୨]

ଯଶୋବନ୍ତଙ୍କ 'ଗୋବିନ୍ଦ ଚନ୍ଦ୍ର'ରେ ବର୍ଣ୍ଣିତ ଅଛି ଯେ ହାଡ଼ିପାଙ୍କଠାରୁ ରାଜା ଗୋବିନ୍ଦଚନ୍ଦ୍ର ଦୀକ୍ଷା ଗ୍ରହଣ ପୂର୍ବକ ବହୁ ସ୍ଥାନ ଭ୍ରମଣ କରି ନାନା ପରୀକ୍ଷାର ସମ୍ମୁଖୀନ ହୋଇଥିଲେ । ଥରେ ରମ୍ଭା ବେଶ୍ୟା ଘରେ ତାଙ୍କୁ ଆତିଥ୍ୟ ଗ୍ରହଣ କରିବାକୁ ପଡ଼ିଥିଲା । ରାଜା-ସୌନ୍ଦର୍ଯ୍ୟ ମୁଗ୍ଧ ସେହି କାମୋନ୍ମତ୍ତା ଗଣିକାର ସଂଭୋଗ ଆହ୍ୱାନ ଏଠାରେ ଏକାନ୍ତ ଉଲ୍ଲେଖଯୋଗ୍ୟ ।

ମୁହିଁ ଯେ ସୁନ୍ଦରୀ ତୁମ୍ଭେ ସେହିମତି ଶୋଭ
ତୁମ୍ଭେ ଯେ ସୁବୁଦ୍ଧି ଅଟ ମୁହିଁ ନବ ଯୁବା ।
ମୋତେ ଦେଖି ପୁରୁଷେ ହୁଅନ୍ତି ଅସମ୍ଭାଳ
କେହୁ ମୁରୁଛି ପାରିବ ମାନବ ଶରୀର ।
ଏତେ ବୋଲି ସଜ ହୋଇ ବସିଲା ତରୁଣୀ
ବକ୍ରଭବେ ଅନାଇଲା କୁରଙ୍ଗ ନୟନୀ ।
ପାଷାଣ ଝୁରିବ ଯାର ବଚନ ଶୁଣିଲେ
କହୁ କହୁ ଭଲଗ୍ନ ହୋଇଲା ଧାନିକାରେ ।
ପ୍ରେମ କୁତୂହଳେ ବାଳୀ ଭରସି ଉଠିଲା
ଗୋବିନ୍ଦ ସ୍ମରି ରଜା ନୟନ ବୁଜିଲା ।[୧୨୩]

ରଜା ଗୋବିନ୍ଦ ଚନ୍ଦ୍ର ରମ୍ଭା ବେଶ୍ୟାର ଘର ଛାଡ଼ିଲା ପରେ କିଛିଦିନ ପାଇଁ ଧନାଶୁଣ୍ଢିର ଆତିଥ୍ୟ ଗ୍ରହଣ କରିଥିଲେ । ତା'ର ଷୋଡ଼ଶୀ ରୂପବତୀ ଭାର୍ଯ୍ୟା ମଧ୍ୟ ତାଙ୍କୁ ପ୍ରଲୋଭିତ କରିବାକୁ ଚେଷ୍ଟାକରି ବିଫଳ ହୋଇଥିଲା ।

ଧନାଶୁଣ୍ଢି ଭାରିଜା ଯେ ଷୋଡ଼ଶ ସମ୍ପୂର୍ଣ୍ଣ
ରଜାଙ୍କୁ ଦେଖିଣ ତା'ର ଚିତ୍ତ ଛନ ଛନ ।
ନ ପଶଇ ଘରେ ବାଳୀ ନକରଇ କିଛି
ଭୋଜନକୁ ମନ ନାହିଁ ନିଦ୍ରାହିଁ ମୁରୁଛି ।
ଉଜାଗର ହୋଇ ବାଳୀ ଘରେ ବସିଥାଇ
ଚାରି ପ୍ରହର ନିଶିରେ ଚାରି ବେଶ ହୋଇ ।[୧୨୪]

ଉପରୋକ୍ତ ପ୍ରସଙ୍ଗ ସମୂହରେ କାମ ପ୍ରବୃତ୍ତିର ବହୁରୂପତା ଦୃଷ୍ଟିଗୋଚର ହୁଏ । ମୋହିନୀ କନ୍ୟାର ଅପୂର୍ବ ରୂପ ଲାବଣ୍ୟ ଦର୍ଶନରେ ମୁନିମାନଙ୍କର ଚିତ୍ତ ଚଞ୍ଚଳତା ଯେପରି ସ୍ୱାଭାବିକ, ପୂର୍ଣ୍ଣ ଯୌବନା ବିଧବା ବ୍ରାହ୍ମଣୀର କାମପୀଡା ହେତୁକ ନୀଳା ଶୂଦ୍ର ସହ ଗୋପନ ପ୍ରଣୟ ସେହିପରି ଅକୃତ୍ରିମ । ରଜା ଗୋବିନ୍ଦ ଚନ୍ଦ୍ରଙ୍କ ରୂପ ଗୁଣରେ ମୁଗ୍ଧ ହୋଇ ରମ୍ଭା ବେଶ୍ୟା ଓ ଧନାଶୁଣ୍ଢିର ଭାର୍ଯ୍ୟା କାମ ଜର୍ଜରିତା ହେବା ଯୌବନ

ଧର୍ମ ସମ୍ମତ । ନାଥ ସାହିତ୍ୟ ଧର୍ମତତ୍ତ୍ୱନିଷ୍ଠ ହୋଇଥିବାରୁ ମାନବୀୟ ଆଦିମ କାମ ଚେତନାର ସଫଳ ବିକାଶ ନିମନ୍ତେ ଯଥାର୍ଥ ଧ୍ୟାନ ଦେଇ ପାରିନାହିଁ । ପ୍ରକାରନ୍ତରେ ତାହା ନାରୀର ସକଳ ପ୍ରଲୋଭନରୁ ମୁକ୍ତ ରଖି ପୁରୁଷକୁ କାମ-ନିବୃତ୍ତ-ଯୌଗିକ ସିଦ୍ଧିର ପଥ ଅନୁସରଣ କରିବାକୁ ଆହ୍ୱାନ ଜଣାଇ ଅଛି ।

ଶୈବ ସାହିତ୍ୟ—ବୌଦ୍ଧ ସିଦ୍ଧାଚାର୍ଯ୍ୟମାନଙ୍କ ସହଜିଆ ତନ୍ତ୍ରାଚାର ଓ ନାଥପନ୍ଥୀମାନଙ୍କ ଅନାସକ୍ତ ଯୋଗ ସାଧନାର ପରିଣତି ରୂପେ ପରବର୍ତ୍ତୀ-କାଳରେ ସୁସ୍ଥ ସମାଜପରଂପରା ଆଦର୍ଶ ଭିତ୍ତିକ ଶୈବ ସାହିତ୍ୟର ଉଦ୍ଭବ ହେଲା । ଶିବ ପାର୍ବତୀଙ୍କ ଦାମ୍ପତ୍ୟ ପ୍ରେମକୁ ଆଶ୍ରୟକରି ଆଧ୍ୟାତ୍ମିକ ଶୁଚିତା ଓ ଜୀବ ଧର୍ମର ଶୃଙ୍ଖଳା ପ୍ରତିପାଦନ ହେଲା ଏହି ସାହିତ୍ୟର ମୁଖ୍ୟ ବିଭବ । ପୁରାଣ ମହିମାରୁ ବଂଚିତ ହୋଇ ଜନପଦ ଜୀବନର ଜଣେ ବିଶ୍ୱସ୍ତ ପ୍ରତିନିଧି ରୂପେ ଶିବ ଏଥିରେ ପ୍ରତିଷ୍ଠିତ ହେଲେ । ସୁରେନ୍ଦ୍ର ମହାନ୍ତିଙ୍କ ମତରେ—''ସମଗ୍ର ପୂର୍ବ ଭାରତୀୟ ଶୈବ ସାହିତ୍ୟରେ 'ରୁଦ୍ର ସୁଧାନିଧି' ହିଁ ଏକମାତ୍ର ବ୍ୟତିକ୍ରମ ଯେଉଁଥିରେ ଶିବଙ୍କର ସାଂସ୍କୃତିକ ମହିମା ଅବ୍ୟାହତ ରହିଛି ।''[୧୨୫]

ଓଡ଼ିଆ ଶୈବ ସାହିତ୍ୟ ସଂପର୍କିତ ଯେଉଁ କେତୋଟି ରଚନା ଆମର ଦୃଷ୍ଟିପଥକୁ ଆସିଛି, ସେଗୁଡ଼ିକ ମଧ୍ୟରେ ବଚ୍ଛାଦାସଙ୍କ 'କଳସା ଚଉତିଶା,' ନାରାୟଣାନନ୍ଦଙ୍କ 'ରୁଦ୍ର ସୁଧାନିଧି' ଉଲ୍ଲେଖଯୋଗ୍ୟ । କଳସା ଚଉତିଶାରେ ଗଳିତ ଚର୍ମ, ଗଳିତଦନ୍ତ, ବୃଦ୍ଧ ଶିବ ଓ ଅନିନ୍ଦ୍ୟ ରୂପ ଯୌବନ ସମ୍ପନ୍ନା ପାର୍ବତୀଙ୍କ ବିବାହଚିତ୍ର ଉପସ୍ଥାପିତ । ପାଣି ଗ୍ରହଣ ପରେ ଶିବ ନିଜର ଛଦ୍ମ ରୂପ ପରିତ୍ୟାଗ କରି କମନୀୟ ବେଶରେ ଆବିର୍ଭୂତ ହୋଇଛନ୍ତି । ଏଥିରେ ପ୍ରଦତ୍ତ ମଧୁଶର୍ଯ୍ୟାର ବର୍ଣ୍ଣନା ସଂକ୍ଷିପ୍ତ, ସୁନ୍ଦର ଓ ମାର୍ଜିତ ।

ସମସ୍ତେ ବସିଣ ପଞ୍ଚ ଗ୍ରାସାଦି ସାରିଲେ
ସହୀ ସଙ୍ଗାତୁଣୀମାନେ ମହୁଶଯ୍ୟା କଲେ
ସୁରଂଗେଣ ବର କନ୍ୟା କରୁଛନ୍ତି ଭବ
ଶୋଭା ପାଉଛନ୍ତି ଦୁହେଁ ରତି କାମଦେବ ।[୧୨୬]

ନାରାୟଣାନନ୍ଦଙ୍କ 'ରୁଦ୍ର ସୁଧାନିଧି' ଶୈବତତ୍ତ୍ୱ ପ୍ରଖ୍ୟାପକ ଗଦ୍ୟ ରଚନା, କିନ୍ତୁ ଏହାର କାବ୍ୟିକ ସୁଷମା ଅନ୍ତହୀନ । ଡ଼କ୍ଟର ମାୟାଧର ମାନସିଂହ କହନ୍ତି–"ସନ୍ନ୍ୟାସୀ ହେଲେ ହେଁ ରୁଦ୍ର ସୁଧାନିଧିର ଲେଖକ ଆତ୍ମାରେ ଥିଲେ ଏକ ନିବିଡ଼ ଯୁବଧର୍ମୀ କବି । ଯୋଗେଶ୍ୱର ଶିବଙ୍କର ଏହି ଅବଧୂତ ଭକ୍ତ ବାହାରେ ସର୍ବତ୍ୟାଗୀ ଥିଲେ ମଧ୍ୟ ଭିତରେ ରହିଥିଲେ ଏକ ସୌନ୍ଦର୍ଯ୍ୟ ପିପାସୁ ପ୍ରଣୟୀ ।[୧୨୭] ସୁତରାଂ ନାରୀ ସୌନ୍ଦର୍ଯ୍ୟ, ପ୍ରକୃତିର ଅନୁପମ ରୂପ ମାଧୁରୀ ଓ ପୁରୁଷର କାମୋନ୍ମାଦନା ଛନ୍ଦୋମୟ ଶବ୍ଦ ବିଭବ ମଧ୍ୟରେ ପରମ ରମଣୀୟତା ପ୍ରାପ୍ତ ହୋଇଅଛି । ପାର୍ବତୀଙ୍କ ମାନସ କନ୍ୟାର ରୂପ ବର୍ଣ୍ଣନାରୁ କିଛି ଅଂଶ ଏଠାରେ ଉଲ୍ଲେଖ କରାଯାଉଛି–

"ଆହା ବାବୁ କନ୍ୟା ସେ,ରସେ ଜଗତ ମୋହିଲା,ପୃଥିବୀ ମୋହିଲା, ଅନଙ୍ଗ ଆୟୋନିଧି କି ଆସି କପିଳାସ କନ୍ଦର ଯାକେ ବେଢିଲା । ତାହାର ଧନ୍ୟ ଧନ୍ୟ, କି ଭୂମିଗତ ସ୍ଥିତି ? କି ମନ୍ମଥ ରଜାର କୋଦଣ୍ଡ ଭ୍ରାନ୍ତି, କି ବିଜୁଳିର କାନ୍ତି, କି ବ୍ରହ୍ମାଦି ଦେବଙ୍କୁ ମୋହିନୀ ଫାଶି ? କି ବିହି ନିର୍ମାଣ କଲା ଲାବଣ୍ୟରାଶି । କି ଅନଙ୍ଗ ଅମୀୟପୂର୍ଣ୍ଣ କଳସୀ ? କି ଯୋଗୀଜନ ମୀନ ବଡ଼ଶୀ ? କି କାମିନୀ କୂଳ କମଳ ବିଳାସୀ ?[୧୨୮] ଇତ୍ୟାଦି ।

ଅବିଦ୍ୟା ମୃତ ସଞ୍ଜୀବନୀ କନ୍ୟାର ରୂପ ଚିତ୍ରଣ ଅଧିକ ବିସ୍ତୃତ ଓ ଅଳଂକାରିକ । ନାୟିକା ଅଂଗର ନଖଶିଖ ବର୍ଣ୍ଣନା ଦେବାରେ କବି ଅପୂର୍ବ କୃତିତ୍ୱ ପ୍ରଦର୍ଶନ କରି ଅଛନ୍ତି । ଗଦ୍ୟ ସୃଷ୍ଟିରେ ଏପରି କାବ୍ୟିକ ସୌନ୍ଦର୍ଯ୍ୟର ସୁସଂହତ ବିନ୍ୟାସ ଓଡ଼ିଆ କାବ୍ୟ ପରଂପରାକୁ ଅତିକ୍ରମ କରିଯାଇଛି ବୋଲି କହିଲେ ଅତିରଂଜନ ହେବନାହିଁ । ଉଦାହରଣ ସ୍ୱରୂପ ନାୟିକାର ଅଧର ଶୋଭା ବର୍ଣ୍ଣନାରୁ କିଂଚିତ୍ ଉଦ୍ଧାର କରାଯାଇପାରେ ।

"ଏଥୁ ଅଧରକୁ କି ବୋଲିବା ଏ । କି ଡ଼ାଳିମ୍ବ କୁସୁମକୁ ଭେଳା କରି ଖେଦ ଜଳଧି ତରିବାରେ । କି ମନ ନୟନକୁ ବନ୍ଦୀକରି ଅନୁରାଗ ରତ୍ନ ଥୋଇବାରେ । କି ଉଦୟ ମଦନ ମାର୍ତ୍ତଣ୍ଡ ମଣ୍ଡଳାର୍ଦ୍ଧ କଳା ପରାଏ ଶୋହୁଥିବାରେ । କି ସୁଗନ୍ଧକାର ଧାତୁ ନିବିଡ଼କୁ ଧୋଉଥିବାରେ । କି ରତ୍ନ ନୃପବର ବକ୍ଷସ୍ଥଳେ ଅରୁଣ କୁସୁମମାଳା ପରାଏ ଦିଶୁଥିବାରେ" ।[୧୨୯]

ମାନସ କନ୍ୟା ରୂପ ମୁଗ୍ଧ, ଯୋଗଭ୍ରଷ୍ଟ ଅଭିନବ ଚୈତନ୍ୟର ମାନସିକ ବିକ୍ରିୟା ଓ ଶାରୀରିକ ଚଞ୍ଚଳତା ପୁରୁଷ ଚରିତ୍ରର ସ୍ୱାଭାବିକତା ପ୍ରତିପାଦନ କରେ । ସିଦ୍ଧିକାମୀ ଯୋଗୀର ଅବଦମିତ କାମ ପିପାସା ଉପଯୁକ୍ତ ପରିବେଶରେ କିପରି ସାଧନାର ଶୃଙ୍ଖଳା ଭଙ୍ଗି ମୁକ୍ତି ପ୍ରୟାସୀ ହୋଇଉଠେ ତାହା ଏଠାରେ ଲକ୍ଷଣୀୟ ।

"ସେ ମାୟା କନ୍ୟାକୁ ଦେଖିଲା । ସ୍ଥିର କରି ତାହାର ଲାବଣ୍ୟ ସୁଧାନିଧି ନିରେଖି ପେକ୍ଷିଲା । ତାହାର ଚଞ୍ଚଳ ଚିତ୍ତ ବଳିଲା, ସ୍ଥିର ଚକ୍ଷୁ ଚଳିଲା, ହୃଦୟ ସରିଲା, ଚଇତନ ବୁଡ଼ିଲା, ଶରୀର ଚମକିଲା, ବୁଦ୍ଧି ଝମକିଲା, ସନ୍ନ୍ୟାସ ବଳିଲା, ସ୍ୱେଦ ବିନ୍ଦୁ ଗଳିଲା, ଶ୍ୱାସ ଚଳିଲା, ଗଣ୍ଡସ୍ଥଳ ଉଲସିଲା, ଭ୍ରୂଲତା ବିକଶିଲା, ଶୃଙ୍ଗାର ରସେ ରସିଲା ...." [୧୩୦] ଇତ୍ୟାଦି ।

'ରୁଦ୍ର ସୁଧାନିଧି'ରେ ପୂର୍ବଜନ୍ମ ପ୍ରସଙ୍ଗ ନାୟକ ନାୟିକାଙ୍କ ମର୍ତ୍ତ୍ୟାବତାର, ନଗର ଓ ଅଭିଯାନ ଆଦିର ବର୍ଣ୍ଣନା ଦେଖିବାକୁ ମିଳେ । ଗ୍ରନ୍ଥଟି ଅସମାପ୍ତ ହୋଇଥିଲେ ହେଁ ରୁଦ୍ରସୁଧାନିଧି ଓ ଅବିଦ୍ୟାମୃତ ସଞ୍ଜୀବନୀ କନ୍ୟାର ପ୍ରଣୟ ଏହାର ମୁଖ୍ୟ କଥାବସ୍ତୁ । ସୁତରାଂ କଥାବସ୍ତୁ, ନାୟକ ନାୟିକା, ଗଠନ ପରିପାଟୀ ଆଦି କ୍ଷେତ୍ରରେ ଶୃଙ୍ଗାର ଚେତନାର ବହୁବିଧ ବିଭବ ଏଥିରେ ପରିଲକ୍ଷିତ । ଏହା ସହିତ ପରବର୍ତ୍ତୀ କାଳର ସାହିତ୍ୟ ସୃଷ୍ଟି ବିଶେଷତଃ ରୀତି ଯୁଗୀୟ କାବ୍ୟଧାରାର ଆଶ୍ଚର୍ଯ୍ୟଜନକ ସାଦୃଶ୍ୟ ସମ୍ପର୍କରେ ଡ଼କ୍‌ଟର କୃଷ୍ଣଚରଣ ବେହେରା ଯଥାର୍ଥ ମତ ପୋଷଣ କରନ୍ତି ।[୧୩୧]

ସାରଳା ସାହିତ୍ୟ—ସମଗ୍ର ସାରଳା ସାହିତ୍ୟରେ ଶକ୍ତି ଧର୍ମର ପ୍ରାଧାନ୍ୟ ହିଁ ଉପଲବ୍ଧ । ନାଥ ଓ ଶୈବ ସାଧନାରେ ଶିବ ପୁରୁଷ ଧର୍ମର ଦେବତା ରୂପେ ଗୃହୀତ ହୋଇଥିବାରୁ ତତ୍‌କାଳୀନ ଧର୍ମ ଓ ସଂସ୍କୃତିରେ ନାରୀ ନ୍ୟାଯ୍ୟ ସମ୍ମାନର ଅଧିକାରିଣୀ ହୋଇପାରିନାହିଁ । କିନ୍ତୁ ସାରଳା ସାହିତ୍ୟର ସୁବିସ୍ତୃତ ପଟ୍ଟଭୂମିରେ ନାରୀ ସ୍ୱୟଂ ସଂପୂର୍ଣ୍ଣା । ସେ ଏକ ଦିଗରେ

ଅମିତ ଶକ୍ତିଶାଳିନୀ, ଦାନବ ସଂହାରିଣୀ ଓ ପ୍ରତିହିଂସା ପରାୟଣା, ଅନ୍ୟ ଦିଗରେ ଅନିନ୍ଦ୍ୟ ରୂପମୟୀ, ଆନନ୍ଦ ସ୍ୱରୂପିଣୀ ଓ ଜୀବନବିଳାସିନୀ ।

ସାରଳା ସାହିତ୍ୟରେ ଦ୍ରୌପଦୀଙ୍କର ପ୍ରତିଷ୍ଠା କେବଳ ପାଣ୍ଡବ ପତ୍ନୀ ରୂପେ କୀର୍ତ୍ତିତ ନୁହେଁ । ସେ ଆଦ୍ୟାଶକ୍ତି ଓ ଅଯୋନିସମ୍ଭୂତା । କିନ୍ତୁ ମାନବିକ ସ୍ତରରେ ତାଙ୍କ ସ୍ୱୟଂବର ଓ ପତିପ୍ରେମର ରୂପାୟନ ଅତ୍ୟନ୍ତ ରୁଚିଶୀଳ ଓ କାବ୍ୟସୁଷମା ସ୍ନିଗ୍ଧ । ନାୟିକାର ଶାରୀରିକ ସୁଷମା ପାଣିଗ୍ରହଣ ଲିପ୍ସୁ ସମବେତ ରାଜନ୍ୟମଣ୍ଡଳୀଙ୍କ ପୌରୁଷର ସକଳ ଦର୍ପ ଚୂର୍ଣ୍ଣ କରିବାକୁ ସମର୍ଥ ହୋଇଅଛି । ରୂପ ବର୍ଣ୍ଣନାରେ ନିରାଡ଼ମ୍ବର ସୁଷମାର ଚମତ୍କାରିତା, ଉପମା ପ୍ରୟୋଗରେ କାବ୍ୟିକ ପରଂପରାର ଅନୁରୋଧ, ସୌନ୍ଦର୍ଯ୍ୟ ସୃଷ୍ଟିରେ ଅନ୍ତରଙ୍ଗ ପ୍ରାଣଧର୍ମର ସ୍ପର୍ଶ– କବିଙ୍କ ପ୍ରଚଣ୍ଡ ପ୍ରତିଭାର ସାମର୍ଥ୍ୟ ପ୍ରକାଶ କରେ । ଉଦାହରଣ ସ୍ୱରୂପ–

ଆକୁଞ୍ଚିତ କେଶ ରହଳ ଚିକୁର
କୁସୁମ ବିହୁନେ ବିହୁଡ଼ନ୍ତି ମଧୁକର ।
ରସାଣ ପତ୍ର ପ୍ରାୟେ ଦିଶଇ ଲଲାଟ ପାଟି
ବନ୍ଧୂକ ଅଧର ଡାଳିମ୍ବ ବୀଜ ଦଶନ ବିମ୍ବଓଷ୍ଠୀ ।
ଯେକ ଖଣ୍ଡ କପୋଳ ଖଞ୍ଜିତ ଭ୍ରୂଲତା
ରୋମାବଳୀ ଅମୂଲ୍ୟ ଦିଶଇ ବନିତା ।
ଆରକତ ଶୋଭବନ ଦିଶେ ବେନି ଦ୍ୱୋଳ
ଅବଲୋକନେ ରହିଲେ ଢଳିବେ ସକଳ ।
ରହିଁାନ୍ତେ ବଙ୍କ ନୟନେ ହୃଦୟ ଯିବ ଫୁଟି
ସଂସାର ରକ୍ଷା ନିମନ୍ତେ ଡଳକୁ କଲ ଦୃଷ୍ଟି ।[୧୩୨]

ସେହିପରି ଭୀମ–ହିଡ଼ିମ୍ବକୀ ବିବାହ,[୧୩୩] ଉଷାହରଣ,[୧୩୪] ସୁରେଖା ହରଣ,[୧୩୫] ଶୋଭବତୀ ହରଣ,[୧୩୬] ଆଦି ବିବିଧ ପ୍ରସଙ୍ଗରେ ଶୃଙ୍ଗାର ଭାବନା ମନୋଜ୍ଞ ରୀତିରେ ଅଭିବ୍ୟକ୍ତ ।

ସାରଳା ସାହିତ୍ୟରେ କାମୁକତା ଓ ଯୌନସମ୍ଭୋଗର ବିସ୍ତୃତ ବର୍ଣ୍ଣନା ମିଳୁଥିଲେ ମଧ୍ୟ କବି ସେସବୁର ଘୋର ନିନ୍ଦା କରିଅଛନ୍ତି । ସାମାଜିକ ଓ ସାଂସ୍କୃତିକ ପୃଷ୍ଠଭୂମିରେ ତତ୍କାଳୀନ କାମ-ଉଚ୍ଛୃଙ୍ଖଳତାକୁ ସାହିତ୍ୟରେ ସ୍ୱୀକାର କରିନେଇ ସେ ଶକ୍ତିଧର୍ମ ପ୍ରତି ଯେପରି ଅନୁରାଗ ପ୍ରକାଶ କରିଅଛନ୍ତି, ସେହିପରି ନୀତି ଓ ଆଦର୍ଶ ଦୃଷ୍ଟିରୁ ତାହାର ଅପକର୍ଷ ଘୋଷଣା କରି ଉଦାତ୍ତ ଜୀବନ-ମହିମାର ଜୟ ଶଙ୍ଖ ବଜାଇଛନ୍ତି ।

ସାରଳାଙ୍କ 'ଚଣ୍ଡୀପୁରାଣ' ଓ 'ବିଲଙ୍କାରାମାୟଣ'ରେ ନାରୀଶକ୍ତି ତଥା କାମ ଶକ୍ତିର ପ୍ରାଧାନ୍ୟ ଉଦ୍‌ଘୋଷିତ । ଉପରୋକ୍ତ ଦୁଇ ଗ୍ରନ୍ଥରେ ବିବସନା ନାରୀର ଯୌବନ ଶୋଭା ପ୍ରବଳ ଶତ୍ରୁଶକ୍ତି ବିନାଶର କାରଣ ରୂପେ ବର୍ଣ୍ଣିତ । ଶକ୍ତିଧର୍ମର ପୌରାଣିକ ରୂପାୟନ ଅନ୍ତରାଳରେ ପୁରୁଷର ନାରୀ ରୂପ ପ୍ରତି ଶାଶ୍ୱତ ଆକର୍ଷଣ ଓ ଉଦ୍ଦାମ ସମ୍ଭୋଗ ଲିପ୍ସା- ପରହତ ଗୌରବ ଘେନି ଶ୍ରୀସମୃଦ୍ଧ । ଏହିପରି ଭାବେ ସାରଳା ସାହିତ୍ୟରେ ଶୃଙ୍ଗାର ଭାବନାର ବହୁରୂପତା ଦେଖିଲେ ଆଶ୍ଚର୍ଯ୍ୟ ନ ହୋଇ ରହି ହୁଏନାହିଁ । ପଣ୍ଡିତ ନୀଳକଣ୍ଠଙ୍କ ଭାଷାରେ- "× × କାମଚେଷ୍ଟା ମାନବ ପ୍ରଗତିରେ କି ବସ୍ତୁ, ତା' ସାରଳା ଦାସଙ୍କ ସାହିତ୍ୟର ମେରୁଦଣ୍ଡ ରୂପେ ବିଦ୍ୟମାନ" ।[୧୩୭]

ପଞ୍ଚସଖା ସାହିତ୍ୟ-ପଞ୍ଚସଖା ସାହିତ୍ୟର ସାଧକଗଣ ଥିଲେ ନିର୍ଗୁଣମାର୍ଗୀ ଉପାସକ । ଶୂନ୍ୟ ଓ ପିଣ୍ଡ ବ୍ରହ୍ମାଣ୍ଡ ସାଧନା ଥିଲା ସେମାନଙ୍କ ସାହିତ୍ୟ ଓ ଦର୍ଶନର ଭିତ୍ତିଭୂମି । ଡକ୍ଟର କାହ୍ନୁ ଚରଣ ମିଶ୍ର ଏହି ସନ୍ଥସାଧକମାନଙ୍କୁ ଓଡ଼ିଶୀ ବୈଷ୍ଣବ ଧର୍ମର ପ୍ରାଣ ପ୍ରତିଷ୍ଠାତା ରୂପେ ଗ୍ରହଣ କରିଛନ୍ତି ।[୧୩୮] ଜଗନ୍ନାଥ ଦାସଙ୍କ 'ଭାଗବତ' ଓ ବଳରାମ ଦାସଙ୍କ 'ଜଗମୋହନ ରାମାୟଣ' ଗ୍ରନ୍ଥ ଦୁଇଟି ଓଡ଼ିଆ ସାହିତ୍ୟକୁ ଏ ଯୁଗର ବିଶିଷ୍ଟ ଅବଦାନ । ଏତଦ୍‌ବ୍ୟତୀତ ବହୁ ପୁରାଣ, ଭଜନ, ଜଣାଣ, ଓଗାଳ ଓ ମାଳିକା ଆଦି ରଚନା କରି ଏହି ସ୍ରଷ୍ଟାଗଣ ଓଡ଼ିଆର ଚିତ୍ତ-ଭୂମିରେ ଯୁଗ ଯୁଗ ପାଇଁ ନିଷ୍କାମ ଭାବନା-ରସଧାରା ବୁହାଇ ଦେଇ ଯାଇଛନ୍ତି ।

ପଞ୍ଚସଖା ସାହିତ୍ୟ ମୁଖ୍ୟତଃ ସାଧନାଧର୍ମୀ ହୋଇଥିଲେ ହେଁ ଓଡ଼ିଆ ରାମାୟଣ ଓ ଭାଗବତର କାବ୍ୟିକ ସୁଷମା ଅତୀବ ମନୋହର । ଜଗମୋହନ

ରାମାୟଣରେ ବର୍ଣ୍ଣିତ ନାରୀ ରୂପ, ପ୍ରକୃତି ଓ ସଂଭୋଗ ଆଦି ଶୃଙ୍ଗାର ଭାବନା ସମନ୍ୱିତ ଚିତ୍ର ସକଳ ମାନବୀୟ ଚିରନ୍ତନ ହୃଦୟ ବୃତ୍ତିର ଅକୃତ୍ରିମ ପ୍ରକାଶ । ଜରତା ଓ ଋଷ୍ୟଶୃଙ୍ଗ ପ୍ରସଂଗ ଏଠାରେ ଉଲ୍ଲେଖଯୋଗ୍ୟ । ସଂସ୍କୃତ ରାମାୟଣରେ ନାମୋଲ୍ଲେଖହୀନ ବସ୍ତ୍ରାଭୂଷଣାଳଂକୃତା ରୂପବତୀ ଗଣିକାମାନଙ୍କ ଦ୍ୱାରା ଋଷ୍ୟଶୃଙ୍ଗଙ୍କ ତପୋଭଙ୍ଗର ବର୍ଣ୍ଣନା ପ୍ରଦତ୍ତ । ମାତ୍ର ବଳରାମ ଦାସ ଏଥିପାଇଁ ବିଶେଷ ପରିବେଶ ସୃଷ୍ଟି କରିଛନ୍ତି । ରୂପବତୀ ଗଣିକା ପରିବେଷ୍ଟିତା ଜରତ୍କୃଶାର ଋଷ୍ୟଶୃଙ୍ଗଙ୍କ ନିକଟକୁ ନୌଯାତ୍ରା ପରସ୍ପର ମଧ୍ୟରେ ଚରିତ୍ରଧର୍ମୀ ସଂଳାପ ଓ କାମ ବିଳାସ ଆଦି ସାହିତ୍ୟିକ ରୁଚି ଓ ସୌନ୍ଦର୍ଯ୍ୟ ମଣ୍ଡିତ । ସମାଲୋଚକ ସୁରେନ୍ଦ୍ର ମହାନ୍ତିଙ୍କ ଭାଷାରେ– "ବାଲ୍ମିକୀ ରାମାୟଣର ପ୍ରାଣହୀନ ଏକସ୍ତର ବିଶିଷ୍ଟ ଋଷ୍ୟଶୃଙ୍ଗ ଉପାଖ୍ୟାନଟିକୁ ବର୍ଣ୍ଣାଢ୍ୟ କବିତ୍ୱରେ ତ୍ରିସ୍ତର ବିଶିଷ୍ଟ (Three dimensional) କରି, ତାହାକୁ ସେ ଏକ ଶାଶ୍ୱତ ବୈଦଗ୍ଧ୍ୟ ପ୍ରଦାନ କରିଛନ୍ତି" । [୧୩୯]

ସୀତା, [୧୪୦] ବେଦବତୀ [୧୪୧] ପ୍ରଭୃତିଙ୍କ ରୂପ ବର୍ଣ୍ଣନା ଶାସ୍ତ୍ରୀୟ ପରଂପରାକୁ ଅନୁସରଣ କରିଥିଲେ ସୁଦ୍ଧା, ଭାଷାର ସାବଲୀଳତା ଓ ପ୍ରକାଶଭଙ୍ଗୀର ବିଶିଷ୍ଟତା ଯୋଗୁଁ ତାହା ସ୍ୱତନ୍ତ୍ର ମର୍ଯ୍ୟାଦାରେ ଗୌରବାନ୍ୱିତ । ନାରୀକୁ ନାନାବିଧ ଉତ୍କଳୀୟ ଅଳଂକାରରେ ଭୂଷିତ କରି କବି ସେମାନଙ୍କୁ ଓଡ଼ିଆ ସମାଜର ଅଙ୍ଗୀଭୂତ କରିଦେଇଛନ୍ତି । ବଳରାମଙ୍କ ସମ୍ଭୋଗ ଚିତ୍ରଣରେ ଦୁଇଟି ମୁଖ୍ୟ ପରମ୍ପରା ପରିଦୃଷ୍ଟ । ଗୋଟିଏ ରାମ ଓ ସୀତାଙ୍କ ପ୍ରୀତିମୟ ଦାମ୍ପତ୍ୟ ସଂଭୋଗ । ଅନ୍ୟଟି ରାବଣର ବହୁନାରୀ ସଂଭୋଗ । ଦ୍ୱିତୀୟଟିରେ ବଳାତ୍କାର ଓ ବ୍ୟଭିଚାରର କାହାଣୀ ଅନେକତ୍ର ଉଲ୍ଲିଖିତ । ରାବଣର ରମ୍ଭା ପ୍ରତି ବଳାତ୍କାର କିମ୍ବା ତପମଗ୍ନା ସ୍ୱର୍ଗ ଅପ୍ସରୀ ବେଦବତୀ ହରଣକୁ କବି ସମର୍ଥନ କରି ପାରିନାହାନ୍ତି । ଏହିପରି ନାନାବିଧ ସଂଭୋଗ ଚିତ୍ର ମଧ୍ୟରେ ନାରୀ ପୁରୁଷର ଶୃଙ୍ଗାର ଧର୍ମ ଅନନ୍ୟ ଅଭିବ୍ୟକ୍ତି ଲାଭ କରିଅଛି । ଡକ୍ଟର ନରେନ୍ଦ୍ରନାଥ ମିଶ୍ର ଏ ସଂପର୍କରେ ମତ ଦେଇ କହନ୍ତି–"ମାତ୍ର ନାରୀତ୍ୱ ଓ ପୌରୁଷର ପ୍ରକୃତ ମର୍ଯ୍ୟାଦା ସେ ନାୟକ ନାୟିକାଙ୍କ ସଂଭୋଗ ଚିତ୍ର

ଭିତରେ ଦେଇଛନ୍ତି ।" [୧୮୨] ବଳରାମ ଦାସଙ୍କ ପ୍ରକୃତି ଚିତ୍ରଣ ମଧ୍ୟ ଅତ୍ୟନ୍ତ କାବ୍ୟଧର୍ମୀ । ପ୍ରକୃତି ଓ ମାନବ ମଧ୍ୟରେ ନିବିଡ଼ ସମ୍ପର୍କ ପ୍ରତିଷ୍ଠାର ପ୍ରୟାସ ତାଙ୍କୁ ଆଗାମୀ କାବ୍ୟଯୁଗର ନୀରବ ସଙ୍କେତ ବାହକ ରୂପେ ସମ୍ମାନିତ କରେ । ଚିତ୍ରକୂଟରେ ବନବିହାର [୨୮୩] କିମ୍ବା ମାଲ୍ୟବନ୍ତରେ ବର୍ଷା [୧୮୪]–ଏଇଭଳି ବିଭିନ୍ନ ସ୍ଥଳରେ ପ୍ରକୃତି ଶୃଙ୍ଗାରର କେବଳ ଉଦ୍ଦୀପନ ବିଭବ ରୂପେ ନୁହେଁ, ମାନବିକ ଆବେଦନର ଗୌରବରେ ମଧ୍ୟ ମୂର୍ତ୍ତିମନ୍ତ ।

ଜଗନ୍ନାଥ ଦାସଙ୍କ ଭାଗବତର ଆଧ୍ୟାତ୍ମିକ ଓ ଦାର୍ଶନିକ ମହିମା ଓଡ଼ିଆ ଜାତୀୟ ଜୀବନର ଏକ ଅବିଚ୍ଛିନ୍ନ ଅଙ୍ଗ । ଅନ୍ୟ ପକ୍ଷରେ ଗ୍ରନ୍ଥଟିର କାବ୍ୟ ମର୍ଯ୍ୟାଦା ମଧ୍ୟ ଅତୁଳନୀୟ । ଶୃଙ୍ଗାର ଚେତନାର ପରଂପରା ବିଗ୍ଭରରେ ଏହି ଭାଗବତର ବହୁସ୍ଥଳ କାମ ଭାବନାର ମନୋହର ଅଭିବ୍ୟକ୍ତିରେ ସମୃଦ୍ଧ । କିନ୍ତୁ ଭକ୍ତ କବିର ମୁଗ୍‌ଧ ଦୃଷ୍ଟିରେ ସେସବୁ ସ୍ଥୂଳତା ପରିହାରପୂର୍ବକ ଅପ୍ରାକୃତ ଲକ୍ଷ୍ୟରେ ଧାବିତ । ସକଳ କ୍ଷେତ୍ରରେ ଭାଷା ଓ ଭାବ ତଥା ଶାଳୀନତା ଓ ରୁଚିବୋଧର ଅପୂର୍ବ ସମନ୍ୱୟ ପରିଲକ୍ଷିତ । ଉଦାହରଣ ସ୍ୱରୂପ ମୋହିନୀ କନ୍ୟାର ରୂପରେ ହରଙ୍କ ବିଭ୍ରମ ପ୍ରସଙ୍ଗକୁ ଏଠାରେ ଉଦ୍ଧାର କରାଯାଇପାରେ–

ହୃଦେ କଂପଇ ଘନ କୁଚ
ହାର କାଞ୍ଚୁଲୀ ଅତି ସଚ ।
ଅତି ସୁସଚ କ୍ଷୀଣ ମଝା
କି ପଟାନ୍ତର ଦେବା ଦୁଜା ।
ସ୍ୱଭାବେ ତନୁରୁ ଆକାର
ଖଚିତ ନାନା ଅଳଂକାର । ଇତ୍ୟାଦି ।[୧୮୫]

ଉପରୋକ୍ତ ଦୁଇଟି ଗ୍ରନ୍ଥ ବ୍ୟତୀତ ପଞ୍ଚସଖାଙ୍କ ଅଗଣିତ ସୃଷ୍ଟି (ରାମ ଓ କୃଷ୍ଣଙ୍କ ନାନାବିଧ ଲୀଳାକେନ୍ଦ୍ରିକ କାଳ୍ପନିକ ରଚନା) ଦର୍ଶନ ତତ୍ତ୍ୱର ବିଶ୍ଳେଷଣ ନିମନ୍ତେ ଉଦ୍ଦିଷ୍ଟ । ଏସବୁ ବର୍ଣ୍ଣନାରେ କବି-ଦୃଷ୍ଟି

ଶୃଙ୍ଗାରଧର୍ମୀ ନୁହେଁ । ରାଧା ଓ କୃଷ୍ଣଙ୍କର ଲୀଳା ହେଉଛି ଜୀବାତ୍ମା ଓ ପରମାତ୍ମାର ଲୀଳା, ରୂପ ଓ ଅରୂପର ନିତ୍ୟ ମିଳନ ଲୀଳା । [୧୦୬]

ସୃଷ୍ଟି ତତ୍ତ୍ୱ ନିରୂପଣ କରିବାକୁ ଯାଇ ପଞ୍ଚସଖା କବିଗୋଷ୍ଠୀ ନାରୀ ପୁରୁଷର ମିଳନକୁ ଅକୁଣ୍ଠିତ ଚିତ୍ତରେ ବର୍ଣ୍ଣନା କରିଛି । ଯଶୋବନ୍ତଙ୍କ 'ପ୍ରେମଭକ୍ତି ଗୀତା'ରେ ଅଛି—

ମାତାର ପଦ୍ମ ଫୁଟିଥାଇ
ସେ ତହିଁ ପିତା ବୀର୍ଯ୍ୟରହି
ରଜରେ ବୀର୍ଯ୍ୟ ଯୁକ୍ତ ହେଲା ।
ରାମ ନାମଟି ବୋଲାଇଲା । [୧୦୭]

ସେଇଭଳି 'ଛୟାଳିଶ ପଟଳ'ରେ ଅଚ୍ୟୁତାନନ୍ଦ ଲେଖିଛନ୍ତି—

ପୂର୍ଣ୍ଣ୍ୟ କାଳେ ପିତା ମାତା ସଂଯୋଗ ଘଟିଲା

× × ×

ତହୁଁ ରଜ ବୀର୍ଯ୍ୟ ଦୁହେଁ ଏକତ୍ର ହୋଇଲେ
ଜନନୀ ପଦ୍ମ ମଧ୍ୟରେ ଯାଇ ବିଶ୍ରାମିଲେ । [୧୦୮]

ଏସବୁ ବର୍ଣ୍ଣନାରୁ ପଞ୍ଚସଖା ସାଧକଙ୍କର ଏକ ନିର୍ଦ୍ଦିଷ୍ଟ ଦର୍ଶନ ପ୍ରତି ଗଭୀର ନିଷ୍ଠା ପ୍ରତିପାଦିତ ହୁଏ । ନିର୍ଗୁଣ ଓ ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ ଅନ୍ତରାଳରେ ସେମାନେ ସଂଯମ ନିଷ୍ଠ, ଶୁଚି ପୂତ ନାରୀ ପୁରୁଷର ପ୍ରଜନନ ଧର୍ମକୁ ସ୍ୱୀକୃତି ଜଣାଇଛନ୍ତି । ଡକ୍ଟର କାହ୍ନୁ ଚରଣ ମିଶ୍ରଙ୍କ ଉକ୍ତି ଏ କ୍ଷେତ୍ରରେ ଯଥାର୍ଥ—"ଏମାନେ ସଂଯମ ଓ ଶୃଙ୍ଖଳାକୁ ଏବଂ ଯୁଗ ଯୁଗର ଭାରତୀୟ ସଂସ୍କୃତି ଦ୍ୱାରା ଅନୁମୋଦିତ ଗାର୍ହସ୍ଥ୍ୟଧର୍ମକୁ ସମର୍ଥନ କରି ସ୍ୱକୀୟ ଓ ସାର୍ଥକ ପ୍ରେମକୁ ସ୍ପଷ୍ଟ ଭାବରେ ଗ୍ରହଣ କରିଛନ୍ତି ।" [୧୦୯] ଶୃଙ୍ଗାର ଚେତନାର ପରଂପରାରେ ଏହା କାବ୍ୟିକ ଉତ୍କର୍ଷତା ହରାଇ ଥିଲେ ହେଁ ଐତିହାସିକ ବିବର୍ତ୍ତନ ଦୃଷ୍ଟିରୁ ଉପେକ୍ଷାର ବସ୍ତୁ ନୁହେଁ । ସ୍ୱକୀୟା (ରାମଧାରା) ଓ ପରକୀୟା (କୃଷ୍ଣଧାରା) ସଂଭୋଗ ମାର୍ଗକୁ ଏକ ତାତ୍ତ୍ୱିକ ବିଶ୍ୱାସଭୂମିରେ ସ୍ଥାପିତ କରି ଏହି ସନ୍ଥକବିଗଣ ଉତ୍କଳୀୟ ଜୀବନବୋଧକୁ ଅନାଗ୍ରହମୁକ୍ତ ଉଚ୍ଚାଙ୍ଗ ଆଦର୍ଶର ଇନ୍ଦ୍ରଧନୁ ମହିମା ଦେଇ ଯାଇଛନ୍ତି ।

ପାଦଟୀକା-


୧। The Erotic In Literature—P-42

୨। ତତ୍ରୈବ : ପୃ–୪୨

୩। Encyclopaedia of Religion and Ethics . P-171

୪। Sacrifice to Attis P-320

୫। The Reader's Companion to world literature · P-402

୬। Encyclopaedia of Religion and Ethics : P-181

୭। ହାଜାର ବଛରେର ପ୍ରେମେର କବିତା (ବଙ୍ଗଳା)

୮। Encyclopaedia of Religion and Ethics . P-182

୯। The Holy Bible : Song of Solomon-7/1-6

୧୦। ହାଜାର ବଛରେର ପ୍ରେମେର କବିତା (ବଙ୍ଗଳା) : ପୃ–୨୨

୧୧। Encyclopaedia of Religion and Ethics P-180

୧୨। The Reader's Companion to world literature : P-81

୧୩। The Reader's Companion to world literature : P-215

୧୪। The Erotic in Literature . P-49

୧୫। ତତ୍ରୈବ : ପୃ–୫୦

୧୬। ହାଜାର ବଛରେର ପ୍ରେମେର କବିତା (ବଙ୍ଗଳା) : ପୃ–୨୫

୧୭। The Reader's Companion to world literature : P-167

୧୮। Rubaiyat of Omar Khayyam : P-113

୧୯। The Reader's Companion to world literature P-196

୨୦। ହାଜାର ବଛରେର ପ୍ରେମେର କବିତା (ବଙ୍ଗଳା) : ପୃ–୧୬(ଭୂମିକା)

୨୧। ତତ୍ରୈବ : ପୃ–୧୮

୨୨। The Cruelest Month , P-143

୨୩। The Reader's Companion to world literature P-114

୨୪। ତତ୍ରୈବ : ପୃ–୩୩୮

୨୫। ତତ୍ରୈବ : ପୃ–୪୫୫

୨୬। The Erotic in Literature : P-60

୨୭। The Erotic Motive in Literature : P-127

୨୮। ଋଗ୍‌ବେଦ : ୧୦।୧୦

୨୯। ତତ୍ରୈବ : ୧୦।୯୫

୩୦। ତତ୍ରୈବ : ୧୦ । ୧୦ । ୧୧

୩୧। ମୈତ୍ରାୟଣୀ ସହିତା : ୧ । ୫ । ୧୨

୩୨। ଋଗ୍‌ବେଦ : ୧୦ । ୯୫ । ୧

୩୩। ତତ୍ରୈବ : ୧୦ । ୯୫ । ୨

୩୪। ତତ୍ରୈବ : ୧୦ । ୯୫ । ୧୫

୩୫। ଭାରତୀୟ ସାହିତ୍ୟେର ଇତିହାସ (ବଙ୍ଗଳା) : ପୃ–୩୫

୩୬। ଶତପଥ ବ୍ରାହ୍ମଣ (୧୧ । ୫ । ୧), ମହାଭାରତ (ବନ ପର୍ବ ୪୬ଶ ଅଧ୍ୟାୟ), ହରିବଂଶ (ହରିବଂଶ ପର୍ବ ୧୩ଶ ଅଧ୍ୟାୟ), ଭାଗବତ (ସ୍କ ୯ । ୧୪ଅ:), ବିଷ୍ଣୁ ପୁରାଣ (୪ର୍ଥ ଅଂଶ/ ୬ଷ୍ଠ ଅ:), ବାୟୁ ପୁରାଣ (୯୧ଶ ଅଧ୍ୟାୟ), ବ୍ରହ୍ମପୁରାଣ (୧୦ମ ଅଧ୍ୟାୟ), ବିଷ୍ଣୁଧର୍ମୋତ୍ତର (୧ମ/୨୩୦-୬)

୩୭। Ancient Indian Erotics And Erotic Literature : P-4

୩୮। ଋଗ୍‌ବେଦ : ୧ । ୧୭୯

୩୯। ତତ୍ରୈବ : ୫ । ୬୧

୪୦। ତତ୍ରୈବ : ୧୦ । ୮୫

୪୧। ଅଥର୍ବବେଦ : ୧୪ । ୨ । ୩୨

୪୨। ତତ୍ରୈବ : ୧୪ । ୨ । ୩୬

୪୩। ତତ୍ରୈବ : ୧୪ । ୨ । ୩୮

୪୪। ତତ୍ରୈବ : ୪ । ୫ । ୬

୪୫। ତତ୍ରୈବ : ୬ । ୧୩୦ । ୪

୪୬। ବୈଦିକ ସାହିତ୍ୟ ଓ ସଂସ୍କୃତି : ପୃ ୪୦—୪୧

୪୭। ତତ୍ରୈବ : ପୃ—୬୮

୪୮। Ancient Indian Erotics And Erotic Literature : P-6

୪୯। ଛାନ୍ଦୋଗ୍ୟ ଉପନିଷଦ : ୪ର୍ଥ ଅଧ୍ୟାୟ

୫୦। The Story of women of India : P-54

୫୧। ଋଗ୍‌ବେଦ : ୧ । ୭୧ । ୧

୫୨। ମୈତ୍ରାୟଣୀ ସଂହିତା : ୩ । ୬ । ୩

୭୧। ଅଭିଜ୍ଞାନ ଶାକୁନ୍ତଳମ୍ : ୧।୧୯

୭୨। କୁମାର ସଂଭବ : ୫।୨୪

୭୩। ମହାକବି କାଳିଦାସ (ହିନ୍ଦି) : ପୃ-୩୧୭

୭୪। Ancient Indian Erotics And Erotic Literature : P-67

୭୫। ମାଳତୀ ମାଧବ : ୬।୧୮

୭୬। କାବ୍ୟ ସଂବାଦ : ପୃ ୨୭୬

୭୭। ଭଞ୍ଜ ଭୂମିକା : ପୃ ୧୭୪ (ଉଦ୍ଧୃତି)

୭୮। କୀରତାର୍ଜ୍ଜୁନୀୟମ୍ : ୮।୪୭

୭୯। ନୈଷଧ : ୨।୩୬

୮୦। ତତ୍ରୈବ : ୪।୨୯

୮୧। କାଦମ୍ବରୀ : କାଦମ୍ବରୀ ବର୍ଣ୍ଣନା/ପୃ ୫୪୦-୫୪୧

୮୨। ଅମରୁଶତକମ୍/୮୦

୮୩। ଶୃଙ୍ଗାର ଶତକମ୍/୨୨

୮୪। ଚୌର ପଞ୍ଚାଶିକା/୨୨ (କୋଣ୍ଟାରୀୟପାଠ

୮୫। ଗୀତ ଗୋବିନ୍ଦ : ୧।୩

୮୬। ତତ୍ରୈବ : ୧/୪୬

୮୭। ତତ୍ରୈବ : ୭/୨୬

୮୮। A History of Sanskrit Literature (A. B. Keith) P. 194-195

୮୯। କାବ୍ୟ ପ୍ରକାଶ (ଓଡ଼ିଶା ସାହିତ୍ୟ ଏକାଡ଼େମୀ) : ପୃ ୧୩ (ଭୂମିକା)

୯୦। ଘେନ ନୈଷଧ ପଗଯେ......

କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୧୧।୩୧

କିମ୍ବା

ବାଲ୍ମୀକି ବ୍ୟାସ କବି ଯହିଁରେ......

ବୈଦେହୀଶ ବିଳାସ : ୧।୪

୯୧। Ancient Indian Erotics And Erotic Literature : P-7

୯୨। ତତ୍ରୈବ : ପୃ ୮

୯୩। ତତ୍ରୈବ : ପୃ ୯

୯୪। ଗାଥା ସପ୍ତଶତୀ : ୧ । ୪୫

୯୫। ତତ୍ରୈବ : ୧ । ୧୪

୯୬। A History of Sanskrit Literature : (A. B. Keith): P-224

୯୭। କର୍ପୂର ମଂଜରୀ : ୧ । ୨୭

୯୮। ଅପଭ୍ରଂଶ ସାହିତ୍ୟ (ହିନ୍ଦି) : ପୃ ୪୧

୯୯। ଭାରତୀୟ ପ୍ରେମାଖ୍ୟାନ କାବ୍ୟ (ହିନ୍ଦି) : ପୃ ୧୯ [ଭୂମିକା]

୧୦୦। The Wonder that was India : P-172

୧୦୧। Anthropology (A. L. Kroeber) : P-266

୧୦୨। ଓଡ଼ିଆ ଲୋକଗୀତ ଓ କାହାଣୀ : ପୃ ୨୯୯

୧୦୩। ଓଡ଼ିଆ ସାହିତ୍ୟର ଇତିହାସ (ବିନାୟକ ମିଶ୍ର) : ପୃ ୧୬

୧୦୪। କ) ଦୋଳି ପରେ କାନ୍ତ ଲେଖିଲେ ବୋଳ ଲୋ

ଉଲୁସି ଉଠୁଛି ଦେହ ।

—ପଲ୍ଲୀଗୀତି ସଂଚୟନ : ପୃ. ୧୩୨

ଖ) ପାଚିଲା ଆମ୍ବ ପଣସ, ବୃଥା ହେଲା ମୋର ଯୁବା ବୟସ ଗୋ

ଧନ, ରହିଲ ସିନା ବିଦେଶ ।

—ପଲ୍ଲୀଗୀତି ସଂଚୟନ : ପୃ. ୫୪୫

ଗ) ରାତିରେ ରାନ୍ଧିଲି ପୋଇ ଚିଙ୍ଗୁଡ଼ି ଲୋ ଦିନରେ ରାନ୍ଧିଲି ବଡ଼ି

ଶ୍ରୀରାମ ପାଖକୁ ଶୋଇବାକୁ ଗଲି ଗୋଡ଼ ଘେନି ଦେଲେ ପେଲି ।

—ପଲ୍ଲୀଗୀତି ସଂଚୟନ : ପୃ. ୩୯୪

୧୦୫। କ) ତୁ ମଧୁବନ ମୁଁ ମାଳତୀ

କୁଂଜବନେ ପାଉ ରତି ।

—ପଲ୍ଲୀଗୀତି ସଂଚୟନ : ପୃ. ୧୭୨

ଖ) ଭାଇ ଶଳା ବୋଲି ଜାଣିତ ନ ଥିଲି

ପଣତ ପକାଇ ଦେଲି ।

—ଓଡ଼ିଆ ପଲ୍ଲୀ ସାହିତ୍ୟ : ପୃ. ୭୮

ଗ) ତୁମ୍ଭର ସ୍ନେହ ଗୋଳ ନ କର ସୁନ୍ଦରୀ

ଆପଣା ମାଧବ ମୁଁ ଅଇଲି ବିଜେ କରି ।

—ପଲ୍ଲୀଗୀତି ସଂଚୟନ : ପୃ. ୩୪୯

୧୦୬। ପଲ୍ଲୀଗୀତି ସଂଚୟନ : ପୃ. ୪୭୩

୧୦୭। ଓଡ଼ିଆ ପଲ୍ଲୀ ସାହିତ୍ୟ : ପୃ. ୯୬

୧୦୮। ଓଡ଼ିଆ ଲୋକ ଗୀତି ଓ କାହାଣୀ : ପୃ ୧୩୫

୧୦୯। ନଳିତା ବାଡ଼ିକି କଣ୍ଟା ଦେଇଥିଲୁ

ମଶା ଖୋଇ ଖୋଇ ମାରିଲୁ ।

—ପଲ୍ଲୀଗୀତି ସଂଚୟନ : ପୃ ୪୦୪

୧୧୦। ବଳଦ ଗୋଡ଼ର ଦାଗୀ, ଏ ଯୁବା ବୟସ ଯାଉଛି ଭଙ୍ଗି

ଏକା ପାନଖିଆ ଲାଗି ।

—ଓଡ଼ିଆ ପଲ୍ଲୀ ସାହିତ୍ୟ : ପୃ ୭୪

୧୧୧। ଆଦ୍ୟ ମଗୁଶୁର ହେଲା, ଏ କାଳରେ କାନ୍ତ ବିଦେଶ ଗଲା

ସୁନା ଦେହ ଚୂନା ହେଲା ।

—ପଲ୍ଲୀଗୀତି ସଂଚୟନ : ପୃ ୫୪୯

୧୧୨। Inscriptions of Orissa iv),Ed by S.N Rajguru P. 248

୧୧୩। ଚର୍ଯ୍ୟା ଗୀତିକା (ସଂପାଦନା—ଡଃ ଖଗେଶ୍ୱର ମହାପାତ୍ର) : ପୃ—୨୬

୧୧୪। ତତ୍ରୈବ : ପୃ ୭୯ (ଚର୍ଯ୍ୟା ନଂ ୨୮)

୧୧୫। ତତ୍ରୈବ : ପୃ ୯୯ (ଚର୍ଯ୍ୟା ନଂ ୧୦)

୧୧୬। ତତ୍ରୈବ : ପୃ ୧୧୭ (ଚର୍ଯ୍ୟା ନଂ ୧୯)

୧୧୭। ବୌଦ୍ଧଗାନ ଓ ଦୋହା (ହରପ୍ରସାଦ ଶାସ୍ତ୍ରୀ ସଂପାଦିତ) ; ପୃ ୮ (ଚର୍ଯ୍ୟାଚର୍ଯ୍ୟ ବିନିଶ୍ଚୟ)—ଚର୍ଯ୍ୟା ନଂ୪

୧୧୮। ତତ୍ରୈବ : ପୃ-୩୭ (ଚର୍ଯ୍ୟା ନଂ ୨୦)

୧୧୯। ଚର୍ଯ୍ୟା ଗୀତିକା (ସଂ. ଡଃ ଖଗେଶ୍ୱର ମହାପାତ୍ର) : ପୃ ୧୬୦– (ଚର୍ଯ୍ୟା ନଂ ୪୯)

୧୨୦। ଓଡ଼ିଆ ନାଥ ସମ୍ପ୍ରଦାୟ ଓ ନାଥ ସାହିତ୍ୟ (ଡଃ ବଂଶୀଧର ମହାନ୍ତି): ପୃ ୫୧–୫୨

୧୨୧। ତତ୍ରୈବ : ପୃ ୫୧୯

୧୨୨। ତତ୍ରୈବ : ପୃ ୮୧

୧୨୩। ତତ୍ରୈବ : ପୃ ୩୭୪

୧୨୪। ତତ୍ରୈବ : ପୃ ୩୭୬

୧୨୫। ଓଡ଼ିଆ ସାହିତ୍ୟର ଆଦିପର୍ବ (ସୁରେନ୍ଦ୍ର ମହାନ୍ତି) : ପୃ ୮୬

୧୨୬। ସଂଚୟନ (ସଂ : ବସନ୍ତ କୁମାର ଶତପଥୀ) : ପୃ ୧୮

୧୨୭। ଓଡ଼ିଆ ସାହିତ୍ୟର ଇତିହାସ (ଡଃ ମାୟାଧର ମାନସିଂହ) : ପୃ ୭୩

୧୨୮। ରୁଦ୍ର ସୁଧାନିଧି (ଓଡ଼ିଶା ସାହିତ୍ୟ ଏକାଡ଼େମୀ) : ପୃ ୪

୧୨୯। ତତ୍ରୈବ : ପୃ ୧୭୦

୧୩୦। ତତ୍ରୈବ : ପୃ ୧୦

୧୩୧। ଓଡ଼ିଆ ଉପନ୍ୟାସ (ଡଃ କୃଷ୍ଣଚରଣ ବେହେରା) : ପୃ ୭୬

୧୩୨। ସାରଳା ମହାଭାରତ ଆଦି, ୨ୟ (ଓଡ଼ିଶା ସଂସ୍କୃତିକ ବ୍ୟାପାର ବିଭାଗ): ପୃ ୭୭୩

୧୩୩। ତତ୍ରୈବ : ପୃ ୬୦୧

୧୩୪। ତତ୍ରୈବ (ମଧ୍ୟ) : ପୃ ୬୫୦

୧୩୫। ତତ୍ରୈବ (ମଧ୍ୟ) : ପୃ ୬୧୧

୧୩୬। ତତ୍ରୈବ (ମଧ୍ୟ) : ପୃ ୮୮୦

୧୩୭। ଓଡ଼ିଆ ସାହିତ୍ୟର କ୍ରମ ପରିଣାମ (ନୀଳକଣ୍ଠ ଦାସ) : ପୃ ୪୩୧

୧୩୮। ଓଡ଼ିଶୀ ବୈଷ୍ଣବ ଧର୍ମ (ଡଃ କାହ୍ନୁଚରଣ ମିଶ୍ର) : ପୃ ୨୫

୧୩୯। ଓଡ଼ିଆ ସାହିତ୍ୟର ମଧ୍ୟପର୍ବ ସୁରେନ୍ଦ୍ର ମହାନ୍ତି) : ପୃ ୨୫୮

୧୪୦। ଦାଣ୍ଡି ରାମାୟଣ/ଆଦି(ଗୋବିନ୍ଦ ରଥ ସଂପାଦିତ) : ପୃ ୧୫୪-୧୫୫

୧୪୧। ତତ୍ରୈବ/ଉତ୍ତର : ପୃ ୪୨-୪୫

୧୪୨। ବଳରାମ ଦାସ ଓ ଓଡ଼ିଆ ରାମାୟଣ(ଡଃ. ନରେନ୍ଦ୍ର ନାଥ ମିଶ୍ର):ପୃ୧୪୬

୧୪୩। ଦାଣ୍ଡିରାମାୟଣ/ଅଯୋଧ୍ୟା : ପୃ ୭୯–୮୧

୧୪୪। ତତ୍ରୈବ/କିଷ୍କିନ୍ଧା : ପୃ ୪୩

୧୪୫। ଶ୍ରୀମଦ୍ଭାଗବତ/ଅଷ୍ଟମ ସ୍କନ୍ଧ/୧୦ମ ଅଧ୍ୟାୟ : ପୃ ୫୩ (ରାଜକିଶୋର ଦାସ ସଂକଳିତ)

୧୪୬। ଅଚ୍ୟୁତାନନ୍ଦ ଓ ପଞ୍ଚସଖା ଧର୍ମ (ଚିତ୍ତରଞ୍ଜନ ଦାସ) : ପୃ ୧୧୯

୧୪୭। ଓଡ଼ିଆ ସାହିତ୍ୟର କ୍ରମ ପରିଣାମ (ନୀଳକଣ୍ଠ ଦାସ) : ପୃ ୧୪୨

୧୪୮। ତତ୍ରୈବ–

୧୪୯। ଓଡ଼ିଶୀ ବୈଷ୍ଣବ ଧର୍ମ (ଡଃ. କାହ୍ନୁଚରଣ ମିଶ୍ର) : ପୃ ୫୮-୫୯



# ତୃତୀୟ ଅଧ୍ୟାୟ

## ରସବିନ୍ୟାସ : ବିପ୍ରଲମ୍ଭ

# ବିପ୍ରଲମ୍ଭ

ବିପ୍ରଲମ୍ଭ ଶୃଙ୍ଗାରର ସ୍ୱରୂପ ସମ୍ପର୍କରେ ପୂର୍ବେ ଆଲୋଚନା କରଯାଇଅଛି । ଓଡ଼ିଆ ରୀତି କାବ୍ୟ ପରିପ୍ରେକ୍ଷୀରେ ଏହାର ବୈଚିତ୍ର୍ୟ ବିଶ୍ଳେଷଣ ଏହି ଅଧ୍ୟାୟର ଉଦ୍ଦେଶ୍ୟ । ବିପ୍ରଲମ୍ଭ ବିନା ସମ୍ଭୋଗର ପରିପୁଷ୍ଟି ସାଧିତ ହେଉ ନଥିବାରୁ [୧] ଜୀବନରେ ଓ କାବ୍ୟରେ ଏହାର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

## ପୂର୍ବରାଗ–

ଶ୍ରବଣ ଓ ଦର୍ଶନ ଆଦିରୁ ନାୟକ ନାୟିକାଙ୍କ ହୃଦୟରେ ଅଙ୍କୁରିତ ପ୍ରେମ-ଭବନା ସଂଗମାଭିମୁଖୀ ହେଲେ ଯେଉଁ ମନୋବେଦନା ସୃଷ୍ଟି ହୁଏ ତାହାହିଁ ପୂର୍ବରାଗ । 'ଉଜ୍ଜ୍ୱଳ ନୀଳମଣି'କାରଙ୍କ ଭାଷାରେ ସଂଗମ ପୂର୍ବ ରତିର ନାମ ପୂର୍ବରାଗ [୨] । ଆଲୋଚ୍ୟ କାବ୍ୟଧାରାରେ ଏହାର ସୁବିପୁଳ ପରଂପରା ପରିଲକ୍ଷିତ । କେତେକ କାବ୍ୟରେ ପୂର୍ବରାଗର ବିବିଧ ପର୍ଯ୍ୟାୟ (ଯଥା–ଶ୍ରବଣ, ଦର୍ଶନ, ଇନ୍ଦ୍ରଜାଲ, ସ୍ୱପ୍ନ ଇତ୍ୟାଦି) ଓ କେତେକ୍ କାବ୍ୟରେ ଏକ ବା ଏକାଧିକ ପର୍ଯ୍ୟାୟ ରୂପାୟିତ । ବୈଷ୍ଣବ କାବ୍ୟରେ ପୂର୍ବରାଗର ଯେଉଁ ବର୍ଣ୍ଣାଢ୍ୟ ରୂପ ସଂଭାର ଦେଖିବାକୁ ମିଳେ ତାହା ଅନ୍ୟତ୍ର ଦୁର୍ଲଭ । ଏହା ନାମାନୁରାଗ, ରୂପାନୁରାଗ, ସ୍ୱପ୍ନାନୁରାଗ ଆଦି ଭେଦରେ ବିଭକ୍ତ ।

ଆଲୋଚନାର ପ୍ରାଞ୍ଜଳତା ଦୃଷ୍ଟିରୁ ଓଡ଼ିଆ ରୀତିକାବ୍ୟର ପୂର୍ବରାଗ ପ୍ରସଙ୍ଗକୁ ଏଠାରେ ନାୟିକା ଓ ନାୟକ ଆଧାର ଭେଦରେ ବିସ୍ତାର କରଯାଉଅଛି ।

**ପୂର୍ବରାଗ (ନାୟିକା)**–ଅର୍ଜୁନ ଦାସଙ୍କ 'ରାମବିଭା' କାବ୍ୟର ନାୟିକା ସୀତା ସ୍ୱୟଂବର ସଭାରେ ରାମଚନ୍ଦ୍ରଙ୍କୁ ଦେଖି ମନେ ମନେ ତାଙ୍କୁ ନିଜର

ପତି ରୂପେ ବରଣ କରିଛନ୍ତି । ସଖୀମାନଙ୍କ ନିକଟରେ ତାଙ୍କର ମନୋଭବ ଅତ୍ୟନ୍ତ ସଂକ୍ଷିପ୍ତ ଓ ମାର୍ଜିତ ରୂପେ ପ୍ରକାଶିତ । ନାୟକ ଗଳାରେ ବରଣ ମାଳା ଦେବା କାଳରେ ତାଙ୍କ ଶରୀରରେ ସଂଜାତ ସ୍ୱାଭାବିକ ଆନନ୍ଦ ଓ ପୁଲକର ବନ୍ୟା ସଂଯତ କାବ୍ୟ ସୌନ୍ଦର୍ଯ୍ୟ ଲାଭ କରିଛି [୩] । କବିଙ୍କ'କଳ୍ପଲତା'କାବ୍ୟର ନାୟିକା ଜାତିସ୍ମରତ୍ୱ କାରଣରୁ ନାୟକ ଅମର– ଶିଖରକୁ ସ୍ମରଣ କରି ବିରହ ପୀଡ଼ିତା । ଚନ୍ଦ୍ର କିରଣ ଓ ମଳୟ ପବନ ଯଥାକ୍ରମେ ଗରଳ ଓ ବହ୍ନି ରୂପେ ତାଙ୍କୁ ପ୍ରତୀୟମାନ [୪] । ଇତ୍ୟବସରରେ ରଜା ତା'ର ବିବାହ ନିମନ୍ତେ ଅବନୀତିଳକକୁ ବର ରୂପେ ବରଣ କରିଥିବାରୁ ସେ ବିଷପାନ ପୂର୍ବକ ଆତ୍ମହତ୍ୟା କରିଛି । ନାୟିକା-ପୂର୍ବରାଗ ବର୍ଣ୍ଣନା ପ୍ରସଂଗରେ ସଂସ୍କୃତ କାବ୍ୟଧାରାର ଅନୁଗାମିତା, ସରଳତା ଓ ରୁଚିଶୀଳତା ଏଠାରେ ଉଲ୍ଲେଖଯୋଗ୍ୟ । ମନେହୁଏ କାଳ୍ପନିକ କାବ୍ୟଧାରାର ବିପୁଳ ସଂଭାବନା-ବୀଜ ଅର୍ଜୁନ ଦାସଙ୍କ 'କଳ୍ପଲତା'ରେ ଅଙ୍କୁରିତ ।

ଶିଶୁଶଙ୍କରଙ୍କ 'ଉଷାଭିଳାଷ'ରେ ନାୟିକା ନାୟକର ସ୍ୱପ୍ନସଂଗ ଲାଭ କରିବା ଏବଂ ନିଶାବସାନରେ ପ୍ରିୟ ପୁରୁଷକୁ ନପାଇ ବିରହ ଅଧୀର ହେବା ବେଶ୍ କୁଶଳତାର ସହ ବର୍ଣ୍ଣିତ [୫] । ତା'ର ବଚନ ବାତୁଳତା, ତନୁ ଅଳସତା, ଆଖି ଉତ୍ସୁକତା, ମନ ଚଞ୍ଚଳତା, ନିଃଶ୍ୱାସ ଖରତା ଆଦି ନାନାବିଧ ଦୈହିକ ବିକ୍ରିୟାର ଚିତ୍ର ଅତ୍ୟନ୍ତ ସାବଲୀଳ ଓ ଆବେଗମୟ । ନବ ଅନୁଭବ ହେତୁ କୁମାରୀର କୁଚ, ଗଣ୍ଡ ଓ ଜାନୁରେ ଅଜଣା ପୁଲକ ଦେଖାଯିବା ସଙ୍ଗେ ସଙ୍ଗେ ଆହାର, ନିଦ୍ରା ଓ ବେଶଭୂଷାରେ ଅରୁଚି ପ୍ରକାଶ ପାଇଛି । ସ୍ୱପ୍ନ ରହସ୍ୟ ଅବଗତି ନିମନ୍ତେ ସଖୀ ଚିତ୍ରଲେଖା ତିନିପୁରର ଚିତ୍ରପଟ ରଚନା କରି ନାୟିକା ସମ୍ମୁଖରେ ଉପସ୍ଥାପିତ କରିବା, ଚିତ୍ରପଟରୁ ଅନିରୁଦ୍ଧକୁ ଚିହ୍ନି ପାରି ତା'ର ସର୍ବାଙ୍ଗରେ ପୁଲକର ଶିହରଣ ସଂଚରିତ ହେବା, ସଖୀଗଣ ମନ୍ତ୍ର ବଳରେ ନାୟକକୁ ଦ୍ୱାରକାପୁରରୁ ଅଣାଇ ଦୁହିଙ୍କର ମିଳନ ଆୟୋଜନ କରିବା– ଅଲୌକିକ ହେଲେ ହେଁ ପରଂପରାନୁମୋଦିତ । ଶିଶୁଶଙ୍କରଙ୍କ ସ୍ୱପ୍ନାନ୍ତର ପୂର୍ବରାଗ ବର୍ଣ୍ଣନା ପରବର୍ତ୍ତୀକାଳରେ ଉପେନ୍ଦ୍ର ଓ ଅଭିମନ୍ୟୁଙ୍କ ପରି ବହୁ କବିଙ୍କ ଦ୍ୱାରା ଯେ ଅନୁସୃତ, ଏଥିରେ ସନ୍ଦେହର ଅବକାଶ ନାହିଁ ।

ପୁରୁଷୋତ୍ତମ ଦାସଙ୍କ 'କାଞ୍ଚି କାବେରୀ' କାବ୍ୟର ପରକୀୟା ନାୟିକା ମାଣିକୀ ଜଗନ୍ନାଥ ଓ ବଳଭଦ୍ରଙ୍କୁ ଦେଖି କାମଭବନାରେ ଅଧୀର ୭ । ତା'ର ସର୍ବାଙ୍ଗରେ ଅସ୍ଥିରତା ଏବଂ ମନରେ ଅଶେଷ ଚିନ୍ତାର ଆଲୋଡ଼ନ । ଦେବତା ଓ ମାନବୀ ମଧ୍ୟରେ ପୂର୍ବରାଗର ଏ ଯେଉଁ ଅବତାରଣା ତାହା ରୀତିଯୁଗୀୟ କାବ୍ୟ ସାହିତ୍ୟକୁ ଅପୂର୍ବ ବୈଚିତ୍ର୍ୟ ବିମଣ୍ଡିତ କରିଛି ।

ନରସିଂହ ସେଣଙ୍କ କାବ୍ୟ ନାୟକା 'ପରିମଳା' ପୁଷ୍ପବତୀ ହେବା ଉରାରୁ ଗନ୍ଧର୍ବ ଚିତ୍ରରଥ ସହ ଗୋପନ ପ୍ରଣୟ ପାଶରେ ଆବଦ୍ଧା । ମକରକେତୁଙ୍କୁ ବିବାହ କରି ମଧ୍ୟ ସତ୍ୟରକ୍ଷା ଛଳରେ ସେ ପତି ସହ ମିଳିତ ନ ହୋଇ ନିଜ ପ୍ରେମିକକୁ ହିଁ ସ୍ୱାଗତ କରିଛି । 'ପରିମଳା' କାବ୍ୟର କଥାବସ୍ତୁ ଓ ନାୟିକା ରୀତି ପରମ୍ପରାର ଏକ ବିଚିତ୍ର ବ୍ୟତିକ୍ରମ । ଏଠାରେ ପୂର୍ବରାଗ ପ୍ରସଂଗ ସମ୍ପୂର୍ଣ୍ଣ ରୂପେ ପରିତ୍ୟକ୍ତ ।

ବନମାଳୀ ଦାସଙ୍କ 'ଚ୍ୟୁତ ଇଚ୍ଛାବତୀ' କାବ୍ୟରେ ସତ୍ୟାନୁବଦ୍ଧତା ହେତୁ ନାୟକ ଚ୍ୟୁତବ୍ରହ୍ମ ନିକଟରେ ନାୟିକା ଇଚ୍ଛାବତୀର ଆତ୍ମସମର୍ପଣ ବିଷୟ ବର୍ଣ୍ଣିତ । ସାକ୍ଷାତ୍ ଦର୍ଶନ ଜନିତ ଉଭୟଙ୍କ ପ୍ରାଣର ଆକୁଳତା ଓ ଅନୁରାଗର ଚିତ୍ର ଏଠାରେ ଅତ୍ୟନ୍ତ ମାର୍ମିକ ୭ ।

ପାର୍ଥ ଶ୍ରୀଚନ୍ଦନଙ୍କ କାବ୍ୟ-ନାୟିକା କଳାବତୀ ସ୍ୱପ୍ନରେ ଜନୈକ ବ୍ରାହ୍ମଣ ସହ ନାୟକର ଦର୍ଶନ ଲାଭ କରିବା, ସ୍ୱପ୍ନାନ୍ତେ ସେହି ବ୍ରାହ୍ମଣଠାରୁ ନାୟକର ରୂପ ଓ ଗୁଣାଦି ଶ୍ରବଣ କରିବା– ତା'ର ପୂର୍ବରାଗ ପ୍ରସଙ୍ଗ ଅନ୍ତର୍ଗତ । କିନ୍ତୁ ନାରୀ ପ୍ରାଣର ମନୋଗତ ଭାବ ପ୍ରକାଶ ପାଇଁ ଏଠାରେ ବିଶେଷ ଅବସର ସୃଷ୍ଟି କରଯାଇନାହିଁ ୮ ।

ବିଷ୍ଣୁ ଦାସଙ୍କ 'ପ୍ରେମଲୋଚନା' କାବ୍ୟରେ ନାୟିକା ପୂର୍ବରାଗ ବର୍ଣ୍ଣନା ଯେପରି ବିସ୍ତୃତ ସେହିପରି କାବ୍ୟଶ୍ରୀ ମଣ୍ଡିତ । ହଂସୀ ନିକଟରୁ ନାୟକ ବୃତ୍ତାନ୍ତ ଶ୍ରବଣ କରି ପତି ଲାଭ ଆଶାରେ ରାଜକୁମାରୀ ଏକାନ୍ତ ଉତ୍କଣ୍ଠିତା । ଏଣେ ରାଜନଗରରେ ସ୍ୱୟଂବର ସଭାର ଆୟୋଜନ ଅବ୍ୟାହତ । କିନ୍ତୁ

ସୁଧାକର ବିନା ନିଜକୁ ଅଗ୍ନିରେ ବିସର୍ଜନ କରିବା ନିମନ୍ତେ ସେ ସଂକଳ୍ପିତା [୯] । ଚିନ୍ତା, ସ୍ମୃତି, ଉଦ୍‌ବେଗ, ମୂର୍ଚ୍ଛା ଆଦି ପୂର୍ବରାଗ ଗତ ବିଭିନ୍ନ ଅବସ୍ଥାର ସହଜ ଚିତ୍ରଣ ନାୟିକା ଚରିତ୍ରକୁ ନିଗଢ଼ତର ସୌକୁମାର୍ଯ୍ୟ ପ୍ରଦାନ କରିଛି ।

କାର୍ତ୍ତିକ ଦାସଙ୍କ 'ରୁକ୍ମିଣୀ ବିଭା'ର ବର୍ଣ୍ଣନାନୁସାରେ ନାୟିକାର ସ୍ୱୟଂବର ସଭାରୁ ଶ୍ରୀକୃଷ୍ଣ (ଯଥାଯୋଗ୍ୟ ଆସନ ନପାଇ) ଅପମାନରେ ଫେରିଯାଇଛନ୍ତି । ଅପର ପକ୍ଷରେ ରୁକ୍ମିଣୀ ପ୍ରିୟତମର ସ୍ଥାନ ପରିତ୍ୟାଗ ସଂବାଦ ଲାଭ କରି ମୂର୍ଚ୍ଛାହତା [୧୦] । ଚେତନା ଲାଭ ଅନ୍ତେ ପ୍ରଣୟ ବିଧୁରା ନାୟିକା ନାୟକ ବିନା ଅଗ୍ନିକୁ ଡେଇଁ ପ୍ରାଣ ବିସର୍ଜନ କରିବାକୁ ପ୍ରତିଜ୍ଞାବଦ୍ଧ [୧୧]। ସଖୀମାନଙ୍କ ସହ ମନ୍ତ୍ରଣାକ୍ରମେ ସେ ଜଣେ ବ୍ରାହ୍ମଣ ହସ୍ତରେ ଶ୍ରୀକୃଷ୍ଣଙ୍କ ନିକଟକୁ ପତ୍ରିକା ଲେଖି ନିଜ ହରଣର ଉପାୟ ସୂଚାଇ ଦେଇଛନ୍ତି । ପୂର୍ବରାଗ ବର୍ଣ୍ଣନାରେ କୌଣସି ଆଳଂକାରିକ ମଣ୍ଡନ ନାହିଁ । ଭାଇର ଅନ୍ୟାୟ ସିଦ୍ଧାନ୍ତ ବିରୁଦ୍ଧରେ ଭଉଣୀର ନୀରବ ପ୍ରତିବାଦ ଏଠାରେ ଉଲ୍ଲେଖଯୋଗ୍ୟ । ପ୍ରିୟତମକୁ ପାଇବା ପାଇଁ ନାୟିକା ପ୍ରସଙ୍ଗ-କ୍ରମେ ରାଜପୁରୀ, ପିତା, ପରିଜନ ପରିତ୍ୟାଗ କରିବାକୁ ପ୍ରସ୍ତୁତ । ବୀରଭୋଗ୍ୟା ହେବାକୁ ନାରୀର ଅକୁଣ୍ଠିତ ଚିତ୍ତବୃତ୍ତି ଏଠାରେ ବାସ୍ତବିକ୍ ପ୍ରଶଂସନୀୟ [୧୨] ।

ଧନଞ୍ଜୟଙ୍କ 'ଇଚ୍ଛାବତୀ' କାବ୍ୟର ନାୟକ ନାୟିକାଙ୍କ ସାକ୍ଷାତ ଦର୍ଶନ କାପାଳୀମଠରେ ସଂଘଟିତ ଏବଂ ସମୟକ୍ରମେ ଦୁହେଁ ବିବାହ ନିମନ୍ତେ ସତ୍ୟାନୁବଦ୍ଧ । ନାୟିକା ଅରଜୋବତୀ ହେତୁ ପୂର୍ବରାଗ ବର୍ଣ୍ଣନାରେ କୌଣସି ଚମତ୍କାରିତା ଦୃଷ୍ଟିଗୋଚର ହୁଏ ନାହିଁ । କବିଙ୍କ 'ଅନଙ୍ଗରେଖା' କାବ୍ୟରେ ସଂସ୍କୃତ ଶାସ୍ତ୍ରାନୁସରଣ ସୁସ୍ପଷ୍ଟ । ନାୟିକାପୂର୍ବରାଗ ବର୍ଣ୍ଣନାରେ ବିରହ ତାପ ଶାନ୍ତି ନିମିତ୍ତ ପନୀର, ଚନ୍ଦ୍ର, ଚନ୍ଦନ, ନଳିନୀଦଳ ଆଦି ଉପଚାର,[୧୩] ଶରୀରର ଅତି କୃଶତା,[୧୪] ବେଶ ବସନ ଅଶନରେ ଅରୁଚି[୧୫] ଇତ୍ୟାଦିର ରୀତିବଦ୍ଧ ଉଲ୍ଲେଖ ଧନଞ୍ଜୟଙ୍କ ଠାରୁ ଆରମ୍ଭ ହୁଏ । ଏହି କାବ୍ୟର ଖଳନାୟକ ପୁଷ୍ପଦନ୍ତ ଓଡ଼ିଆ ରୀତିକାବ୍ୟଧାରାରେ ଏକ ବିରଳ ଚରିତ୍ର ।

ତତ୍‌କର୍ତ୍ତୃକ ଝଡ଼ ବର୍ଷାଦି ସୃଷ୍ଟି ହେତୁ ଅନଙ୍ଗରେଖାର ସ୍ୱୟଂବର ଆୟୋଜନ ସମ୍ପୂର୍ଣ୍ଣ ବିପର୍ଯ୍ୟସ୍ତ । ଏଥି ଉତ୍ତାରୁ ନାୟିକାର ବିରହ ଦଶା ଚରମ ପର୍ଯ୍ୟାୟରେ ଉପନୀତ । ପୁନରାୟ ସ୍ୱୟଂବର ଆୟୋଜନ ଏବଂ ନାୟକ ନାୟିକାଙ୍କ ମଧୁମୟ ମିଳନରେ କାବ୍ୟଟି ପରିସମାପ୍ତ । 'ରତ୍ନମଂଜରୀ' କାବ୍ୟରେ ନାୟିକା ହଂସୀଠାରୁ ନାୟକର ରୂପଗୁଣ ଶ୍ରବଣ କରି ବିରହାତୁର ହେବା ଓ ସଖୀମାନଙ୍କ ନିକଟରେ ଏହାର ପ୍ରତିକାର ପାଇଁ ପ୍ରାର୍ଥନା କରିବା ଉଲ୍ଲିଖିତ [୧୬]। ହଂସୀର ନାୟକ ନିକଟକୁ ଯାତ୍ରା, ନାୟକର ନାୟିକାନୁଚିନ୍ତା, ସନ୍ଦେଶ ସହ ହଂସୀର ପ୍ରତ୍ୟାବର୍ତ୍ତନ, ନାୟିକାର ବିରହ ଭବନା, ନାୟକ ନାୟିକାଙ୍କ ସାକ୍ଷାତ ଦର୍ଶନାଦିକ୍ରମରେ ପୂର୍ବରାଗ ଚିତ୍ରଣ ପାଇଁ ବିଭିନ୍ନ ପରିବେଶର ସୃଷ୍ଟି କବିଙ୍କ ସଯତ୍ନପ୍ରୟାସକୃତ ।

ଲୋକନାଥ ବିଦ୍ୟାଧରଙ୍କ 'ସର୍ବାଙ୍ଗସୁନ୍ଦରୀ' କାବ୍ୟର ନାୟିକା ସ୍ୱପ୍ନରେ ନାୟକର ଅଙ୍ଗ ସ୍ପର୍ଶ କରି ନିଦ୍ରାନ୍ତେ ବିରହରେ ଅଧୀର [୧୭] । ବସନ୍ତ ବର୍ଣ୍ଣନା, ଉପବନ ବିହାର, ଜଳକେଳି, ହଂସୀଠାରୁ ନାୟକର ରୂପ ଗୁଣାଦି ଶ୍ରବଣ—ଏହିପରି ବିବିଧ ପ୍ରସଂଗର ଅବତାରଣାକ୍ରମେ ପୂର୍ବରାଗର ବର୍ଣ୍ଣନା ନିମନ୍ତେ ପ୍ରଶସ୍ତ ସୁଯୋଗ ସୃଷ୍ଟି କରାଯାଇଛି । କମଳ ଦଳ—ଶଯ୍ୟା ରଚନା, ସଘନ ସାର ଚନ୍ଦନ ଲେପନ, ପଲ୍ଲବ ବ୍ୟଜନ, ପନୀର ନୀର ସିଂଚନାଦି ଉପଗ୍ୱର ନାୟିକାର ବିରହ ଜ୍ୱାଳା ଉପଶମ କରିବାକୁ ସମର୍ଥ ହୋଇନାହିଁ[୧୮]। ଗୋଟିଏ ନିମିଷ ତା' ପକ୍ଷରେ ଲକ୍ଷେ ବର୍ଷ ସହ ସମାନ । ଭୂଷଣ,.ଆବାସ, କୋକିଳ ବଚନ, ମନ୍ଦ ମଳୟ ତା'ର କାମ ପୀଡାକୁ ବହୁ ଗୁଣିତ କରିଛି । କବିଙ୍କ 'ଚିତ୍ରକଳା' କାବ୍ୟର ନାୟିକା ବିରହ ବ୍ୟାଧିରେ ପୀଡିତା ହୁଅନ୍ତେ ତା' ନିକଟରେ ନାରଦ ଉପସ୍ଥିତ ହୋଇ ହଂସୀ ଆଗମନର ସମ୍ବାଦ ଦେବା ଏବଂ ଯଥା ସମୟରେ ହଂସୀର ଆଗମନ ତଥା ନାୟକ-ରୂପ ଓ ଗୁଣାଦି ବର୍ଣ୍ଣନ—ଅଲୌକିକ ହେଲେ ହେଁ ରସୋତ୍ତୀର୍ଣ୍ଣ । ଗୋଟିଏ ସ୍ଥଳରେ ଉଲ୍ଲିଖିତ ହଂସୀର ନାୟିକା ପ୍ରତି ପ୍ରଶ୍ନଟି ଅତ୍ୟନ୍ତ କାମୋଦ୍ଦୀପକ[୧୯]। ଉଭୟ କାବ୍ୟରେ କବିଙ୍କ ସ୍ୱକୀୟ ରଚନା ଚାତୁରୀର ଆକର୍ଷଣ ଅବ୍ୟାହତ ।

ଦୀନକୃଷ୍ଣଙ୍କ 'ରସକଲ୍ଲୋଳ'ରେ ନାୟିକା-ପୂର୍ବରାଗ ପାଇଁ ଅବକାଶ ନାହିଁ । ବାଳଲୀଳାଠାରୁ ମଥୁରାଯାତ୍ରା ପର୍ଯ୍ୟନ୍ତ ଅସୁରବଧ ନିଧନ ଅତିରିକ୍ତ

ଶ୍ରୀକୃଷ୍ଣଙ୍କର ରାଧା ଓ ଗୋପାଙ୍ଗନାମାନଙ୍କ ସହ ବିବିଧ କ୍ରୀଡ଼ା ପରିହାସ ଓ କେଳି ବିଳାସରେ ବହୁ ସମୟ ଅତିବାହିତ ।

ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟ-ସମୂହରେ ପୂର୍ବରାଗ ବର୍ଣ୍ଣନା ଯେପରି ପରଂପରାନୁଗତ ସେହିପରି ଅପୂର୍ବ କଳା କୌଶଳଯୁକ୍ତ । ନାୟିକା ସୀତାଙ୍କର ସ୍ୱୟଂବର ସଭାରେ ରାମଚନ୍ଦ୍ରଙ୍କ ଦର୍ଶନ ଲାଭ, ମନ ମଧ୍ୟରେ ତାହାଙ୍କୁ ନିଜର ପତି ରୂପେ କାମନା ଏବଂ ଯଥା ସମୟରେ ଅଭିଳଷିତ ପୁରୁଷକୁ ବରଣମାଳା ପ୍ରଦାନ କବିଙ୍କ 'ବୈଦେହୀଶ ବିଳାସ'ରେ ବର୍ଣ୍ଣିତ । କିନ୍ତୁ ପିତାଙ୍କ ସମ୍ମତି ବିନା ବିବାହ କାର୍ଯ୍ୟ ସ୍ଥଗିତ ରଖିବାକୁ ଶ୍ରୀରାମଚନ୍ଦ୍ରଙ୍କର ଅନୁରୋଧ ହେତୁ ନାୟିକାଠାରେ ବିରହ ବ୍ୟାକୁଳତାର ଯେଉଁ ଉଦ୍‌ବେଳନ ଦେଖା ଦେଇଛି, ତାହା ଅତ୍ୟନ୍ତ ହୃଦୟଗ୍ରାହୀ [୨୦] । ବସନ୍ତ କୋକିଳର ରାବ ତାଙ୍କ ପାଇଁ ବର୍ତ୍ତମାନ ବଜ୍ର ଘୋଷ ସଦୃଶ । ମରୁତ, ଚନ୍ଦ୍ର, କୋକିଳ, କାମ, ଭ୍ରମର— ସମସ୍ତେ ଯେପରି ତାଙ୍କର ବିନାଶ ସାଧନ ନିମନ୍ତେ ଷଡ଼ଯନ୍ତ୍ରରେ ଲିପ୍ତ । 'ଲାବଣ୍ୟବତୀ' କାବ୍ୟରେ ସ୍ୱପ୍ନ ଦର୍ଶନ ଅନନ୍ତର ନାୟିକାର ବିରହ ବିଳାପ କାରୁଣ୍ୟ ମୂର୍ଚ୍ଛିତ [୨୧] । ମାଳିନୀ ମଧ୍ୟ ସ୍ୱପ୍ନରେ ଦେଖିଥିବା·ଚନ୍ଦ୍ରଭାନୁ ବୃତ୍ତାନ୍ତ ବର୍ଣ୍ଣନା କରି ତା'ର ପୂର୍ବରାଗକୁ ଉଦ୍‌ବୋଧିତ କରିଛି । ଇନ୍ଦ୍ରଜାଲ, ଦର୍ଶନ, ଚିଟାଉ ଆଦାନ ପ୍ରଦାନ, ଋତୁ ପର୍ଯ୍ୟାୟ କ୍ରମିକ ବିରହଭାବନା, ରାମେଶ୍ୱରରେ ସାକ୍ଷାତ, ବିବାହାନ୍ତର ମିଳନ ଉଦ୍‌ବେଗ— ଏହି ରୀତିରେ ନାୟିକା ଲାବଣ୍ୟବତୀର ପୂର୍ବରାଗ ପରିପୁଷ୍ଟ । ମଧ୍ୟଯୁଗୀୟ କାବ୍ୟ କଳାରେ ସ୍ୱୀକୃତ ଏବଂ ଆଦୃତ ଅଲୌକିକ ପ୍ରସଙ୍ଗ ସୃଷ୍ଟି କରିବା କ୍ଷେତ୍ରରେ କବି ବିଶେଷ କୃତିତ୍ୱ ଦେଖାଇଛନ୍ତି । ବର୍ଷା·ବିରହ ବର୍ଣ୍ଣନା ପ୍ରସଂଗରେ ପ୍ରକୃତି ଓ ମଣିଷର ଚିରକାଳୀନ ଅନ୍ତରଙ୍ଗ ସଂପର୍କକୁ ସେ ଶବ୍ଦ ଓ ଛନ୍ଦ ସୁଷମାର ଅପୂର୍ବ ସମନ୍ୱୟରେ ଅଖଣ୍ଡ ଗୌରବ ପ୍ରଦାନ କରିଛନ୍ତି [୨୨]। ନାୟିକାର କନ୍ଦର୍ପ ତାପ ଉପଶମ ନିମନ୍ତେ ଉଲ୍ଲିଖିତ ଉପଚାର ବ୍ୟବସ୍ଥାରେ ସଂସ୍କୃତ ପରମ୍ପରାର ପ୍ରଭାବ ସ୍ପଷ୍ଟ । [୨୩]

କବିଙ୍କ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟର ନାୟିକା-ପୂର୍ବରାଗ ବର୍ଣ୍ଣନା ମଧ୍ୟ ଏକାନ୍ତ ରୀତିବଦ୍ଧ । ମାଙ୍ଗଲ୍ୟାଠାରୁ ନାୟକ ବୃତ୍ତାନ୍ତ ଶ୍ରବଣ, ଦର୍ଶନ ଅନୁଚିନ୍ତା, ସାକ୍ଷାତ ଦର୍ଶନ, ମାୟା ମିଳନ, ଗ୍ରୀଷ୍ମ ବିରହଭାବନା, ପତ୍ରିକା ଆଦାନପ୍ରଦାନ, ସ୍ୱୟଂବର ଆୟୋଜନ ଓ ଚିତ୍ରମୃଗର ଶିରଚ୍ଛେଦ ଆଦି ଦୀର୍ଘାୟିତ ପୂର୍ବରାଗ ପ୍ରସଙ୍ଗ କାବ୍ୟର ବିସ୍ତୃତ ଅଂଶ ଅଧିକାର କରିଅଛି । କେତେକ ସ୍ଥଳରେ ବର୍ଣ୍ଣନାର ସ୍ୱାଭାବିକତା ପରିଦୃଷ୍ଟ । କିନ୍ତୁ ଅଳଂକାର ଶାସ୍ତ୍ରର ସୂକ୍ଷ୍ମ ଅନୁଧାବନ [୨୪] ଏବଂ ପାଣ୍ଡିତ୍ୟ ପ୍ରଦର୍ଶନ ନିମିତ୍ତ ବିଶେଷ ପ୍ରଚେଷ୍ଟା [୨୫] ଯୋଗୁଁ ବହୁ ସ୍ଥଳରେ କାବ୍ୟ-ସ୍ୱଚ୍ଛତା ବ୍ୟାହତ ହୋଇଅଛି । ନାୟିକା ପ୍ରାଣର ଭାବ ଓ ଭାବନାକୁ ଶାସ୍ତ୍ରୀୟ ବନ୍ଧନ ଭିତରେ ବାନ୍ଧିଦେଇ ଯୁଗରୁଚିକୁ ମର୍ଯ୍ୟାଦାବନ୍ତ କରାଯାଇ ପାରେ; ମାତ୍ର ମାନବୀୟ ସୌନ୍ଦର୍ଯ୍ୟ ଓ ଆବେଦନକୁ ଏଥିରେ ଯଥାର୍ଥ ସ୍ଥାନ ଦିଆଯାଇନାହିଁ ବୋଲି କହିଲେ ବୋଧହୁଏ ଅସଂଗତି ହେବନାହିଁ ।

ଉପେନ୍ଦ୍ରଙ୍କ 'ପ୍ରେମସୁଧାନିଧି' କାବ୍ୟରେ ଅରକ୍ଷୋବତୀ ନାୟିକାର ବିବାହ ବର୍ଣ୍ଣିତ ହୋଇଥିବାରୁ ପୂର୍ବରାଗ ପ୍ରସଂଗ ପରିତ୍ୟକ୍ତ । 'ରସଲେଖା'ର ନାୟିକା ଓ ନାୟକ ପୁଷ୍ପବନରେ ପରସ୍ପର ସାକ୍ଷାତ ଦର୍ଶନ ଲାଭକରି ଅନୁରାଗ ପାଶରେ ଆବଦ୍ଧ । ପ୍ରିୟତମର କେତକୀ ଦଳ ଚିଟାଉ ପାଠକରି ରାଜକୁମାରୀର ପ୍ରାଣ କାମ ବେଦନାରେ ଅସ୍ଥିର [୨୬] । ପାରଂପରିକ ରୀତିରେ ବିରହ ଉପଚାର ବ୍ୟବସ୍ଥା, ଚନ୍ଦ୍ରକୋକିଳ ପ୍ରଭୃତିଙ୍କ ନିନ୍ଦା, ସଖୀ ପ୍ରବୋଧନା ଇତ୍ୟାଦି ବର୍ଣ୍ଣନା କ୍ରମରେ ବିଷୟଟି ବିଶେଷ ରୁଚିବନ୍ତ । କାବ୍ୟଟିର ପଦ ସରଳତା, ପରିସର ସ୍ୱଳ୍ପତା ଓ ଭାବ ତନ୍ମୟତା ପାଠକ ପ୍ରାଣକୁ ଗଭୀର ଭାବରେ ଆକୃଷ୍ଟ କରେ । 'ରସିକ ହାରାବଳୀ'ରେ ନାୟିକାଗତ ପୂର୍ବରାଗର ପରିସର ସୀମିତ ଏବଂ ସାକ୍ଷାତ ଦର୍ଶନ[୨୭] ଓ ବିବାହ ଆୟୋଜନ [୨୮]—ଏପରି ଦୁଇଟି ସ୍ଥଳରେ ନାରୀର ହୃଦ୍‌ଗତ ଭାବ ସ୍ୱାଭାବିକ ରୀତିରେ ପ୍ରକାଶିତ । 'ସୁବର୍ଣ୍ଣରେଖା'ର ନାୟିକା ଚରିତ୍ରରେ ପୂର୍ବରାଗ ବିଧାନକୁ ସମ୍ପୂର୍ଣ୍ଣ ରୂପେ ଉପେକ୍ଷା କରାଯାଇଛି । କିନ୍ତୁ 'ସୁଭଦ୍ରା ପରିଣୟ' କିଞ୍ଚିତ୍ ବୈଚିତ୍ର୍ୟଧର୍ମୀ । ନାୟିକା ସୁଭଦ୍ରା ପ୍ରଥମ ଦର୍ଶନରେ ନିଜକୁ ନାୟକ ନିକଟରେ ସମ୍ପୂର୍ଣ୍ଣ ସମର୍ପଣ କରି ଦେଇଛନ୍ତି । ଏକଦା ଗର୍ଜ୍ଜିର ଘନ

ଅନ୍ଧକାରରେ ଅଭିସାରିକା ସାଜି ସେ ପ୍ରିୟତମର ଦ୍ୱାରଦେଶରେ ଉପଗତା । ନାୟକର ନିଷ୍ଠୁର ପ୍ରତ୍ୟାଖ୍ୟାନ କିନ୍ତୁ ତାଙ୍କୁ ବିଚଳିତ କରି ପାରିନାହିଁ । ରତି ଦେବୀଙ୍କ ଠାରୁ ମନ୍ତ୍ରବିଦ୍ୟା ଶିକ୍ଷାକରି ସେ ଅର୍ଜୁନଙ୍କ ଔଦ୍ଧତ୍ୟକୁ ବଶୀଭୂତ କରିବାରେ ସଫଳତା ହାସଲ କରିଛନ୍ତି । ଏହି କାବ୍ୟରେ ନାୟିକାର ବିରହଦଶା ଚିତ୍ରଣ ଏକାନ୍ତ ଗତାନୁଗତିକ ।[୨୯] 'କଳାକଉତୁକ'ର ନାୟିକା ଚନ୍ଦ୍ରାବଳୀଙ୍କର ଯମୁନା-ସ୍ନାନାନ୍ତ-ପ୍ରତ୍ୟାବର୍ତ୍ତନ ପଥରେ ଶ୍ରୀକୃଷ୍ଣଙ୍କ ସହ ସାକ୍ଷାତ ହୁଏ । ଅଶେଷ ଉତ୍‌କଣ୍ଠାର ସହ ସେ ସେହି ଶିଖିପୁଚ୍ଛଧାରୀ ଶ୍ୟାମକାନ୍ତିମୟ ପରମ ରମଣୀୟ ପୁରୁଷର ପରିଚୟ ସଖୀଠାରୁ ଜାଣିବାକୁ ଚାହିଁଛନ୍ତି ।[୩୦] ଉପବନରେ ନାୟକ ନାୟିକା ଦୁହେଁ ପରସ୍ପର ସାକ୍ଷାତ ଦର୍ଶନ ଲଭକରି ଅନୁରାଗ-ବିହ୍ୱଳିତ । କାବ୍ୟର ଗଠନ କୌଶଳ (ଆଦ୍ୟ ପ୍ରାନ୍ତ 'କ') ପ୍ରତି କବି ବିଶେଷ ସଚେତନ ଥିବାରୁ ଭାବର ମୁକ୍ତ ବିଚରଣ ଲାଗି ସୀମା ନିର୍ଦ୍ଦିଷ୍ଟ ହୋଇଯାଇଛି । ସୁତରାଂ ପୂର୍ବରାଗର ରୂପଛଟା କିଂଚିତ୍ ମଳିନ ହେବା ସ୍ୱାଭାବିକ ।

'ଛାନ୍ଦ ଭୂଷଣ'ରେ ଗୋପାଙ୍ଗନାମାନଙ୍କ ପୂର୍ବରାଗର ସରସ ବର୍ଣ୍ଣନା ପ୍ରଦତ୍ତ ।[୩୧] ଉପରୋକ୍ତ ଆଲୋଚନାରୁ ଭଞ୍ଜୀୟ କାବ୍ୟୋଲ୍ଲିଖିତ ନାୟିକାଗତ ପୂର୍ବରାଗର୍ ଗୌରବ ଓ ଅଗୌରବ ସହଜରେ ଉପଲବ୍ଧି କରଯାଇପାରେ ।

ଅଭିମନ୍ୟୁଙ୍କ 'ବିଦଗ୍ଧ ଚିନ୍ତାମଣି' ବୈଷ୍ଣବ ଅଳଙ୍କାର ଶାସ୍ତ୍ରାନୁସରଣରେ ରଚିତ ହୋଇଥିବାରୁ ଏଥିରେ ପୂର୍ବରାଗର ବିଭିନ୍ନ ପର୍ଯ୍ୟାୟ ସୁଦୀର୍ଘାୟିତ । କାବ୍ୟରେ ମୁଖ୍ୟତଃ ରାଧା ଓ ଚନ୍ଦ୍ରାବଳୀ ଯଥାକ୍ରମେ ନାୟିକା ଓ ଉପନାୟିକା ରୂପେ ଶୃଙ୍ଗାର ବିଳାସରେ ଅଂଶ ଗ୍ରହଣ କରିଛନ୍ତି । ଚନ୍ଦ୍ରାବଳୀର ପୂର୍ବରାଗ ପ୍ରସଙ୍ଗ ସାକ୍ଷାତ ଦର୍ଶନରୁ ଆରମ୍ଭ ହୋଇ ଦୂତୀ ପ୍ରେରଣ, ଚିଟାଉ ଆଦାନ ପ୍ରଦାନ, ସଙ୍କେତ ସ୍ଥଳକୁ ଗମନ ତଥା ନାୟକର ଧୃଷ୍ଟ ଓ କେଳିବିଳାସ ଆୟୋଜନରେ ପରିସମାପ୍ତ । କିନ୍ତୁ ରାଧାଙ୍କର ଶ୍ରୀକୃଷ୍ଣ ପ୍ରାପ୍ତି ଦୀର୍ଘପଥ ଅତିକ୍ରମ ପରେ ସମ୍ଭବ ହୋଇଅଛି । ନାମ ଶ୍ରବଣ, ରୂପ ଦର୍ଶନ, ଦୂତୀ କଥନ, .ସାକ୍ଷାତ ଦର୍ଶନ, ପତ୍ରିକା ପ୍ରଦାନ, ସୂର୍ଯ୍ୟପୂଜା

ଅଭିସାର, ସଙ୍କେତ "ଅଭିସାର ଆଦି ବିବିଧ ପର୍ଯ୍ୟାୟ ଏହି ପ୍ରସଙ୍ଗରେ ଅନ୍ତର୍ଗତ । ଏଥିରେ ଶାସ୍ତ୍ରୀୟତା ଓ କାବ୍ୟ ଐଶ୍ୱର୍ଯ୍ୟର ସଫଳ ରୂପାୟନ ଦେଖିବାକୁ ମିଳେ । ପ୍ରେମରେ ତ୍ୟାଗ ଭାବନା ବୈଷ୍ଣବ କାବ୍ୟର ଗୌରବମୟ ସମ୍ପଦ । ଅଭିମନ୍ୟୁଙ୍କ ଲେଖନୀରେ ତାହାର ମନୋଜ୍ଞଚିତ୍ର ଅଙ୍କିତ । ଶ୍ରୀକୃଷ୍ଣଙ୍କ ବିରହରେ ରାଧା ଯେପରି ମୃତ୍ୟୁର ଦ୍ୱାରଦେଶରେ ! ପ୍ରିୟତମର ଗତିପଥରେ ନିଜର ମୃତ ଶରୀରକୁ ପୋତିଦେବା ନିମନ୍ତେ ସଖୀମାନଙ୍କ ନିକଟରେ ତାଙ୍କର ସବିନୟ ଅନୁରୋଧ ଏଠାରେ ଏକାନ୍ତ ଭାବଗର୍ଭିଁକ ଓ ପ୍ରୀତି ବ୍ୟଞ୍ଜକ ।[୩୨] ସେହିପରି ପ୍ରିୟ ଅଭାବରେ କୁଳ,ମାନ, ଲଜ୍ଜା ତ୍ୟାଗ ପୂର୍ବକ ରାଧାଙ୍କର ଭିଖାରୁଣୀ ବେଶଧାରଣ ଭାବନା ତାଙ୍କ ବିଦଗ୍ଧପ୍ରାଣର ଅକୃତ୍ରିମ ପରିଚୟ ।[୩୩] ରୀତି କାବ୍ୟର ଆଦର୍ଶ ଭିତ୍ତିରେ 'ବିଦଗ୍ଧ ଚିନ୍ତାମଣି'ର ସୃଷ୍ଟି ପରିକଳ୍ପନା ବିକଶିତ ହୋଇଥିଲେ ହେଁ ଶ୍ରୀରାଧା ଚରିତ୍ରର ମହନୀୟତା ଅକ୍ଷୁଣ୍ଣ ରଖିବାକୁ କବି ପ୍ରଶଂସନୀୟ ପ୍ରୟାସ କରିଅଛନ୍ତି । ସ୍ୱପ୍ନ ଦର୍ଶନ ଓ ସ୍ୱପ୍ନାନ୍ତର ବିଳାପ ପ୍ରସଙ୍ଗ ପରି ଅନେକତ୍ର ଉପେନ୍ଦ୍ର ଭଞ୍ଜଙ୍କ ପ୍ରଭାବ ସୁସ୍ପଷ୍ଟ ।

ବ୍ରଜନାଥ ବଡ଼ଜେନାଙ୍କ 'କେଳି କଳାନିଧି' ଉପେନ୍ଦ୍ରଙ୍କ 'ପ୍ରେମ ସୁଧାନିଧି' ଅନୁସରଣରେ ରଚିତ । ସୁତରାଂ କାବ୍ୟଟିରେ ବିଶେଷ ମୌଳିକତା ପରିଦୃଷ୍ଟ ହୁଏନାହିଁ । କବିଙ୍କ 'ଶ୍ୟାମରସୋତ୍ସବ'ରେ ନାୟକର ବଂଶୀଧ୍ୱନି ଶ୍ରବଣ ହେତୁକ ଗୋପାଙ୍ଗନାମାନଙ୍କ ଆକୁଳ ବ୍ୟାକୁଳ ବେଶ ଭୂଷଣର ସ୍ୱଦର ଚିତ୍ର ସେପରି ହୃଦୟଗ୍ରାହୀ ନୁହେଁ ।[୩୮] ତାଙ୍କ 'ଅମ୍ବିକା ବିଳାସ'ରେ ନାୟିକାର ସ୍ୱପ୍ନ ଦର୍ଶନ, ବିରହପୀଡ଼ା ଓ ଉପଚାର ବିଧିର ବର୍ଣ୍ଣନା ଶବ୍ଦ-କୌଶଳ ପ୍ରଧାନ ଓ ରସସୌନ୍ଦର୍ଯ୍ୟ ବିହୀନ ।[୩୫]

କବିସୂର୍ଯ୍ୟଙ୍କ 'ଚନ୍ଦ୍ରକଳା' ଭଞ୍ଜଙ୍କ 'ଲାବଣ୍ୟବତୀ' ଦ୍ୱାରା ବିଶେଷ ଭାବେ ପ୍ରଭାବିତ । ତେଣୁ ଇନ୍ଦ୍ରଜାଲ, ସ୍ୱପ୍ନ ଦର୍ଶନ, ପତ୍ରିକା ଆଦାନପ୍ରଦାନ ଆଦି କ୍ରମରେ ବର୍ଣ୍ଣିତ ନାୟିକାର ପୂର୍ବରାଗ ଚିତ୍ର ବୈଚିତ୍ର୍ୟହୀନ ମନେହୁଏ ।[୩୬] କିନ୍ତୁ କବିଙ୍କ "ଚମ୍ପୂ'କାବ୍ୟର ସଫଳତା ଅତୁଳନୀୟ । ପ୍ରଥମ ଦର୍ଶନରେ କିଶୋରୀ ରାଧାଙ୍କ ପ୍ରାଣ କୃଷ୍ଣଙ୍କ ପ୍ରତି ଅନୁରାଗମୟ ହୋଇ ଉଠିଛି ।

ଲଳିତା ସହ ଉକ୍ତି ପ୍ରତ୍ୟୁକ୍ତିରେ ତାଙ୍କ ପ୍ରଣୟ ପିପାସାର ଯେଉଁ ସ୍ୱଚ୍ଛଚିତ୍ର ଅଙ୍କିତ ତାହା ଯେ କୌଣସି ଆଦ୍ୟ ଯୌବନା ନାରୀ ହୃଦୟର ଅନାବିଳ ପରିଚୟ । ଏ ପ୍ରସଙ୍ଗରେ ଅଧ୍ୟାପକ ଦାଶରଥି ଦାସଙ୍କ ମନ୍ତବ୍ୟ ଯଥାର୍ଥ । "ଯୌବନର ସଦ୍ୟ ଅବ୍ୟକ୍ତ ଉନ୍ମାଦନାରେ ପୁରୁଷ ସହିତ ମିଳିତ ହେବାକୁ ନାରୀ ପ୍ରାଣରେ ଯେଉଁ ସୁନ୍ଦର, ମଧୁର, କୋମଳ କୌତୂହଳ ଜାଗେ, ସେଇ କୌତୂହଳହିଁ 'ଚମ୍ପୂ'କାବ୍ୟର ସଙ୍ଗୀତ ସୃଷ୍ଟି । ଚମ୍ପୂର କିଶୋରୀ ରାଧା ପୂର୍ବରାଗର ରାଧା" ।[୩୭] କିନ୍ତୁ 'କ' ଗୀତରେ 'କବି ଉଭରତି କଥାଟି ଉଲ୍ଲେଖ କରି ରସ ଓ ସୌନ୍ଦର୍ଯ୍ୟଦୃଷ୍ଟିକୁ କିଂଚିତ୍ ଆଘାତ ଦେଇଥିଲ ପରି ମନେହୁଏ ।[୩୮]

ଯଦୁମଣିଙ୍କ 'ପ୍ରବଂଧ ପୂର୍ଣ୍ଣଚନ୍ଦ୍ର'ର ନାୟିକା ରୁକ୍ମିଣୀ ଅନ୍ତଃପୁର ଅବରୋଧରେ ଥାଇ ଭାଟ ମୁଖରୁ ନାୟକ ଶ୍ରୀକୃଷ୍ଣଙ୍କ ଗୁଣଗରିମା ଶ୍ରବଣ କରି ଏକାନ୍ତ ଉଲ୍ଲସିତା । ବନବିହାର କାଳରେ ନାରଦଙ୍କଠାରୁ ପୁନଶ୍ଚ ପ୍ରିୟ ପୁରୁଷର ଗୌରବ କାହାଣୀ ଅବଗତି କ୍ରମେ ହୃଦୟ ତାଙ୍କର ପ୍ରଣୟ ପିପାସାରେ ଉଦ୍‌ବେଳିତ । କିନ୍ତୁ ସ୍ୱୟଂବର ସଭାରେ ଶ୍ରୀକୃଷ୍ଣଙ୍କ ଅନୁପସ୍ଥିତି ହେତୁ ପ୍ରୀତି ଜର୍ଜରିତା ରୁକ୍ମିଣୀଙ୍କ ପତ୍ର ଘେନି ଜନୈକ ବ୍ରାହ୍ମଣ ଦ୍ୱାରକାପୁରୀ ଯାତ୍ରା କରିଛି । ସେଠାରେ ଉପସ୍ଥାପିତ ନାୟିକାବିରହ ଦଶାର ଚିତ୍ର ସମ୍ପୂର୍ଣ୍ଣ ରୀତିଧର୍ମୀ । ଗଠନ କଳା ଉପରେ ଅତ୍ୟଧିକ ଗୁରୁତ୍ୱ ଆରୋପ କରାଯାଇଥିବାରୁ ନାୟିକା ହୃଦୟର ପୂର୍ବରାଗ ଅନୁଭବ ଯଥୋଚିତ ଭାବରେ ରୂପାୟିତ ହୋଇ ପାରିନାହିଁ ।[୩୯] କବିଙ୍କ 'ରାଘବ ବିଳାସ'ରେ ଏହି ପ୍ରସଙ୍ଗ ଗୌରବହୀନ ।

## ଶେଷକଥା-

ଆଲୋଚନାରୁ ଜଣାପାଏ ଯେ ଓଡ଼ିଆ ରୀତି କାବ୍ୟର ଆଦି ପର୍ଯ୍ୟାୟଭୁକ୍ତ ନାୟିକା-ପୂର୍ବରାଗ ପ୍ରସଂଗ ସରଳ ଭାଷାରୀତି, ସଂକ୍ଷିପ୍ତ ସୁନ୍ଦର ଭାବଚେତନା ଏବଂ ଅନ୍ତରଙ୍ଗ ମାନସିକ ଅବସ୍ଥାର ପରିଚୟ ବହନ କରେ ।

ପରବର୍ତ୍ତୀ ପର୍ଯ୍ୟାୟରେ (ଧନଞ୍ଜୟ, ଉପେନ୍ଦ୍ର, ଅଭିମନ୍ୟୁ ପ୍ରଭୃତି) ସଂସ୍କୃତ କାବ୍ୟର ପ୍ରଭବ, ଅଳଂକାର ଶାସ୍ତ୍ର ପ୍ରତି ଆନୁଗତ୍ୟ ଓ ଦରବାରୀ ରସ-ଗ୍ରାହିତାର ପ୍ରାଧାନ୍ୟ ପରିଲକ୍ଷିତ । ଅନ୍ତିମ ପର୍ଯ୍ୟାୟରେ (ବ୍ରଜନାଥ, କବିସୂର୍ଯ୍ୟ, ଯଦୁମଣୀ ପ୍ରଭୃତି) ଉପେନ୍ଦ୍ରଙ୍କ କାବ୍ୟର ଅନୁକୃତି, ଗଠନ କଳା ନିଷ୍ଠତା ଓ ଶବ୍ଦାଡ଼ମ୍ବରପ୍ରିୟତା ବିଶେଷ ଭବେ ଲକ୍ଷ୍ୟଣୀୟ ।

ପୂର୍ବରାଗ (ନାୟକ):—

ଅର୍ଜ୍ଜୁନ ଦାସଙ୍କ 'କଳ୍ପଲତା' କାବ୍ୟର ନାୟକ ଅମରଶେଖର ଜାତିସ୍ମରତ୍ କାରଣରୁ ରାଜକୁମାରୀ କଳ୍ପଲତାକୁ ବିବାହ କରିବା ନିମିତ୍ତ ସଙ୍କଳ୍ପବଦ୍ଧ । କିନ୍ତୁ ପିତା ଅନ୍ୟ ଏକ ରୂପବତୀ ରାଜକନ୍ୟା ସହ ତାଙ୍କର ବିବାହ ଆୟୋଜନ କରୁଥିବା ଦେଖି ସେ ସଖା ମନ୍ତ୍ରୀପୁତ୍ରଙ୍କ ସହ ଗୋପନରେ ବୈଦୂର୍ଯ୍ୟଗିରିକୁ ପଳାୟନ କରନ୍ତି । ସେଠାରେ ସର୍ବଜ୍ଞାନୀ ଯୋଗୀ ସର୍ବେଶ୍ୱରଙ୍କଠାରୁ ନାୟିକାର ସକଳ ବୃତ୍ତାନ୍ତ ଶ୍ରବଣ କରି ବିରହ ପୀଡ଼ାରେ ତାଙ୍କର ଚେତନା ଲୋପ ପାଏ ।[୮୦] ସେହି ସ୍ଥାନରେ ଉପସ୍ଥିତ ଜଙ୍ଗମଠାରୁ ଅମରଶେଖରର ନାୟିକା-ଚିତ୍ରପଟ ଦର୍ଶନ ଏବଂ ଯୋଗୀଙ୍କଠାରୁ ମୃତ୍ୟୁଞ୍ଜୟ ମନ୍ତ୍ର ଗ୍ରହଣ, କଳ୍ପଲତାର ଆତ୍ମହତ୍ୟା, ମୃତ୍ୟୁଞ୍ଜୟ ମନ୍ତ୍ର ବଳରେ ତା'ର ପୁନର୍ଜୀବନ ଲାଭ ତଥା ନାୟକ ନାୟିକାଙ୍କ ମିଳନ ପ୍ରସଙ୍ଗର ଅବତାରଣା ଯେପରି କରୁଣ ସେହିପରି ମଧୁର । ନାୟକ ଚରିତ୍ରରେ ପୂର୍ବରାଗର ସମାବେଶ ସଂକ୍ଷିପ୍ତ ହେଲେ ହେଁ ରୁଚିଶୀଳ ।

ପାର୍ଥ ଶ୍ରୀଚନ୍ଦନଙ୍କ 'କଳାବତୀ' କାବ୍ୟରେ ନାୟିକାର ରୂପମୁଗ୍ଧ ବ୍ରାହ୍ମଣ ତାହାର ଚିତ୍ରପଟ ଧାରଣ କରି ଦେଶାନ୍ତର ଭ୍ରମଣ କରିବା ଏବଂ ନାୟକ ସେହି ପଟ ଦର୍ଶନ କରି କାମ ବିହ୍ୱଳିତ ହେବା ଉଲ୍ଲିଖିତ ।[୮୧] ମନ୍ତ୍ରବଳରେ ରାଜକୁମାରର ନାୟିକାଅନ୍ତଃପୁରକୁ ଆଗମନ ଏବଂ ଦୁହିଙ୍କର ଗୋପନ ମିଳନ ପ୍ରସଙ୍ଗ ନୀରସ ଓ ବୈଚିତ୍ର୍ୟହୀନ ।

ନରସିଂହ ସେଣଙ୍କ 'ପରିମଳା'ର ନାୟକ ମକରକେତୁ ଗୁରଦ୍ୱାରା ଆନୀତ ନାୟିକା—ଚିତ୍ରପଟ ଦର୍ଶନ କରି କାମ ପୀଡ଼ିତ ।[୮୨] ଉଭୟଙ୍କ

ମଧ୍ୟରେ ଯଥାବିଧି ବିବାହ ସମ୍ପାଦିତ ହୋଇଥିଲେ ହେଁ ମର୍ତ୍ତ୍ୟଯୁବକକୁ ରତିଦାନ ନ କରିବା ନିମିତ୍ତ ପ୍ରେମିକ ଗନ୍ଧର୍ବ ସହ ପରିମଳା ସତ୍ୟାନୁବଦ୍ଧା । ସୁତରାଂ ନାୟକ ନାୟିକା ଦୁହେଁ ଦାମ୍ପତ୍ୟ ସଂଭୋଗ ସୁଖରୁ ବଞ୍ଚିତ ।[୪୩] ସମୟକ୍ରମେ ମକରକେତୁ ଆଲୌକିକ ସାଧନା ବଳରେ ପରିମଳାର ସୁରତିଲାଭ କରିବାକୁ ସମର୍ଥ ହୋଇଅଛି । ଓଡ଼ିଆ ରୀତିକାବ୍ୟ ପରମ୍ପରାରେ 'ପରିମଳା' କାବ୍ୟ-ନାୟକର ପୂର୍ବରାଗ ପ୍ରସଙ୍ଗ ଯେପରି ଶୃଙ୍ଗାରସିକ୍ତ, ତା'ର ଚରିତ୍ରିକ ବୈଚିତ୍ର୍ୟ ସେହିପରି ସମ୍ପୂର୍ଣ୍ଣ ଅଭିନବ ।

ବିଷ୍ଣୁଦାସଙ୍କ 'ପ୍ରେମଲୋଚନା'ର ନାୟକ ସୁଧାକର ବସନ୍ତୋତ୍ସବ ପାଳନରତା ନାୟିକାର ସାକ୍ଷାତ ଦର୍ଶନ ଲାଭ କରି ପ୍ରୀତି-ଗଦ୍‌ଗଦ ।[୪୪] ହଂସୀଠାରୁ ତାହାର ରୂପ ଓ ଗୁଣର ବିଶଦ ବିବରଣ ଶ୍ରବଣ କରି ତାହାକୁ ପାଇବା ପାଇଁ ସେ କୃତସଙ୍କଳ୍ପ । ନାୟକର ମୁଦ୍ରିକା ଓ ବିନୟ ପତ୍ରିକା ଘେନି ହଂସୀର ନାୟିକା ନିକଟକୁ ଯାତ୍ରାଠାରୁ ସ୍ୱୟଂବର ଓ ମଧୁଶଯ୍ୟା ବିଧାନ ପର୍ଯ୍ୟନ୍ତ ପୂର୍ବରାଗ ପର୍ଯ୍ୟାୟ ଗତାନୁଗତିକ ହେଲେ ହେଁ ଆଲୌକିକତା ଓ ସରସତା ବିମଣ୍ଡିତ ।

ପ୍ରତାପ ରାୟଙ୍କ "ଶଶିସେଣା" କାବ୍ୟର ନାୟକ ଓ ନାୟିକା ଅନନ୍ତସିଦ୍ଧ ମୁନିଙ୍କ ପାଠଶାଳାରେ ବିଦ୍ୟାଧ୍ୟୟନ କରୁଥିବା ବେଳେ ପରସ୍ପର ପ୍ରତି ଆକୃଷ୍ଟ ହୁଅନ୍ତି ।[୪୫] ଘଟଣାକ୍ରମେ ଅହିମାଣିକ୍ୟର ପ୍ରୀତି ପ୍ରସ୍ତାବରେ ଶଶିସେଣା ଅଙ୍ଗୀକାରବଦ୍ଧ । ଗୁରୁଙ୍କ ଆଶୀର୍ବାଦ ଓ ପୌରହିତ୍ୟରେ ଦୁହିଙ୍କର ବିବାହ ଯଥାରୀତି ସଂପାଦିତ ଏବଂ ପୁଷ୍ପବନରେ ସେମାନଙ୍କର ନିଶି ମିଳନ ସଙ୍ଘଟିତ । କୈଶୋର ଅନୁରାଗର ନିରାଡ଼ମ୍ବର ରୂପରାଗ ରଚନାରେ କବି ବିଶେଷ ନୈପୁଣ୍ୟ ପ୍ରଦର୍ଶନ କରିଛନ୍ତି । ବନମାଳୀ ଦାସଙ୍କ 'ଚ୍ଛଟ ଇଚ୍ଛାବତୀ' ଓ ଧନଞ୍ଜୟ ଭଞ୍ଜଙ୍କ 'ଇଚ୍ଛାବତୀ'ରେ ଏହି ପ୍ରସଙ୍ଗ କିଂଚିତ୍ ଭିନ୍ନଭାବରେ ରୂପାୟିତ । ନିର୍ଜନ ପୁଷ୍ପୋଦ୍ୟାନରେ ନାୟକ ଚ୍ଛତ୍ରବ୍ରହ୍ମଙ୍କ କାମପୀଡ଼ା ଓ ପୁଷ୍ପବତୀ ନାୟିକା ସହ ସମ୍ଭୋଗ ବିଳାସ ଯେପରି ରସସିକ୍ତ ନାୟକ ମଧୁକର ପକ୍ଷରେ ଅରକ୍ଷୋବତୀ ନାୟିକାର ଅଙ୍ଗଶୋଭା ଦର୍ଶନ ବ

ତାହାଠାରୁ ବରଣମାଳା ଲଭ ସେହିପରି ପ୍ରାସଙ୍ଗିକ । ନାୟକର ପୂର୍ବରାଗ ଚିତ୍ରଣରେ କବି ବନମାଳୀ ଉଚ୍ଚ ପ୍ରତିଷ୍ଠାର ଅଧିକାରୀ ।[୫୬] କିନ୍ତୁ ଏ କ୍ଷେତ୍ରରେ ଧନଞ୍ଜୟଙ୍କ ପ୍ରୟାସ ରୀତିଧର୍ମୀ, ବିସ୍ତୃତ ଓ ସମ୍ପ୍ରସାରିତ ।[୫୭]

ଉପେନ୍ଦ୍ରଙ୍କ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ର ନାୟକ ଜନୈକ କବିଠାରୁ ନାୟିକା ବୃତ୍ତାନ୍ତ ଶ୍ରବଣ କରି ତାହା ବିଷୟରେ ଅଧିକରୁ ଅଧିକ ଜାଣିବା ପାଇଁ ଲଳାୟିତ ।[୫୮] ମାୟାଜାଲ ବଳରେ ପରସ୍ପର ସାକ୍ଷାତ ଦର୍ଶନ, ଚିଟାଉ ଆଦାନ ପ୍ରଦାନ, ସ୍ୱୟଂବର ଓ ଚିତ୍ରମୃଗର ଶ୍ରମର ଛେଦନ କ୍ରମେ ଦୁହିଁଙ୍କର ମଧୁଶଯ୍ୟା ବର୍ଣ୍ଣନା କାବ୍ୟର ବିପୁଳ ଅଂଶ ଅଧିକାର କରିଅଛି । ପୁରୁଷର ପ୍ରେମାନୁରାଗ ଚିତ୍ରଣ ଏଠାରେ ଶାସ୍ତ୍ରରୀତି ସମ୍ମତ । ଏ କ୍ଷେତ୍ରରେ ହୃଦୟ ବିକାଶର ଗୌରବ ସୀମିତ । କିନ୍ତୁ 'ଲାବଣ୍ୟବତୀ'ରେ ଏହି ପ୍ରସଂଗ ଭାଷା ବିନ୍ୟାସ ଓ ଭାବ ବିଭବ ଦୃଷ୍ଟିରୁ ଅତ୍ୟନ୍ତ ସରସ । ବୋଇତିଆଳର ନାୟିକା ପ୍ରଶସ୍ତି, ସନ୍ନ୍ୟାସୀର ଚିତ୍ରପଟ ପ୍ରଦର୍ଶନ, ସ୍ୱପ୍ନ ଦର୍ଶନ, ବ୍ରହ୍ମଚାରୀ ହସ୍ତରେ ପତ୍ରିକା ପ୍ରେରଣ, ରାମେଶ୍ୱର ଦେବ ମନ୍ଦିରରେ ସାକ୍ଷାତ ଦର୍ଶନ, ବିବାହ ପ୍ରସ୍ତାବ ଓ ଜାତକମେଳ, ବିବାହ ଓ ମଧୁଶଯ୍ୟା ବିଧି ବର୍ଣ୍ଣନାରେ ନାୟକର ପ୍ରଣୟ ଜୀବନ ରୂପାୟିତ । ତାହାର ପୂର୍ବରାଗ ପ୍ରସଙ୍ଗରେ ନାୟିକା ପ୍ରତି ଅତ୍ୟଧିକ ଆସକ୍ତି ସୁସ୍ପଷ୍ଟ ।[୫୯]

କବିଙ୍କ 'ପ୍ରେମ ସୁଧାନିଧି' କାବ୍ୟରେ କାମପୀଡ଼ିତ 'ନାୟକର ନାୟିକା-ଭାବନା ମଧ୍ୟଯୁଗୀୟ ପ୍ରୀତି ଆଦର୍ଶ ରସାଣିତ ।[୬୦] ଅରକ୍ଷୋବତୀ କନ୍ୟା ବିବାହ ଏଠାରେ ପୂର୍ବରାଗ ବିପ୍ରଲମ୍ଭର ହେତୁ । 'ରସିକ ହାରବଳୀ'ରେ ନାୟକ କୋଶଳ ରାଜକୁମାର ଦ୍ୱିଜମୁଖରୁ ନାୟିକା ଚରିତ ଶ୍ରବଣ କରି ତାହାର ପ୍ରୀତିବଶ ହୋଇଥିବା ବର୍ଣ୍ଣିତ । [୬୧] ଶ୍ରୀକ୍ଷେତ୍ରରେ ଚନ୍ଦନ ଯାତ୍ରା ଦର୍ଶନ ଅନନ୍ତର ପ୍ରତ୍ୟାବର୍ତ୍ତନ ପଥରେ ରାଜପୁତ୍ରର ନାୟିକା ସହ ସାକ୍ଷାତ ଓ ବିରହ ଆତୁରତା ଏଠାରେ ଉଲ୍ଲେଖଯୋଗ୍ୟ । 'ସୁଭଦ୍ରା ପରିଣୟ'ରେ ମନ୍ତ୍ରୌଷଧି ବଶୀଭୂତ ନାୟକର ବିରହାନୁଚିନ୍ତା ଆଳଂକାରିକ ଚମତ୍କାରିତା ବିଭୂଷିତ ।[୬୨] ନାୟକ-ପୂର୍ବରାଗ ଅଙ୍କନରେ 'ରସଲେଖା' ଅନନ୍ୟ ଗୌରବର ଅଧିକାରୀ । ଏଥିରେ ପ୍ରୀତି ବିଗଳିତ ପୁରୁଷର ହୃଦୟ ଚିତ୍ର ଅତୀବ

ରସାଳ ।[୬୩] ସ୍ୱପ୍ନରେ ରାଜକୁମାରୀର ଦର୍ଶନ ଲାଭ, ଅମ୍ବିକା ପ୍ରସାଦରୁ ଅରଣ୍ୟରେ ପରସ୍ପର ସାକ୍ଷାତ, କେତକୀ ଦଳରେ ପ୍ରିୟତମା ନିକଟକୁ ପତ୍ର ପ୍ରେରଣ, ନିଶାର୍ଦ୍ଧରେ ସଙ୍ଗୀତ ଗାନ ପୂର୍ବକ ନାୟିକାର ମନୋହରଣ ଇତ୍ୟାଦି ମନୋରମ ପରିକଳ୍ପନା ନାୟକ ଚରିତ୍ରକୁ ଶୃଙ୍ଗାରସିକ୍ତ ମହିମା ପ୍ରଦାନ କରିଛି ।

ଅଭିମନ୍ୟୁଙ୍କ 'ବିଦଗ୍ଧ ଚିନ୍ତାମଣି'ରେ ଚନ୍ଦ୍ରାବଳୀ ସଂଭୋଗ ସଂପର୍କିତ ଶ୍ରୀକୃଷ୍ଣଙ୍କ ପୂର୍ବରାଗ ପ୍ରସଂଗ ସଂକ୍ଷିପ୍ତ ହେଲେ ହେଁ ରସୋତ୍ତୀର୍ଣ୍ଣ । ସାକ୍ଷାତ ଦର୍ଶନ, ଚିଟାଉ ପ୍ରେରଣ, ସଖୀ ନିବେଦନ, ଅଭିସାର ଓ ଘଟୁ ଇତ୍ୟାଦି ରୀତିକାବ୍ୟର ନାୟକ-ପରମ୍ପରା ଧାରାରେ ପରିକଳ୍ପିତ । ନାରୀର ପ୍ରୀତି ବିନିମୟରେ ତା'ର ଦାସତ୍ୱ ବରଣ କରିବାକୁ ପୁରୁଷ ଏଠାରେ ଅକୁଣ୍ଠିତ ଚିତ୍ତ ।[୬୪] ପ୍ରେମ ଅନ୍ତର୍ଗତ ରାଧା ମିଳନ ବୃତ୍ତାନ୍ତ ଅତ୍ୟନ୍ତ ଦୀର୍ଘ ଓ ନାନାବିଧ କଷ୍ଟ କଳ୍ପନା ସମୃଦ୍ଧ । ପୂର୍ବରାଗର ସକଳ ବିଭବ (ନାମଶ୍ରବଣ, ସ୍ୱପ୍ନ ଦର୍ଶନ ଆଦି) ଏଥିରେ ସୁବିନ୍ୟସ୍ତ । ସ୍ଥଳ ବିଶେଷରେ ନାୟିକାନୁରକ୍ତିର ଚିତ୍ର ଆଦର୍ଶ ସ୍ଥାନୀୟ ହେଲେ ହେଁ ଭଞ୍ଜୀୟ ପ୍ରଭାବରୁ ମୁକ୍ତ ନୁହେଁ ।[୬୫] କାବ୍ୟ ବର୍ଣ୍ଣିତ ଶ୍ରୀକୃଷ୍ଣଙ୍କ ବିରହ ପୀଡ଼ା ଓ ନାନାବିଧ କପଟ ବେଶ ଧାରଣ ଭକ୍ତି ପରମ୍ପରା ସମର୍ଥିତ । ମାତ୍ର ନାୟକ ଚରିତ୍ରର ଉତ୍କର୍ଷ ଏ କ୍ଷେତ୍ରରେ କିଞ୍ଚିତ୍ ବ୍ୟାହତ ହୋଇଥିଲା ପରି ମନେହୁଏ ।

## ଶେଷକଥା–

ଓଡ଼ିଆ ରୀତି କାବ୍ୟର ନାୟିକା ଚରିତ୍ରରେ ପୂର୍ବରାଗର ଯେଉଁ ବିପୁଳ ବିଭବ ପରିଲକ୍ଷିତ ତାହା ନାୟକ ଚରିତ୍ରରେ ଅଲଭ୍ୟ । ବହୁ କାବ୍ୟରେ ଏହା ସଂପୂର୍ଣ୍ଣ ଉପେକ୍ଷିତ । କାଳ୍ପନିକ ଓ ପୌରାଣିକ ଉଭୟବିଧ କାବ୍ୟରେ ପ୍ରୀତି ବିକଶିତ ପୁରୁଷ ହୃଦୟର ଅକୃତ୍ରିମତା ପ୍ରାୟତଃ ପରମ୍ପରାର ବ୍ୟୂହ ଭେଦ କରିବାକୁ ଅସମର୍ଥ ।

## ବିରହ–

ନାୟିକାକୁ ସମ୍ମତି ପ୍ରଦାନ କରି କୌଣସି କାରଣରୁ ନାୟକ ଅନୁପସ୍ଥିତ ରହିଲେ ତାହା ବିରହ ବିପ୍ରଲମ୍ଭ ନାମରେ ଖ୍ୟାତ ।[୬୬] ଅଧିକାଂଶ ଓଡ଼ିଆ

ରୀତିକାବ୍ୟ ସ୍ୱକୀୟା ପ୍ରଧାନ ହୋଇଥିବାରୁ ଏହି ଶ୍ରେଣୀର ଦୃଷ୍ଟାନ୍ତ ପ୍ରାୟ ବିରଳ । ପରକୀୟା ପ୍ରଧାନ କାବ୍ୟରେ ଏହାର ଉଲ୍ଲେଖ ସ୍ୱଭବ ସୁନ୍ଦର । ବୈଷ୍ଣବ ପଦ୍ୟାବଳୀ ସାହିତ୍ୟରେ ବିରହ ବିପ୍ରଲମ୍ଭର ଯେଉଁ ରସାଳ ବର୍ଣ୍ଣନା ଦେଖାଯାଏ, ତାହା ରୀତିକାବ୍ୟରେ ଦୁର୍ଲଭ । ଜୟଦେବଙ୍କ 'ଗୀତ ଗୋବିନ୍ଦ'ରେ ଏହାର ଏକ ସୁନ୍ଦର ଉଦାହରଣ ଦେଖାଯାଏ । ଜ୍ୟୋତ୍ସ୍ନାୟିତ ମଧୁମୟୀ ବାସନ୍ତୀ ରାତ୍ରି । କଣ୍ଟକମୟ ବେତସ କୁଂଜରେ ମାଧବ-ପ୍ରତୀକ୍ଷମାଣା ରାଧା । ସଙ୍କେତ ସମୟ ଅତିକ୍ରାନ୍ତ । ପ୍ରତୀକ୍ଷାରେ ହିଁ ତାଙ୍କର ରାତ୍ରି ଯାପିତ ହୋଇଯାଇଛି ।[୬୭] ବୃନ୍ଦାବନ ଦାସଙ୍କ 'ରସବାରିଧି' କାବ୍ୟରେ ଏହି ପ୍ରସଂଗ ଅତ୍ୟନ୍ତ ରମଣୀୟ ।[୬୮] ହରିବଂଶ ରାୟଙ୍କ 'ପ୍ରେମ କଳ୍ପଲତା'ରେ ସେହିପରି ପ୍ରତାରିତା ରାଧାଙ୍କ ମନୋବେଦନାର ମନୋରମ ଚିତ୍ର ଅଙ୍କିତ ।[୬୯]

## ମାନ–

ମାନ ଦୁଇ ଭାଗରେ ବିଭକ୍ତ । ପ୍ରଣୟ ମାନ ( ବା ଅହେତୁ ) ଓ ଈର୍ଷାମାନ ( ବା ସହେତୁ ) । ନାୟିକାଠାରେ ଏହା ଦେଖାଯାଏ । ପୂର୍ବେ ଏ ବିଷୟରେ ବିଶେଷ ଆଲୋଚନା କରାଯାଇଅଛି । 'ଚୈତନ୍ୟ ଚରିତାମୃତ'ରେ କୁହାଯାଇଛି ଯେ ମାନ ହେତୁ ପ୍ରିୟାର ଭର୍ତ୍ସନା ଦେବସ୍ତୁତିଠାରୁ ଅଧିକ ପ୍ରୀତିପ୍ରଦ ।[୭୦]

## ପ୍ରଣୟ ମାନ–

ନାୟକ ପ୍ରତି ଗଭୀର ପ୍ରୀତି ଅନୁଗତ ହୋଇ ନାୟିକା ସ୍ୱାଭାବିକ ଲଜ୍ଜା, ଭୟ, ସଂକୋଚ ଆଦି କାରଣରୁ ପ୍ରଣୟ ମାନ ପୋଷଣ କରେ । ଓଡ଼ିଆ ରୀତି କାବ୍ୟରେ ଏହାର ଦୃଷ୍ଟାନ୍ତ ପ୍ରଚୁର । 'ଉଷାଭିଳାଷ'ର ନାୟକ ଅନିରୁଦ୍ଧ ସଖୀ ଚିତ୍ରଲେଖାର ମନ୍ତ୍ରବଳରେ ନାୟିକା ନିକଟରେ ଉପସ୍ଥିତ । ଉଷା ବର୍ତ୍ତମାନ ଲଜ୍ଜା ଓ ଆନନ୍ଦରେ ମାନବତୀ । ନାୟକର ଚାଟୁବାଣୀ ଶ୍ରବଣ କରି ତା'ର ସର୍ବାଙ୍ଗରେ ସାତ୍ତ୍ୱିକ ବିକାର ଫୁଟି ଉଠିଛି । ମାନର ଅବସାନ କ୍ରମେ ଦୁହେଁ ମିଳନର ମଧୁମୟ ପର୍ଯ୍ୟାୟରେ ଉପନୀତ । ଜୟଦେବଙ୍କ 'ଗୀତ ଗୋବିନ୍ଦ'ର ପ୍ରଭାବ ଏଠାରେ ସ୍ପଷ୍ଟ ।[୭୧]

'ଶଶିସେଣା' କାବ୍ୟର ନାୟିକା ପାତାଳପୁରର ଦୁଇ ରମଣୀଙ୍କ ପ୍ରରୋଚନାରେ ନାୟକର ନାମ ଜାଣିବା ପାଇଁ ମାନବତୀର ଭୂମିକାରେ ଅବତୀର୍ଣ୍ଣା । [୭୨] ନାୟକ ଅହିମାଣିକ୍ୟ ନିଜର ପ୍ରକୃତ ନାମ ଦୀର୍ଘକାଳ ଧରି ଶଶିସେଣା ନିକଟରେ ଗୋପନ କରି ରଖିଥିଲେ । କାରଣ ସେ ଜାଣିଥିଲେ ଯେ ତା'ର ନାମ ପ୍ରକାଶ କରିଦେଲେ ତାକୁ ପୁଣି ପାତାଳପୁରକୁ ଫେରିଯିବାକୁ ପଡ଼ିବ । ବିବିଧ ପ୍ରବୋଧନାରେ ସନ୍ତୁଷ୍ଟ ନହୋଇ ନାୟିକା ନିଜ ଜିଦ୍‌ରେ ଅଟଳ ରହିବାରୁ ଅହିମାଣିକ୍ୟ ସ୍ୱନାମ 'ହଳୀ' ବୋଲି ପ୍ରକାଶ କରିଦେଇ ସର୍ପ ରୂପରେ ନିଜ ରାଜ୍ୟକୁ ପ୍ରତ୍ୟାବର୍ତ୍ତନ କରିଛି । ସେଠାରେ ନାୟକର ଦୁଇପତ୍ନୀଙ୍କ ସହ ସାକ୍ଷାତକ୍ରମେ ଦୁହିଁଙ୍କ ହୃଦୟ ଗୁମ୍ଫମାନରେ ସନ୍ତପ୍ତ ।[୭୩] ନୟନରୁ ସେମାନଙ୍କର ଝରିଛି ଅବାରିତ ଅଶ୍ରୁ । ଦୀର୍ଘକାଳ ବିଚ୍ଛେଦ ପରେ ଏଇ ମିଳନ ଯେ କୌଣସି ସ୍ୱାମୀ ସୋହାଗିନୀ ନାରୀର ସ୍ୱାଭାବିକ ଦଶା ଛଡ଼ା ଆଉ କ'ଣ ହୋଇ ପାରିଥାନ୍ତା ? ନାୟକର ବିନୟୋକ୍ତି କ୍ରମେ ଏଇ ମାନ ସେମାନଙ୍କ ହୃଦୟରୁ ଅନ୍ତର୍ହିତ । ମାନ ଓ ମାନଭଂଜନର ଏ ଦୃଶ୍ୟ ଯେପରି ଅନ୍ତରଂଗ ସେହିପରି ପ୍ରୀତି ମଧୁର ।

ଉପେନ୍ଦ୍ର ଭଞ୍ଜଙ୍କ 'ପ୍ରେମ ସୁଧାନିଧି' କାବ୍ୟର ନାୟିକା ପ୍ରବାସ ପ୍ରତ୍ୟାଗତ କାନ୍ତକୁ ଦେଖି ମାନ କଳ୍ପିତା । ନାୟକର ଚାଟୁବଚନରେ ଏହା ବିଦୂରିତ ।[୭୪] ମାନ ପ୍ରସଂଗଟି ଆଳଂକାରିକ କୌଶଳରେ ଭାରାକ୍ରାନ୍ତ ହୋଇଥିବାରୁ ନାରୀ ହୃଦୟର ଅଭିବ୍ୟକ୍ତି ଯଥାର୍ଥ ହୋଇନାହିଁ ।[୭୫] 'ବୈଦେହୀଶ ବିଳାସ', 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' ଓ 'ଲବଣ୍ୟବତୀ' କାବ୍ୟ ବର୍ଣ୍ଣିତ କେଳିପୁରରେ ପ୍ରଥମ ମିଳନକାଳୀନ ନାୟିକାର ପ୍ରଣୟମାନ ପରଂପରାନୁମୋଦିତ ଏବଂ କାବ୍ୟିକ ଆବେଦନ ଶୂନ୍ୟ । ସ୍ୱକୀୟ ଭିତ୍ତିକ କାବ୍ୟରେ ଏହି ଧାରା ପ୍ରାୟ ସର୍ବତ୍ର ଅନୁଭୂତ । କିନ୍ତୁ 'ସୁଭଦ୍ରା ପରିଣୟ' ଏ କ୍ଷେତ୍ରରେ ଏକ ବ୍ୟତିକ୍ରମ । ଏକଦା ପ୍ରତ୍ୟାଖ୍ୟାତା ଅଭିସାରିକା ସୁଭଦ୍ରାଙ୍କ ନିକଟରେ ମନ୍ତ୍ରୌଷଧି ବଶୀଭୂତ ଅର୍ଜ୍ଜୁନଙ୍କର ପ୍ରୀତି ନିବେଦନ ଏବଂ ପ୍ରଚଣ୍ଡ ଅଭିମାନରେ ପ୍ରିୟତମ ପ୍ରତି ପ୍ରିୟତମାର କ୍ରୋଧବାକ୍ୟ ଉଚ୍ଚାରଣ ଯେପରି ସ୍ୱାଭାବିକ ସେହିପରି ଚରିତ୍ରିକ ସୁଷମାରେ ଉଜ୍ଜ୍ୱଳ ।[୭୬]

ବ୍ରଜନାଥଙ୍କ 'କେଳି କଳାନିଧି'ରେ ଅଭିମାନର ଚିତ୍ର ବୈଚିତ୍ର୍ୟହୀନ । ନାୟକ ପ୍ରବାସରୁ ଫେରି ନାୟିକାକୁ ମାନମୟୀ ଭୂମିକାରେ ଦେଖିଛି । ଏହାର କାରଣ–ଦୀର୍ଘ ବିଚ୍ଛେଦ ।[୭୭]

ଯଦୁମଣିଙ୍କ 'ରାଘବ ବିଳାସ'ର ନାୟିକା ମଧୁଶଯ୍ୟାପୁରରେ ସ୍ୱାଭାବିକ ଲଜ୍ଜା ହେତୁ ମାନପୀଡ଼ିତା । ଅନ୍ତର୍ଲାପିକା ଆଶ୍ରୟରେ ନାୟକ ରାମଚନ୍ଦ୍ର ସୀତାଙ୍କର ମାନ ମୋଚନ ପାଇଁ ଅନୁନୟ ଜଣାଇଛନ୍ତି ।[୭୮] ହୃଦୟର ଅନୁରାଗ ଅପେକ୍ଷା କାବ୍ୟ-କୌଶଳ ଏଠାରେ ମୁଖ୍ୟସ୍ଥାନ ଅଧିକାର କରିଛି ।

ଏଥିରୁ ଜଣାଯାଏ ରୀତି କାବ୍ୟଧାରାର ଆଦିଯୁଗୀୟ କାବ୍ୟ (ଉଷାଭିଳାଷ, ଶଶିସେଣା ପ୍ରଭୃତି)ରେ ପ୍ରଣୟମାନର ଯେଉଁ ସ୍ୱଚ୍ଛତା ଦୃଷ୍ଟିଗୋଚର ହୁଏ, ତାହା ପରବର୍ତ୍ତୀ ରଚନାରେ ଦୁର୍ଲଭ । ଅଳଙ୍କାର, ଶବ୍ଦବିଳାସ ଓ ରୀତିବଦ୍ଧତାର ଆଶ୍ରୟ ଗ୍ରହଣ କରି କବି ଦୃଷ୍ଟି ସୂକ୍ଷ୍ମାନୁଭୂତି ସମ୍ପନ୍ନ ହୋଇପାରିନାହିଁ । ସୁତରାଂ ବହୁ ସ୍ଥଳରେ ପ୍ରଣୟମାନର ମାନବିକ ଉତ୍କର୍ଷ ମଳିନ ହେବା ସ୍ୱାଭାବିକ । ଈର୍ଷାମାନ– ନାୟକର ଅନ୍ୟଠାରେ ଆସକ୍ତି ଥିବାର ଜାଣିଲେ ବା ଅନୁମାନ କଲେ ନାୟିକା ହୃଦୟରେ ଈର୍ଷାମାନ ଜାତ ହୋଇଥାଏ । ଏହା ମୁଖ୍ୟତଃ ତିନିପ୍ରକାର– ଦର୍ଶନ ହେତୁକ, ଅନୁମାନ ହେତୁକ, ଶ୍ରବଣ ହେତୁକ ।

ଦର୍ଶନ– ବ୍ରଜନାଥଙ୍କ 'ଅମ୍ବିକା ବିଳାସ'ର ନାୟିକା ପାର୍ବତୀ କେଳିବିଳାସ କାଳରେ ଶିବଙ୍କ ଜଟାଜୁଟରେ ସୁନ୍ଦରୀ ଗଙ୍ଗାଙ୍କୁ ଦେଖି ଈର୍ଷାନ୍ୱିତା । ଲୋହକାପ୍ଲୁତ ଚକ୍ଷୁ ଓ ବିରସ ଚିତ୍ତରେ ପତିଙ୍କର ଅଙ୍କ ପରିତ୍ୟାଗ କରି ସେ ଭୂମିଶଯ୍ୟା ଗ୍ରହଣ କରିଛନ୍ତି ।[୭୯] ସପତ୍ନୀ ସନ୍ଦେହ ଏହି ମାନର ମୂଳକାରଣ । ପରବର୍ତ୍ତୀ ଛାନ୍ଦରେ ଶିବଙ୍କ ମାନଭଞ୍ଜନ ଚାଟୁର ଦୀର୍ଘ ବିବରଣ ପ୍ରଦତ୍ତ । ଲକ୍ଷ୍ୟ କରିବାର କଥା ଯେ ରୀତି କାବ୍ୟର ନାୟକ ପରି ଶିବ ମଧ୍ୟ କାମପୀଡ଼ାରେ ଅଧୀର । ନିଜକୁ ନାୟିକାର ପରିକର ରୂପେ ଘୋଷଣା କରି ସେ ଏଠାରେ ସାମନ୍ତୀୟ ପୁରୁଷକାରର ପ୍ରତିନିଧିତ୍ୱ କରିଛନ୍ତି ।

ଅନୁମାନ—ଅର୍ଜୁନ ଦାସଙ୍କ 'ରାମବିଭା'ର ନାୟକ ରାମଚନ୍ଦ୍ର ସୀତାଙ୍କୁ ବିବାହ କରି ପ୍ରତ୍ୟାବର୍ତ୍ତନ ପଥରେ ପର୍ଶୁରାମଙ୍କ ସହ ଶକ୍ତି ପରୀକ୍ଷାରେ ଅବତୀର୍ଣ୍ଣ । ସ୍ୱାମୀଙ୍କର ଧନୁ ଆମଞ୍ଚନ ଦେଖି ସୀତା ଏହାକୁ ତାଙ୍କର ଅନ୍ୟ କନ୍ୟା ବିବାହ ଉଦ୍ୟୋଗ ରୂପେ ଅନୁମାନ କରିବା ସ୍ୱାଭାବିକ । ଫଳତଃ ନାୟିକାର ହୃଦୟାକାଶରେ ଅଭିମାନର ମେଘ ଆଛାଦିତ ।[୨୦] ଉପେନ୍ଦ୍ରଙ୍କ 'ବୈଦେହୀଶ ବିଳାସ' ଓ ଯଦୁମଣିଙ୍କ 'ରାଘବ ବିଳାସ'ରେ ଏହି ପ୍ରସଙ୍ଗ ଯଥାରୀତି ସୁବିନ୍ୟସ୍ତ ।[୨୧] 'ଲାବଣ୍ୟବତୀ'ର ନାୟକ ଏକଦା ନାୟିକାର ଅବର୍ତ୍ତମାନରେ ତା'ର ଚିତ୍ରପଟ ଦେଖି ଆତ୍ମ-ବିସ୍ମୃତ । ଏହି ଅବସରରେ ନାୟିକା ଦୂରରୁ ନାୟକର ଅବସ୍ଥା ଲକ୍ଷ୍ୟ କରି ସପତ୍ନୀ ସନ୍ଦେହରେ ବିଚଳିତା ।[୨୨] ଚନ୍ଦ୍ରଭାନୁର ସୁଦୀର୍ଘ ସ୍ତୁତି ଫଳରେ ଏହି ସନ୍ଦେହ ଅପସାରିତ ଓ ମାନ ଅନ୍ତର୍ହିତ ।

ସୀତାଙ୍କ ଚରିତ୍ରରେ ଈର୍ଷାମାନର ଯେଉଁ ପ୍ରାକୃତିକତା ଅନୁଭୂତ ହୁଏ ଲାବଣ୍ୟବତୀ ଚରିତ୍ରରେ ତାହାର ଅଭାବ ଦେଖାଯାଏ । 'ରାମବିଭା' କାବ୍ୟରେ ଏହି ପ୍ରସଙ୍ଗ ସଂକ୍ଷିପ୍ତ ହେଲେ ହେଁ ତାହା ରୁଚିଶୀଳ ଓ ନିରାଡ଼ମ୍ବର । 'ଲାବଣ୍ୟବତୀ'ରେ ପ୍ରସଙ୍ଗର କୃତ୍ରିମତା ଓ ବର୍ଣ୍ଣନାର ଅତିରଞ୍ଜନ ସହଜ ଅନୁମେୟ ।

ହରିବଂଶ ରାୟଙ୍କ 'ପ୍ରେମ କଳ୍ପଲତା' କାବ୍ୟର ନାୟକ ଶ୍ରୀକୃଷ୍ଣ ଚନ୍ଦ୍ରାବଳୀ ପୁରରୁ ସର୍ବାଙ୍ଗରେ ସମ୍ଭୋଗ ଚିହ୍ନ ଧାରଣ କରି ରାଧାଙ୍କ ନିକଟରେ ଉପସ୍ଥିତ । ରାଧାଙ୍କ ହୃଦୟରେ ଅଭିମାନର ଅନ୍ତ ନାହିଁ । ପ୍ରିୟତମର ଏପରି ଅବସ୍ଥା ଦେଖି କ୍ରୋଧରେ ସେ ବିଳାପରତା ।[୨୩] ବୈଷ୍ଣବ କାବ୍ୟରେ ଏହି ପ୍ରସଂଗର ବହୁଳ ଅବତାରଣା ପରିଦୃଷ୍ଟ । କବି ଜୟଦେବଙ୍କ 'ଗୀତ ଗୋବିନ୍ଦ'ରେ ଏହି ଦୃଶ୍ୟ ଅତୀବ କଳାମୟ ।[୨୪]

ଲୋକନାଥ ବିଦ୍ୟାଧରଙ୍କ 'ଚିତ୍ରକଳା' କାବ୍ୟର ନାୟକ ସୁଦର୍ଶନ ଏକଦା ନାୟିକା ଚିତ୍ରକଳାକୁ ବିଚିତ୍ରକଳା ବୋଲି ସମ୍ବୋଧନ କରିବା ଫଳରେ ସେ ସପତ୍ନୀ ଭୟରେ ହୋଇ ଉଠିଛି ମାନମୟୀ ।[୨୫] ମାନଭଞ୍ଜନ ପ୍ରସଙ୍ଗ ଏଠାରେ ଉଚ୍ଚିବନ୍ଧ ।

ଏହି ପର୍ଯ୍ୟାୟର ଈର୍ଷାମାନ ବିବିଧ ବୈଚିତ୍ର୍ୟ ମଣ୍ଡିତ । ପ୍ରିୟତମର ପରସ୍ତ୍ରୀ-ଆସକ୍ତି ବିଷୟକ ସୂଚନା ହିଁ ନାରୀର ଦୁଃସହଣୀୟ । ତେଣୁ ପ୍ରତି ପଦେ ପଦେ ସେ ସଚେତନ । ସ୍ତ୍ରୀତି ବିଳାସିନୀ ରୀତି କାବ୍ୟର ନାୟିକା ଏ କ୍ଷେତ୍ରରେ ତା'ର ସ୍ୱାଭାବିକ ଜୀବନ-ବୃତ୍ତି ଅନୁସରଣ କରିବାକୁ ପଶ୍ଚାତପଦ ହୋଇନାହିଁ ।

ଶ୍ରବଣ—ଦେବଦୁର୍ଲ୍ଲଭଙ୍କ 'ରହସ୍ୟ ମଞ୍ଜରୀ'ର ନାୟକ ଶ୍ରୀକୃଷ୍ଣ ଏକଦା ରାଧା ବିଚ୍ଛେଦ ଦୁଃଖରେ କାତର ହୋଇ ଅଷ୍ଟପାଟବଂଶୀଙ୍କ ନିକଟରେ ସ୍ୱୀୟ ମନୋବେଦନା ପ୍ରକାଶ କରିଛନ୍ତି । ସ୍ୱାମୀଙ୍କଠାରୁ ରାଧା ପ୍ରସଙ୍ଗ ଶ୍ରବଣ କରି ମହିଷୀଗଣ ଗୁରୁମାନରେ ପୀଡ଼ିତା ।[୨୬] ଦ୍ୱାରକାରେ ନୃତ୍ୟ ଗୀତ ପରିବେଷଣ ଛଳରେ ମାୟାକୁମାରୀମାନଙ୍କର ରାଧା-କୃଷ୍ଣ ପ୍ରୀତି ବୃତ୍ତାନ୍ତ ବର୍ଣ୍ଣନା ସେମାନଙ୍କ ହୃଦୟରେ ଈର୍ଷାର କଳା ମେଘକୁ ଅଧିକ ଘନୀଭୂତ କରିଛି ।[୨୭] ଅବିରତ ଅଶ୍ରୁ ବିସର୍ଜନ ତଥା ଭୋଜନ ଓ ଶୟନ ପରିହାର ପୂର୍ବକ ଗଭୀର ଦୁଃଖରେ ସେମାନେ ମର୍ମାହତ ହୋଇପଡ଼ିଛନ୍ତି । ରାଧାଦାସଙ୍କ 'ଗୋପୀଚନ୍ଦନ' କାବ୍ୟରେ ଉପରୋକ୍ତ ପ୍ରସଙ୍ଗଟି କିଞ୍ଚିତ ଭିନ୍ନ ଭାବରେ ଗୁମ୍ଫିତ । ଅଷ୍ଟପାଟ ମହିଷୀ ଶ୍ରୀକୃଷ୍ଣଙ୍କଠାରୁ ଗୋପଯୁବତୀମାନଙ୍କ ପ୍ରୀତି ଗୌରବ ଶ୍ରବଣ କରି ମାନ ପୀଡ଼ିତ ହେବାର ବର୍ଣ୍ଣନା ଏଥିରେ ଅତି ସରଳ ଓ ସୁରୁଚିସଂପନ୍ନ ।[୨୮] 'ରହସ୍ୟ ମଞ୍ଜରୀ'ର କ୍ଲିଷ୍ଟ କଳ୍ପନା ଏବଂ ତାତ୍ତ୍ୱିକ ବ୍ୟାଖ୍ୟା 'ଗୋପୀଚନ୍ଦନ'ରେ ନଥିବାରୁ କାବ୍ୟଟି ଅଧିକ ହୃଦୟଗ୍ରାହୀ ।

## ଶେଷ କଥା—

ମାନ ଓ ମାନମୋଚନ ଏକ କାବ୍ୟିକ ବିଭବ ରୂପେ ସ୍ୱୀକୃତ ହୋଇଥିଲେ ହେଁ ସକଳ କାବ୍ୟରେ ଏହା ପରିଦୃଷ୍ଟ ହୁଏ ନାହିଁ । ବୈଷ୍ଣବ ସାହିତ୍ୟରେ ରାଧାଙ୍କର ମାନ ଓ ଅଭିମାନର ଯେଉଁ ରମଣୀୟ ଚିତ୍ର ଅଙ୍କିତ ତାହା ଅତ୍ୟନ୍ତ ଦୁର୍ଲ୍ଲଭ । କାଳ୍ପନିକ ରୀତି କାବ୍ୟ ସମୂହ ମୁଖ୍ୟତଃ ସ୍ୱକୀୟାଭିତ୍ତିକ ଓ ସଂସ୍କୃତ କାବ୍ୟାଦର୍ଶ ଅନୁଗାମୀ ହୋଇଥିବାରୁ ମାନିନୀ

ନାରୀ ପ୍ରାଣର ଅକୃତିମ ପରିଚୟ ବହନ କରିବାରେ ସଂପୂର୍ଣ୍ଣ ସଫଳ ହୋଇନାହିଁ । ଅଧିକାଂଶ କାବ୍ୟରେ ନାରୀ କେବଳ ପୁରୁଷର କାବ୍ୟିକ-ପ୍ରଶସ୍ତିରେ ବିଭୂଷିତ । ପରନ୍ତୁ ଉଭୟଙ୍କ ସଂଭୋଗ କାମନା ନିକଟରେ ପରସ୍ପରର ହୃଦୟ ମୂଲ୍ୟ ବିଡ଼ମ୍ବିତ ।

## ପ୍ରବାସ-

ଭାରତୀୟ କାବ୍ୟ ପରମ୍ପରାରେ ପ୍ରବାସ ବିପ୍ରଲମ୍ଭ ବିଶେଷ ଗୌରବର ଅଧିକାରୀ । ଏ କ୍ଷେତ୍ରରେ କାଳିଦାସଙ୍କ 'ମେଘଦୂତ' ଏକ ଅନବଦ୍ୟ ସୃଷ୍ଟି । ଅଳକା ପୁରୀର ଅଧୀଶ୍ୱର କୁବେରଙ୍କ ଅଭିଶାପ ଅନୁସାରେ ସେବକ ଯକ୍ଷର ରାମଗିରିରେ ଗୋଟିଏ ବର୍ଷ ଅତିବାହିତ । ବର୍ଷା ଆଗମନରେ ଦୟିତା-ସ୍ମୃତି-ବିହ୍ୱଳ ପ୍ରବାସୀ ନାୟକର ମେଘକୁ ଦୂତ ରୂପେ କଳ୍ପନା ଓ ପ୍ରିୟତମା ନିକଟକୁ ତା' ଜରିଆରେ ପ୍ରଣୟ ସନ୍ଦେଶ ପ୍ରେରଣ ପ୍ରସଙ୍ଗ ଅନୁପମ କାବ୍ୟ-ସୌନ୍ଦର୍ଯ୍ୟ ମଣ୍ଡିତ ।

ପ୍ରବାସ ବିପ୍ରଲମ୍ଭ ଦୁଇ ଭାଗରେ ବିଭକ୍ତ—ଜ୍ଞାତ ଓ ଅଜ୍ଞାତ । ଜ୍ଞାତ ପ୍ରବାସ ତିନି ପ୍ରକାର—କାର୍ଯ୍ୟ ହେତୁକ, ଶାପ ହେତୁକ, ସଂଭ୍ରମ ହେତୁକ ।

## ଜ୍ଞାତ-

(କ) କାର୍ଯ୍ୟ—କଂସ ନିଧନ ନିମନ୍ତେ ଶ୍ରୀକୃଷ୍ଣଙ୍କ ମଥୁରା ପ୍ରବାସ ବୈଷ୍ଣବ ସାହିତ୍ୟର ସୁପରିଚିତ କାବ୍ୟ ସମ୍ପଦ । ଦେବ ଦୁର୍ଲ୍ଲଭଙ୍କ 'ରହସ୍ୟ ମଞ୍ଜରୀ', ଦୀନକୃଷ୍ଣଙ୍କ 'ରସକଲ୍ଲୋଳ,' ଉପେନ୍ଦ୍ରଙ୍କ 'ଛାନ୍ଦଭୂଷଣ', ଭକ୍ତଚରଣଙ୍କ 'ମଥୁରାମଙ୍ଗଳ' ପ୍ରଭୃତି କାବ୍ୟରେ ଏହି ପ୍ରସଙ୍ଗର ନାନାବିଧ ବୈଚିତ୍ର୍ୟ ଅଙ୍କିତ । ମାୟା କୁମାରୀମାନଙ୍କ ନୃତ୍ୟଗୀତ ଛଳରେ ଶ୍ରୀକୃଷ୍ଣ-ବଞ୍ଚିତ ଗୋପପୁରର ବିକଳ ଦୃଶ୍ୟ ଉପସ୍ଥାପନା 'ରହସ୍ୟ ମଞ୍ଜରୀ'ର ଉଲ୍ଲେଖଯୋଗ୍ୟ କୃତିତ୍ୱ । ଗୋପାଙ୍ଗନାମାନଙ୍କ ବିରହଦଶାର ଚିତ୍ର ଏ କ୍ଷେତ୍ରରେ ଅତୀବ ମନୋରମ । ଶ୍ରୀକୃଷ୍ଣଙ୍କଠାରେ ସମର୍ପିତହୃଦୟା ଏହି ଯୁବତୀଗଣ ପ୍ରିୟତମଲାଗି ସମସ୍ତ ପାର୍ଥିବ ସୁଖ ପରିତ୍ୟାଗ କରିବା ସଙ୍ଗେ ସଙ୍ଗେ ଜୀବନ ଉତ୍ସର୍ଗ କରିବାକୁ ମଧ୍ୟ ପ୍ରସ୍ତୁତ ।[୨୯] କେଳିକୁଞ୍ଜ, ଉପବନ, ଅରଣ୍ୟର ତରୁଲତାମାନଙ୍କୁ ଅବଲୋକନ ପୂର୍ବକ ହା କୃଷ୍ଣ ହା କୃଷ୍ଣ ବୋଲି

ଉଚ୍ଚାରଣ କରି ଅଶ୍ରୁପୂରିତ ନୟନରେ ସେମାନେ ପାଗଳିନୀ ପ୍ରାୟ ଘୂରିବୁଲିଛନ୍ତି । ରାଧାଙ୍କ ବିରହ ଦଶାର ଚିତ୍ର ଅତ୍ୟନ୍ତ ମାର୍ମିକ । ପ୍ରିୟତମଙ୍କୁ ପାଇବା ଲାଗି ତାଙ୍କ ହୃଦୟର ଆକୁଳତା ଧୈର୍ଯ୍ୟର ସୀମା ଲଙ୍ଘନ କରିଛି । କୃଷ୍ଣ-ରୂପ ବିଧୁର ନାୟିକାର ବିହ୍ୱଳିତ ଅବସ୍ଥା ଏଠାରେ ଅତ୍ୟନ୍ତ ରମଣୀୟ ।[୮୦] ଦ୍ୱାଦଶ ଛାନ୍ଦରେ ଋତୁ ଚିତ୍ରର ନୈସର୍ଗିକ ସୁଷମା ସହ ବିରହିଣୀ ପ୍ରାଣର କରୁଣ ଆବେଦନ ମନୋଜ୍ଞ ଭାବେ ଅଙ୍କିତ । କୃଷ୍ଣଙ୍କୁ ଫେରାଇ ଆଣିବା ନିମିତ୍ତ ବୃକ୍ଷ କୋକିଳ, ମଧୁକର, ଗନ୍ଧ ପୋଖରୀଠାରେ ବିରହ ବାତୁଳୀ ରାଧାଙ୍କର ବ୍ୟାକୁଳ ନିବେଦନ ଏକାନ୍ତ କାରୁଣ୍ୟ ମୂର୍ଚ୍ଛିତ । ଏ କ୍ଷେତ୍ରରେ ଶୃଙ୍ଗାର ଚେତନାର ଅଭିବ୍ୟକ୍ତି ଦେହାତୀତ-ସୌନ୍ଦର୍ଯ୍ୟ ବିମଣ୍ଡିତ । ଅଧ୍ୟାପକ ଆର୍ତ୍ତ ବଲ୍ଲଭ ମହାନ୍ତିଙ୍କ ଭାଷାରେ– "ଅପ୍ରାକୃତ କାମର ବିପ୍ରଲମ୍ଭରେ ମାଦନାଖ୍ୟା ରାଧାଙ୍କର ଉନ୍ମତ୍ତ ପ୍ରଳାପ ଆହା କି ମଧୁର, କି କରୁଣ, କି ହୃଦୟସ୍ପର୍ଶୀ । ଭକ୍ତର ଏହା ହିଁ ଚରମ ଭାବ । ଏହାହିଁ ଅପ୍ରୟୋଜନ ପ୍ରେମ, ଏଥିରେ ତ ଭଗବତ୍‌ପ୍ରାପ୍ତି" ।[୮୧] କିନ୍ତୁ ଭକ୍ତି ତତ୍ତ୍ୱର ଜଟିଳ ମୀମାଂସା ଊର୍ଦ୍ଧ୍ୱରେ ସ୍ୱାଭାବିକ ଜୀବ ଧର୍ମର ଉତ୍ତରଣ ଅନୁଭବ ଓ ପ୍ରାଣର ଲଳିତ କରୁଣ ସଂବେଦନା ପ୍ରସଙ୍ଗକୁ ମହିମାଯୁକ୍ତ କରିଛି । ଅନବଦ୍ୟ ସାଙ୍ଗୀତିକ ଭାଷା ଓ ନିରାଡ଼ମ୍ବର କାବ୍ୟ ବ୍ୟଞ୍ଜନା ଏହାର ଅନ୍ୟତମ ବିଶିଷ୍ଟ ଆକର୍ଷଣ ।

'ରସ କଲ୍ଲୋଳ'ରେ ପ୍ରବାସ ବିପ୍ରଲମ୍ଭର ଦୀର୍ଘ ବର୍ଣ୍ଣନା ପ୍ରଦତ୍ତ । ଆଳଂକାରିକ ପ୍ରୟୋଗ, ସରସ କୋମଳ ପଦାବଳୀ ଓ ଶାସ୍ତ୍ରୀୟ ଅନୁସରଣର ଅପୂର୍ବ ସମନ୍ୱୟରେ ବିରହିଣୀ ହୃଦୟର ସକଳ ଅନୁଶୋଚନା ଏଥିରେ ମୂର୍ତ୍ତିମନ୍ତ । ମଥୁରା ଯାତ୍ରାର ପ୍ରାକ୍ କାଳରେ ଶ୍ରୀକୃଷ୍ଣଙ୍କ ଉଦ୍ଦେଶ୍ୟରେ ବ୍ୟଥିତା ଗୋପାଙ୍ଗନାମାନଙ୍କ ହୃଦୟର ନିଷ୍କପଟ ଅନୁଯୋଗ ଜଣୈକା ରମଣୀର ଆକୁଳ ଉକ୍ତିରେ ଫୁଟି ଉଠିଛି ।[୮୨] ପ୍ରିୟତମଙ୍କ ପ୍ରତ୍ୟାବର୍ତ୍ତନର ଅନିଶ୍ଚୟତାରେ ସମସ୍ତେ ଆଶଂକିତ । ରାଜାଜ୍ଞାର ସମ୍ମୁଖୀନ ହେବା ଅର୍ଥ କାଳସର୍ପର ସମ୍ମୁଖୀନ ହେବା ବୋଲି ସେମାନେ ତାଙ୍କୁ ବୁଝାଇବାକୁ ଚେଷ୍ଟା କରିଛନ୍ତି । ଏଠାରେ ଚାଣକ୍ୟଙ୍କ ନୀତିବାକ୍ୟ କବିଙ୍କ ନିଜସ୍ୱ ବର୍ଣ୍ଣନା ଚାତୁରୀରେ ଅନ୍ତର୍ଗଭିତ ।[୮୩] କଂସ ନିଧନ ଓ କୁବୁଜା ରମଣ ଅନ୍ତେ

ପ୍ରବାସୀ କୃଷ୍ଣଙ୍କ ସ୍ମୃତି ଫଳକରେ ପ୍ରାଣେଶ୍ୱରୀ କିଶୋରୀ ରାଧାଙ୍କ ଚିତ୍ର ପ୍ରତିଫଳିତ । ନାୟକର ବିରହାନୁଚିନ୍ତାରେ ନାୟିକାର ରୂପ ଓ କେଳିକଳା ମୁଖ୍ୟ ସ୍ଥାନ ଅଧିକାର କରିଛି । ଏଥିରେ ନାୟିକାର ଦୁଃଖ ପ୍ରତି ଗଭୀର ଆନୁଗତ୍ୟ ପ୍ରକାଶିତ ହୋଇଥିଲେ ହେଁ ପୁରୁଷ ପ୍ରାଣର ପ୍ରେମାକୁଳତା ଯଥାର୍ଥ ରୂପେ ଫୁଟି ପାରିନାହିଁ । ବିରହ ବିଧୁରା ଗୋପୀ ଓ ଉଦ୍ଧବଙ୍କ ଉକ୍ତି ପ୍ରତ୍ୟୁକ୍ତିରେ ନାରୀ ପ୍ରାଣର ଯେଉଁ ଚିତ୍ର ଅଙ୍କିତ, ତହିଁରେ ସ୍ୱାଭାବିକତା ଓ ରୀତିଧର୍ମିତା ଉଭୟ ଅବିଚ୍ଛିନ୍ନ । ତାହା ପୁଣି ଏକ ଆବେଗମୟ କାବ୍ୟ-ଶୈଳୀରେ ଉପସ୍ଥାପିତ ।[୮] ଶ୍ରୀକୃଷ୍ଣଙ୍କ ବିଚ୍ଛେଦରେ ଗୋପାଙ୍ଗନାମାନଙ୍କ ହୃଦୟର ଦୁଃଖ ଓ ଆତୁରତା ପ୍ରକାଶ କରିବାକୁ ଯାଇ କବି ବିବିଧ ଉଦାହରଣର ଅବତାରଣା କରିଛନ୍ତି ।[୫] ପୂତନା ବିନାଶ, ଅସୁର (କେଶୀ, ଅଘା, ବକା) ନିଧନ, ଯାମଳାଭଞ୍ଜନ, କାଳୀୟଦଳନ ଆଦି ତାଙ୍କର ବିବିଧ ଲୀଳା ସ୍ମରଣ ମାଧ୍ୟମରେ ଗୋପୀମାନଙ୍କ କୃଷ୍ଣଗତ-ପ୍ରାଣତାର ନିବିଡ଼ ପରିଚୟ ରୂପାୟିତ । କିନ୍ତୁ କୁବୁଜା ନିକଟରେ ଥିଲାବେଳେ ଶ୍ରୀକୃଷ୍ଣଙ୍କ ଆଗରେ ବିରହ ଦଶାର ସ୍ୱରୂପ ପ୍ରକାଶ ନକରିବାକୁ ଉଦ୍ଧବଙ୍କୁ ସେମାନଙ୍କର ଅନୁରୋଧ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ।[୬] ଏଥିରେ ନାରୀ ହୃଦୟର ସ୍ୱାଭାବିକ ଅଭିମାନ ଓ ସପତ୍ନୀକାତରତା ଅଭିବ୍ୟଞ୍ଜିତ । ପ୍ରସଂଗାନ୍ତର୍ଗତ କାମଦଶାର ପ୍ରତ୍ୟକ୍ଷ ଉଲ୍ଲେଖ ବିପ୍ରଲମ୍ଭର ଆବେଦନ ଦୃଷ୍ଟିରୁ ଏକାନ୍ତ ସୌନ୍ଦର୍ଯ୍ୟହୀନ ମନେହୁଏ ।[୭] କାମିନୀମାନଙ୍କ ବିରହାବସ୍ଥା ସହ ବିଭିନ୍ନ ଋତୁର ତୁଳନାରୁ କବିଙ୍କ ରୀତିଯୁଗୀୟ କାବ୍ୟ-ନୈପୁଣ୍ୟ ପ୍ରଦର୍ଶନର ପ୍ରୟାସ ଲକ୍ଷ୍ୟ କରାଯାଇପାରେ ।[୮] ଏତଦ୍‌ଭିନ୍ନ ପାରମ୍ପରିକ ରୀତିରେ ଚନ୍ଦ୍ର, ଚନ୍ଦନ, ଉଶୀର, ପଦ୍ମ ଦଳର ଆୟୋଜନ ଓ ଉପଯୋଗ, ଚାମର ବ୍ୟଜନ ତଥା ନୀର ସିଂଚନ ଆଦି ଶୀତଳ ଉପଚାର ବିଧି ବିଭିନ୍ନ ସ୍ଥଳରେ ବର୍ଣ୍ଣିତ । ବିରହାତିଶଯ୍ୟର ଆବେଶ ସୃଷ୍ଟି କରିବା ନିମନ୍ତେ ପୁଷ୍କରିଣୀମାନଙ୍କରେ ପଦ୍ମ ଦଳର ଅଭାବ (କଇଁଡ଼ି ଅପେକ୍ଷା) କୋମଳପତ୍ରର ଅତ୍ୟଧିକ ଆବଶ୍ୟକତା, କୁସୁମ ଚୟନରେ ସର୍ବତ୍ର ଅନିଚ୍ଛାଭାବ ଇତ୍ୟାଦିର କାବ୍ୟିକ ଅତିରଞ୍ଜନ ଉଲ୍ଲିଖିତ । ସୁତରାଂ 'ରହସ୍ୟ ମଞ୍ଜରୀ' ପରି 'ରସକଲ୍ଲୋଳ'ର ପ୍ରବାସ ବିପ୍ରଲମ୍ଭ ସାମଗ୍ରିକ ସୌନ୍ଦର୍ଯ୍ୟରେ ବିଭୂଷିତ ନୁହେଁ । କିନ୍ତୁ ଜଣେ କାଳ ସଚେତନ ରସବାଦୀ କବି ରୂପେ ତାଙ୍କର କୃତିତ୍ୱ ଉଚ୍ଚ ସମ୍ମାନର ଅଧିକାରୀ ।

ଉପେନ୍ଦ୍ର ଭଞ୍ଜଙ୍କ 'ଛାନ୍ଦ ଭୂଷଣ'ର ନାୟକ ଶ୍ରୀକୃଷ୍ଣଙ୍କ ମଥୁରାଯାତ୍ରା ପାକ୍‌କାଳରେ ଗୋପୀଗଣ ତାଙ୍କର ରୂପ ଓ ଗୁଣ ସ୍ମରଣ କରି ବିଳାପରତା ।[୮୯] ଏ କ୍ଷେତ୍ରରେ 'ରସ କଲ୍ଲୋଳ' (୨୬ଶ ଛାନ୍ଦ ର ପ୍ରଭବକୁ ଅସ୍ୱୀକାର କରଯାଇନପାରେ । କୃଷ୍ଣ ଓ ଗୋପୀ ସମ୍ପର୍କର ଅବତାରଣା କଲାବେଳେ କବି ଯେଉଁ ସବୁ ତୁଳନାଚିତ୍ର ପ୍ରଦାନ କରିଛନ୍ତି ସେସବୁ ଦୀନକୃଷ୍ଣଙ୍କ କାବ୍ୟ-ଗୌରବର ସରସତା ହରଇ ପୁରାଣଧର୍ମୀ ହୋଇ ପଡ଼ିଛି । ନାୟକର ମଥୁରା ପ୍ରସ୍ଥାନ ପରେ ପ୍ରବାସ ବିପ୍ରଲମ୍ଭର ଆଉ ଅବସର ସୃଷ୍ଟି କରଯାଇନାହିଁ । ଗୋଟିଏ ଛାନ୍ଦ ହେଲେ ବି ଗୋପାଙ୍ଗନା-ମାନଙ୍କ ହୃଦୟ ବେଦନାର ଚିତ୍ର ଉପେନ୍ଦ୍ରପ୍ରତିଭା ସ୍ପର୍ଶରେ ଅତ୍ୟନ୍ତ ହୃଦ୍ୟ ।

ଭକ୍ତଚରଣଙ୍କ 'ମଥୁରା ମଙ୍ଗଳ'ରେ ପ୍ରବାସ ବିପ୍ରଲମ୍ଭର ସଫଳତା ଅନନ୍ୟ । କେବଳ କବିତ୍ୱ ନୁହେଁ, ଭାବଗତ ଉତ୍କର୍ଷ ମଧ୍ୟ ଏହି କାବ୍ୟର ଅମୂଲ୍ୟ ସଂପଦ । ଶ୍ରୀକୃଷ୍ଣଙ୍କୁ ମଥୁରା ଘେନିଯିବା ପାଇଁ ଅକ୍ରୂରର ଆଗମନ ସଂବାଦରେ ଗୋପୀଗଣ ଆତଙ୍କିତା । ନିଜ ନିଜର ଜୀବନ ବିନିମୟରେ ଗୋପପୁରରେ ଶ୍ରୀକୃଷ୍ଣଙ୍କ ଉପସ୍ଥିତି ହିଁ ସେମାନଙ୍କର କାମ୍ୟ ।[୯୦] ସେମାନଙ୍କ ବିକଳ ବିଳାପ ମଧ୍ୟରେ ପ୍ରିୟତମ ପ୍ରତି ନାରୀ ପ୍ରାଣର ଚିରନ୍ତନ ଆଶା, ଆଶଙ୍କା ଓ ସ୍ମୃତି ଜୀବନ୍ତ ହୋଇ ଉଠିଛି । ଦୁଃଖାକୁଳ ପରିବେଶର ଯଥାର୍ଥ ରୂପାୟନ ପ୍ରସଂଗରେ କୁହା ଯାଇଛି ଯେ ଶ୍ରୀକୃଷ୍ଣଙ୍କ ବିନା କେବଳ ଗୋପ ରମଣୀଗଣ ସୌଭାଗ୍ୟ ବଂଚିତା ହେବେ, ତାହା ନୁହେ : କାନ୍ତହୀନ ନାରୀ ପରି ଗୋପପୁର ମଧ୍ୟ ଶ୍ରୀହୀନ ହୋଇଯିବ । ତାଙ୍କ ଅଭାବରେ ଯମୁନା, କଦମ୍ବ, ଖଗ, ମୃଗ, ବୃକ୍ଷ ଲତାଦି ସ୍ୱଭାବ ଧର୍ମରୁ ବଂଚିତ ହୋଇ ନିଜ ନିଜର ଗୌରବ ହରଇ ବସିବେ । ଅର୍ଥାତ୍ ଜଡ଼ ଓ ଜୀବ ସକଳ ପର୍ଯ୍ୟାୟରେ ଏଇ ବିରହର କରୁଣ ସ୍ପନ୍ଦନ ଉଦ୍‌ବେଳିତ ହୋଇ ଉଠିବ ।[୯୧] ଦୁଃଖର ତାଡ଼ନାରେ ଅଧୀରା ଗୋପାଙ୍ଗନାମାନଙ୍କର ଅକ୍ରୂରକୁ ହତ୍ୟା କରିବା ଓ ତା'ର ଯାନ ଭାଙ୍ଗିଦେବା ମନ୍ତ୍ରଣା ସେମାନଙ୍କ ଚାରିତ୍ରିକ ଗୌରବ ଘୋଷଣା କରେ ।[୯୨] ପ୍ରିୟତମର ପ୍ରବାସ ଯାତ୍ରାରମ୍ଭରେ ପ୍ରୀତି ବିଳାସିନୀ ନାରୀ ପ୍ରାଣର ଉଚ୍ଛଳତା, ଅନୁନୟ ଓ ଅଭିଯୋଗ ବିବିଧ ଚିତ୍ରକଳ୍ପ ଜରିଆରେ ପ୍ରାଣବନ୍ତ ହୋଇ ଉଠିଛି । ଅନ୍ତ

କେତୋଟି ସ୍ଥଳରେ କାବ୍ୟରୀତି ଅସ୍ୱାଭାବିକତା ଦୋଷଦୁଷ୍ଟ ।[୯୩] ଗୋପୀମାନଙ୍କ ଭକ୍ତି ପ୍ରତ୍ୟୁକ୍ତିରେ ଜ୍ଞାନ ଅପେକ୍ଷା ପ୍ରେମର ଶ୍ରେଷ୍ଠତ୍ୱ ପ୍ରତିପାଦିତ । କୃଷ୍ଣଙ୍କ ନିକଟକୁ ଲେଖିଥିବା ପତ୍ରରେ ସେମାନଙ୍କ ଆକୁଳ ନିବେଦନ ସହ ବିରହ ଦଶାର ମୂର୍ତ୍ତିମନ୍ତ ବିଭୂତି ପ୍ରକାଶିତ । ଉଦ୍ଧବ କୃଷ୍ଣଙ୍କୁ ଗୋପ ଓ ଗୋପାଙ୍ଗନା ବିଷୟକ ଯେଉଁ ସମ୍ବାଦ ଶୁଣାଇଛନ୍ତି ତାହା ଯେପରି କରୁଣ ସେହିପରି ହୃଦୟସ୍ପର୍ଶୀ । ଜଡ଼ ପ୍ରକୃତି ଯେଉଁଠାରେ ହତଶ୍ରୀ ଓ ବିଚ୍ଛେଦକାତର, ସଚେତନ ମାନବ ପ୍ରକୃତି ସେଠାରେ କିପରି ବିଷଣ୍ଣ ଓ ବେଦନାଦଗ୍ଧ ତା'ର ଯଥାର୍ଥ ରୂପ ଚିତ୍ର ଅଙ୍କନ କରିବାକୁ ଭକ୍ତଚରଣ ପଶ୍ଚାତ୍‌ପଦ ହୋଇ ନାହାନ୍ତି ।[୯୪]'ମଥୁରାମଙ୍ଗଳ' ଭକ୍ତି କାବ୍ୟର ଗୌରବ ଲାଭ କରିଥିଲେ ହେଁ ମାନବିକ ପ୍ରେମର ମର୍ଯ୍ୟାଦା ଏଥିରେ ଅକ୍ଷୁଣ୍ଣ । ଅଧ୍ୟାପକ ଗୌରୀ କୁମାର ବ୍ରହ୍ମାଙ୍କ ଉକ୍ତି ଏ କ୍ଷେତ୍ରରେ ସ୍ମରଣୀୟ । "ଭକ୍ତ ସମାଜର ଭକ୍ତିପୂର୍ଣ୍ଣ ଦୃଷ୍ଟିଭଙ୍ଗୀ ତ୍ୟାଗ କରି ସାଧାରଣ ନାୟକ ନାୟିକାଙ୍କ ଭାବର ଆଦାନ ପ୍ରଦାନ ଦିଗରୁ ବିଗ୍ଧର କଲେ ମଧ୍ୟ ଚରିତ୍ର ଚିତ୍ରଣ ବଡ଼ ଜୀବନ୍ତ ମନେହୁଏ"।[୯୫] ଯୁଗ ଓ ଅଳଙ୍କାର ଶାସ୍ତ୍ରର ଆକର୍ଷଣ କବି ତୁଟାଇ ପାରିନାହାନ୍ତି । ପ୍ରବାସୀ ଶ୍ରୀକୃଷ୍ଣଙ୍କ ରାଧା-ବିରହ-ସନ୍ତପ୍ତ ପ୍ରାଣର ଯେଉଁ ଆଲେଖ୍ୟ ତାଙ୍କ ଚିଠାଉରେ ଅଙ୍କିତ ତାହା ରୀତିଯୁଗୀୟ ଶୃଙ୍ଗାରିକତାର ସ୍ପଷ୍ଟ ପ୍ରତିଚିତ୍ର । 'ରସକଲ୍ଲୋଳ'ରେ ଏ ପ୍ରସଙ୍ଗ ନାହିଁ । ଭଂଜୀୟ କାବ୍ୟ-ସରଣୀକୁ କବି ଏଠାରେ ଗ୍ରହଣ କରିଛନ୍ତି ବୋଲି ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି କାବ୍ୟର ମୁଖବନ୍ଧରେ ଦର୍ଶାଇଛନ୍ତି (ପ୍ରାଚୀ ସମିତି ଦ୍ୱାରା ପ୍ରକାଶିତ) । ଗୋପରମଣୀମାନଙ୍କ ବେଶ ଶୂନ୍ୟତା, ବ୍ୟାଧି, ଉନ୍ମାଦ, ମୋହ ଆଦି କାମଦଶା ଚିତ୍ରଣରେ ଶାସ୍ତ୍ରୀୟ ପ୍ରଭାବ ସୁସ୍ପଷ୍ଟ । ସଂସ୍କୃତ ଭାଗବତ ତଥା ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତ ଓ ମଧ୍ୟଯୁଗୀୟ କାବ୍ୟଧାରା ନିକଟରେ କବି କିୟତ୍ ପରିମାଣରେ ଋଣୀ । ଏହା ଉପରେ 'ରସକଲ୍ଲୋଳ'ର ପ୍ରଭାବ ଅପ୍ରତିହତ ହୋଇଥିଲେ ହେଁ ଭକ୍ତଚରଣଙ୍କ ଜୀବନଦୃଷ୍ଟି ଓ କଳାନୁଗତ୍ୟ ଭକ୍ତିକାବ୍ୟର ମାୟା ବନ୍ଧନ ଅତିକ୍ରମ କରି କ୍ଲାସିକ ପର୍ଯ୍ୟାୟଭୁକ୍ତ ହୋଇପଡ଼ିଛି ।

କାଞ୍ଚନିକ କାବ୍ୟ ପର୍ଯ୍ୟାୟରେ କାର୍ଯ୍ୟହେତୁକ ପ୍ରବାସ ବିପ୍ରଲମ୍ଭର ବର୍ଣ୍ଣନା ଉପେନ୍ଦ୍ର ଭଞ୍ଜଙ୍କ 'ରସିକ ହାରବଳୀ', 'ପ୍ରେମ ସୁଧାନିଧି',

'ସୁବର୍ଣ୍ଣରେଖା' ଆଦି କାବ୍ୟରେ ଦେଖିବାକୁ ମିଳେ । ରସିକ ହାରାବଳୀର ନାୟକ କୋଶଳ ରାଜକୁମାର ରାଜାଜ୍ଞାରେ ରାକ୍ଷସ ଉତ୍ପୀଡ଼ନ ପ୍ରତିହତ କରିବା ନିମନ୍ତେ ପ୍ରବାସ ପଥରେ ପଥିକ । ୯୬ ଯୁଦ୍ଧର ଆରମ୍ଭ ମାତ୍ରେ ଶତ୍ରୁ ପକ୍ଷ ପଳାୟନ କରନ୍ତି । ସେମାନଙ୍କର ପଶ୍ଚାତ୍‌ଧାବନ କରୁ କରୁ ରାଜପୁତ୍ର ଆସି ଇଳାବୃତ ଖଣ୍ଡରେ ଉପସ୍ଥିତ । ପ୍ରିୟା ବିଚ୍ଛେଦ ଦୁଃଖରେ ତାଙ୍କର ଗୋଟିଏ ବର୍ଷ ସେଠାରେ ଅତିବାହିତ ହୋଇଛି । ଅଷ୍ଟମ ଛାନ୍ଦ ଠାରୁ ଚତୁର୍ଦ୍ଦଶ ଛାନ୍ଦ ପର୍ଯ୍ୟନ୍ତ ପ୍ରବାସ ବର୍ଣ୍ଣନା ପରିବ୍ୟାପ୍ତ । ସେଥିରୁ ନାୟିକାର ବିରହାନୁଚିନ୍ତା ପାଇଁ ଗୋଟିଏ ଛାନ୍ଦ ବ୍ୟୟିତ । ନାୟକର ବିରହ ଭାବନାରେ ରୀତି ଯୁଗୀୟ ପ୍ରେମ ଜିଜ୍ଞାସା ଓ ନାରୀ ଦୃଷ୍ଟି କାବ୍ୟର ବିପୁଳ ଅଂଶ ଅଧିକାର କରିଅଛି । ପ୍ରସଙ୍ଗକ୍ରମେ ଦାମ୍ପତ୍ୟ ପ୍ରୀତିର ଗୌରବ ନିକଟରେ କୁବେର ସମ୍ପତ୍ତିର ତୁଚ୍ଛତା ଉଦ୍‌ଘୋଷିତ । ବାନ୍ଧବୀ ନିକଟରେ ଥାଇ ମୃତ୍ୟୁବରଣ କରିବା ପୁରୁଷର ଚରମ ସଫଳତା ରୂପେ ଏଠାରେ କାବ୍ୟ-ସ୍ୱୀକୃତି ଲାଭ କରିଛି ।୯୭ ନାୟିକାର ବିବସନ ଜାନୁ ଓ ଜଘନ ଦେଶର ବର୍ଣ୍ଣନା ଦେବାକୁ ମଧ୍ୟ କବି କୁଣ୍ଠା ପ୍ରକାଶ କରିନାହାନ୍ତି । ନାୟକର ହିମ, ବସନ୍ତ ଓ ବର୍ଷା ଭାବନାରେ କାମ ବିଳାସ ବିସ୍ତୃତ ଚିତ୍ର ଉପସ୍ଥାପିତ । ଅଥଚ ଋତୁ ପ୍ରକୃତିର ସୌନ୍ଦର୍ଯ୍ୟ କିମ୍ବା ମାନବ ଜୀବନ ଉପରେ ତାହାର ଚିରନ୍ତନ ପ୍ରଭାବ ଚିତ୍ରଣରେ ବିଫଳତା ପରିଲକ୍ଷିତ । ନାୟିକାର ଚରଣ ସେବା ସୌଭାଗ୍ୟ ଲାଭ କରିବା ପାଇଁ ରାମଚନ୍ଦ୍ରଙ୍କ ନିକଟରେ ନାୟକର ଆକୁଳ ଆକୂତି ଦେହାସକ୍ତିର ସୂଚନା ବହନ କରେ । ୯୮ ନାୟିକାର ବର୍ଷା-ଭାବନାରେ ମଧ୍ୟ ପ୍ରଣୟ ସୁଖ ସ୍ମୃତି ସ୍ଥାନିତ । ସୁତରାଂ 'ରସିକ ହାରାବଳୀ'ରେ ବିରହର ଦେହୋତ୍ତର ସଂଭାବନା ଓ ସୂକ୍ଷ୍ମାନୁଭୂତିର ସୌନ୍ଦର୍ଯ୍ୟ ଗୌଣ । ଭାଷାର ଅଭିବ୍ୟକ୍ତି-ସାମର୍ଥ୍ୟ ଉଚ୍ଚ କୋଟିର । ଅଳଂକାର ଓ ଛନ୍ଦ ପ୍ରୟୋଗରେ ଉଦାର ଧାରା ରକ୍ଷା କରାଯାଇଥିବାରୁ ଭାବ ଅବବୋଧରେ ବ୍ୟାଘାତ ସୃଷ୍ଟି ହୁଏ ନାହିଁ ।

କବିଙ୍କ ପ୍ରେମ ସୁଧାନିଧି ମଧ୍ୟ ଅନ୍ୟତମ ସରସକାବ୍ୟ । 'ରସିକ ହାରାବଳୀ' ପରି ଏଥିରେ ପ୍ରବାସ ବିପ୍ରଲମ୍ଭର ସୁଦୀର୍ଘ ବର୍ଣ୍ଣନା ପ୍ରଦତ୍ତ । ନାୟକ କାର୍ଯ୍ୟୋପଲକ୍ଷ୍ୟେ ବିଦେଶ ଯାତ୍ରା ୯୯ ନିମନ୍ତେ ଆଦିଷ୍ଟ ହେବାରୁ

ତା'ର ଶରୀରରେ ସ୍ୱରଭଙ୍ଗ, ସ୍ତମ୍ଭ, ରୋମାଞ୍ଚ, ବେପଥୁ ଆଦି ନାନାବିଧ କାମ ବିକାର ପରିଲକ୍ଷିତ । ପ୍ରିୟତମାଠାରୁ ବିଦାୟ ଗ୍ରହଣକୁ ସେ ଶିରଚ୍ଛେଦଠାରୁ ଅଧିକ ପୀଡ଼ାଦାୟକ ବୋଲି ମନେ କରିଛି । ମାଳବ ଦେଶରେ ଥାଇ ହିମ, ବସନ୍ତ, ଗ୍ରୀଷ୍ମ, ବର୍ଷା ଓ ଶରତ ଋତୁ ଯାପନ କାଳରେ ପ୍ରିୟା-କେଳି-ରୀତି ସ୍ମରଣ କରି ତା'ର ହୃଦୟ ବିରହଦଗ୍ଧ । ନଗ୍ନ ଦୈହିକ ରସିକତାକୁ ଆଦର୍ଶ ରୂପେ ଗ୍ରହଣ କରି ନାୟକ ଜୀବନ ଓ ସୌନ୍ଦର୍ଯ୍ୟର ସଂକୀର୍ଣ୍ଣ ପରିସର ମଧ୍ୟରେ ଘୂରି ବୁଲିଛି । ଏଠାରେ ମଧ୍ୟ ନାରୀର ବିବସନ ଜାନୁ ଓ ସ୍ତନ ବର୍ଣ୍ଣନାର ଆତିଶଯ୍ୟ ଦେଖିବାକୁ ମିଳେ ।[୨୦୦] ନାୟକ ପକ୍ଷରେ ନାୟିକାର ନୀବୀ ମୋକ୍ଷଣହିଁ ମୁକ୍ତିର ଅନନ୍ୟ ପନ୍ଥାରୂପେ ପରିଗୃହୀତ ।[୨୦୧] ନାୟିକାର ବିରହ-ଭାବନା ମଧ୍ୟ ଦେହ-ମିଳନ-ସୁଖ-ସ୍ମୃତି ଉପରେ ଆଧାରିତ । ସର୍ବତ୍ର ପୁରୁଷର ଉଗ୍ର ସଂଭୋଗେଚ୍ଛା ଓ ନାରୀର ମୁଗ୍ଧ ସ୍ୱୀକୃତି ବିପ୍ରଲମ୍ଭର ଐଶ୍ୱର୍ଯ୍ୟ ପ୍ରତିଷ୍ଠାରେ ସମର୍ଥ ହୋଇନାହିଁ । କାବ୍ୟରେ ଅନେକତ୍ର ଆଳଙ୍କାରିକ ଶୃଙ୍ଖଳା କଠୋର । କିନ୍ତୁ ଭାଷା ଏପରି ସଂଗୀତିକ ଏବଂ ଶୃଙ୍ଗାରସିକ୍ତ ଯେ ଜନପ୍ରିୟତାର କଷଟିରେ ମୂଲ୍ୟ କଳନା କଲାବେଳେ ଏହାର କଳାଗତ ଅପକର୍ଷ ସହଜରେ ପାଶୋରି ହୋଇଯାଏ ।

ଉପେନ୍ଦ୍ରଙ୍କ 'ସୁବର୍ଣ୍ଣରେଖା' ମଧ୍ୟ ଜ୍ଞାତ-ପ୍ରବାସ-ବିପ୍ରଲମ୍ଭ ମୁଖ୍ୟ କାବ୍ୟ । ବିବାହର କେତେମାସ ଅନ୍ତେ ନାୟକ ପିତୃଆଜ୍ଞା ପାଳନ କରି ବିଦେଶଗାମୀ ।[୨୦୨] ନାୟିକାର ବିରହାନୁଚିନ୍ତା ଏଥିରେ ସ୍ଥାନ ପାଇନାହିଁ । କାବ୍ୟର ସଂକ୍ଷିପ୍ତ ପରିସର ମଧ୍ୟରେ କେବଳ ବର୍ଷା ବିଡ଼ମ୍ବିତ ନାୟକର ସଂଭୋଗ କାମନା ପ୍ରଧାନ ବର୍ଣ୍ଣନୀୟ ବିଷୟ ରୂପେ ଗୃହୀତ ।[୨୦୩] ପୂର୍ବୋକ୍ତ କାବ୍ୟମାନଙ୍କ ପରି ଏଥିରେ ମଧ୍ୟ ନଗ୍ନ ନାରୀ ଦେହର ମାଂସଳ ସୌନ୍ଦର୍ଯ୍ୟ, ସଂଭୋଗ ସ୍ମୃତି ଓ ସାମନ୍ତୀୟ ପୌରୁଷ ଭାବନାର ଚିତ୍ର ଅଙ୍କିତ ।[୨୦୪] ବହୁ ସ୍ଥଳରେ ବର୍ଣ୍ଣନା ଏତେ ମୁକ୍ତ ଯେ ତାହା ସ୍ଥୂଳତା-ଦୋଷ ଦୁଷ୍ଟ । କିନ୍ତୁ ଦାସୀ ମୁଖରେ ନାୟିକା ବିରହ ଦଶାର ଅବତାରଣା ସ୍ୱଳ୍ପ ହେଲେ ହେଁ ସୁନ୍ଦର ଓ ସଂଯତ ।[୨୦୫] ଏହି କାବ୍ୟରେ ଶବ୍ଦ ଓ ଅଳଙ୍କାର ପାଣ୍ଡିତ୍ୟ ପ୍ରଦର୍ଶନର ପ୍ରୟାସ କରଯାଇନାହିଁ । ଭାଷା ଓ ବିଷୟ ବିନ୍ୟାସ ସରଳ ଓ ସାବଲୀଳ ହୋଇଥିବାରୁ ପାଠକ ମହଲରେ ଏହା ବିଶେଷ ଭାବେ ଆଦୃତ ।

ଉଲ୍ଲିଖିତ ତିନୋଟିଯାକ ଗ୍ରନ୍ଥର କାବ୍ୟଧର୍ମ ଏକ ବୋଲି କବି 'ସୁବର୍ଣ୍ଣରେଖା'ଗ୍ରନ୍ଥ ସମାପ୍ତିରେ ଘୋଷଣା କରିଛନ୍ତି । ଏହି ସକଳ କାବ୍ୟରେ ପୁରୁଷ-ବିରହ-ଭାବନାର ପ୍ରାଧାନ୍ୟ ଅନୁଭୂତ । ନାରୀ ହୃଦୟ-ବେଦନାର ପରିପ୍ରକାଶ ନିମନ୍ତେ ହୁଏତ ଯୁଗରୁଚି ପ୍ରତିକୂଳ ହୋଇଅଛି । ପ୍ରତ୍ୟେକ କ୍ଷେତ୍ରରେ ବିପ୍ରଲମ୍ଭ ଶୃଙ୍ଗାର ଦୃଷ୍ଟି ପ୍ରେମ ଓ ସୌନ୍ଦର୍ଯ୍ୟର ଯଥୋଚିତ ଦୀକ୍ଷା ଗ୍ରହଣ କରିପାରିନାହିଁ । ସମୟ ଓ ସମାଜ ଏଥିପାଇଁ ଦାୟୀ ହେଲେ ହେଁ ପ୍ରେମର ଚିରକାଳୀନ ମୂଲ୍ୟବୋଧ ବିଚାରରେ ତା'ର ସମୀକ୍ଷା କଲାବେଳେ ଆମକୁ ସତ୍ୟକୁ ହିଁ ଆବିଷ୍କାର କରିବାକୁ ପଡ଼ିବ ।

ବ୍ରଜନାଥଙ୍କ 'କେଳି କଳାନିଧି'ର ବିପ୍ରଲମ୍ଭ ବର୍ଣ୍ଣନା 'ପ୍ରେମ ସୁଧାନିଧି' ଅନୁରୂପ । ରାଜକାର୍ଯ୍ୟ ଉଦ୍ଦେଶ୍ୟରେ ନାୟକର ବିଦେଶ ଯାତ୍ରା ଏଠାରେ ଉଲ୍ଲିଖିତ ।[୧୦୬] ନାୟିକାଠାରୁ ନାୟକର ବିଦାୟ ଦୃଶ୍ୟ କିଞ୍ଚିତ୍ ପ୍ରାଣବନ୍ତ । ସରେଷ, ନିରେଷ, ମହାଯମକ ଆଦି ଅକ୍ଷର କୌଶଳର ପ୍ରାଧାନ୍ୟ ଯୋଗୁଁ ବିଚ୍ଛେଦ ବର୍ଣ୍ଣନା (ଅଷ୍ଟମ ଛାନ୍ଦ) ଏକାନ୍ତ ଶୁଷ୍କ ଓ ନୀରସ । ବସନ୍ତ ଭାବନା, ସଂଯୋଗ ସ୍ମୃତି, ପତ୍ରିକା ଆଦାନପ୍ରଦାନ ଧାରରେ ନାୟକର ପ୍ରବାସ କାଳ ଅତିବାହିତ । ସାମାନ୍ୟ ବ୍ୟତିକ୍ରମ ଛଡ଼ା କାବ୍ୟରୁ ମୌଳିକତା ସଂଧାନ କରିବା ଅପପ୍ରୟାସ ମାତ୍ର ।

ରଘୁନାଥ ହରିଚନ୍ଦନଙ୍କ ସାତ ଛାନ୍ଦ ବିଶିଷ୍ଟ ଅପ୍ରକାଶିତ କାବ୍ୟ 'ସୁକୁତଳା' ପୂର୍ଣ୍ଣତଃ ଏକ ପ୍ରବାସ ବିପ୍ରଲମ୍ଭାତ୍ମକ କାବ୍ୟ । ନାୟିକାର ରୂପ ବର୍ଣ୍ଣନା ଓ କାର୍ଯ୍ୟ ହେତୁକ ନାୟକର ବିଦେଶ ଯାତ୍ରାରୁ ଆରମ୍ଭ ହୋଇ ଉଭୟଙ୍କ ମିଳନରେ ଗ୍ରନ୍ଥଟି ପରିସମାପ୍ତ । ବର୍ଷା ଓ ଶରଦ ଭାବନା ଅବକାଶରେ ନାରୀ ଓ ପୁରୁଷ ପ୍ରାଣର ବିରହ ବେଦନା ପ୍ରତି କବିର ଦୃଷ୍ଟି ସାମ୍ୟ ଏଠାରେ ଉଲ୍ଲେଖଯୋଗ୍ୟ ।[୧୦୭] ସରଳ ଭାବ, ଅକୃତ୍ରିମ ଭାଷା ଓ ସାବଲୀଳ ବର୍ଣ୍ଣନାଭଙ୍ଗୀ ଯୋଗୁଁ ଏହା ପ୍ରଶଂସନୀୟ ସାହିତ୍ୟ-ମୂଲ୍ୟର ଅଧିକାରୀ ।

(ଖ) ଶାପ—ଶାପମୁକ୍ତି ହେତୁ ନାୟକ ମକର କେତୁକୁ ପରିତ୍ୟାଗ କରି ଇନ୍ଦ୍ରଙ୍କ ସହ ନାୟିକା ପରିମଳାର ସ୍ୱର୍ଗପୁର ଯାତ୍ରା ବିଧି ନିର୍ଦ୍ଦିଷ୍ଟ ।

ବିଦାୟ-ଦିବସ ପୂର୍ବରୁ 'ଦୁହେଁ ପରସ୍ପରର ଭାବୀ ବିଚ୍ଛେଦ ଚିନ୍ତାରେ ଅଧୀର ।[୧୦୮] ନାୟିକାକୁ ତ୍ୟାଗ ନକରିବା ଲାଗି ନାୟକର ସକଳ ପ୍ରୟାସ ବ୍ୟର୍ଥତାରେ ପର୍ଯ୍ୟବସିତ । ମକରକେତୁର ମୂର୍ଚ୍ଛାହତ ଅବସ୍ଥାରେ ପୁନର୍ମିଳନର ବିଧାନ କାଳରେ ଲେଖିଦେଇ ଅନନ୍ୟୋପାୟା ପରିମଳା ମର୍ତ୍ତ୍ୟଲୋକରୁ ବିଦାୟ ଗ୍ରହଣ କରିଛି । ଏହି ଦୃଶ୍ୟରେ ଅଙ୍କିତ ବିରହିଣୀ ନାରୀ ପ୍ରାଣର ଗଭୀର ବେଦନା, ଆବେଗ ଓ ଆକୁଳତା ମାନବିକ ପ୍ରେମ ଭାବନାର ଗୌରବରେ ମହୀୟାନ୍ । ନାୟିକାର ବିଦାୟକାଳୀନ ପ୍ରତ୍ୟେକ ପଦପାତରେ ବିଚ୍ଛେଦର ଯେଉଁ ଅନାବିଳ ସୁଷମା ଫୁଟି ଉଠିଛି, ତାହା ଓଡ଼ିଆ କାବ୍ୟ ଜଗତରେ ଏକାନ୍ତ ବିରଳ ।[୧୦୯] ଉଭୟଙ୍କ ବିରହ ଭାବନା କାବ୍ୟର ବିପୁଳ ଅଂଶରେ ପରିବ୍ୟାପ୍ତ; କିନ୍ତୁ ବୈଚିତ୍ର୍ୟମୟ । ଅତୀତର ସଂଭୋଗ ସୁଖ ସ୍ମରଣ କରି ନାୟକ ଯେପରି ବିରହପୀଡ଼ିତ, ସ୍ୱର୍ଗପୁରରେ ନାୟିକା ଓ ଚିତ୍ରରଥ ମିଳନ ଆଶଙ୍କାରେ ତା'ର ହୃଦୟାକାଶ ସେହିପରି ମେଘାୟିତ ।[୧୧୦] ରୀତି ଯୁଗୀୟ କାବ୍ୟ ନାୟକ ଚରିତ୍ରରେ ଏହା ଏକ ଆଶ୍ଚର୍ଯ୍ୟ ବ୍ୟତିକ୍ରମ । ପ୍ରେମିକ ଚିତ୍ରରଥ ସହ କପଟ ପ୍ରୀତିରତା ନାୟିକାର ପତି-ବିଚ୍ଛେଦ ଜନିତ ବିରହାନୁଚିନ୍ତା ମଧ୍ୟ କାବ୍ୟଧାରାରେ ସଂପୂର୍ଣ୍ଣ ନୂତନ । ନାରୀ ଓ ପୁରୁଷ ଚରିତ୍ରରେ ଏ ପ୍ରକାର ମାନସିକ ଦ୍ୱନ୍ଦ୍ୱ କାବ୍ୟକୁ ଅଧିକ ବାସ୍ତବବାଦୀ ଓ ଜୀବନଧର୍ମୀ କରିଛି । ବର୍ଷା, ଶରତ, ହିମ, ଶିଶିର ଋତୁକାଳୀନ ପରସ୍ପର ଅନୁଚିନ୍ତାରେ ବିପ୍ରଲମ୍ଭ ପରମ୍ପରାଗତ ସମୃଦ୍ଧ । ଦୀର୍ଘ ବିଚ୍ଛେଦ ଅନ୍ତେ ଅଲୌକିକ ବିଧିବିଧାନ ମାଧ୍ୟମରେ ସେମାନଙ୍କ ମିଳନ ସଂଘଟିତ । ଶାପ ହେତୁକ ପ୍ରବାସ ପ୍ରସଂଗରେ କାବ୍ୟର ଅନେକ ଛତ୍ର ଜୀବନାନୁଭୂତିର ମାଧୁର୍ଯ୍ୟରେ ପ୍ରଭାତର ଶିଶିରବିନ୍ଦୁ ପରି ଉଜ୍ଜ୍ୱଳ ଓ ସତେଜ ।

ବିଷ୍ଣୁଦାସଙ୍କ 'ପ୍ରେମଲୋଚନା' କାବ୍ୟର ନାୟକ ସୁଧାକର ଉପବନ ବିହାର କାଳରେ ନାୟିକା ଅପହରଣ ପ୍ରୟାସୀ କଳାବନ୍ତ ନାମକ ଗନ୍ଧର୍ବକୁ ଯୁଦ୍ଧରେ ପରାସ୍ତ କରିଥିବା ହେତୁ କୋପାନ୍ୱିତ ଇନ୍ଦ୍ରଙ୍କ ଦ୍ୱାରା ଚତୁର୍ଦ୍ଦଶ ମାସ ବ୍ୟାପୀ ପତ୍ନୀ 'ବିଚ୍ଛେଦ ପୀଡ଼ା ବରଣ କରିବା ଲାଗି ଅଭିଶପ୍ତ ।[୧୧୧] ଏକଦା ବିପନ୍ନ ଉଦ୍ଧାର ନିମନ୍ତେ ଶକ୍ରୁ ପକ୍ଷର ପଶ୍ଚାଦ୍‌ଧାବନ କରୁ କରୁ

ବହୁଦେଶ ଅତିକ୍ରମପୂର୍ବକ ସିଂହଳ ରାଜ୍ୟରେ „ଯାଇ ସେ ଉପସ୍ଥିତ । ଅକସ୍ମାତ୍ ତାଙ୍କର ରଥ ସେଠାରୁ ଅନ୍ତର୍ହିତ । ଚତୁର୍ଦ୍ଦିଗକୁ ନିରୀକ୍ଷଣ କରି ପ୍ରିୟା-ବିଚ୍ଛେଦ ଜନିତ ଗଭୀର ସନ୍ତାପରେ ସେ ହତଜ୍ଞାନ । ଚେତନା ଲାଭ କରିବା ଉତ୍ତାରୁ ସମ୍ଭୋଗର ମଧୁମୟ ସ୍ମୃତିରେ ତାଙ୍କର ପ୍ରାଣ ଆକୁଳିତ । ବର୍ଷାକାଳ ଉଦୟରେ ଜଳଧରକୁ ସମ୍ବୋଧନ କରି ସେ ପ୍ରିୟା ନିକଟକୁ ବାର୍ତ୍ତା ପ୍ରେରଣ କରିଛନ୍ତି । ନାୟିକା ବିରହ ଦଶାର ବର୍ଣ୍ଣନା କିନ୍ତୁ ଅଧିକ ମନୋରମ । ବିଶେଷତଃ ବସନ୍ତ ଋତୁରେ ରାଜକୁମାରୀର କାମପୀଡ଼ା ଉପଶମ କରିବା ପାଇଁ ସଖୀମାନଙ୍କର ଆନ୍ତରିକ ବ୍ୟାକୁଳତା ଓ ଅଶେଷ ଆୟୋଜନର ବର୍ଣ୍ଣନା କାବ୍ୟର ଶ୍ରୀବୃଦ୍ଧି ସାଧନ କରିଛି ।[୧୧୨] ନାୟିକା ଚରିତ୍ରରେ ବିବିଧ ଋତୁ ଆଧାରିତ ପ୍ରିୟ-ଭାବନାର ଉଲ୍ଲେଖ ଥିଲେ ହେଁ ବର୍ଷା ଚିତ୍ର ଅଧିକ ସଫଳ ।

ଉପେନ୍ଦ୍ର ଭଞ୍ଜଙ୍କ 'ଲାବଣ୍ୟବତୀ' କାବ୍ୟରେ ଦୈବ ଶାପ ହିଁ ନାୟକ ନାୟିକାଙ୍କ ବିଚ୍ଛେଦର କାରଣ ରୂପେ ଗୃହୀତ ।[୧୧୩] ଅସୁର କବଳରୁ ମୁନୀମାନଙ୍କୁ ରକ୍ଷା କରିବା ନିମନ୍ତେ ନିଃଶ୍ୱାସିକା ଚଣ୍ଡୀଙ୍କ ଦ୍ୱାରା ଗ୍ରହମିତ୍ରଙ୍କ ସହ ନାୟକ ଅପହୃତ ଏବଂ ଇଳାବୃତ୍ତ ଖଣ୍ଡରେ ନିର୍ବାସିତ । ପ୍ରବାସୀ ନାୟକର ଷଡ଼ଋତୁ ଭାବନା କାବ୍ୟ ପରମ୍ପରାନୁସାରୀ । କିନ୍ତୁ ପ୍ରୀତି ଅନୁରାଗୀ ପୁରୁଷ ପ୍ରାଣର ଯେଉଁ ଲଳିତ ରସମୟ ଭାବ ସଂପଦ୍ ଏଥିରେ ପ୍ରସ୍ଫୁଟିତ, ତାହା ଅନ୍ୟ କୌଣସି ଭଂଜୀୟ କାବ୍ୟରେ ପରିଦୃଷ୍ଟ ହୁଏନାହିଁ । ପ୍ରିୟତମା ପାଇଁ ପ୍ରିୟତମର ସୀମାହୀନ ଶ୍ରଦ୍ଧା ବିରହର ଆକୁଳ ଆବେଗରେ ଗୁଞ୍ଜରିତ ହୋଇ ଏଠାରେ କାବ୍ୟ–ବ୍ୟଞ୍ଜନାର ମୋହମୟ ପରିବେଶ ସୃଷ୍ଟି କରିଛି । ସ୍ଥଳ ବିଶେଷରେ ଏହା ଜୀବନର ଅନ୍ତରଙ୍ଗ ସ୍ପର୍ଶରେ ଏପରି ସୌନ୍ଦର୍ଯ୍ୟସ୍ନିଗ୍ଧ ଯେ ମାନବିକ ପ୍ରେମର ଦେହ ଚେତନା ସେଠାରେ ମ୍ଳାନ ।[୨୧୪] କବି ପ୍ରୀତିର ପରାକାଷ୍ଠା ଦର୍ଶାଇବାକୁ ଯାଇ ନାୟକ ମୁଖରେ ବିବିଧ ପୌରାଣିକ ଉପାଖ୍ୟାନର ସରସ ଅବତାରଣା କରିଅଛନ୍ତି । ଯୁଗ ରୁଚି ଓ କାବ୍ୟାଦର୍ଶ ଅନୁରୋଧରେ ନାୟକର ବିରହାନୁଚିନ୍ତା ସଂଭୋଗର ବିସ୍ତୃତ ପଟଭୂମିରେ ଅଙ୍କିତ । ନାୟିକାର ବିବିଧ ଆଚରଣ, ଅଙ୍ଗଶୋଭା,ଅଳଂକାର, ଭୂଷଣାଦିର ମନୋରମ ଚିତ୍ର ସଙ୍ଗେ ସଙ୍ଗେ କାମପୀଡ଼ା ହେତୁକ ତା'ର

ବିବିଧ ଅବସ୍ଥା ଫୁଟାଇବାକୁ କବି ସଯତ୍ନ ପ୍ରୟାସ କରିଛନ୍ତି । ନାରୀ ଦେହକୁ ଯୁବା-ବୈକୁଣ୍ଠପୁର ରୂପେ ଘୋଷଣା କରିବା ତାଙ୍କ ଦେହବାଦୀ ପ୍ରୀତି ଭାବନାର ପରିଚୟ ବହନ କରେ ।[୨୧୫] ଏସବୁ ସତ୍ତ୍ୱେ ବିପ୍ରଲମ୍ଭ ବର୍ଣ୍ଣନା ସ୍ଥୂଳତା ଦୋଷରୁ ମୁକ୍ତ ହୋଇ ପାରିନାହିଁ । ଦେହ ବିଳାସର ମାଦକତା ବର୍ଣ୍ଣନାରେ ନାୟିକାର ସ୍ମର ମନ୍ଦିର[୨୧୬] କିମ୍ବା ବନ୍ଧ ସଂଯୋଗର[୨୧୭] ଅବାଧ ଉଲ୍ଲେଖ 'ଲାବଣ୍ୟବତୀ'ର କାବ୍ୟ ଯଶକୁ କିଞ୍ଚିତ୍ ମଳିନ କରିଦେଇଛି ।

କବି କାମଦେବ ପଟ୍ଟନାୟକଙ୍କ 'ରସକଳା' କାବ୍ୟରେ ଦେବୀ ଅଭିଶାପ ହେତୁକ ନାୟକ ନାୟିକାଙ୍କ ବିଚ୍ଛେଦ ବର୍ଣ୍ଣିତ ।[୨୧୮] ବିରହରେ ପ୍ରିୟାଗୁଣ ସ୍ମରଣ, କାମ ପୀଡ଼ାର ଅବସାନ ପାଇଁ ବ୍ରତ, ଉପବାସ ଓ ଦେବଦେବୀ ପୂଜାଦି ବିବିଧ ବିଧାନ ଅନୁସରଣ ସତ୍ତ୍ୱେ ନାୟକ ଚରିତ୍ର ନିଷ୍ପ୍ରଭ । କାବ୍ୟର ଭାଷା ନୀରସ ଓ ବୈଚିତ୍ର୍ୟହୀନ ହୋଇଥିବାରୁ ବିପ୍ରଲମ୍ଭର ଆବେଦନ ସୃଷ୍ଟି କରିବାରେ ଏହା ଅସମର୍ଥ ।

ଆଲୋଚନାରୁ ଜଣାଯାଏ ଯେ ଶାପ ଓ ଶାପମୁକ୍ତି ଦ୍ୱିବିଧ କାରଣରୁ ରୀତି କାବ୍ୟର ନାୟକ ନାୟିକା ବିରହପୀଡ଼ାରେ ସନ୍ତାପିତ । ସକଳ କ୍ଷେତ୍ରରେ ଶାପ ପ୍ରଦାନ କୌଣସି ଯୁକ୍ତି ଉପରେ ପ୍ରତିଷ୍ଠିତ ନୁହେଁ । ସର୍ବତ୍ର ନାୟିକା ଶରଣାଗତ ପୌରୁଷର ଚିତ୍ର ହିଁ ପ୍ରଦତ୍ତ । 'ପରିମଳା'ର ନାୟକ ସନ୍ଦେହ ଓ ଅବିଶ୍ୱାସ ଭିତରେ ପରପ୍ରୀତିରତ ନାୟିକା ପାଇଁ ଏକନିଷ୍ଠ ସାଧନାରେ ବ୍ରତୀ । ଏହାର ନାୟିକା ଚରିତ୍ରରେ ଦେହ ଓ ମନର ପାର୍ଥକ୍ୟ ଦେଖିବାକୁ ମିଳେ । ଏକନିଷ୍ଠ ପ୍ରୀତିର ଗଭୀରତା ଓ ତନ୍ମୟତା ଦୃଷ୍ଟିରୁ 'ଲାବଣ୍ୟବତୀ'ର ସଫଳତା ପ୍ରଶଂସନୀୟ ।

(ଗ) ସଂଭ୍ରମଃ—ପ୍ରତାପ ରାୟଙ୍କ 'ଶଶିସେଣା' କାବ୍ୟରେ ନିଜର ପ୍ରକୃତ ନାମ ପ୍ରକାଶ କରି ନାୟକ ଅହିମାଣିକ୍ୟର ସର୍ପ ରୂପେ ଅନ୍ତର୍ଦ୍ଧାନ ହେବା ପ୍ରସଙ୍ଗ ବିସ୍ମୟକର । ସେ ନାଗପୁରୁଷ ହୋଇଥିବାରୁ ମର୍ତ୍ତ୍ୟ ଯୁବତୀ ସହିତ ତା'ର ଅବସ୍ଥାନ ସଂଭବ ନୁହେଁ । ଏଇ ବିଚ୍ଛେଦରେ ନାୟିକା ହୃଦୟର ଗଭୀର ଖେଦ ବିଳାପ ମର୍ମରିତ ।[୨୧୯] ପିତାମାତା, ବଂଧୁ, ପରିଜନ ପରିତ୍ୟକ୍ତା ଶଶିସେଣାର ଅସହାୟତା ଓ ଆର୍ତ୍ତ କ୍ରନ୍ଦନରେ ଜଡ଼ ପ୍ରକୃତି

ମଧ୍ୟ ବିଚଳିତ । ଈଶ୍ୱରଙ୍କ ନିର୍ଦ୍ଦେଶରେ ଦେବୀ ସରସ୍ୱତୀ ସଦାନନ୍ଦ ଯୋଗୀ ହୃଦୟରେ ବିରାଜମାନ କରିଛନ୍ତି ଏବଂ ଯୋଗୀ ଶୋକାତୁର ନାୟିକା ନିକଟକୁ ଆସି ପୁନର୍ବାର ପତି ସହ ମିଳିତ ହେବାର ଉପାୟ କହି ଦେଇଛନ୍ତି । ବିରହ ବର୍ଣ୍ଣନାରେ ଦେହଜ କାମନାର ସାମାନ୍ୟତମ ସୂଚନା ନାହିଁ । ବରଂ ପ୍ରଣୟର ଶୁଦ୍ଧପୂତ ଆଦର୍ଶ ଏଥିରେ ପ୍ରତିଫଳିତ ।

ଉପେନ୍ଦ୍ର ଭଞ୍ଜଙ୍କ 'ବୈଦେହୀଶ ବିଳାସ'ରେ ରାମଚନ୍ଦ୍ରଙ୍କ ବିରହ ଦଶାର ଯେଉଁ ଚିତ୍ର ଅଙ୍କନ କରାଯାଇଛି ତାହା ଅଳଂକାର ଶାସ୍ତ୍ର ଓ କବି ପରମ୍ପରା ଅନୁସରଣରେ ସମୃଦ୍ଧ । ଅରଣ୍ୟ ପ୍ରତ୍ୟାଗତ ନାୟକ କୁଟୀର ଦ୍ୱାରଦେଶରେ ପ୍ରିୟତମା ସୀତାଙ୍କର ଦର୍ଶନ ଲଭ ନ କରି ଶାସ୍ତ୍ରୀୟ (ସ୍ୱାଧୀନଭର୍ତ୍ତୃକା, ବିରହୋତ୍ କଣ୍ଠିତା ଇତ୍ୟାଦି ଅଷ୍ଟନାୟିକା) ରୀତିରେ ଚିନ୍ତାମଗ୍ନ ।[୧୨୦] ଏଥିରେ କବି-କର୍ମ-କୁଶଳତା ଅତି ସୁନ୍ଦର ଭାବେ ପ୍ରଦର୍ଶିତ ହୋଇଥିଲେ ହେଁ ପ୍ରୀତିର ସ୍ୱାଭାବିକତା ପ୍ରତିହତ । ସୀତା ଅପହରଣ ସମ୍ବାଦ ପ୍ରାପ୍ତି ଜନିତ ବେଦନାଦଗ୍ଧ ରାମଚନ୍ଦ୍ରଙ୍କ ବିରହାନୁଚିନ୍ତା ଯଥାର୍ଥରେ କରୁଣ ଓ ଅନ୍ତରଙ୍ଗ ।[୧୨୧] ମାଲ୍ୟବନ୍ତରେ ବର୍ଷା ବର୍ଣ୍ଣନା ପ୍ରସଙ୍ଗ ତାଙ୍କ ଆକୁଳ ଆବେଗମୟ ହୃଦୟର ପରିପ୍ରକାଶ ଦୃଷ୍ଟିରୁ ଅତ୍ୟନ୍ତ ରମଣୀୟ । ଭାଷା ଓ ଭାବର ସ୍ୱଚ୍ଛଚିତ୍ର ଅଙ୍କନ କରିବାରେ କବିଙ୍କ ଶିଳ୍ପ–ନୈପୁଣ୍ୟ ପ୍ରଶଂସନୀୟ ।[୧୨୨] ରୀତି କାବ୍ୟର ନାୟକ ପରି ରାମଚନ୍ଦ୍ର ବର୍ଷା, ଶିଶିର, ହେମନ୍ତ, ବସନ୍ତ ଆଦି ବିବିଧ ଋତୁ ପ୍ରିୟା ବିରହରେ ଯାପନ କରିଛନ୍ତି । ବିଭିନ୍ନ ଦିଗକୁ ସ୍ୱର ପ୍ରେରଣ କାଳରେ ନାୟିକାର ରୂପ ଗୁଣ ବର୍ଣ୍ଣନ ତଥା ଅତୀତର ସ୍ମରଣୀୟ ଘଟଣାବଳୀ ଉଲ୍ଲେଖରେ ତାଙ୍କ ପ୍ରୀତି ଗଦ୍ ଗଦ୍ ପ୍ରାଣର ଅନୁପମ ପରିଚୟ ଲିପିବଦ୍ଧ । ସ୍ଥଳବିଶେଷରେ ଏହି ବିରହ ଭାବନା ପାର୍ଥିବ ଦେହ ଚେତନାରେ ଭାରକ୍ରାନ୍ତ । ପ୍ରସ୍ଫୁଟିତ କଦମ୍ବ ପୁଷ୍ପ ଶୋଭା ସନ୍ଦର୍ଶନରେ ତାଙ୍କର ପ୍ରିୟା-ବିବସନ-ସୌନ୍ଦର୍ଯ୍ୟ-ସ୍ମୃତି ସ୍ମରଣ ଏଠାରେ ଉଲ୍ଲେଖଯୋଗ୍ୟ ।[୧୨୩] ନାୟିକା ବିରହ ଦଶାର ଚିତ୍ର ଅତି ସଂକ୍ଷିପ୍ତ । ବସନ୍ତ ବର୍ଣ୍ଣନା ପ୍ରସଙ୍ଗରେ ଅଶୋକ ବନବାସିନୀ ସୀତାଙ୍କର

ପ୍ରିୟ ସ୍ମରଣ ଓ ବନପ୍ରିୟ ପ୍ରତି ସମ୍ବୋଧନ ମାର୍ଜିତ ଭାବ ଓ ରୁଚିର ପରିଚାୟକ ।[୧୨୮] ସମ୍ଭୋଗାକୁଳତା କିମ୍ବା ବିରହାତିଶଯ୍ୟ ଆଦି କାବ୍ୟିକ ଅତିରଞ୍ଜନ ଏ ଚିତ୍ରରେ ସଂପୂର୍ଣ୍ଣ ପରିହୃତ ।

ରାମଚନ୍ଦ୍ର ପଟ୍ଟନାୟକଙ୍କ ଅପ୍ରକାଶିତ 'ହାରାବତୀ' କାବ୍ୟର ନାୟକ ନାୟିକା ଅବୈଧ ଗୋପନ ପ୍ରଣୟରେ ଲିପ୍ତ । ସମାଜ ସଂଭ୍ରମ ହେତୁ ନାୟିକା ଅନ୍ୟତ୍ର ବିବାହ କରି ଯଥା ସମୟରେ ଶ୍ୱଶୁରାଳୟକୁ ଯାତ୍ରା କରିଛି । କିନ୍ତୁ ସେମାନଙ୍କ ମଧ୍ୟରେ ପ୍ରଣୟର ବନ୍ଧନ ଛିନ୍ନ ହୋଇନାହିଁ । ବିରହ ଦଗ୍ଧ ନାୟକ ଅତୀତ ସମ୍ଭୋଗ ସୁଖ ସ୍ମରଣ କରିବା ସଙ୍ଗେ ସଙ୍ଗେ ପୁରୁଷୋଚିତ ସନ୍ଦେହରେ ବ୍ୟାକୁଳ ।[୧୨୯] ନାୟିକାର ପିତାପୁରକୁ ପ୍ରତ୍ୟାବର୍ତ୍ତନ କ୍ରମେ ଦୁହେଁ ପୁନରାୟ ସମ୍ଭୋଗ ବିଳାସରେ ପ୍ରମତ୍ତ । ଗ୍ରାମୀଣ ଚରିତ୍ର ଭିତ୍ତିକ ଅବୈଧ ପ୍ରେମର ନିରୋଳ ଅଭିବ୍ୟକ୍ତି ଦୃଷ୍ଟିରୁ କାବ୍ୟଟିର ଆବେଦନ ସ୍ୱତନ୍ତ୍ର । ପରଂପରାଚ୍ୟୁତ ଜୀବନର ମୁକ୍ତ ଉପଲବ୍ଧି ପ୍ରଦାନ କରିବାରେ ଏହା ଅସାମାନ୍ୟ ଗୌରବର ଅଧିକାରୀ ।

ଓଡ଼ିଆ ରୀତି କାବ୍ୟରେ ସଂଭ୍ରମ ପ୍ରବାସର ବର୍ଣ୍ଣନା ଅପ୍ରଚୁର । ଆଲୋଚନା ଅନ୍ତର୍ଭୁକ୍ତ ପ୍ରତ୍ୟେକ ପ୍ରସଙ୍ଗର ପୃଷ୍ଠଭୂମି ସ୍ୱତନ୍ତ୍ର ହୋଇଥିବାରୁ ସକଳ କ୍ଷେତ୍ରରେ ଜୀବନାନୁଭୂତିର ବୈଚିତ୍ର୍ୟ ପରିଲକ୍ଷିତ ।

. .

## ଅଜ୍ଞାତ–

ଅର୍ଜୁନ ଦାସଙ୍କ 'କଳ୍ପଲତା'ର ନାୟକ ଏକଦା ନାୟିକା ସହ ସରୋବରରେ ଜଳକ୍ରୀଡ଼ା କରୁଥିବା ସମୟରେ ନାଗକୁମାରୀଦ୍ୱୟ କର୍ତ୍ତୃକ ଅପହୃତ ।[୧୩୦] ସ୍ୱାମୀଙ୍କୁ ନପାଇ ନାୟିକାର ହୃଦୟ ନାନା ଆଶଙ୍କାରେ ବିଚଳିତ । ପ୍ରିୟତମର ଅନୁରାଗ ସ୍ମରଣ କରି ବିଚ୍ଛେଦ ଦୁଃଖରେ ଅଗ୍ନିରେ ଆତ୍ମାହୁତି ଦେବାକୁ ସେ ସଙ୍କଳ୍ପବଦ୍ଧା । ପିତାଙ୍କର ଅନୁରୋଧକ୍ରମେ ଆଠଦିନ ଅପେକ୍ଷା କରିବା ନିମିତ୍ତ କଳ୍ପଲତା ନିଜର ସ୍ୱୀକୃତି ଜଣାଇ କୁଶ ଶଯ୍ୟାରେ କାଳ ଯାପନ କରିଛି । ତାହାର ବିରହ ଅକୁଳତାରେ ପ୍ରକୃତି ରାଜ୍ୟ ମଧ୍ୟ କରୁଣ କାତର ।[୧୩୧] ନିର୍ଦ୍ଦିଷ୍ଟ ଦିନ ଏକ ଅଶୁଭ ଉଲ୍କାପାତମୟ

ପରିବେଶରେ ଅଗ୍ନି ପ୍ରବେଶ ନିମନ୍ତେ ସେ ସରୋବରରେ ସ୍ନାନବିଧି ସମାପନ କରୁଥିବା ଅବସ୍ଥାରେ ନାୟକର ଆବିର୍ଭାବ ସକଳ ଉଦ୍‌ବେଗର ଅବସାନ ଘଟାଇଛି । ନାୟିକା ଚରିତ୍ରରେ ତ୍ୟାଗର ଜ୍ୱଳନ୍ତ ଆଦର୍ଶ ପ୍ରଦର୍ଶିତ । ସମ୍ଭୋଗ ସ୍ମୃତିର ଚିତ୍ର କିଞ୍ଚିତ୍ ଦେହଜ ହେଲେ ହେଁ ଚାରିତ୍ରିକ ମହିମା ନିକଟରେ ତାହା ଏକାନ୍ତ ଗୌଣ । ଅଲୌକିକତା ଅତିରିକ୍ତ ଆବେଗର କମନୀୟତା ଓ ଭାଷାର ନିରାଭରଣତା ଦୃଷ୍ଟିରୁ କାବ୍ୟଟି ବିଶେଷ ହୃଦୟଗ୍ରାହୀ । ମାନବର ଦୁଃଖ ପ୍ରତି ପ୍ରକୃତିର ଗଭୀର ସମ୍ବେଦନଶୀଳତା ସୃଷ୍ଟି କରିବାରେ 'କଳ୍ପଲତା' ଆଦି କାବ୍ୟ ଗୌରବରେ ଗୌରବାନ୍ୱିତ ।

ପ୍ରତାପ ରାୟଙ୍କ 'ଶଶିସେଣା' କାବ୍ୟର ନାୟକ ଅହିମାଣିକ୍ୟ ଏକଦା କାମତାପୁରେ ସ୍ନାନ ଦେଇ ମାଲୁଣୀ କବଳରେ (ମେଣ୍ଢା ରୂପେ) କବଳିତ । [୧୨୮] ଯଥା ସମୟରେ ସ୍ୱାମୀର ଅପ୍ରତ୍ୟାବର୍ତ୍ତନ ହେତୁ ଶଶିସେଣା ବିଷାଦଗ୍ରସ୍ତା । ନିକଟସ୍ଥ ଦେବୀ ମନ୍ଦିରରେ ତା'ର ଆରାଧନା ଓ ଅଭୀଷ୍ଟ ବରଲାଭ ଅଲୌକିକ ହେଲେ ହେଁ କାବ୍ୟ-ପରମ୍ପରା ସିଦ୍ଧ । ନାୟିକା ଚରିତ୍ରରେ ବିରହର ଆତିଶଯ୍ୟ ଅପେକ୍ଷା ଦିବାବସାନ ଓ ରାତ୍ରିର ପରିବେଶଗତ ବର୍ଣ୍ଣନା ଅଧିକ ରମଣୀୟ ଓ ସ୍ୱାଭାବିକ । ଅନ୍ୟ କେଉଁ ନାରୀର କୁହୁକରେ ସ୍ୱାମୀଙ୍କର ପଥଭ୍ରଷ୍ଟ ହୋଇଥିବା ସନ୍ଦେହ ଶଶିସେଣାକୁ ଯଥାର୍ଥ ନାରୀତ୍ୱର ଗୌରବ ଦାନ କରିଛି । [୧୨୯]

ନରସିଂହ ସେଣଙ୍କ 'ପରମଳା' କାବ୍ୟର ଖଳନାୟକ ଗନ୍ଧର୍ବ ଚିତ୍ରରଥ କର୍ତ୍ତୃକ ନାୟକ ମକରକେତୁ ନିଦ୍ରାବସ୍ଥାରେ ଅପହୃତ ଏବଂ ସମୁଦ୍ର ଜଳରେ ନିକ୍ଷିପ୍ତ । [୧୩୦] ରତ୍ନାକର ସାଧୁତ ନାମକ ଜନୈକ ବୋଇତିଆଳ ତାକୁ ଉଦ୍ଧାର କରିବା ସଙ୍ଗେ ସଙ୍ଗେ ନିଜର ଧର୍ମପୁତ୍ର ରୂପେ ଗ୍ରହଣ କରି ସିଂହଳ ଦ୍ୱୀପସ୍ଥ ସ୍ୱଗୃହରେ ଆଶ୍ରୟ ପ୍ରଦାନ କରିଛି । ନାୟିକା ନାୟକଙ୍କୁ ନଦେଖି ବିରହ ବେଦନାରେ ଅଧୀର ହେବାରୁ ସଖୀଗଣ ଯଥାଯଥ ଭାବେ ଶୀତଳ ଉପଚାର ବିଧିମାନ ବ୍ୟବସ୍ଥା କରିବାକୁ ଭୁଲି ନାହାନ୍ତି । [୧୩୧] କାମପୀଡ଼ାର ଆଧିକ୍ୟ ସୂଚାଇବାକୁ ଯାଇ କବି ନୈଷଧୀୟ ପରମ୍ପରା ଅନୁସରଣ କରିଛନ୍ତି । ହୃଦୟର ମୁକ୍ତାହାର ପୋଡ଼ି

ଚୂନ ପରି ଦେଖାଯିବା, ମୃଣାଳଦେହରେ ବାଜି ଦହି ହେବା, ତାତିଲ ଲୁହାରେ ଢଳି ପଡ଼ିଲ ପରି ଶରୀର ଚନ୍ଦନ ଲେପନ ମାତ୍ରେ ତାହା ଶୁଖିଯିବା ଇତ୍ୟାଦିର ଉଲ୍ଲେଖ ଏକାନ୍ତ ରୀତିଧର୍ମୀ । [୧୩୨] ଚନ୍ଦ୍ର, କାମ ତଥା ସଖୀ ପ୍ରତି ସଂବୋଧନରେ ବିରହିଣୀ ପ୍ରାଣର ନିବିଡ଼ ଆକୁଳତା ଓ ଦେହର ଅସହଣୀୟ ଯାତନା ମୂର୍ତ୍ତିମନ୍ତ । ନାୟିକାର ବିରହ ଭାବନାରେ ପାରଂପରିକ କାବ୍ୟରୀତି ବିଶେଷ ଭାବେ ପରିଦୃଷ୍ଟ ହେଲେ ହେଁ ଭାଷାର ଅପୂର୍ବ ଭାବ ସଂବେଦନ କ୍ଷମତା ଯୋଗୁଁ ତାହା ଅତ୍ୟନ୍ତ ହୃଦୟସ୍ପର୍ଶୀ । ସ୍ଥଳ ବିଶେଷରେ ନାରୀ ଭାବାଦର୍ଶର ପରିଚ୍ଛନ୍ନତା ଓ ଉତ୍କର୍ଷ ଲକ୍ଷ୍ୟ କରିବାର କଥା । [୧୩୩] ପ୍ରବାସୀ ନାୟକର ବିରହାନୁଚିନ୍ତା ଅପେକ୍ଷା ନାୟିକାପ୍ରାପ୍ତି ପାଇଁ ମୁନି ଆଶ୍ରମ ଯାତ୍ରା, ଗୋପାଳ ମନ୍ତ୍ର ସାଧନା ଓ ବରଲାଭ ପ୍ରସଙ୍ଗ କ୍ରମେ ବିସ୍ତୃତ ଭାବେ ବର୍ଣ୍ଣିତ ।

ପାର୍ଥ ଶ୍ରୀଚନ୍ଦନଙ୍କ 'କଳାବତୀ' କାବ୍ୟର ନାୟକ ବ୍ରାହ୍ମଣର ମନ୍ତ୍ର ବଳରେ ନାୟିକା ନିକଟରୁ ଅନ୍ତର୍ହିତ ଏବଂ ନିଜ ପିତାମାତାଙ୍କଠାରେ ଉପସ୍ଥିତ । ଆକସ୍ମିକ ବିଚ୍ଛେଦ ହେତୁ ଉଭୟେ ବିରହ ବେଦନାରେ ବ୍ୟାକୁଳ । ନାୟକର ସମ୍ଭୋଗ-ସ୍ମୃତି ବର୍ଣ୍ଣନାରେ ପ୍ରିୟତମାର ନଗ୍ନ ଦେହ ପ୍ରତି ପ୍ରଗାଢ଼ ମମତା ଉଲ୍ଲିଖିତ । [୧୩୪] ନାୟିକାର ବିରହାନୁଚିନ୍ତାରେ ସଂସ୍କୃତ ସାହିତ୍ୟର ସୁସ୍ପଷ୍ଟ ପ୍ରଭାବ ସତ୍ତ୍ୱେ ସରଳ ଭାଷା ଓ ସାବଲୀଳ ରଚନା-ରୀତି ଯୋଗୁଁ ଏହା ପରମ ଆଦରଣୀୟ ଓ ଉପଭୋଗ୍ୟ ।

ଧନଞ୍ଜୟଙ୍କ 'ଅନଙ୍ଗରେଖା' କାବ୍ୟର ନାୟକ କୁସୁମକେତୁ ନିଦ୍ରିତ ଅବସ୍ଥାରେ ଗନ୍ଧର୍ବ ପୁଷ୍ପଦନ୍ତ ଦ୍ୱାରା ଅପହୃତ ଏବଂ ରତ୍ନକୂଟ ପର୍ବତକୁ ସ୍ଥାନାନ୍ତରିତ । ନିଦ୍ରାନ୍ତେ ନାୟିକା ପ୍ରିୟତମକୁ କୌଣସିଠାରେ ନ ପାଇ ଶଂକିତା ଓ ବିରହ କାତର । ବର୍ଷାର ପ୍ରାକୃତିକ ରୂପରାଗ ଅବଲୋକନରେ ତା'ର ଶରୀର କାମ ଜର୍ଜରିତ । ଏପରି ପରିସ୍ଥିତିରେ ସଖୀଗଣ କମଳ ଦଳର ଶଯ୍ୟା ରଚନା ତଥା ଶୀତଳ ଉପଚାର ବ୍ୟବସ୍ଥା କରିବାକୁ ପଶ୍ଚାତ୍‌ପଦ ହୋଇନାହାନ୍ତି । ମେଘ ପ୍ରତି ସଂବୋଧନ ବାଣୀରେ ନାୟିକା ପ୍ରାଣର ଗଭୀର ଦୁଃଖ ପ୍ରକାଶିତ । [୧୩୫] ପ୍ରିୟ ଲାଭ ପାଇଁ ଶିବଙ୍କ ନିକଟରେ ତା'ର

କରୁଣ ନିବେଦନ ଏବଂ ଯଥାରୀତି ବରଭର ଅଲୌକିକତା ସ୍ପଷ୍ଟ ହେଲେ ହେଁ କାବ୍ୟାଦର୍ଶ ସମର୍ଥିତ । ଅନନ୍ତର ଗନ୍ଧର୍ବ ପୁଷ୍ପଦନ୍ତର ଛଦ୍ମବେଶରେ (କୁସୁମ-କେତୁ ରୂପ ଧାରଣ କରି) ନାୟିକା ନିକଟରେ ପ୍ରଣୟ ନିବେଦନ ବିଶେଷ କୌତୂହଳୋଦ୍ଦୀପକ । ତା'ର ପଲକହୀନ ଚକ୍ଷୁ ଓ ଭୂମି-ଅସ୍ପର୍ଶୀ ଚରଣ ଲକ୍ଷ୍ୟ କରି ଅନଙ୍ଗରେଖାର ସକଳ ରହସ୍ୟ ଉଦ୍‌ଘାଟନ ଏବଂ ଆତ୍ମହତ୍ୟାର ଧମକ ହେତୁ ଖଳ ନାୟକର ବିଫଳ ପ୍ରତ୍ୟାବର୍ତ୍ତନ ନାୟିକା ଚରିତ୍ରର ବଳିଷ୍ଠତା ପ୍ରମାଣ କରେ ।[୧୩୬] ପକ୍ଷାନ୍ତରେ ପ୍ରିୟା ବିରହ ଜନିତ ଖେଦଗ୍ରସ୍ତ ନାୟକର ରତ୍ନକୂଟ ପର୍ବତରେ ଋତୁ ଅତିବାହିତ । ଯଥା ସମୟରେ ନାରଦଙ୍କ ଆବିର୍ଭାବ ଓ ଆଶୀର୍ବାଦ କ୍ରମେ ଉଭୟେ ପୁନରାୟ ପ୍ରଣୟ ପାଶରେ ଆବଦ୍ଧ । ପ୍ରିୟ ସ୍ମରଣର ମଧୁର ଚିତ୍ର ସହିତ ଆତ୍ମୋତ୍ସର୍ଗର ମଞ୍ଜୁଳ ପରିକଳ୍ପନା ନାୟିକା ଚରିତ୍ରକୁ ସମୃଦ୍ଧ କରିଛି । ନାୟକର ବିରହ ଭାବନା ସଂସ୍କୃତ ସାହିତ୍ୟାନୁସାରୀ । ଦେହ କାମନା ବ୍ୟତୀତ କୌଣସି ଉନ୍ନତ ଭାବନା ଏ ସ୍ଥଳରେ ପୁରୁଷ ଦୃଷ୍ଟିକୁ ଆଚ୍ଛନ୍ନ କରିପାରିନାହିଁ ।

ଉପେନ୍ଦ୍ରଙ୍କ 'ରସଲେଖା' କାବ୍ୟର ନାୟକକୁ ନାୟିକା ନିକଟସ୍ଥ ଯୋଗବଳରେ ଅପହରଣ କରି ଆଣିବା ନିମନ୍ତେ ଋଷି ନିଶାକର ଗଜାଙ୍କଦ୍ୱାରା ଯଥାଦିଷ୍ଟ । ପରସ୍ପରର ଅଜ୍ଞାତରେ ବର୍ତ୍ତମାନ ଦୁହିଁଙ୍କର ବିରହ ବେଦନା ଶତଗୁଣିତ । ସକଳ ରହସ୍ୟ ଉଦ୍‌ଘାଟିତ ହେବା ପରେ ମହାସମାରୋହରେ ରସଲେଖାର ପତିଗୃହ ଯାତ୍ରା ବିଶେଷ ପ୍ରୀତିଦାୟକ । ନାୟକର ପ୍ରିୟାନୁଚିନ୍ତାରେ ସମ୍ଭୋଗ ସୁଖ ସ୍ମରଣ ସହ ପ୍ରୀତିର ମହନୀୟତା ଉଦ୍‌ଘୋଷିତ ।[୧୩୭] ଭୃତ୍ୟପଣରେ ନାରୀର ସେବା କରିବାକୁ ପୁରୁଷର କୁଣ୍ଠାହୀନ ସ୍ୱୀକୃତି ସର୍ବତ୍ର ପ୍ରକାଶ ପାଇଛି । ପ୍ରିୟା ନିକଟରେ ଥାଇ ନାୟକର ନିଜକୁ ମହୀମଣ୍ଡଳ ମଘବା ରୂପେ ପରିକଳ୍ପନା ମଧ୍ୟଯୁଗୀୟ ପୌରୁଷର ସ୍ୱରୂପ ସୂଚାଇଦିଏ । ନାୟିକାର ବିରହ ଭାବନାରେ ପ୍ରିୟ-ମୁଖ-ସ୍ମୃତି ଉଦ୍‌ବୋଧନ ସହ ପୁରୁଷର ବହୁ ନାରୀ ଭୋଗ ସ୍ପୃହା ଉଲ୍ଲିଖିତ ।[୧୩୮] ଭାଷାର କୋମଳତା ଓ ଅଭିବ୍ୟକ୍ତିର ରସମୟତା କାବ୍ୟର ଅନ୍ୟତମ ଗୌରବମୟ ବିଭବ ହୋଇଥିବାରୁ ପ୍ରସଂଗଟି ବିଶେଷ ହୃଦୟଗ୍ରାହୀ ।

## ସୁଦୂର ଓ ଅଦୂର ପ୍ରବାସ–

ଦୂରତା ଭେଦରେ ପ୍ରବାସ ବିପ୍ରଲମ୍ଭକୁ ଦୁଇ ଭାଗରେ ବିଭକ୍ତ କରାଯାଇଥାଏ; ଯଥା-ସୁଦୂର ଓ ଅଦୂର । ଜ୍ଞାତ ଓ ଅଜ୍ଞାତ ପ୍ରବାସ ଆଲୋଚନାରେ ସୁଦୂର ପ୍ରବାସର କଥା ହିଁ ଉଲ୍ଲିଖିତ । ଏଠାରେ କେବଳ ଅଦୂର ପ୍ରବାସ ପ୍ରସଂଗ ବିଚାର୍ଯ୍ୟ ।

ଦୀନକୃଷ୍ଣଙ୍କ 'ରସକଲ୍ଲୋଳ'ର ବର୍ଣ୍ଣନାନୁସାରେ ରାଧାଙ୍କ ଗର୍ବ ମୋଚନ ନିମନ୍ତେ ତାଙ୍କୁ ଏକଦା ଅରଣ୍ୟ ମଧ୍ୟରେ ଛାଡ଼ିଦେଇ ଶ୍ରୀକୃଷ୍ଣ ପୁଷ୍ପଚୟନ ବ୍ୟାଜରେ ଅନ୍ତର୍ହିତ ।[୧୩୯] ବିରହ ପୀଡ଼ିତା ରାଧାଙ୍କର ବିକଳ ବିଳାପ ଧ୍ୱନିରେ ସମଗ୍ର ବନଭୂମି ମୁଖରିତ । ଗୋପାଙ୍ଗନାଗଣ ଦୁଃଖରେ ଅଧୀର ହୋଇ କୁଞ୍ଜରୁ କୁଞ୍ଜ ବୁଲି କୃଷ୍ଣଙ୍କ ଅନୁସନ୍ଧାନରେ ତତ୍ପର ହୋଇ ଉଠିଛନ୍ତି । ବିବିଧ ମନୋହର ଉପମା ଜରିଆରେ ଅଙ୍କିତ ଏହି ବିଚ୍ଛେଦ ଚିତ୍ର ଅତ୍ୟନ୍ତ ରସଘନ । ସ୍ଥଳ ବିଶେଷରେ ଶାସ୍ତ୍ରୀୟ ଅଷ୍ଟ ସାତ୍ତ୍ୱିକ ବିଭାବର ସଂଯୋଜନା ବିଶେଷ ଗୁରୁତ୍ୱପୂର୍ଣ୍ଣ ।[୧୪୦] ଉପେନ୍ଦ୍ରଙ୍କ 'ଛାନ୍ଦଭୂଷଣ'ର ନାୟକ ଅନୁରାଗ ଆତିଶଯ୍ୟ ହେତୁ ଚନ୍ଦ୍ରାବଳୀଙ୍କୁ ସଙ୍ଗରେ ଘେନି ସେହିପରି ଅରଣ୍ୟ ମଧ୍ୟରେ ଏକଦା ଗୋପୀମାନଙ୍କ ଗହଣରୁ କିଞ୍ଚିତ୍ ଦୂରକୁ ଅପସୃତ ।[୧୪୧] କିନ୍ତୁ ପ୍ରୀତି-ଗର୍ବିତା ନାୟିକାର ଅହଂକାର ଅପହରଣ କରିବାକୁ ସେ ତିଳେମାତ୍ର ଦ୍ୱିଧା ପ୍ରକାଶ କରି ନାହାନ୍ତି । ବିରହର ଆବେଗମୟ ଦୃଶ୍ୟ ଏ ଦୁଇଟି କାବ୍ୟରେ ମନୋରମ ଓ ହୃଦୟସ୍ପର୍ଶୀ ।

ଏ ପ୍ରସଙ୍ଗରେ ଭୂପତି ପଣ୍ଡିତଙ୍କ 'ପ୍ରେମ ପଞ୍ଚାମୃତ'ର ବୃନ୍ଦାବତୀ-ଗର୍ବ-ଖଣ୍ଡନ ବିଷୟ ଉଲ୍ଲେଖଯୋଗ୍ୟ । ଗୋପାଙ୍ଗନାମାନଙ୍କ ବିରହ ଚିତ୍ରଣରେ କବି ଅଶେଷ ସଫଳତା ଅର୍ଜ୍ଜନ କରିଛନ୍ତି ।[୧୪୨] କୃଷ୍ଣଙ୍କ ପ୍ରତି ବିବିଧ ଭର୍ତ୍ସନା ବାକ୍ୟରେ ଶୋକ ବିହ୍ୱଳା ବୃନ୍ଦାବତୀ ଯେପରି ଭାବରେ ହୃଦୟର ରୁଦ୍ଧଦ୍ୱାର ଖୋଲି ଦେଇଛନ୍ତି, ତାହା ଯେ କୌଣସି ପ୍ରବଞ୍ଚିତା ନାରୀ ପ୍ରାଣର ଅକୃତ୍ରିମ ପରିଚୟ ।[୧୪୩] ବିରହର ଏଇ ଆଲେଖ୍ୟ ଓଡ଼ିଆ କାବ୍ୟଧାରାରେ ବିରଳ ଓ ବିଚିତ୍ର ।

## ଶେଷକଥା-

ପ୍ରବାସ ବିପ୍ରଲମ୍ଭ ବର୍ଣ୍ଣନାରେ ବହୁଳ ଭାବେ ଅଲୌକିକତାର ସମାବେଶ ଦେଖିବାକୁ ମିଳେ । ରୀତିକାଳୀନ ସମାଜରେ ଏହାର ଗୁରୁତ୍ୱ ସ୍ୱୀକୃତ । ଲକ୍ଷ୍ୟ କରିବାର କଥା ଯେ ଉପେନ୍ଦ୍ରଙ୍କ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ', ଧନଞ୍ଜୟଙ୍କ 'ରତ୍ନ ମଞ୍ଜରୀ', ତ୍ରିବିକ୍ରମଙ୍କ 'କନକଲତା' ପ୍ରଭୃତି କାବ୍ୟରେ ପ୍ରବାସ ବିପ୍ରଲମ୍ଭର ଅବତାରଣା କରଯାଇନାହିଁ । ନାୟକ ନାୟିକାଙ୍କ ମଧୁଶଯ୍ୟା ମିଳନ ବର୍ଣ୍ଣନାରେ ଏହି ସବୁ କାବ୍ୟର ପରିସମାପ୍ତି ଘଟିଛି । ପକ୍ଷାନ୍ତରେ କେତେକ କାବ୍ୟ ପ୍ରବାସ ବିପ୍ରଲମ୍ଭ ପ୍ରଧାନ, ଯଥା–ଉପେନ୍ଦ୍ରଙ୍କ ସୁବର୍ଣ୍ଣରେଖା, ରଘୁନାଥ ହରିଚନ୍ଦନଙ୍କ 'ସୁକୃତଲା' ପ୍ରଭୃତି । ସୁତରାଂ ପ୍ରବାସକୁ ଓଡ଼ିଆ ରୀତି କାବ୍ୟର ଏକ ନିଶ୍ଚିତ ବିଭାବ ରୂପେ ଗ୍ରହଣ କରଯାଇ ନ ପାରେ ।

କରୁଣ–ଅର୍ଜ୍ଜୁନ ଦାସଙ୍କ 'କଳ୍ପଲତା' କାବ୍ୟର ନାୟିକା ତା'ର ଇଚ୍ଛା ବିରୁଦ୍ଧରେ ଅବନୀତିଳକ ସହ ବିବାହ ଆୟୋଜନ ହେଉଥିବା ଦେଖି ବିଷପାନ ପୂର୍ବକ ମୃତ୍ୟୁ ବରଣ କରିଛି । ଶ୍ମଶାନ ଭୂମିରେ ମୃତ ଶରୀରର ଅଗ୍ନି ସଂସ୍କାର ନିମିତ୍ତ ସକଳ ବିଧି ଯଥାରୀତି ସମାହିତ । ନାୟକ ଅମର-ଶିଖର ଛଦ୍ମବେଶ ଧାରଣ କରି ବିବାହ ସ୍ଥଳକୁ ଆସୁଥିବା ବାଟରେ ଲୋକମାନଙ୍କଠାରୁ ନାୟିକାର ମୃତ୍ୟୁ ସମ୍ବାଦ ଶୁଣି ମୂର୍ଚ୍ଛାହତ । ସଂଜ୍ଞାଲାଭ ପରେ ଅତୀତର ସ୍ମୃତି ରୋମନ୍ଥନ କରି ସେ ବିଳାପ ବିଧୁର ।[୧୦୬] ମନ୍ତ୍ରୀ ପୁତ୍ରର ପ୍ରବୋଧନାରେ ସେମାନେ ଶ୍ମଶାନ ଭୂମିରେ ଉପସ୍ଥିତ ହୋଇ ରାଜାଙ୍କଠାରୁ କନ୍ୟାଦାନର ସ୍ୱୀକୃତି ଲାଭ କରିଛନ୍ତି । ଅନନ୍ତର ମୃତ୍ୟୁ ସଞ୍ଜୀବନୀ ମନ୍ତ୍ର ବଳରେ ନାୟକର କଳ୍ପଲତାକୁ ଜୀବନ୍ୟାସ ଦାନ ଏବଂ ଦୁହିଙ୍କର ବିବାହ ଯଥାସମୟରେ ସମ୍ପାଦିତ । ଏଠାରେ କରୁଣ ବିପ୍ରଲମ୍ଭର ଚିତ୍ର ଅତି ସଂକ୍ଷିପ୍ତ ଓ ସରଳ । କାବ୍ୟ ଯୁଗର ଆରମ୍ଭରେ ଶୃଙ୍ଗାର ଚେତନାର ରୂପ କିପରି ସଂଯତ ଓ ଶାଳୀନ ଥିଲା, ତାହା ଏଥିରୁ ସହଜରେ ଅନୁମିତ ।

ପ୍ରତାପ ରାୟଙ୍କ 'ଛଣିସେଣା' କାବ୍ୟରେ ବିଶ୍ୱାସଘାତକତା ପୂର୍ବକ କନିଷ୍ଠ ରକ୍ଷସର ଅହିମାଣିକ୍ୟ–ଶିରଚ୍ଛେଦ ଏବଂ ନାୟିକା ନିକଟରେ ପ୍ରେମ ନିବେଦନ ଯେପରି ରୋମାଞ୍ଚକର ସେହିପରି ବିଚିତ୍ର । ନାୟିକା କୌଶଳରେ ରକ୍ଷସକୁ ହତ୍ୟାକରି ଅଦ୍‌ଭୁତ ସାହସିକତାର ପରିଚୟ ଦେଇଅଛି । କିନ୍ତୁ ସ୍ୱାମୀ ବିୟୋଗରେ ସେ ଶୋକ ବିଗଳିତ ହୃଦୟା ଓ ବିଳାପ ବିଧୁରା । ନିଜର ବୈଧବ୍ୟ ଉପରେ ତା'ର ଗଭୀର ଅନାସ୍ଥା ଭାବ ପ୍ରକଟିତ ।[୧୫୫] ନାୟିକା ଚରିତ୍ରରେ ସାହସିକତା, ପତିପ୍ରେମ ଓ ତ୍ୟାଗର ଅପୂର୍ବ ସମନ୍ୱୟ ଦେଖାଯାଏ । ବର୍ଣ୍ଣନା ପରିବେଶଭିତ୍ତିକ, ସ୍ୱାଭାବିକ ଓ ସଂକ୍ଷିପ୍ତ । ସମ୍ଭୋଗ ସ୍ମୃତି ଅଥବା ଦେହ କାମନାର ଅଭାବ ପ୍ରସଙ୍ଗଟିକୁ ମାର୍ଜିତ ରୂପଶ୍ରୀ ପ୍ରଦାନ କରିଛି ।

ହରିହର ନରେନ୍ଦ୍ରଙ୍କ 'ମଦାଳସା' କାବ୍ୟର ନାୟିକା ନାୟକର ମିଥ୍ୟା ମୃତ୍ୟୁ ସମ୍ବାଦରେ ମୂର୍ଚ୍ଛାହତା । ଅନନ୍ତର ପ୍ରିୟତମର ରୂପ ଓ ଗୁଣ ସ୍ମରଣ କରୁ କରୁ ସଖୀକୋଳରେ ତା'ର ପ୍ରାଣବାୟୁ ଉଡ଼ିଯାଇଛି । ପ୍ରାଣପ୍ରିୟାର ମୃତ୍ୟୁ ସମ୍ବାଦରେ ଶୋକାତୁର ନାୟକ ସକଳ ଭୋଗ ବିଳାସ ପରିତ୍ୟାଗ ପୂର୍ବକ ସନ୍ନ୍ୟାସ ବ୍ରତ ଗ୍ରହଣ କରିବାକୁ ପଶ୍ଚାତ୍‌ପଦ ହୋଇନାହିଁ । ନାୟିକାର ବିଳାପ ବର୍ଣ୍ଣନାରେ ଦାମ୍ପତ୍ୟ ଜୀବନର ଶୃଙ୍ଗାରମୟ ଚିତ୍ର ଅଙ୍କିତ ।[୧୫୬] ପୌରୁଷର ଅନ୍ୟ କୌଣସି ଦିଗ ପ୍ରତି ସେଥିରେ ସଂକେତ ପ୍ରଦାନ କରଯାଇନାହିଁ । କିନ୍ତୁ ନାୟକ ଚରିତ୍ରରେ ପତ୍ନୀପ୍ରେମର ମହନୀୟତା ସୁସ୍ପଷ୍ଟ । ଅଧ୍ୟାପକ ସୁଦର୍ଶନ ଆଚାର୍ଯ୍ୟ 'ମଦାଳସା' ଓ ତା'ର ଉତ୍ସ ମାର୍କଣ୍ଡେୟ ପୁରାଣର ଏକ ତୁଳନାତ୍ମକ ସମୀକ୍ଷା ଭିତ୍ତିରେ କବିଙ୍କ ମୌଳିକତା ପ୍ରତିପାଦନର ଯଥାର୍ଥ ପ୍ରୟାସ କରିଛନ୍ତି ।[୧୫୭]

ବନମାଳୀ ଦାସଙ୍କ 'ଘଟ ଇଚ୍ଛାବତୀ' କାବ୍ୟର ନାୟକ ଗୁପ୍ତବ୍ରହ୍ମ ଗୋପନ ରତି ଅପରାଧରେ ନାୟିକା-ଅନ୍ତଃପୁରରୁ ଧୃତହୋଇ ବଧ୍ୟ ଭୂମିରେ ଅବସ୍ଥାପିତ ଏବଂ ପ୍ରେମର ପରୀକ୍ଷା ନିମନ୍ତେ ସେ ସ୍ଥଳରେ ତା'ର ଶିରଚ୍ଛେଦ ଅଭିନୟ ଆୟୋଜିତ । ପ୍ରିୟତମର ହତ୍ୟା ସମ୍ବାଦ ଶ୍ରବଣ କରି କେଶ ବାସ ଅଲଗିତା ଇଚ୍ଛାବତୀ ନିର୍ଦ୍ଦିଷ୍ଟ ସ୍ଥାନରେ ଆସି ଉପସ୍ଥିତ । ନାୟକର ମୁଣ୍ଡ

ଲଗି ଦୋସାଧୁ ନିକଟରେ ତା'ର ଆକୁଳ କାତର ମିନତି ପରିବେଶକୁ କରୁଣ ଓ ଅଶ୍ରୁଳ କରିଛି । [୧୪୮] ନାୟିକାର ବିନୟୋକ୍ତିରେ ପ୍ରେମର ବିମଳ ସୌନ୍ଦର୍ଯ୍ୟ ପ୍ରସ୍ଫୁଟିତ । ରାଜ ଦରବାରର ବିଳାସମୟ ସଂଲାପ ଚିତ୍ର ଏହା ନିକଟରେ ଗୌଣ । ଭାଷା ଓ ଭାବର ସଂହତ ସୁଷମା, ଆବେଦନର କରୁଣତା ଓ ତ୍ୟାଗର ଉଚ୍ଚାଙ୍ଗ ଆଦର୍ଶ ଏ କ୍ଷେତ୍ରରେ ଏକାନ୍ତ ଉଲ୍ଲେଖଯୋଗ୍ୟ ।

ଧନଞ୍ଜୟଙ୍କ 'ଇଚ୍ଛାବତୀ' ଏକ ଅନୁବାଦ କାବ୍ୟ । ଏଥିରେ ମୌଳିକତାର ଭାଗ ସ୍ୱଳ୍ପ । ରାଜାଜ୍ଞାରେ ନାୟକ ମଧୁକର ଇଚ୍ଛାବତୀର ଅନ୍ତଃପୁରରୁ ଧୃତ ହୋଇ ବଧ୍ୟଭୂମିକୁ ଆନୀତ । ଏହି ଅବସ୍ଥାରେ ସେ ନାୟିକାର ରୂପଗୁଣ ତଥା କେଳି ବିଳାସ ଆଦି ଦୋସାଧୁ ନିକଟରେ ପ୍ରକାଶ କରିଛି । କିନ୍ତୁ ଏହା ପରିବେଶୋଚିତ ହୋଇନାହିଁ । ଗୋଟିଏ ସ୍ଥଳରେ ନାୟିକାର ଲୀଳା ଗମନ କାଳୀନ ପାଦ ତଳ ମୃତ୍ତିକା ହେବା ଭାବନା ନାୟକ ମୁଖରେ ବର୍ଣ୍ଣିତ ।[୧୪୯] ପୁରୁଷର ନାରୀ ଆନୁଗତ୍ୟ ଓ ପ୍ରୀତି ବିଳାସିତାର ଏହା ଏକ ସୁନ୍ଦର ଆଲେଖ୍ୟ । ଏହି ଜାତୀୟ ଭାବନା କବି ଉପେନ୍ଦ୍ର ଓ ମାନସିଂହଙ୍କ ରଚନାରେ ମଧ୍ୟ ପରିଲକ୍ଷିତ । 'ଘଟ ଇଚ୍ଛାବତୀ'ରେ ବେତାଳ ଓ 'ଇଚ୍ଛାବତୀ'ରେ ନାରଦଙ୍କ ଆବିର୍ଭାବ ଓ ଉପଦେଶ କ୍ରମେ ଉଭୟ କାବ୍ୟର ନାୟକ ନାୟିକାଙ୍କ ମିଳନ ଯଥା ସମୟରେ ସଂଘଟିତ ।

ରାମଚନ୍ଦ୍ର ପଟ୍ଟନାୟକଙ୍କ 'ଅନଙ୍ଗରଙ୍ଗବତୀ' କାବ୍ୟରେ ବର୍ଣ୍ଣିତ ଅବୈଧ ପ୍ରଣୟଲିପ୍ତ ନାୟକ ରତ୍ନଧ୍ୱଜର ଶିରଚ୍ଛେଦ । ରାଜ୍ୟରୁ ନାୟିକାର ନିର୍ବାସନ ଓ ପ୍ରିୟତମର ମୃତ ପିଣ୍ଡକୁ ଧାରଣ କରି ତା'ର ବିକଳ କ୍ରନ୍ଦନ । ବନଦେବୀଙ୍କର ଅନୁକମ୍ପା ଓ ଦୁହିଙ୍କର ପୁନର୍ମିଳନ ଇତ୍ୟାଦି କରୁଣ ବିପ୍ରଲମ୍ଭ ଅନ୍ତର୍ଗତ ।[୧୫୦]

## ଶେଷ କଥା–

କରୁଣ ବିପ୍ରଲମ୍ଭ ପ୍ରସଙ୍ଗରେ ଅଲୌକିକତା ସର୍ବତ୍ର ପରିଲକ୍ଷିତ । 'ଶଶିସେଣା', 'ଘଟ ଇଚ୍ଛାବତୀ' ଓ 'ଅନଙ୍ଗରଙ୍ଗବତୀ' କାବ୍ୟର ନାୟିକାଗଣ

ଯେ ଯାହାର ସ୍ୱାମୀଙ୍କ ମୃତ୍ୟୁରେ ବିହିତ କର୍ତ୍ତବ୍ୟ କରିବାକୁ କୁଣ୍ଠିତା ହୋଇନାହାନ୍ତି । କିନ୍ତୁ 'ମଦାଳସା' କାବ୍ୟର ନାୟିକା ସେ କ୍ଷେତ୍ରରେ ଅତୀତ ସମ୍ଭୋଗ ସୁଖ ସ୍ମରଣକୁ ଶ୍ରେୟସ୍କର ମନେ କରିଛି । ଅନ୍ୟ ପକ୍ଷରେ'ଇଚ୍ଛାବତୀ'ର ନାୟିକା ସ୍ୱାମୀର ବିପଦରେ ମଧ୍ୟ ସଂପୂର୍ଣ୍ଣ ନୀରବ । ଲକ୍ଷ୍ୟ କରିବାର କଥା ଏହି ଯେ ପତ୍ନୀ ବିୟୋଗ ସଂବାଦରେ 'ମଦାଳସା' କାବ୍ୟ-ନାୟକର ଭୋଗ ବିଳାସ ପ୍ରତି ଅନାସ୍ଥା ଭାବ ପ୍ରକାଶ ତଥା ସନ୍ନ୍ୟାସ ବ୍ରତ ଧାରଣ ଏବଂ ନାୟିକା ପ୍ରାପ୍ତି ପାଇଁ ଅବ୍ୟାହତ ଉଦ୍ୟମ ଅତ୍ୟନ୍ତ ପ୍ରଶଂସନୀୟ । ନାୟକ ନାୟିକା ମଧ୍ୟରେ ମିଳନ କାମନା ସର୍ବତ୍ର ବର୍ତ୍ତମାନ ଥିଲେ ହେଁ 'ମଦାଳସା'ର ନାୟିକା ଓ 'ଇଚ୍ଛାବତୀ'ର ନାୟକ ଚରିତ୍ରରେ ଶୃଙ୍ଗାରିକତା ସୀମା ଓ ସମୟର ଔଚିତ୍ୟ ଲଂଘନ କରିଅଛି ।

## ଅନ୍ୟାନ୍ୟ–

ଓଡ଼ିଶା ରୀତି କାବ୍ୟର ବିପ୍ରଲମ୍ଭ ବିନ୍ୟାସରେ ଆଉ କେତେକ ବୈଶିଷ୍ଟ୍ୟ ଦୃଷ୍ଟି ଗୋଚର ହୁଏ । ସେ ସମସ୍ତ ପୂର୍ବୋକ୍ତ ଆଲୋଚନାର ପରିସର ଭିତରକୁ ଆସିପାରିନାହିଁ । ଆଳଙ୍କାରିକ ଶୃଙ୍ଖଳାର କିଞ୍ଚିତ୍ ବ୍ୟତିକ୍ରମ ମଧ୍ୟ ତହିଁରେ ପରିଲକ୍ଷିତ ।

ସ୍ୱପ୍ନ–ଲୋକନାଥ ବିଦ୍ୟାଧରଙ୍କ 'ସର୍ବାଙ୍ଗ ସୁନ୍ଦରୀ' କାବ୍ୟର ନାୟକ ଓ ନାୟିକା ଏକତ୍ର ଶୟନରେ ଥାଇ ଯଥାକ୍ରମେ ପ୍ରିୟା ବିନାଶ ଓ କାନ୍ତ ବିଚ୍ଛେଦ ସ୍ୱପ୍ନ ଦେଖି ବିରହ ପୀଡ଼ିତ ।[୨୬୧] ଦୁଇ ଚରିତ୍ରରେ ବିଚ୍ଛେଦର ଯଥାବିଧି କାବ୍ୟିକ ଚିତ୍ର ଅଙ୍କିତ । ଦୁହିଁଙ୍କର ବିରହକୁ ଯଥାକ୍ରମେ କରୁଣ ଓ ପ୍ରବାସ ବିପ୍ରଲମ୍ଭର ଅନ୍ତର୍ଭୁକ୍ତ କରାଯାଇପାରେ । କିନ୍ତୁ ବାସ୍ତବ ଘଟଣା ସହ ଏ ସବୁ ସଂପର୍କହୀନ । ଠିକ୍ ସେହିପରି କବିଙ୍କ 'ଚିତ୍ରକଳା' କାବ୍ୟର ନାୟକ ନାୟିକା ଏକଦା ବର୍ଷଣ ମୁଖର ରଜନୀରେ ପରସ୍ପର ବିଚ୍ଛେଦ ସ୍ୱପ୍ନ ଦେଖି ଅଧୀର ।[୨୬୨] ଦୁହିଁଙ୍କର ବିଚ୍ଛେଦ ବର୍ଣ୍ଣନାରେ ପରସ୍ପରର ରୂପ ଗୁଣ ସ୍ମରଣ ଓ କାମପୀଡ଼ାର ମଞ୍ଜୁଳ ଚିତ୍ର ପ୍ରଦତ୍ତ । ଦୁଇଟି କାବ୍ୟରେ ଭଗବାନଙ୍କ

ଆବିର୍ଭାବ ଓ ଆଶୀର୍ବାଦରୁ ନାୟକ ନାୟିକାଙ୍କ ବିଚ୍ଛେଦ ଦୁଃଖ ଖଣ୍ଡିତ । କବି ଲୋକନାଥ ବିପ୍ରଲମ୍ଭ ପ୍ରସଙ୍ଗ ପରିକଳ୍ପନାରେ ଅଭିନବ କୌଶଳ ଅବଲମ୍ବନ କରିଛନ୍ତି ।

ସତ୍ୟରକ୍ଷା—ନରସିଂହ ସେଣଙ୍କ 'ପରିମଳା' କାବ୍ୟର ନାୟିକା ଗନ୍ଧର୍ବ ଚିତ୍ରରଥ ସହ ଗୋପନ ପ୍ରଣୟରେ ଆବଦ୍ଧ ଥାଇ ମର୍ତ୍ତ୍ୟ ଯୁବକକୁ ରତି ଦାନ ନ କରିବା ନିମନ୍ତେ ସତ୍ୟାନୁବଦ୍ଧା । ବିବାହ ଅନ୍ତେ ନାୟକ ନାୟିକା ଏକ ମନ ଏକ ହୃଦୟ ହୋଇ ସୁଦ୍ଧା ସତ୍ୟରକ୍ଷା ହେତୁ ସମ୍ଭୋଗ ସୁଖରୁ ବଞ୍ଚିତ । ମଧୁଶଯ୍ୟା ରାତ୍ରିର ବର୍ଣ୍ଣନା ପ୍ରସଙ୍ଗରେ କବି ସେମାନଙ୍କ ବିରହ ଦଶାର ମନୋରମ ଚିତ୍ର ଅଙ୍କନ କରିଛନ୍ତି ।[୧୫୩] ଯୋଗୀ ଜ୍ଞାନାନନ୍ଦଙ୍କଠାରୁ ମନ୍ତ୍ର ଓ ଉପଦେଶ ଲାଭ କରି ନାୟକ ମକରକେତୁ ଏହି ବିଚ୍ଛେଦ ବାଧା ଅତିକ୍ରମ କରିବାକୁ ସମର୍ଥ ହୋଇଅଛି । ଓଡ଼ିଆ ରୀତି କାବ୍ୟରେ ଏପରି ଚିତ୍ର ବୋଧହୁଏ ଏକକ ।

'ଶଶିସେଣା' କାବ୍ୟର ଶଶିଧର (ପୁରୁଷବେଶୀ ଶଶିସେଣା) କାମନ୍ତାପୁରରେ ଗଣ୍ଡାବଧ କରି ରାଜକନ୍ୟା ଚନ୍ଦ୍ରବାଳୀକୁ ବିବାହ କରିଛି । ମଧୁଶଯ୍ୟା ରାତ୍ରିରେ ସେ ରାଜକୁମାରୀକୁ 'କାନ୍ତ ବିଚ୍ଛେଦ' ବ୍ରତର ବିଧାନ ଶୁଣାଇ ଏକ ବର୍ଷ ପର୍ଯ୍ୟନ୍ତ ନାରୀ ଅଙ୍ଗ ସ୍ପର୍ଶ ନ କରିବା ନିମନ୍ତେ ଦୃଢ଼-ପ୍ରତିଜ୍ଞ ।[୧୫୪] ଏ କ୍ଷେତ୍ରରେ ବିରହଦଶାର କୌଣସି ଚିତ୍ର ଅଙ୍କନ କରାଯାଇ ନାହିଁ । କାବ୍ୟର ଉଦ୍ଦେଶ୍ୟ ଦୃଷ୍ଟିରୁ ଏହା ଯଥାର୍ଥ ।

ଦିବାଗମନ—ଉପେନ୍ଦ୍ରଙ୍କ 'ରସଲେଖା' କାବ୍ୟର ବର୍ଣ୍ଣନାନୁସାରେ ନାୟକ ନାୟିକାଙ୍କ ମଧୁଶଯ୍ୟା ବିଳାସ ଦିବାଗମନ ହେତୁ ବିଚ୍ଛେଦରେ ରୂପାନ୍ତରିତ । ପ୍ରିୟତମାର ରୂପ, ଗୁଣ, କେଳି ସ୍ମରଣରେ ବିରହ ସନ୍ତପ୍ତ ନାୟକର ସମଗ୍ର ଦିବସ ଅତିବାହିତ ।[୧୫୫] ନାରୀର ପ୍ରତି ଅଙ୍ଗ ବର୍ଣ୍ଣନା ଏଠାରେ ବିଶେଷ ନୈପୁଣ୍ୟ ମଣ୍ଡିତ ।

ଗଜପତି ଜଗନ୍ନାଥ ନାରାୟଣ ଦେବଙ୍କ 'ପ୍ରଭାବତୀ ପରିଣୟ' କାବ୍ୟରେ ମଧ୍ୟ ଏହି ପ୍ରସଙ୍ଗ ଉଲ୍ଲିଖିତ ।[୧୫୬] ନାୟକ କେବଳ ପ୍ରିୟା ସ୍ମରଣ କଲାବେଳେ ନାୟିକା ପ୍ରିୟତମ, ପଞ୍ଚବାଣ, ମଳୟ, କୋକିଳ ଓ ଭ୍ରମରକୁ ସମ୍ବୋଧନ କରି ଅନ୍ତରର ଆକୁଳତା ପ୍ରକାଶ କରିଛି । 'ରସଲେଖା'ରେ କେବଳ ପୁରୁଷର ବିରହ ପୀଡ଼ା ବର୍ଣ୍ଣିତ । କିନ୍ତୁ 'ପ୍ରଭାବତୀ ପରିଣୟ'ରେ ପୁରୁଷ ଓ ନାରୀ ଉଭୟଙ୍କ ପାଇଁ ଯଥାର୍ଥ ଧ୍ୟାନ ଦିଆଯାଇ ଅଛି ।

ପୁଷ୍ପକାଳ–ଓଡ଼ିଆ ରୀତି କାବ୍ୟର କେତେକ ସ୍ଥଳରେ ନାୟିକାର ପୁଷ୍ପକାଳ ହେତୁ ନାୟକର ବିରହ ଅନୁଭବ ବର୍ଣ୍ଣିତ । ଉପେନ୍ଦ୍ରଙ୍କ 'ପ୍ରେମ ସୁଧାନିଧି' ଏହାର ଉଦାହରଣ ।[୧୫୭] ଏ କ୍ଷେତ୍ରରେ ନାୟକ ପ୍ରୀତିତତ୍ତ୍ୱ ନିରୂପଣ କରିବା ସଙ୍ଗେ ସଙ୍ଗେ ନାୟିକା-କେଳି-ବିଳାସର ବୈଚିତ୍ର୍ୟ ଓ ମହନୀୟତା ପ୍ରତି ବଳିଷ୍ଠ ସ୍ୱୀକୃତି ଜଣାଇଅଛି ।[୧୫୮] ଭାଷା ଓ ଭାବ ଗୁମ୍ଫନର ଗୁରୁତା ହେତୁ ଏହା କାବ୍ୟୋତ୍ତର ସୌନ୍ଦର୍ଯ୍ୟରେ ବିଭୂଷିତ । ବ୍ରଜନାଥଙ୍କ 'କେଳି କଳାନିଧି'ର ଏହି ପ୍ରସଙ୍ଗ 'ପ୍ରେମ ସୁଧାନିଧି' ଅନୁସରଣରେ ରଚିତ । ମାତ୍ର ଭାଷା ଓ ଆବେଦନ ଦୃଷ୍ଟିରୁ ଏହା ଶ୍ରୀହୀନ ।[୧୫୯]



## ପାଦଟୀକା–

୧। ନ ବିନା ବିପ୍ରଲମ୍ଭେନ ଶୃଙ୍ଗାରଃ ପୁଷ୍ଟିମଶ୍ନୁତେ ।

ସରସ୍ୱତୀ କଣ୍ଠାଭରଣ : ୫ / ୫୨

୨। ରତିର୍ଯା ସଙ୍ଗମାତ୍ ପୂର୍ବଂ ଦର୍ଶନ ଶ୍ରବଣାଦିଜା
ତୟୋରନୀଳତି ପ୍ରାଜ୍ଞୈଃ ପୂର୍ବରାଗଃ ସ ଉଚ୍ୟତେ ।

ଉଜ୍ଜ୍ୱଳ ନୀଳମଣି : ବିପ୍ରଲମ୍ଭ / ୫

୩। ଶୁଣିଣ ସାତ୍ତ୍ୱିକ୍ୟ ବିକାର ବାଳୀ
କମ୍ପଇ କରେ ଘେନି ପୁଷ୍ପମାଳି
ପୁଲକ ସକଳ ରୋମାବଳୀ
ମୁକୁଳିତ ଶୋଭ କଟି ମେଖଳି
ଗମନ୍ତେ ପାଦ ହୁଏ ଥର ଥର
ସ୍ୱବର୍ଣ୍ଣ ପଦ ମାଳେକ କର ।

ରମବିଭ : ୭/୪୮-୪୯

୪। କଳ୍ପଲତା : ୪ର୍ଥ

୫। ପଲଙ୍କ ତେଜିଣ ଉଠିଲ୍ଲ ସୁମୁଖୀ ସପନ ସଂକେତ ପାଇଣ
ଆହା ପ୍ରାଣନାଥ କେଣେ ଗଲୁ ବୋଲି ଉଚ୍ଚସ୍ୱରେ କରେ କାରୁଣ୍ୟ ।

ଉଷାଭିଳାଷ : ୫/୧ (ଇତ୍ୟାଦି)

୬। ବହୁତ ପାଞ୍ଚଇ ସେହି ମଦନ ବିକାରୁ
ସତେକି ଦଧି ନେଇ ଖାଇବେ ମୋହ ଠାରୁ ।

କାଞ୍ଚି କାବେରୀ–୩୯୪

୭। ଯେକ ମୁଖ ହୋଇ ଦୁହେଁ ବିଦ୍ୟା ପଢୁଥାନ୍ତି
ଚନ୍ଦ୍ରକୁ ଦେଖିଣ ଚନ୍ଦ୍ରମଣି ଝଟକନ୍ତି ।
ଦଣ୍ଡେ ନ ଦେଖିଲେ ପ୍ରାଣ ନ ରଖନ୍ତି କେହି
ବେନି ଜନଙ୍କର ସେ ଅଟଇ ଏକ ଦେହି ।

ରସ୍ୱଟ ଲଳାବତୀ : ୨/୫୦-୫୧

୮। କଳାବତୀ : ୨ୟ, ୩ୟ

୯। ତା ବିନୁ ଆନ ମୁଁ ନ ଗ୍ରହିଁ, ଧରି ମୁଁ ନିକି ଥିବି ଦେହୀ
ଅନଳେ ଦେବି, ଆଜ ଝାସ । ଯେଦିନ ମୋହର ବିନାଶ ।
ପ୍ରେମଲୋଚନା : ୧୧/୫୩-୫୪

୧୦। ରକ୍ମିଣୀ ବାରତା ପାଇ ସଖୀମାନେ ହକରଇ
ବୋଇଲେ ଛାଡ଼ିଲି ମୋର ଜୀବନ ଆଶ
ହରି ହରି ବୋଲି ବାଳି ଅବନୀ ପଡ଼ିଲ ତଳି
ଅସମ୍ଭାଳ କେଶବାସ ହୃଦୟବାସ । ରକ୍ମିଣୀବିଭ : ୪/୨୦

୧୧। × × ଛାର ଶିଶୁପାଳ ହାତ ଧରିବି
ନିଶ୍ଚୟ ଅଗ୍ନିକୁ ଡ଼େଇଁ ମରିବି ।
ରକ୍ମିଣୀ ବିଭ : ୫/୬

୧୨। ବୀର ଭଗର ମୁଁ ଅଟେ ଗୋସାଇଁ
ରକ୍ମିଣୀବିଭ :୫/୨୪

୧୩। ପନୀର ଚନ୍ଦ୍ର ଚନ୍ଦନ ଚନ୍ଦ୍ରକର
ସଜଳ ନଳିନୀ ଦଳ
ସୁନ୍ଦରୀ ମଣିର ଅଙ୍ଗରେ ଲଗନ୍ତେ
ବିଟିଲ କାମ ଅନଳ ।
ଅନଙ୍ଗରେଖା : ୧୦/୩

୧୪। × × ନିକି କୋମଳାଙ୍ଗୀ ଭଳି ଯାଉ ବୋଲି ମନରେ ଶଙ୍କା କରନ୍ତି ।
କିମ୍ବା
କୋମଳାଙ୍ଗୀ ତନୁ ଅତି କୃଶ ହେଲ ମୃଣାଳ ସୂତ୍ର ପରାଏ ।
ଅନଙ୍ଗରେଖା : ୧୦/୯, ୧୦/୨୪

୧୫। ବେଶ ବସନ ସବୁହିଁ ତ୍ୟାଜ୍ୟ କଲ ଧ୍ୟାୟୀ କୁମର ବରକୁ
କିମ୍ବା
ବେଶ ଭୋଜନ ବ୍ୟସନହିଁ ତେଜିଲ୍ଲ ମନେ କିଛି ନ ଘେନଇ ।
ଅନଙ୍ଗରେଖା : ୧୦/୯, ୧୦/୨୪

୧୬। ଯେବେ ମୋର ଭଗ୍ୟଥିବ ଧରିବି କୁମର କନ୍ୟା
ଦରିଦ୍ର ହାତରେ ନିଧି ହୁଏକି ଆସି ।
ଅନ୍ଧ ବାଞ୍ଛା କଲେ ନିକି ନୟନ ଲଭେ ସୁମୁଖୀ
କର ପ୍ରସାରିଣ କେହୁ ପାଇଛି ଶଶି ।
ତା'ର ମୋର ଏତେ ଅନ୍ତର । ଏଥକୁ ଉପାୟେ ସଖୀ ଏକା ତୁ କର ।
ରତ୍ନ ମଞ୍ଜରୀ : ୬ ୧୯

୧୭। ଛନ୍ନ ଛନ୍ନ ମନ ତା'ର କାତର ଶରୀର
କ୍ଷତେଥର ଖୋଜଇ ସେ ପଲଙ୍କ ଉପର ।
ସର୍ବାଙ୍ଗ ସୁନ୍ଦରୀ : ୨।୧୦୨

୧୮। ସଜଳ କମଳ ଦଳ ଶୟନେ । ସଘନ ସାର ଚନ୍ଦନ ଲେପନେ ।
ପଲ୍ଲବ ବ୍ୟଜନ, ଶୀତ ପବନେ । ବହୁତ ପନୀର ନୀର ସେଚନେ ।
ସେ କାମ ଅନଳ । ନୋହିଲା ଶାନ୍ତି ବୃଦ୍ଧି ବେଳୁଁ ବେଳ ।
ସର୍ବାଙ୍ଗ ସୁନ୍ଦରୀ : ୯।୨

୧୯। ତୋହର ପଗ ରମଣୀ ରମଣ ବିନୁ ରଜନୀ
କେମନ୍ତ ପ୍ରକାରେ ହରୁ
ହା ହା ରମ୍ଭୋରୁ ଏ ।
ଚିତ୍ରକଳା : ୬।୨୧

୨୦। ବାରେ ବାରେ ଶିବ ଶିବ ସେ ଘୋଷେ
ବାରେ ବାରେ ଭ୍ରତମାନ ମାନସେ ।
ବାରେ ବାରେ ନାହିଁ ମୂର୍ଚ୍ଛାରେ ସଖୀ
ବାରେ ବାରେ ଭୟ ସଂଶୟ ରଖି ।
ବନରୁହ ନାଡ଼ି । ବନଜାକ୍ଷୀ ଦେଖି ଚିତ୍ତ ଗଦ୍ଗଦ ।
ବୈଦେହୀଶ ବିଳାସ : ୧୨ / ୫

୨୧। ଚେଚି ଚଟୁରୀ ଗୁହିଁଲ ନିଶି ନାଶେ ପାଶେ ନାହିଁ ଦିବ୍ୟ ତରୁଣ
ମାରି ହୁଦେ ହୀତ ନାଥ ନାଥ ବୋଲି ଅଚି ଉଡେ ଭଳ କାରୁଣ୍ୟ ।

× × ×

ଲବଣ୍ୟବତୀ : ୧୨ / ୧

୨୨। ଦେଖି ନବ କାଳିକା ବକାଳିକା ମାଳିକା ଆଡୀ କାଳିକା କାନ୍ତ ସୁରି ।

× × ×

ଲବଣ୍ୟବତୀ : ୨୨ / ୧

୨୩। ଫାଟି ଫୁଟି ପଡୁଅଛି ମୁକୁତା ମାଳିକା
ଚନ୍ଦନ ପଡ଼ି ତନୁରେ ହେଉଛି ଫୋଟକା
ନଭେ ଦ୍ୱିତୀୟାର ଶଶି । ଉଦୟ ହେଲା ପରାଯେ ଶେଯେ ଶୋଭା ଦିଶି ।

ପାକ ଭଲ ଶାକ ପ୍ରାୟ ଢଳଢଳ ପର୍ଣ୍ଣ
ମୁଣାଳ ନାଳ ପଡ଼ିଲା ମାତ୍ରେ ଗାତ୍ରେ ଚୂର୍ଣ୍ଣ ।
ଉଶୀରର ଲେପ ଯହିଁ । ତପତ ଲୋହେ ଜମାଳ ପରାଯେ ଶୁଖଇ ।
ଲବଣ୍ୟବତୀ : ୧୬ / ୨୬-୨୮

୨୪। .କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୧୮ / ୧୯-୨୯ (ସ୍ତମ୍ଭ, ସ୍ୱେଦ, ରୋମାଞ୍ଚ ଆଦି କ୍ରମରେ ବିରହ ଦଶାର ବର୍ଣ୍ଣନ)

୨୫। କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୧୬ / ୧୮ (ନାୟିକାଠାରେ ଦଶାବତାର ଆରୋପ)

୨୬। ପଢି ଏମନ୍ତ ପତରକୁ କାତର
ହେଲା ବେପଥୁ ବଶେଣ ଥର ଥର ।
ଲଭିବାକୁ ମନ ହେଲା ତତପର
ବିନ୍ଧେ ପୁନଃ ପୁନଃ ଫୁଲଶର ଶର ।

ରସଲେଖା : ୬ / ୪୨–୪୩

୨୭। ପ୍ରୀତି ବୀଜ ହୃଦ କ୍ଷେତ୍ରେ ବୁଣିତ । ହେଲା ପୁଲକାଙ୍କୁର ଅଗଣିତ ।

ରସିକ ହାରବଳୀ : ୪/୧

୨୮। ମୃତ ପ୍ରାୟ ହୋଇଥିଲା ରସିକ ସିହାଣୀ

ସଞ୍ଜୀବନୀ ମନ୍ତ୍ର ହେଲା ସହଚରୀ ବାଣୀ

ବିସ୍ତରିଲା ଜଗନ୍ନାଥ କୃପା କଲେ ମୋତେ

କେତେ କେତେ ପୁଣ୍ୟ କରିଥିଲି ମୁଁ ଜନ୍ମାନ୍ତେ ।

ରସିକ ହାରବଳୀ : ୫/୮

୨୯। × × × ଶୁଆଇଲେ ପଲ୍ଲବ ଶେଯେ ।

ସିଝିଯାଏ ସେ ବେଗେ ଯେତେକ ଅଙ୍ଗେ ଲଗେ ପାକ ଶାକ

ଦଶାକୁ ଭଜେ ଯେ ।

ସୁଭଦ୍ରା ପରିଣୟ : ୮/୨୦

୩୦। କଦର୍ଥେ ଅତି ମନ୍ଥରେ ଯାଇ ବାଳା ସପୁତ୍ରେ ପଠକ

ହରେ ଛନ ଛନ ମନ ଯଥା ଧନ ଠକିଲା କି ଠକ ।

କରି ନ ପାରି ସଞ୍ଚର ଉତ୍କଣ୍ଠାକୁ ସେ ବାରେ ପୁଚ୍ଛକ

କହ ମିତ କି ସେ ମଣ୍ଡିଥିଲା କେଶେ ଯେ ଶିଖି ଚନ୍ଦ୍ରକ ।

କଳାକଉତୁକ : ୬/୧୩-୧୪

୩୧। ଛଳୁଥାନ୍ତି ନୀଳମଣି ନୀଳୋତ୍ପଳ ପ୍ରଶଂସି ସୁନ୍ଦର ଅଙ୍ଗ

ଛାଡୁଥାନ୍ତି ଖରଶ୍ୱାସ ବିରହରେ ସପନେ ଭଳନ୍ତି ସଙ୍ଗ

ଛାନ୍ଦଭୂଷଣ : ୭/୯

୩୨। ଜୀବନ ଗଲେ ଏତିକି କରିବ । ଶ୍ୟାମ ନାମ ମୋର ହୃଦେ ଲିହିବ ।

ଶ୍ୟାମ ରୂପ ମୂର୍ତ୍ତି ହୃଦେ ଲଗାଇ । ଶ୍ୟାମ ବସନ ଅଙ୍ଗରେ ଘୋଡ଼ାଇ ।

ଶ୍ୟାମ ଗତି ପଥେ ଗୋ । ମୋ ଶବ ପୋତିବ ଆପଣାହସ୍ତେ ।

ବିଦଗ୍ଧ ଚିନ୍ତାମଣି : ୨୯/୩୬

୩୩। ତା' ନାମ ଗାଇ କଣ୍ଠରେ । ପ୍ରୀତି–ଡ଼ମ୍ବରୁ ବଜାଇ ଦାଣ୍ଡରେ ଗୋ
ଭିକ୍ଷା ମାଗୁଥିବି ବ୍ରହ୍ମାଣ୍ଡରେ । ସଜନୀ ଗୋ ।

ବିଦଗ୍ଧ ଚିନ୍ତାମଣି : ୪୮/୩୬

କିମ୍ବା

ବାକୁ ଦୂଷଣ ଘୋଷଣ । ହେଲେ ହେବ ପଛେ ନାନା କଷଣ ।
ମୁଁ ତ କଲିଣି ନିନ୍ଦା ଭୂଷଣ । ସଜନୀ ଗୋ ।

ବିଦଗ୍ଧ ଚିନ୍ତାମଣି : ୪୮/୫୫

୩୪। ଶ୍ୟାମ ରସୋତ୍ସବ : ୩ୟ

୩୫। ଅମ୍ବିକା ବିଳାସ : ୧୨ଶ, ୧୩ଶ

୩୬। କାତରେ ତରଳ ତର ନେତ୍ରା ନିଦ୍ରା ତେଜି
କୁଚ କାଞ୍ଚୁଲି ଫେଡ଼ିଲା ।
ଭିଡାରି ଉର ଉପର ଅମ୍ବର ଝାଡ଼ିଲା

ଚନ୍ଦ୍ରକଳା : ୨୧/୨-୩

୩୭। କାବ୍ୟ ସମ୍ବାଦ : ପୃ ୨୨୬

୩୮। ମଜ୍ଜି ଯିବି କି ଉଭ ରତିରେ ।

କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ : 'କ' ଗୀତ/୨

୩୯। ଶଙ୍କର ପରଜରେ ପଡ଼ି ରହିଲେ ଯୋଗ ଆଶାବରୀ ଗଉରୀ
ଲଳିତ ବସନ୍ତ ଭୈରବ ହେବାରୁ ବହିବ କୋଳାହଳ ପୂରି ।

ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର : ୩/୨୫

୪୦। ଶୁଣିଣ କାତର ହୋଇ ପଡ଼ିଲା ମୋହଯାଇ,
ସୁବର୍ଣ୍ଣ ଝରିରେ ନୀର ଘେନି ମନ୍ତ୍ରୀ କୁମର ସିଞ୍ଚଇ ।

କଳ୍ପଲତା : ୩/୩୧

୪୧। ପଟଦେଖି ପଗ୍ଚରିଲ୍ଲ ଆହେ ବ୍ରାହ୍ମଣ
ପଟ ଘେନି ବୁଲୁଅଛ କେଉଁ କାରଣ ।

× × ×

ପୁଣି ସମସ୍ତ କହିଲ୍ଲ ଶୁଣି କୁମର
ମଦନ ବେଦନାରେ ହୋଇଲ୍ଲ ଆତୁର ।

କଳାବତୀ : ୧/୨୩-୨୫

୪୨। ମକ୍ରକେତୁ ପଟ ଫେଡ଼ି ଦେଖି ତନୁ ପାଡ଼ିଲ୍ଲ ମଦନଶର
ହୃଦୟ ଦୂଲୁ ଦୂଲୁ ହୁଅଇ ଟାଙ୍କୋରିଲ୍ଲ ସର୍ବ ଶରୀର ।

ପରିମଳା : ୨/୩୩

୪୩। ଦୁହିଙ୍କ ଦେହ ଆକୁଳି ନ ଆସଇ ନିଦ୍ରା ଭଳି
ଦୁହେଂ ଅତି ଅନୁରାଗୀ ରସ ଭଙ୍ଗ ସତ୍ୟ ଲଗି ଯେ ।

ପରିମଳା : ୮/୭୫

୪୪। ନୃପତି ନୟନେ ପଡ଼ିଲ୍ଲ ନୀରଜ ନୟନୀର ନେତ୍ର ବିକାର
ନିମିଷେ ମାତ୍ର ପାଇ ସାହା ନୟନେ ଭେଦିଲା ଅଙ୍ଗେ କାମଜ୍ୱର ।
ରଜାର, ପ୍ରେମ ଅଙ୍କୁରିତ ହୋଇଲ୍ଲ ।
ରସବତୀ ରମା ନୟନ ବିକାର କିଂପା ମାନସ ନ ମୋହିଲ୍ଲ ।

ପ୍ରେମ ଲୋଚନା : ୧୦/୧୩

୪୫। ଲୋଚନେ ଲୋଚନ ମନେ ମନ ମିଶାମିଶି
ବଚନେ କାହାକୁ କେହି ନ କହେ ଭରସି ।

ଶଶିସେଣା : ୩/୫

୪୬। ରୂପ ଲକ୍ଷାବତୀ : ୨/୫୯—୭୮

୪୭। ଲକ୍ଷାବତୀ : ୩ୟ, ୪ର୍ଥ, ୫ମ

୪୮। କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୬/୨୯

୪୯। କଲେ ତୁ ଚିର ଅନୁଗ୍ରହ ମୁଦନ୍ତୀ
ଅଳତା ଚିତ୍ରେ ଚିତ୍ରକାର ହୁଅନ୍ତି ।
ସେବାରେ ଥାଇ ଫୁଲ ଗୁନ୍ଥାରେ ମାଳି
ହୋଇ ଲଗାନ୍ତି କାମ ବଦନେ କାଳି ।

ଲାବଣ୍ୟବତୀ : ୧୪/୧୦

୫୦। ବେଗେ ପୁଷ୍ପକାଳ ମୋ ଶିବ ଶିବ ମନ୍ତର ଜପାଇବି
ନବୀନା ସ୍ନେହ ଆଲିଙ୍ଗନେ ନରେନ୍ଦ୍ର ପଦ ପଦତଳେ ପାଇବି ।
ଚନ୍ଦ୍ରମା, ପ୍ରେମ ପାଦପ ରୋପାଇବି
କି ହେବ ମୁକତି କତିରେ ବସି ତା' ଇନ୍ଦ୍ର ଭୋଗକୁ କମ୍ପାଇବି ।

ପ୍ରେମ ସୁଧାନିଧି : ୩/୫

୫୧। ଗୁଣୁଥାଇ ମୋର ସେ କି ହୁଅନ୍ତା ବାନ୍ଧବୀ
କରନ୍ତି ମୁଁ ପଦତଳେ ମହତ ପଦବୀ ।

ରସିକ ହାରବଳୀ : ୧/୨୯

୫୨। ସୁଭଦ୍ରା ପରିଣୟ : ୧୧ଶ

୫୩। ପାଦେ ପିନ୍ଧିଦେଲେ ତୁହି ଅଲତା ପ୍ରିୟେ ମୁହିଁ
ଲାଗି ରହିଥିବି ତୋ ଚିତ୍ତେ କିଂଚିତେ କରୁଣା ହୋଇବା ପାଇଁ ।

ରସଲେଖା : ୯,୨

୫୪। ରସନିଧି କି ଅଶେଷ । ରୁଚିର ବିନୟ ଭାଷ ।
ରସାରେ ସ୍ତବକ ସ୍ତନାର ଯାବକ ପାରି ମୁଁ ହୋଇଲି ଦାସ ।

ବିଦଗ୍ଧ ଚିନ୍ତାମଣି : ୧୫/୬

୫୫। ପ୍ରାଣ ପ୍ରୟାଗରେ କି ଶିବ ନଗରେ କି ଗଙ୍ଗା ସାଗରେ ଦେବି ବଳେ ।
କିମ୍ବା
ପଶ୍ଚାତପ ତାପି ହୋଇବି ସନ୍ତାପି ମଦନ ପ୍ରତାପୀ ଯିବ ହଟି ।

ବିଦଗ୍ଧ ଚିନ୍ତାମଣି : ୧୨/୧୨ ଓ ୧୬

୫୬। ଶୃଙ୍ଗାର ତତ୍ତ୍ୱ ଅଧ୍ୟାୟ—(ବିରହ) ଦ୍ରଷ୍ଟବ୍ୟ

୫୭। କଥିତ ସମୟେ ତପି ହରି ରହହ ନ ଯଯୌ ବନମ୍
ମମ ବିଫଳ ମେତଦନୁ ରୂପମପି ଯୌବ୍ୱନମ୍.....
ଗୀତ ଗୋବିନ୍ଦ : ୭/୩

୫୮। ରସ ବାରିଧି : ୧୨/୩

୫୯। ସଙ୍କେତ କରି ମୋ ସଙ୍ଗେ । ରତ୍ରେ ମାତି କେଉଁ ନାଗରୀ ସଙ୍ଗେ
ବିଦିତ ହେଉଛି ଅଙ୍ଗେ–ସୁନ୍ଦର ହେ ।
ପ୍ରେମ କଳ୍ପଲତା : ୬/୨/୧୦

୬୦। ପ୍ରିୟା ଯଦି ମାନକରି କରୟେ ଭର୍ତ୍ସନ
ଦେବ ସ୍ତୁତି ହୈତେ ହରେ ସେଇ ମୋର ମନ
ଚୈତନ୍ୟ ଚରିତାମୃତ : ୧/୪/୨୬

୬୧। ତୁ ମୋର ଗୁରୁ ଚନ୍ଦନ ତୁ ମୋର ଶିର ବନ୍ଦନ
ତୁ ମୋର ମଦନ–ଜଳନିଧି ତରଣୀ
ତ ମୋ ଗଳେ ବନମାଳ ତୁ ମୋହର ବାର୍ଯ୍ୟବଳ
ତୁ ମୋର ଭବ-ବିଭବ-ସୁଖ ସରଣି
ତୁ ମୋହର ସବୁ ରମଣି ।
ମୁଁ ତୋହର ପରିଗ୍ରର କି କେ ନଗଣି ।
ଉଷାଭିଳାଷ : ୭/୧୬

ତୁଳନା–

ତ୍ୱମସି ମମ ଭୂଷଣଂ ତ୍ୱମସି ମମ ଜୀବନଂ ତ୍ୱମସି ମମଭବ ଜଳଧିରତ୍ନମ
ଭବତୁ ଭବତୀହ ମୟି ସତତ ମନୁରୋଧିନୀ ତତ୍ର ମମ ହୃଦୟମତିଯତ୍ନମ୍ ।
ଗୀତ ଗୋବିନ୍ଦ : ୧୦/୪

୬୨। ଯେତେ ବୋଲି ସୁନ୍ଦରୀ ଶୁଡିଲ ହେଠମାଥ
ମାନ ଅଗ୍ନି ହୃଦକୁ ହେଉଅଛି ଜାତ ।
ଶଶିସେଣା : ୧୨/୨

୬୩। ଦେଖିଣ ସୁନ୍ଦରୀ ଗୁରୁମାନକରି ଟେକି ନ ଗ୍ରହାନ୍ତି ମୁଖ
ନୟନ୍ନୁ ନୀର ଝର ଝର ବହଇ ସୁମରି ବିଚ୍ଛେଦ ଦୁଃଖ ।
ଶଶିସେଣା : ୧୩/୪

୬୪। ପତି କାନ୍ତ ପ୍ରିୟ ବଚନକୁ କର୍ଣ୍ଣେ ଶୁଣି
କୋପମାନ ନାଶକଲା ରମା ଶିରୋମଣି ।
ପ୍ରେମ ସୁଧାନିଧି : ୧୬/୧

୬୫। ପ୍ରେମ ସୁଧାନିଧି : ୧୫ଶ (ଲୋମ ବିଲୋମ), ୧୬ଶ (ପୁନରୁକ୍ତି ବଦାଭ ସ ଦତ୍ତାକ୍ଷର, ଚ୍ୟୁତାକ୍ଷର, ଦତ୍ତଚ୍ୟୁତାକ୍ଷର ଇତ୍ୟାଦି)

୬୬। ସୁଭଦ୍ରା ପରିଣୟ : ୧୧/୯୪–୯୬

୬୭। କେଳି କଳାନିଧି : ୧୩/୩୦

୬୮। ରାଘବ ବିଳାସ : ୧୫/୧୮-୧୯

୬୯। ଅମ୍ବିକା ବିଳାସ : ୨୯/୨୨–୨୬

୭୦। ଧନୁ ଆମଞ୍ଜିବା ଦେଖି ସୀତା ମାନକଲା
ଏକ ପତ୍ନୀବ୍ରତ ମୋର ଏହିଠାରୁ ଗଲା ।
ରାମବିଭା : ୧୨/୨୨୫

୭୧। ବୈଦେହୀଶ ବିଳାସ : ୧୬ଶ, ରାଘବ ବିଳାସ : ୧୬ଶ

୭୨। ଲାବଣ୍ୟବତୀ : ୩୬/୩୮-୩୯

୭୩। ସେ ଶ୍ୟାମ ସୁନ୍ଦର ଶ୍ରୀଅଙ୍ଗେ ପ୍ରଚୁର ରତିଚିହ୍ନମାନ ଦେଖି
କର କପୋଳରେ ଦେଇ ମାନଭରେ ବସିଲେ ଚନ୍ଦ୍ରମା ମୁଖୀ ।
ସେ କାନ୍ତେ
କରି ରୋଦନ ଝୀନ ପଣନ୍ତେ । ସେ ।
ସରୋସରେ ଦନ୍ତକୁ ଭିଡ଼ନ୍ତେ । ସେ ।
ପ୍ରେମ କଳ୍ପଲତା : ୩ୟ ପଲ୍ଲବ ୨ୟ ଛାନ୍ଦ

୭୪। ବପୁରନୁ ଦହତି ତବ ସୁର ସଂଗରଖରନଖର କ୍ଷତ ରେଖମ୍
ମରକତ ଶକଲ କଳିତ କଳଧୌତ ଲିପେରିବ ରତିଜୟ ଲେଖମ୍ ।
ଗୀତଗୋବିନ୍ଦ : ୮/୪

୭୫। ଦିନେ ଦିନ ଶେଷ ସମୟେ ଗଞ୍ଜନ ଫୁଲବନ ମଣ୍ଡପେଣ
ଡାକିଲେ ପ୍ରିୟାକୁ ଅନୁରାଗଭରେ ବିଚିତ୍ର କଳା ବୋଲିଣ ।
ଏମନ୍ତ ବଚନ କାନ୍ତ ବଦନରୁ ଶୁଣିଲା ଯେଣୁ ସେ କାନ୍ତା
ସପତଣୀ ଭୟେ ଅଧୋମୁଖେ ବସି ଲଭିଲା ଦୁଃସହ ଚିନ୍ତା ।
ଚିତ୍ରକଳା : ୧୧/୩୩ ୩୪

୭୬। ନିକର ନୃପ ନନ୍ଦିନୀ ତ୍ରିଜଗ ଜନ ବଂଦିନୀ
ମାନ ଅଗ୍ନି ବହୁଅଛି ସବୁରି ଅଙ୍ଗ । × ×
ରହସ୍ୟ ମଞ୍ଜରୀ : ୭/୧

୭୭। ରହସ୍ୟ ମଞ୍ଜରୀ : ୧୩/୫୪-୫୬

୭୮। ଗୋପର ଚରିତ୍ର ଗୋପୀମାନଙ୍କ କଥା
ପ୍ରସଙ୍ଗେ କହନ୍ତେ ଯୁବତୀଙ୍କି ଲାଗଇ ବ୍ୟଥା ।
ଗୋପୀ ଚନ୍ଦନ : ୧/୧୪

୭୯। ଗୃହେ ନ ପଶନ୍ତି କେଶ ନ ବାନ୍ଧନ୍ତି
ନପିନ୍ଧନ୍ତି ଝୀନ ବାସ
ନ ରାନ୍ଧନ୍ତି ଅନ୍ନ ନରୁଚେ ଭୋଜନ
ତେଜିଲେ ଜୀବନ ଆଶ ।
ରହସ୍ୟ ମଂଜରୀ : ୯/୫୧

୮୦। ମୋତେ ସଜକର ସଖୀ
କହ୍ନାଇକି ଯିବି ଦେଖି
ମୁରଲୀ ବଜାଇ ମନ୍ଦ ମନ୍ଦ କରି ଦୂରୁ ଠାରୁଥାଇ ଆଖି ।
ରହସ୍ୟ ମଞ୍ଜରୀ : ୧୦/୬

୮୧। ରହସ୍ୟ ମଞ୍ଜରୀ : (ମୁଖବନ୍ଧ) ପୃ ୧/-

୮୨। ରସକଲ୍ଲୋଳ : ୨୬'୯

୮୩। କେବେହେଁ ତରଂଗିଣୀ ନରପତି ଶୃଙ୍ଗିଣୀ
ଖଳକୁ ନଯାଇ ବିଶ୍ୱାସ । × ×
ରସକଲ୍ଲୋଳ : ୨୬/୧୬

ତୁଳନୀୟ–

ନଦୀନାଞ୍ଚ ନଖୀନାଞ୍ଚ ଶୃଙ୍ଗୀଣାଂ ଶସ୍ତ୍ରପାଣିନାମ
ବିଶ୍ୱାସ ନୈବ କର୍ତ୍ତବ୍ୟଃ ସ୍ତ୍ରୀଷୁ ରାଜକୁଳେଷୁ ଚ ।

୮୪। କେଶବାସ ଦେଖ ଦରିଦ୍ରାଣୀ ଭେକ ଆନ କେ କରିବ ଏହା
କୁଳଶୀଳ ଲଜ ତେଜି ଏହି କାର୍ଯ୍ୟ ପାଇଲୁ କହିଲ ଯାହା ସେ
କୃଷ୍ଣ ସଙ୍ଗେ କଲ ପ୍ରୀତିଫଳ । କରୁଅଛି ଏବେ ବିକଳ ସେ ।
ରସକଲ୍ଲୋଳ : ୩୩/୬

୮୫। କେ କିଳ ପଗପ୍ସେ କୁଞ୍ଜବନ ଗଯେ କଲେ ଯେଉଁ ଆଚରଣ ...୩୩/୧୨
କର ଚିନ୍ତାମଣି କରେ ଚିନ୍ତାମଣି କାମଧେନୁ ସେହି ମତି...୩୩/୧୩
କୁସୁମ୍ ମିଳିନ୍ଦ ହରି ମକରନ୍ଦ ନାମ ବହେ ମଧୁକର...୩୩/୨୩
କରଗତ କୀର କହିବା ମଧୁର କାନନେ ପଶିଲେ କାହିଁ ...୩୩/୨୬
–ରସକଲ୍ଲୋଳ–

୮୬। କୁବୁଜା ପାଶରେ ଥିବା ସମୟରେ ଦୁଃଖ ଏକା ନ କହିବ
ରସକଲ୍ଲୋଳ : ୩୩/୨୯

୮୭। କେ ପାଇ କନ୍ଦର୍ପ ପ୍ରଥମ ଦଶା । କରିଛି ତୁମ ଅଙ୍ଗ ସଙ୍ଗ ଆଶା
× × ×
କେ ନଦମରେ ଜଡ଼ତାକୁ ପାଇ । କେବଳ ଅଛି ଅବନୀରେ ଶୋଇ ।
ରସକଲ୍ଲୋଳ : ୩୪/୫-୬

୮୮। କାହା ସାତ୍ତ୍ୱିକ ହିମ ରତୁ ପ୍ରାୟେ । ଜମାଉଛି ଏହି ଘେନି ତା କାୟେ
କା ରୋମ ଉଦ୍‌ଗମ । କାଳିକା କାଳ କଦମ୍ବ କୁସୁମ । × ×
ରସକଲ୍ଲୋଳ : ୩୪/୭-୯

୮୯। ଛାନ୍ଦଭୂଷଣ : ୩୦ଶ

୯୦। କେ ବୋଲଇ ମରଣ ଅମ୍ଭଙ୍କୁ ପଛେ ହେଉ
ମଥୁରା ନଯାଇ କୃଷ୍ଣ ଗୋପପୁରେ ଥାଉ । ୪/୫

କିମ୍ବା

କେ ବୋଲେ ଯମୁନା ଗର୍ଭେ ଜୀବନ ହାରିବା । ୪/୯

କିମ୍ବା

କେ ବୋଲଇ ଗଜପତି ଆମ୍ଭ ଆୟୁ ନେଉ । ୪/୧୦

—ମଥୁରାମଙ୍ଗଳ—

୯୧। ମଥୁରାମଙ୍ଗଳ : ୫/୧୯-୨୦

୯୨। ଘେନିବୁ ଜୀବନ ଭଙ୍ଗିବୁ ତା' ଯାନ
କଥା ରହିଥାଉ ତିନିପୁରୀ । ମଥୁରାମଙ୍ଗଳ : ୫/୨୫

୯୩। ବାରିଜ-ଅରି-ବଇରି-ଧ୍ୱଜର ପତିଙ୍କି ସେବି ପାଇଥିଲୁ । ୭/୧୨

କିମ୍ବା

ଶିରିଷ-ଉପରେ-ଗିରୀଶ-ଅରି-ଜନକ ମଇତ୍ର ବାହନ । ୭/୧୪

କିମ୍ବା

ଉଣାଇଶେ ଏକ ମିଶାଇ ଖାଇବୁ ପ୍ରତ୍ୟକ୍ଷେ ଦେଖ ବେନିଭଇ । ୭/୧୫

—ମଥୁରାମଙ୍ଗଳ—

୯୪। (କ) କି କହିବି ଗୋପକଥା କହିଲେ ଘଟାଇ ବ୍ୟଥା
ଅଶୋଭ ଦିଶୁଛି ବୃନ୍ଦାବନ
କାନ୍ଦୁଛନ୍ତି ବୃକ୍ଷମାନେ ବୃଣ ହୋଇ ଦିନେ ଦିନେ
. କ୍ଷୀର ନ ଦିଅନ୍ତି ଧେନୁମାନେ ହେ, ଦୀନବଂଧୁ
କୃଷିମାନେ ନ ଫଳନ୍ତି ଭଲେ । ବୃଷ୍ଟି ନ କରନ୍ତି ମେଘମାନେ ହେ ।
ମଥୁରାମଙ୍ଗଳ : ୩୦/୮ (ଇତ୍ୟାଦି)

(ଖ ନ ଘେନନ୍ତି ଗନ୍ଧପୁଷ୍ପ ନାନା ଅଳଂକାର ବେଶ
ସୁସ୍ୱାଦୁ ପଦାର୍ଥ ନ ଭୁଞ୍ଜନ୍ତି
ନ ପିନ୍ଧନ୍ତି ଝୀନବାସ ଉଚ୍ଚେ ଛାଡନ୍ତି ନିଃଶ୍ୱାସ
ହା ଗୋବିନ୍ଦ ବୋଲିଣ ରୋଦନ୍ତି ହେ, ଦୀନବଂଧୁ ।
କ୍ଷଣେ କ୍ଷଣେ ପଡ଼ନ୍ତି ମହୀରେ । ନ ଶୁଣନ୍ତି କର୍ଣ୍ଣରେ କହିଲେ ।
ମଥୁରମଙ୍ଗଳ : ୩୦/୧୦

୯୫। ଭକ୍ତଚରଣ ଓ ମଥୁରମଙ୍ଗଳ : ପୃ ୮୦

୯୬। ବିଧି ବଶେ କଉଣପେ, କ୍ଷୋଭିତ କ୍ଷିତି ।
ଯୁବରାଜ ରଛ ଆଜ୍ଞାଦେଲେ ନୃପତି ।
ଚତୁରଙ୍ଗ ସେନା ସୈନ୍ୟ ଘେନି ବହୁତ ।
ସମର ଆରମ୍ଭ ପକାଇଲେ ଦଇତ ।
ରସିକ ହାରବଳୀ : ୬/୩-୪

୯୭। ମହାସୁଖ ନାହିଁ ଦମ୍ପତିଙ୍କୁ । କି ହେବ କୁବେର ସମ୍ପତ୍ତିଙ୍କୁ ।
ଜୀବନ ଯିବାର ବଡ଼ତ ନୁହଇ ଯୁବାକୁ ଯୁବତୀ ବିଚ୍ଛେଦକୁ ।
ବାନ୍ଧବୀ ପାଶରେ ଥାଉ ଥାଉ । ତା' ମୁଖ ପଦ୍ମକୁ ଚାହୁଁ ଚାହୁଁ ।
ଯେଉଁ ପୁରୁଷ ପ୍ରାଣତ୍ୟାଗ କରିଛି ତା' ସମ ସୁକୃତି ନାହିଁ ଆଉ ।
ରସିକ ହାରବଳୀ : ୮/୭

୯୮। ରମେ ଜଣାଉଛି ପ୍ରିୟାର ବିଚ୍ଛେଦ ବେଦନା ତାଙ୍କୁ ଗୋଚର
ଚରଣ ସେବା ତା'ର କେବେ କରିବି ଏହି ମୋ ମନ ବିଚାର ।
ରସିକ ହାରବଳୀ : ୧୧/୩୪

୯୯। କାରଣ ବଶେ ବିଦେଶ କରିବାକୁ
ଆଜ୍ଞା ଦେଲେ ନରେଶ୍ୱର ।
ପ୍ରେମ ସୁଧାନିଧି : ୮/୧

୧୦୦। ପ୍ରେମ ସୁଧାନିଧି : ୯/୨୧-୨୨

୧୦୧। ତା'ର ମୋର ନୀବୀ ମୋକ୍ଷ ମୋକ୍ଷ ।

ପ୍ରେମ ସୁଧାନିଧି : ୧୩/୧୯

୧୦୨। ତହିଁ ଗଲ କେତେ ମାସ

କୃମର କଲ ପ୍ରବାସ

ତାତ ବାଣୀ ଘେନି ଶିରେ

ବିଧି ବଶରେ ଯେ ।

ସୁବର୍ଣ୍ଣରେଖା : ୧/୨୧

୧୦୩। × × × କାମରସ ସାର ।

କହେ ଉପଇନ୍ଦ୍ର ବୀରବର ।

ସୁବର୍ଣ୍ଣରେଖା : ୨/୨୨

୧୦୪। (କ) ଲବଣ୍ୟ ଜଳରେ କମଳ କଢ଼ି । ପଗଯେ ଆସୁଥିଲ ସ୍ତନ ବଢ଼ି ।
ରହୁଥିଲ ମୋର କର ଭିତର । କେତେ ହେବନି ଏବେ
ପୟୋଧର । ୨/୫

କିମ୍ବା

ମନୋହାରୀ ସୁରପୁରେ ମୋହର । ଦିନେ ଅନାୟରେ ପଡ଼ିଲ
କର । ୨/୬

କିମ୍ବା

ଶୋଭ ବସନ କାମ ସଦନର । ମାର ତ୍ରିକୋଣିଆ ଛତ୍ର
ରୁଚିର । ୪/୨୨

କିମ୍ବା

ଲୋମହୀନ ମାଂସଳ କର ଦୁଇ । ସ୍ୱର୍ଣ୍ଣପାତ୍ର କି ଥୁଆ
ଓଲଟାଇ । ୪/୧୯

—ସୁବର୍ଣ୍ଣରେଖା—

(ଖ) ସୁବର୍ଣ୍ଣରେଖା : ୪ର୍ଥ

(ଗ) ରତିପତି ଦୁଃଖ ବେଗେ ପାଶୋରିଲ୍ଲ ଇଭିଲ୍ଲ ଇନ୍ଦ୍ର ସମ୍ପତି

ସୁବର୍ଣ୍ଣରେଖା : ୫/୧୪

୧୦୫। ତୁମ୍ଭେ ଗଲ୍ଲଦିନୁ ବିଦେଶ ଗମନ ଥାଉ ହୋଇବାର ବେଶ
ହରିଦ୍ରା ଶରୀରେ ଦିନେ ଘେନି ନାହିଁ ଫେଡ଼ି ବାନ୍ଧି ନାହିଁ କେଶ ।

ସୁବର୍ଣ୍ଣରେଖା : ୪/୨ (ଇତ୍ୟାଦି)

୧୦୬। ଧରଣୀ ପତି ତ କାର୍ଯ୍ୟ ବିଷୟରେ ପେଷୁଛନ୍ତି ବିଦେଶକୁ
ଶକୁନ୍ତ ପକ୍ଷହୀନ ହେଲ୍ଲ ପରଯେ ହୋଇ ହରିବି ଦିନକୁ ।

କେଳି କଳାନିଧି : ୭/୨

୧୦୭। (କ) ଦଣ୍ଡ ଦୁଇ ଅଚେଷ୍ଟ ହୋଇ ରହି
ଗ୍ୟାନେ ବୋଲଇ ମୋର ପ୍ରାଣସହି
ତୋର ବିନୁ ମରିବା ମଉଷଧି
ଆଣି ମନରେ ଆଜ ଦେଲ ବିଧି ।

ସୁକୁନ୍ତଳା : ୯/୭-୮

ଖ) ସଖି ଯେ ବୋଲି ତେଜିଲ୍ଲ ନିଃଶ୍ୱାସ
ଆଉ ବୋଲିବା ନ ପାଇଲ୍ଲ ଶେଷ ।
ମୋହଜ୍ଞାନକୁ ଆସି ପ୍ରକାଶିଲ
ଜାଣି ସଖି କୋଳ କରି ବସିଲ୍ଲ । ସୁକୁନ୍ତଳା : ୩/୧୭ - ୧୮

୧୦୮ । ବେନିଜନେ ଯେକଥାନେ ଥାନ୍ତି ଅହର୍ନିଶି
ନ ଖାଆନ୍ତି ଅନ୍ନପାଣି ଝୁରୁଥାନ୍ତି ବସି ।

ପରିମଳା : ୧୨/୧୪

୧୦୯। ଆଗକୁ ବଢାଇ ପାଦ ପଛକୁ ପଡ଼ଇ
ଅତି ଅତ ଦୁଃଖେ ବାଳୀ ସଧୀରେ ଗମଇ ।
ପୁଣହିଁ ଲେଉଟି ବାଳୀ ଗ୍ଭହୁଛି ତହିଁ
ପଦେ ପଦେ ଝୁଣ୍ଟୁଅଛି ବିକଳ ସେ ହୋଇ ।

ପରିମଳା : ୧୨/୭୫ ୭୬

୧୧୦। ଗନ୍ଧର୍ବ ସଙ୍ଗେ ସୁରତି କରୁନଥିବ ଯୁବତୀ
ଯୁବତୀ ପାଇଲେ ରତି ସବୁ ତେଜନ୍ତି ।

ପରିମଳା: ୧୪/୩୬

କିମ୍ବା

ବସିଥିବ ଗନ୍ଧର୍ବ ସଂଗତେ ତୋତେ ଘେନି ।

ପରିମଳା : ୧୬/୨୫

୧୧୧। ଶାପ୍ୟ ଚତୁର୍ଦ୍ଦଶ ମାସ ବିଚ୍ଛେଦ ଲଭିବୁ ।
ଦୁଃଖ ଭୋଗ କରି ପୁଣି ବାଳାକୁ ପାଇବୁ ।

ପ୍ରେମଲୋଚନା : ୧୫/୮୬

୧୧୨। ନବ ବକୁଳ ରସାଳେ ଦେଖିଲି
ବେଗେ ବକୁଳ କୁଳ ଛିଡାଇଲି
ପଟେ ଆଚ୍ଛାଦିଲି ପତ୍ର ମଂଜରୀ
କାହିଁ କାଳ ଆଚ୍ଛାଦିଲି ବିଶ୍ୱରି ।
ବିଷକଣ୍ଠ ଯେ କୋକିଳ ନବସ୍ତ୍ର
ସଖୀ ପ୍ରାଣ ହତ ବାଣୀ ନ ଭଷୁ ।

ପ୍ରେମଲୋଚନା : ୧୭/୮୧-୮୩ (ଇତ୍ୟାଦି)

୧୧୩। × × ଅମର ଶାପରେ
ହେବ ବିଚ୍ଛେଦ ସମ୍ଭବରେ ।

ଲାବଣ୍ୟବତୀ : ୩୯/୪୧

୧୧୪। କ) ମନ ଘେନିବାକୁ ପ୍ରିୟା ସମ ଜଣେ ଖୋଜିଲେ ନଥିବ କାହିଁ ।
ମୋ ମନ ଘେନୁଛି ପ୍ରୀତି ଘେନିବାକୁ ତାହାରି ସମାନ ନାହିଁ ।

ଲାବଣ୍ୟବତୀ : ୪୦/୬

ଖ) ପୁଣି ବିରହ ଅନଳେ ଦହନ । ହୋନ୍ତା ଏ ମୋହର ତନୁ ବହନ ।।
ଭସ୍ମ ଉଡାଇ କୃପାରେ ପବନ । ନେଇ ପକାନ୍ତା କାନ୍ତା ସନ୍ନିଧାନ ।।

କିସ ବୋଲି ବାଛା କରନ୍ତା ଦୃଷ୍ଟି । ତହିଁ ପରେ ହୁଅନ୍ତା ସୁଧା ବୃଷ୍ଟି ॥
ହୋଇ ମୂର୍ତ୍ତିମନ୍ତମୁଁ ଗୁହିଁ ମୁଖ । କରଯୋଡ଼ି କହନ୍ତି ସବୁ ଦୁଃଖ ॥
ଲାବଣ୍ୟବତୀ : ୪୨/୫୨-୫୫

୧୧୫। ଜବାଧରୀ ଦେହ ଇତର ନୁହଇ ଯବା ବଇକୁଣ୍ଠପୁର ।
ଲାବଣ୍ୟବତୀ : ୪୪/୧୧

୧୧୬। ଯୋଗେ ପଡ଼ିଲା ସେ କାମ ସଦନେ । ଲବଣୀରୁ କୋମଳ କଲି ମନେ ।
ନଖ ଚଳାଇ ଦେବାରୁ ତହିଁରେ । ରୋମାଙ୍କୁର ହୋଇଲା ଯେ ଦେହରେ ।
ଲାବଣ୍ୟବତୀ : ୪୨/୪୭-୪୮

୧୧୭। ଗୋକୁଳ ଈଶ ରସ ମନେ ଭାବି । ପଛୁ କୋଳ କରି ଧରନ୍ତେ ନୀବୀ ।
ଲାବଣ୍ୟବତୀ : ୪୦/୧୩

୧୧୮। ରାଧା ଠାକୁରାଣୀ ଶାପ ବାର୍ଦ୍ଧି ବିଧି ଅଛି ପୂର୍ବ ଅପରାଧରେ ।
ରସକଲ୍ଲୋଳ : ୧/୯

୧୧୯। ନାମ ଧରି ରୋଦନ କରଇ ଉଚ୍ଚସ୍ୱରେ
ମୋତେ ଛାଡ଼ି ପ୍ରାଣନାଥ ଗଲ କି ଦୋଷରେ ।
ବାଳୁତ କାଳରେ ପିତା ଘରେ ଯେବେ ଥିଲି
ତେବେ ହେଁ ତୁମ୍ଭର ଆଗ୍ୟାଁ ଅବଗ୍ୟାଁ ନ କଲି ।
ଶଶିସେଣା : ୧୨/୩୦ (ଇତ୍ୟାଦି)

୧୨୦। ବୈଦେହୀଶ ବିଳାସ : ୨୫/୯-୧୩

୧୨୧। ବନେ ବନେ ରଘୁମଣି । ବିପଥ ପଥ ନ ମଣି
ବନ ପୂର୍ଣ୍ଣ ଅନୁକ୍ଷଣ । ବେନି ଲକ୍ଷଣ ଯେ ।
ବୈଦେହୀଶ ବିଳାସ : ୨୬ ୧

୧୨୨। ବଲଭୀ ବୋଲି ମୋର ତାକୁ ଚିହ୍ନିବ ଯେ ଶଯ୍ୟା କରିଥିବ ଧରା
ବିଶୀର୍ଣ୍ଣ କ୍ଷୀଣବସା ରତ୍ନ ଗଣିବୁ ଫିଟି ପତନ ହେବ ପରା ।
ବାରିବାହ ହେ । ବସିଥିବ ଅବା ଦେଖିବ ।
ବେଣୀ ପୃଷ୍ଠଭାଗେ ମଦଧୂଳିପାତ ଚକିତ ନାଗ ପ୍ରାୟ ଥିବ ।
ବୈଦେହୀଶ ବିଳାସ : ୨୯/୨୧

୧୨୩। ବିବସନ କରି ନଖ ଘ୍ନନ୍ତେ ଏମନ୍ତ
ବିବଶନ୍ତୁ ହେବ କି ଏ ରୂପେ ଗେମାଈତଂ ।
ବୈଦେହୀଶ ବିଳାସ : ୨୬/୨

୧୨୪। ବଲ୍ଲଭେ । ବନପ୍ରିୟ କହ ଏତେ ଯେ
ବ୍ରହ୍ମାଣ୍ଡ ନାଥ ହାତଧରି ଅନାଥ କି ଶୁଭୁଅଛି ଜଗତେ ଯେ ।
ବୈଦେହୀଶ ବିଳାସ : ୩୪/୭

୧୨୫। ମନେକରେ ଦୟାଶୀଳା ଅଟଇ ମୋହର ବାଳା
ଥାଉ ଥାଉ ଆୟତ କି ଛାଡ଼ିବ ମୋତେ
ମାସକେ ଆସିବ ବୋଲି କହି ଯେ ଥିଲା ନାଗରୀ
ପାଶୋରିଲା ପଡ଼ି ଅବା କାନ୍ତ ସଂଗତେ ।
ସ୍ତିରୀ ଜାତି କାମରେ ବଶ
ଅନ୍ତର ହେଲେ ଇଛନ୍ତି ଆନ ପୁରୁଷ ।
ଭାଗବତୀ : ୬/୨୫

୧୨୬। ହୋଡ଼େ କୁମର କୁମାରୀ ଜଳରେ ବୁଡ଼ିଲେ ଘ୍ନରି
ହରିଣ ନାଗକୁମାରୀ କୁମର ନେଲେ । × ×
କଳ୍ପଲତା : ୧୧/୧୫

୧୨୭। କହଇ କଳାନିଧି କାମିନୀ ଶୁଣ ତିଳୋତ୍ତମା ନାରୀ
କଳପ ଲତାର ଆକୃତ ଦେଖି ମଦନ ହେଲେ ଶୁଆଶାରୀ
ଛାଡ଼ିଲେ ସ୍ବରରେ କୋକିଳ କୁଳ ମଧୁକର ନ ଚୁମ୍ବନ୍ତି ଫୁଲ
ବଢ଼ିଲା କାମ ଶୋକନଦୀ ନ ଦିଶଇ କୂଳ ।
କଳ୍ପଲତା : ୧୨/୧-୨

୧୨୮। କରେ ଦେଲା ସୁଗନ୍ଧ ମଣ୍ଡା
ସୁଘନ୍ତେ କୁମର ମଣି ହୋଇଲା ମେଣ୍ଢା ।
ଶଶିସେଣା : ୮/୯

୧୨୯। କଟକେ ଛଟକ ନାରୀ ଅଛନ୍ତି ନାନା ଚତୁରୀ
କେ ଅବା କୁମର ମନ ରଖିଲ ମୋହି... ।

ଶଶିସେଣା ୮/୧୪

୧୩୦। କୁମରକୁ ଗନ୍ଧର୍ବ କଲକ ବେଗେ କୋଳ
ଧରି ନେଇ ପକାଇଲ ସମୁଦ୍ରର ଜଳ

ପରିମଳା : ୨୦/୯୧

୧୩୧। ପରିମଳା : ୨୧/୫

୧୩୨। ତତ୍ରୈବ : ୨୧/୭

୧୩୩। କାନ୍ତରତି ଭବ ସୁଖର ସାର
ନିର୍ମଳ ଗଙ୍ଗା ଜଳର ଆକର ।......

ପରମଳା : ୨୧/୨୭

୧୩୪। ବାସ ଫିଟି ଦିଶେ କାମ ସଦନ
ଦେଖି ପବିତ୍ର ହୋଇଲା ନେତ୍ର ମନ ।

କଳାବତୀ : ୪/୬୦

୧୩୫। ଅଛନ୍ତି ଯେଉଁ ଦେଶେ ମୋର ବଲ୍ଲଭ
ସେଠାରେ ନ କର କି ଏ ଘନାରମ୍ଭ ହେ ।
ଶିଖରୀ ଶିଖେ ଶିଖୀ ନୃତ୍ୟେ କି ନାହିଁ
କାମ ବନ୍ଦୀ ଡ଼ାହୁକ ନ ରହେ ତହିଁ ହେ ।

ଅନଙ୍ଗରେଖା : ୧୫/୨୫

୧୩୬। ଅଗ୍ନି ସଞ୍ଚାଳି ପଣିବି ନିତ୍ୟେ ଦେଖି ତା' ହୁଅ ତୋଷ ।

ଅନଙ୍ଗରେଖା : ୧୬/୨୪

୧୩୭। ପ୍ରୀତିରେ ପକ୍ଷୀ ମଲ ପ୍ରୀତିରେ ଦ୍ରବେ ଶିଳା
ମୁହିଁ ତୋ ପ୍ରୀତି ପରାଧୀନା
ପ୍ରୀତି ପରମଧନ ପାଇ ମୁଁ ହେଲି ଭିନ୍ନ
କି ଦୋଷ ହେଲ ଏ ଯାଁତନା ।

ରସଲେଖା : ୧୯/୧୦

୧୩୮। ନ ଜାଣଇ କି ମୁଁ ତୁମ୍ଭେ ନୃପତି କୁମର
ଅନେକ ଯୁବତୀ ଆଶା ଅଛି ତୁମ୍ଭଠାର ।

ରସଲେଖା : ୨୦/୧୧

୧୩୯। ରସକଲ୍ଲୋଳ : ୨୧/୨

୧୪୦। ରସକଲ୍ଲୋଳ : ୨୧/୧୮ (ଅଷ୍ଟ ସାତ୍ତ୍ୱିକଭାବ)

୧୪୧। ଛାନ୍ଦ ଭୂଷଣ : ୨୩/୧-୨

୧୪୨। ଆମ୍ଭେ ବହିଛୁ ଯଉବନ । କେ ଆନ ହେବ ହାନିମାନ ।
ଆମ୍ଭ ବୟସ ଆମ୍ଭ ରିପୁ । କନକ ଚମ୍ପା ପ୍ରାୟେ ବପୁ ।
ଏ ଉଚ ଉରଜ ପ୍ରକଟ । ଏଥକୁ ସିନା ତା'ର ହଟ ।

ପ୍ରେମ ପଞ୍ଚାମୃତ : ୨/୬୧-୬୩

୧୪୩। ଦେଖାଇ ମିଥ୍ୟା ଅନୁରାଗ । ପୋଡୁ ତୋ ଏମନ୍ତ ସୁହାଗ ।
କିଞ୍ଚିତେ ଦୟା ନ ବହିଲୁ । ବନସ୍ତେ ଏକା ଛାଡ଼ିଗଲୁ ।
ବଜ୍ର ହୁଁ ତୋ ହୃଦୟ ଅଣ୍ଡ । କି କର୍ମ କଲୁ ଆରେ ଖଣ୍ଡ ।

ପ୍ରେମ ପଞ୍ଚାମୃତ : ୩/୧୩-୧୫

୧୪୪। ନନ୍ଦନ ବନରେ ଫୁଲ ତୋଳୁଥିଲି
କଳପ ତରୁକୁ ଛୁଇଁ ନିୟମ କଲି
ମୁଁ ତୋତେ ନ ଛାଡ଼ଇ ବୋଲି ତୋର ଏ ସପତ
କେମନ୍ତେ ଲଙ୍ଘିଲୁ ସଖି ଯେତେକ ସତ୍ୟ ।

କଳ୍ପଲତା : ୬/୨୧-୨୨

୧୪୫। ମୋର ବିଧବା ଲକ୍ଷଣ ନାହିଁ । ମୁନି ଅଛନ୍ତି ସମସ୍ତ କହି
ଅକାଳ ମୃତ୍ୟୁ କୁମରକୁ ହୋଇଲା
କେଉଁ ଗୁରୁଜନ ଶାପ ପାଇ । ହେ ଦଇବ ।

ଶଶିସେଣା : ୬/୯

୧୪୬। ଖେଦନ କରଇ ବାଳା ଅତି ବିକଳେ
କର ବେନି ପ୍ରହାରଇ ଉରଜ ମୂଳେ
× × ×
ଆଲିଙ୍ଗନ କଲି ଦେଖି ସଚୁର ହୋଇ
ସେ କଥା ସୁମରି ପ୍ରାଣ ଅଛି କିପାଇଁ ।
ମଦାଳସା : ୧୦/୧.୧୧

୧୪୭। ସାହିତ୍ୟ ଓ ସାହିତ୍ୟିକ : ପୃ ୧୬୬

୧୪୮। ଇଚ୍ଛାବତୀ ଯେ ମୋହ ଯାଇଥିଲେ
ଘଟ ମରୁଛି ବୋଲିଣ ଶୁଣିଲେ ।
ଲଜ ସଂକୋଚ ସମସ୍ତ ଛାଡ଼ିଲେ
ଯେକ କାଠିରୁ ବାହାର ହୋଇଲେ ।
ବଣ ଲେଟି ପଡୁଅଛି ଭୂମିର
ଫିଟି କବରୀ ଚରମେ ତାହାର
× × ×
ଆରେ ଯେହାକୁ ମୋ ଆଗେ ନମାର
ଯଦି ମାରିବୁ ଆଗେ ମୋତେ ମାର ।
ଘଟ ଇଚ୍ଛାବତୀ : ୪/୮୬-୯୬

୧୪୯। ତୋର ଲୀଳା ଗମନ ସରଣୀ
ତହିଁ ଯାଇ ରହୁ ମୋର ଧରଣୀ
ପ୍ରିୟା ଲଗି ଯେବେ ଏ ପ୍ରାଣ ତେଜିବି
ହେବି ରସିକ ଅଗ୍ରଣୀ । ରେ ଦୋସାଦୂ ।
ଇଚ୍ଛାବତୀ : ୧୦/୪୬

୧୫୦। ଓଡ଼ିଆ କାବ୍ୟ କୌଶଳ (ଅପ୍ରକାଶିତ ସନ୍ଦର୍ଭ)
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ : ପୃ ୭୬୧

୧୫୧। ସେହି ଦିନ ଦିନ ଅବସାନେ । ନିଧୁ ବନାନ୍ତ ଶ୍ରାନ୍ତ ଶୟନେ । ପ୍ରିୟ ।
ବିନାଶ କାନ୍ତ ନାହିଁ ପାଶରେ ଦେଖିଲେ ଦୁହେଁ ସ୍ୱପନେ ।
ହେ ସୁଜନେ ।
ସର୍ବାଙ୍ଗ ସୁନ୍ଦରୀ : ୧୫/୩୨

୧୫୨। ନିଶାକାଳେ ଗଜଦନ୍ତ ପଲଙ୍କ ପରେ ।
ବେନି ଜନ ନିଦ୍ରାଗତ ରତି ଶ୍ରାନ୍ତିରେ ।
ପରସ୍ପରେ ସ୍ୱପ୍ନରେ ହୋଇଲେ ବିଛେଦ ।
ପଡ଼ିଲା ଦୁହିଁଙ୍କି ଅତିଶୟ ପ୍ରମାଦ ।
କାନ୍ତ ବିନୁ କାନ୍ତା ଅଛି ନିଜ ମନ୍ଦିରେ ।
କାନ୍ତା ବିନୁ କାନ୍ତ ଗଲା ଅନେକ ଦୂରେ ।

ଚିତ୍ରକଳା : ୧୩/୧୭-୧୯

୧୫୩। ଦୁହିଁଙ୍କ ଦେହ ଆକୁଳି । ନ ଆସଇ ନିଦ୍ରା ଭଳି
ଦୁହେଁ ଅତି ଅନୁରାଗୀ । ରସ ଭଙ୍ଗ ସତ୍ୟ ଲାଗି ଯେ ।

ପରିମଳା : ୮/୭୫

୧୫୪। ଶୁଣ ନୃପ ଛେମା ମୋର ବଚନ ନିୟତ
ବରଷେ ସଂପୂର୍ଣ୍ଣ ଅଛି ମୋର ଯେକ ବ୍ରତ ଗୋ ।
ସ୍ତିରୀ, ତୈଳ, ଆମିଷ, ଚନ୍ଦନ, ଫୁଲ, ପାନ
ଯେତେକଇ ଭୋଗବ୍ରତ ଉଜୁଇଲେ ପୁଣ ଗୋ ।

ଶଶିସେଣା : ୧୦/୪-୫

୧୫୫। ରସଲେଖା : ୧୫ଶ

୧୫୬। ପ୍ରଭାବତୀ ପରିଣୟ : ୯ମ

୧୫୭। କିଛି ଦିନେ କୁସୁମ କାଳ ହେଲା । ପ୍ରିୟ କାମୁକ ଉଛନ୍ନ ହୋଇଲା ।
ବସି ଏକାନ୍ତ ରସ ବିଗ୍ଭରଇ । ଉପଇନ୍ଦ୍ର ବୀରବର କହଇ ।

ପ୍ରେମ ସୁଧାନିଧି : ୬/୨୯

୧୫୮। ପ୍ରେମ ସୁଧାନିଧି : ୭ମ

୧୫୯। କ) କେତେଦିନେ ଲଭିଲା ପୁଷ୍ପକାଳ
କାନ୍ତ କାନ୍ତା ବିଛେଦରୁ ଆକୁଳ ।

କେଳି କଳାନିଧି : ୫,୭୮

ଖ) କେଳି କଳାନିଧି : ୬ଷ୍ଠ

*

# ସଂଭୋଗ

ଦର୍ଶନ, ଆଲିଙ୍ଗନ, ଚୁମ୍ବନାଦି ଜନିତ ନାୟକ ନାୟିକାଙ୍କ ପାରସ୍ପରିକ ଆସକ୍ତିକୁ ସମ୍ଭୋଗ କୁହାଯାଏ । ଅଳଂକାର ଶାସ୍ତ୍ରରେ ଏହାର ଚାରିପ୍ରକାର ଭେଦ ଦେଖିବାକୁ ମିଳେ; ଯଥା–ମିତ (ପୂର୍ବରାଗାନ୍ତର) । ସଂକର (ମନାନ୍ତର), ସଂପନ୍ନ (ପ୍ରବାସାନ୍ତର), ସମୃଦ୍ଧିମାନ (କରୁଣାନ୍ତର) । ଏ ସଂପର୍କୀୟ ବିସ୍ତୃତ ଆଲୋଚନା ଶୃଙ୍ଗାରତତ୍ତ୍ୱ ଅଧ୍ୟାୟରେ ପ୍ରଦତ୍ତ ।

ମିତ–ଲଜ୍ଜା ଓ ଭୟାଦି କାରଣରୁ ସଂଭୋଗର ପୂର୍ଣ୍ଣତା ବ୍ୟାହତ ହେଲେ ତାହା ମିତ ନାମରେ କଥିତ । 'ରସ ଇଚ୍ଛାବତୀ' କାବ୍ୟର ନାୟକ ଗୁରୁବ୍ରହ୍ମ ଓ ନାୟିକା ଇଚ୍ଛାବତୀ କରୁଣାକର ବ୍ରାହ୍ମଣର ପୁଷ୍ପବାଟିକାରେ ପରସ୍ପର ପ୍ରଣୟାସକ୍ତ । ସମୟକ୍ରମେ ଖଡ଼ି ପଡ଼ିଯିବା ଘଟଣାକୁ କେନ୍ଦ୍ରକରି ଉଭୟଙ୍କ ମଧ୍ୟରେ ସତ୍ୟ ବାକ୍ୟ ବିନିମୟ ହୁଏ । ଅନନ୍ତର ପୁଷ୍ପ ସଂଗ୍ରହ ଅବସରରେ ଦୁହିଁଙ୍କର ନିବିଡ଼ ଆସକ୍ତି ମିଳନର ରୂପଧାରଣ କରେ । ଏ ସ୍ଥଳରେ ପ୍ରଥମ ସଂଭୋଗର ମନୋରମ ଚିତ୍ର ଅଙ୍କିତ । ବୃକ୍ଷସ୍ଥ ଯୁବତୀର ଅନାବୃତ ବକ୍ଷଯୁଗ ଦର୍ଶନରେ ନାୟକ ହତଜ୍ଞାନ । ସଂଜ୍ଞା ଲଭ ଅନ୍ତେ ସେ କିଂକର୍ତ୍ତବ୍ୟବିମୂଢ଼ [୧] । ଉପସ୍ଥିତ ମୁହୂର୍ତ୍ତର ଅନୁରୋଧରେ ନାୟିକା ନିଜର ଭୂମିକା ହୃଦୟଙ୍ଗମ କରି ନାୟକ ସହ ସଂଭୋଗ ସୁଖରେ ନିମଜ୍ଜିତା [୨] । ଗୁରୁଙ୍କ ପ୍ରତି ଭୟ ହେତୁ ଦୁହେଁ କାଳ ବିଳମ୍ବ ନ କରି ବିଦ୍ୟାଳୟକୁ ପ୍ରତ୍ୟାବର୍ତ୍ତନ କରିଛନ୍ତି । ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ଦୁହିଁଙ୍କ ଚରିତ୍ରରେ ଆକର୍ଷଣ, ଅନୁଭବ ଓ ଆଶଙ୍କାର ଯେଉଁ ଚିତ୍ର ଅଙ୍କନ କରାଯାଇଛି ତାହା ଏକାନ୍ତ ବାସ୍ତବ ଓ ରମଣୀୟ । ଭାଷାର ନିରୋଳ ପରିପାଟି ଓ ଘଟଣା ବିନ୍ୟାସର ଅକୃତ୍ରିମତା ଯୋଗୁଁ ସଂଭୋଗର କାବ୍ୟ ସୌନ୍ଦର୍ଯ୍ୟ ଏଠାରେ ବହୁଗୁଣିତ ।

ରାମଚନ୍ଦ୍ର ପଟ୍ଟନାୟକଙ୍କ 'ହାରାବତୀ' କାବ୍ୟର ନାୟକ ନାୟିକାଙ୍କ କୈଶୋର ପ୍ରଣୟ ସରୋବରସ୍ଥ ସ୍ନାନ ଘାଟରେ ଆରମ୍ଭ ହୁଏ । ନାୟିକା ଅପ୍ରାପ୍ତ ବୟସା ହୋଇଥିବାରୁ ମିଳନରେ ସୁରତି ଭୋଗର ସ୍ଥାନ ନାହିଁ । କିନ୍ତୁ ଚୁମ୍ବନ, ଆଲିଙ୍ଗନ, ଅଧରପାନ ଆଦି ଯଥାବିଧି ଏ କ୍ଷେତ୍ରରେ ବର୍ଣ୍ଣିତ । ନାୟିକାର ସ୍ୱାଭାବିକ ଲଜ୍ଜା ତଥା ସମାଜ ଭୟ ହେତୁ ସେମାନଙ୍କ ସଂଭୋଗରେ ମିତତା ପ୍ରକଟିତ [୩] ।

ବୈଷ୍ଣବ ପଦ୍ୟାବଳୀ ସାହିତ୍ୟରେ ମିତ ସଂଭୋଗର ବିବିଧ ଚିତ୍ର ଯତନ୍ ଅଙ୍କିତ । ବିଦ୍ୟାପତିଙ୍କ ରାଧା ନବ ସଂଗମ କାଳରେ ଲଜ୍ଜା ଓ ଭୟ ହେତୁ ମୁହଁରେ ନାହିଁ ନାହିଁ କରୁଥିବାବେଳେ ଆଖିରୁ ତାଙ୍କର ଝରିଛି ଅଶ୍ରୁ । ଶଯ୍ୟାର ଏକ ପାର୍ଶ୍ୱରେ ଶୋଇଥିବା ଏଇ ନାୟିକାକୁ ପ୍ରିୟତମ ନୀବୀବଂଧ ଉନ୍ମୁକ୍ତ ନକରି ଆଲିଙ୍ଗନ କରିଛି ଏବଂ ତା'ର ସ୍ତନ ସ୍ପର୍ଶ କରିବାକୁ କିଂଚିତ୍ ସଫଳ ହୋଇଛି [୪] । ଗୋବିନ୍ଦ ଦାସଙ୍କ ପଦ୍ୟାବଳୀରେ ମଧ୍ୟ ମିତ ସଂଭୋଗର ଅନୁରୂପ ଚିତ୍ର ପ୍ରଦତ୍ତ [୫] । ପଦ୍ୟାବଳୀ ସାହିତ୍ୟର ରୂପ ସୌନ୍ଦର୍ଯ୍ୟ ଓଡ଼ିଆ ରୀତି କାବ୍ୟଧାରାରେ ଖୋଜିବାର ପ୍ରୟାସ କରାଯାଇନପାରେ । କାବ୍ୟର ପ୍ରବୃତ୍ତି ଦୃଷ୍ଟିରୁ ଏହା ମଧ୍ୟରେ ଅନେକ ବ୍ୟବଧାନ । କିନ୍ତୁ ବିଷୟ–ସ୍ୱରୂପର ଅବଧାରଣା ନିମନ୍ତେ ଉଲ୍ଲିଖିତ ଉଦାହରଣ ଉପେକ୍ଷଣୀୟ ହୋଇ ନପାରେ ।

ସଂକର–କୋପ ଅନ୍ତର୍ହିତ ହେଲେ ସୁଦ୍ଧା ପୂର୍ବକୃତ ଦୋଷ କାରଣରୁ ଭୋଗରେ କିଂଚିତ୍ ସଙ୍କୁଚିତ ଭାବ ପ୍ରକାଶ ପାଇଲେ ତାହା ସଙ୍କର ସଂଭୋଗ ନାମରେ କଥିତ । ସଂକ୍ଷେପରେ କହିଲେ ଏହା ହେଉଛି ମାନାନ୍ତର ସଂଭୋଗ । ବିଦ୍ୟାପତିଙ୍କ ରାଧା ଏ କ୍ଷେତ୍ରରେ ଆଦର୍ଶ ରୂପେ ଗ୍ରହଣୀୟ । 'ସରସ ଓ ବିରସ ହୃଦୟ' ଏଇପରି ଅବସ୍ଥା ସଙ୍କରର ମୂଳକଥା [୬] । ଓଡ଼ିଆ ରୀତି କାବ୍ୟର ଯେଉଁ କେତୋଟି ସ୍ଥଳରେ ମାନାନ୍ତର ସଂଭୋଗର ଚିତ୍ର ପ୍ରଦର୍ଶିତ, ସେ ସବୁରେ 'ଭୋଗ ସଂକୀର୍ଣ୍ଣତାର ସ୍ପଷ୍ଟ ଉଲ୍ଲେଖ ନାହିଁ । ସର୍ବତ୍ର ନାୟକର ଚାଟୁ ପରେ ନାୟିକା ମିଳନ ପ୍ରବୃତ୍ତା ।

'ଗୀତ ଗୋବିନ୍ଦ' ଅନୁସରଣରେ ରଚିତ 'ରସବାରିଧି' କାବ୍ୟର ନାୟିକା ରାଧା ସାରରାତି ଅଭିସାର କୁଞ୍ଜରେ ପ୍ରିୟଅପେକ୍ଷମାଣା । ନିଶାନ୍ତରେ ନାୟକ ତାଙ୍କ ନିକଟକୁ ଆସୁଥିବାର ଦେଖି ଗୁରୁମାନରେ ସେ ଗର୍ବିତା । କିନ୍ତୁ ପ୍ରିୟତମର ନିପୁଣ ଚାଟୁରେ ନିଜ ଅଭିମାନ ଭୁଲି ରାଧା ପରିଶେଷରେ ଆଶ୍ଲେଷାବଦ୍ଧା । ପ୍ରିୟା ମୁଖ ଦର୍ଶନରେ ନାୟକ ଲଜ୍ଜିତ ଏବଂ ଉଭୟେ ତତ୍ପରେ ସୁରତ ବ୍ୟାପାରରେ ନିମଜ୍ଜିତ [୭] । ପ୍ରତାପ ରାୟଙ୍କ 'ଶଶିସେଣା'ରେ ଏହା କିଞ୍ଚିତ୍ ଭିନ୍ନ । ନାୟକ ଅହିମାଣିକ୍ୟ ନାଗ ଲୋକରେ ଉପସ୍ଥିତ ହୋଇ ଗୁରୁମାନରେ ମାନବତୀ ଦୁଇ ନାଗପତ୍ନୀଙ୍କୁ ଯଥାବିଧି ପ୍ରୀତି ସଂଭାଷଣ ଜଣାଇବା ଫଳରେ ସେମାନଙ୍କ ହୃଦୟରେ ଆନନ୍ଦର ଢେଉ ଦେଖାଦେଇଛି । ଅନନ୍ତର ସେମାନେ ପ୍ରୀତି-ଉତ୍ସବରେ କାଳ ଅତିବାହିତ କରୁଥିଲେ ହେଁ ନାୟକ ହୃଦୟରେ ଶଶିସେଣା ପ୍ରତି ଆସକ୍ତି ମଳିନ ହୋଇନାହିଁ [୮] । ଲୋକନାଥ ବିଦ୍ୟାଧରଙ୍କ 'ଚିତ୍ରକଳା' କାବ୍ୟର ନାୟକ ଏକଦା ନାୟିକାକୁ ବିଚିତ୍ରକଳା ବୋଲି ସମ୍ବୋଧନ କରିବାରୁ ତା' ହୃଦୟରେ ଗୋତ୍ରସ୍ଖଳନ ହେତୁକ ସପତ୍ନୀ ଈର୍ଷା ସଞ୍ଜାତ । ଦୀର୍ଘ କାଳ ବ୍ୟାପୀ ପ୍ରୀତି ଭାଷଣ ପରେ ଦୁହେଁ ରତି ସୁଖରେ ବିହ୍ୱଳ ହୋଇ-ପଡ଼ିଛନ୍ତି [୯] । ଉପରୋକ୍ତ ଉଦାହରଣ ସମୂହ ମନାନ୍ତର ସଂଭୋଗ ଚିତ୍ର ରୂପେ ସ୍ୱୀକୃତ । ମାତ୍ର ବିଦ୍ୟାପତିଙ୍କ କବିତାରେ ଯେଉଁ ମନସ୍ତାତ୍ତ୍ୱିକ ଦୃଷ୍ଟିଭଙ୍ଗୀର ପରିଚୟ ଦେଖିବାକୁ ମିଳେ ତାହା ଅନ୍ୟାନ୍ୟ କ୍ଷେତ୍ରରେ ଦୁର୍ଲଭ ।

ସଂପନ୍ନ—ପ୍ରବାସରୁ ପ୍ରିୟର ପ୍ରତ୍ୟାବର୍ତ୍ତନାନ୍ତର ନାୟକ ନାୟିକାଙ୍କ ମିଳନ ସୁଖ ସଂପନ୍ନ ସଂଭୋଗ ନାମରେ ଅଭିହିତ । ଓଡ଼ିଆ ରୀତି କାବ୍ୟର ବହୁସ୍ଥଳରେ ଏହି ଜାତୀୟ ପ୍ରବାସାନ୍ତର ସଂଭୋଗ ଚିତ୍ର ଅଙ୍କିତ । ଅର୍ଜୁନ ଦାସଙ୍କ 'କଳ୍ପଲତା', ଧନଞ୍ଜୟଙ୍କ 'ଅନଙ୍ଗରେଖା'; ଉପେନ୍ଦ୍ର ଭଞ୍ଜଙ୍କ 'ଲାବଣ୍ୟବତୀ', 'ସୁବର୍ଣ୍ଣରେଖା', 'ପ୍ରେମସୁଧାନିଧି', 'ରସିକ ହାରାବଳୀ', ରଘୁନାଥ ହରିଚନ୍ଦନଙ୍କ 'ସୁକୁନ୍ତଳା' ଆଦି କାବ୍ୟରୁ ଏହାର ବୈଚିତ୍ର୍ୟ ସହଜରେ ଲକ୍ଷଣୀୟ[୧୦] । 'ଲାବଣ୍ୟବତୀ'ରେ ଉକ୍ତି ପ୍ରତ୍ୟକ୍ଷତା ହେତୁ ଏହି ଚିତ୍ର ଗୁରୁତାହୀନ । 'ସୁବର୍ଣ୍ଣରେଖା' ଓ 'ସୁକୁନ୍ତଳା'ରେ ଏହାର ବର୍ଣ୍ଣନା କିଞ୍ଚିତ ସ୍ଥୂଳତାଧର୍ମୀ । ଶେଷୋକ୍ତ ଦୁଇଟି କାବ୍ୟ ମଧ୍ୟରୁ

ପ୍ରଥମଟିରେ ଚୁମ୍ବନ, ଆଲିଙ୍ଗନ, ନଖାଘାତ, ଦଶନାଘାତ, ଉରଜାଗ୍ରଛେଦନ, ନୀବୀ ମୋକ୍ଷଣ ଏବଂ ସୁରତି ବ୍ୟାପାର ଆଦିର କାମଶାସ୍ତ୍ରୀୟ କ୍ରମ ରକ୍ଷା କରଯାଇଥିଲେ ହେଁ ଏହା କାବ୍ୟିକ ଗୌରବଶୂନ୍ୟ ବଞ୍ଚିତ । ଦ୍ୱିତୀୟଟିରେ ଉପରୋକ୍ତ ବିଧି ସହିତ ରତି କ୍ରୀଡ଼ାର ନଗ୍ନତା ମଧ୍ୟ ପ୍ରଦର୍ଶିତ [୨୨]।

ସଂପନ୍ନ ସଂଭୋଗକୁ ବୈଷ୍ଣବ ଅଳଂକାର ଶାସ୍ତ୍ରରେ ଆଗତି ଓ ପ୍ରାଦୁର୍ଭାବ ଦୁଇଭାଗରେ ବିଭକ୍ତ କରଯାଇଛି [୨୨] ।

ଆଗତି–ଲୌକିକ କାର୍ଯ୍ୟରୁ ପ୍ରତ୍ୟାବର୍ତ୍ତନ ପୂର୍ବକ ନାୟକର ନାୟିକା ସହ ମିଳନ ଏହାର ଅନ୍ତର୍ଗତ; ଯଥା–ଗୋଷ୍ଠରୁ ଫେରି କୃଷ୍ଣଙ୍କର ରାଧାଙ୍କ ସହ ମିଳନ ।

ପ୍ରାଦୁର୍ଭାବ–ପ୍ରିୟତମାର ବିଚ୍ଛେଦ-ବିହ୍ୱଳ ଅବସ୍ଥାରେ ପ୍ରିୟତମର ଆକସ୍ମିକ ପ୍ରତ୍ୟାବର୍ତ୍ତନ ଏହି ପର୍ଯ୍ୟାୟର; ଯଥା-ରାସଲୀଳା ସମୟରେ କୃଷ୍ଣଙ୍କ ଅନ୍ତର୍ଦ୍ଧାନ ହେତୁକ ଗୋପାଙ୍ଗନାମାନଙ୍କର ବିରହାବସ୍ଥା ଓ ତାଙ୍କର ଆକସ୍ମିକ ଆବିର୍ଭାବ । ଦୀନକୃଷ୍ଣଙ୍କ 'ରସକଲ୍ଲୋଳ'ରେ ପ୍ରାଦୁର୍ଭାବ ସଂଭୋଗର ଏକ ସୁନ୍ଦର ଦୃଷ୍ଟାନ୍ତ ପରିଲକ୍ଷିତ [୨୩] ।

ସମୃଦ୍ଧିମାନ–ମୃତ ବା ମୃତପ୍ରାୟ ନାୟକ ବା ନାୟିକାର ଆବିର୍ଭାବ ହେତୁ ପରସ୍ପର ମଧ୍ୟରେ ଯେଉଁ ସମୃଦ୍ଧ ମିଳନ ଦେଖାଯାଏ, ତାହା ସମୃଦ୍ଧିମାନ ନାମରେ ଅଭିହିତ । ଅନ୍ୟ ଭାଷାରେ ଏହା କରୁଣାନ୍ତର ସଂଭୋଗ । ଅର୍ଜୁନ ଦାସଙ୍କ 'କଳ୍ପଲତା'ରେ ବିଷପାନ ଦ୍ୱାରା ମୃତ୍ୟୁବରଣ କରିଥିବା ନାୟିକାର ମୃତ୍ୟୁ ସଂଜୀବନୀ ମନ୍ତ୍ର ବଳରେ ପୁନର୍ଜୀବନ ଲାଭ ଓ ନାୟକ ସହ ବିବାହ ଯଥାରୀତି ବର୍ଣ୍ଣିତ । ମଧୁଶଯ୍ୟାପୁରରେ ଉଭୟଙ୍କର ମିଳନ ଏକାନ୍ତ ମଧୁମୟ [୨୪] । ଏଠାରେ ଦେହଭୋଗର ସହଜ ଓ ସରଳ ବର୍ଣ୍ଣନା ସନ୍ନିବେଶିତ ।

ବଧ୍ୟଭୂମିକୁ ଆନୀତ ନାୟକ ଗୁଣଚନ୍ଦ୍ରର ମୁକ୍ତି ଲାଭ ଓ ମହା-ସମାରୋହରେ ନାୟିକା ସହ ବିବାହ ବନମାଳୀ ଦାସଙ୍କ 'ଗୁଟ ଇଚ୍ଛାବତୀ'

କାବ୍ୟରେ ଅତ୍ୟନ୍ତ କୁଶଳତାର ସହ ବର୍ଣ୍ଣିତ । ନାୟକ ନାୟିକାଙ୍କ ମଧୁଶଯ୍ୟା ଚିତ୍ରରେ ସଂଭୋଗର ସ୍ଥାନ ସଂକ୍ଷିପ୍ତ [୧୫] । ଏ କ୍ଷେତ୍ରରେ କବି ଗୋଟିଏ ମାତ୍ର ପଦ ବିନିଯୋଗ କରି ନୀରବ ରହିଛନ୍ତି । ଧନଞ୍ଜୟ ଭଞ୍ଜଙ୍କ 'ଇଚ୍ଛାବତୀ' କାବ୍ୟରେ ପୂର୍ବୋକ୍ତ ପ୍ରସଙ୍ଗ ଯଥାରୀତି ଉଲ୍ଲିଖିତ । ସଂଭୋଗ ବର୍ଣ୍ଣନା ଏଠାରେ ଅଧିକ ସଂଯତ ଓ ଶାଳୀନ [୧୬] ।

ନାୟିକାରବ୍ଧ ଓ ନାୟକାରବ୍ଧ ସଂଭୋଗ—

'କାବ୍ୟ ପ୍ରକାଶ'ରେ ମମ୍ମଟ ଚୁମ୍ବନ, ଆଲିଙ୍ଗନ, ଅଧର ପାନାଦି ଭେଦରେ ସଂଭୋଗର ଅନନ୍ତ ଭେଦ ସ୍ୱୀକାର କରିଥିଲେ ହେଁ ସେସବୁକୁ ସେ ଏକ ବୋଲି କହିଛନ୍ତି ।

ସେହି ସଂଭୋଗ କେତେବେଳେ ନାୟିକା ପକ୍ଷରୁ ବା କେତେବେଳେ ନାୟକ ପକ୍ଷରୁ ଆରମ୍ଭ ହୁଏ ।

ନାୟିକାରବ୍ଧ ସଂଭୋଗର ଉଦାହରଣ ଦେବାକୁ ଯାଇ ସେ 'ଅମରୁ ଶତକ'ରୁ ଗୋଟିଏ ଶ୍ଳୋକ ଉଦ୍ଧାର କରିଛନ୍ତି । ନାୟିକା ସୁପ୍ତ ସ୍ୱାମୀର ଗଣ୍ଡ ଦେଶରେ ଚୁମ୍ବନ କରନ୍ତେ ସେଥିରେ ରୋମାଞ୍ଚ ଜାତ ହେଉଥିବା ଦେଖି ସେ ଲଜ୍ଜାରେ ମୁହଁ ତଳକୁ ପୋତି ଠିଆ ହୋଇଛି ଏବଂ ନାୟକ ବ୍ୟାଜ ନିଦ୍ରା ତ୍ୟାଗ କରି ପତ୍ନୀକୁ ଆଲିଙ୍ଗନ ପୂର୍ବକ ଚୁମ୍ବନ ଦେଇଛି [୧୭] । ବନମାଳୀ ଦାସଙ୍କ 'ଗୁପ୍ତ ଇଚ୍ଛାବତୀ' କାବ୍ୟରେ ଏହି ଜାତୀୟ ସଂଭୋଗ ଶୃଙ୍ଗାରର ଏକ ସୁନ୍ଦର ଚିତ୍ର ପରିଦୃଷ୍ଟ । ନିର୍ଜନ ପୁଷ୍ପୋଦ୍ୟାନରେ କିଂକର୍ତ୍ତବ୍ୟ-ବିମୂଢ଼ ନାୟକକୁ ନାୟିକାର ସଂଭୋଗଆହ୍ୱାନ ଏବଂ ସେମାନଙ୍କ ସୁରତି ବିଳାସ ଏ କ୍ଷେତ୍ରରେ ବିଶେଷ ଉଲ୍ଲେଖଯୋଗ୍ୟ [୧୮] ।

ନାୟକାରବ୍ଧ ସଂଭୋଗର ଉଦାହରଣ ପ୍ରସଙ୍ଗରେ 'ଅମରୁ ଶତକ'ରୁ ଅନ୍ୟ ଏକ ଶ୍ଳୋକ ଉଦ୍ଧୃତ । ହେ ସୁନ୍ଦରି ! ବିନା ଲାଞ୍ଛନରେ ତୁମେ ଖୁବ ସୁନ୍ଦର ଦେଖାଯାଉଛ । ଏହା କହି ନାୟକ କାଞ୍ଚଲର ଗ୍ରନ୍ଥିମୋଚନ ନିମନ୍ତେ

ଉଦ୍ୟତ ହୁଅନ୍ତେ ସମାବୃତା ସଖୀଗଣ ବିଭିନ୍ନ କାର୍ଯ୍ୟର ବାହାନା କରି ସ୍ଥାନ ତ୍ୟାଗ କଲେ ।[୧୯] ଓଡ଼ିଆ ରୀତି କାବ୍ୟରେ ନାୟକାରବ୍ଧ ସମ୍ଭୋଗର ବହୁଳ ଚିତ୍ର ପରିଲକ୍ଷିତ । 'କଳ୍ପଲତା'ରେ ନାୟିକା ପ୍ରତି ନାୟକର ସମ୍ଭୋଗ ଉଦ୍‌ବୋଧନ ଓ ପରେ ସୁରତ ବ୍ୟାପାରର ବର୍ଣ୍ଣନା ଯେପରି ନିଗଢ଼ମୟ ସେହିପରି ମନୋହର ।[୨୦] ଉପେନ୍ଦ୍ର ଭଞ୍ଜଙ୍କ 'ବୈଦେହୀଶ ବିଳାଶ', 'ଲାବଣ୍ୟବତୀ',ଓ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' ପ୍ରଭୃତି କାବ୍ୟରେ ସେହିପରି ନାୟକ କର୍ତ୍ତୃକ ସଂଭୋଗାରମ୍ଭର ଦୃଶ୍ୟ ବେଶ୍ ଉପଭୋଗ୍ୟ ।[୨୧]

## ମୁଖ୍ୟ ଓ ଗୌଣ ସଂଭୋଗ-

ଓଡ଼ିଆ ରୀତି କାବ୍ୟରେ ସଂଭୋଗ ଶୃଙ୍ଗାରର ଯଥାର୍ଥ ବିନ୍ୟାସକୁ ଦୃଷ୍ଟି ସମ୍ମୁଖରେ ରଖି ମୁଖ୍ୟ ଓ ଗୌଣ ଭେଦରେ ବର୍ତ୍ତମାନ ତାହାର ଆଲୋଚନା କରାଯାଇପାରେ । ପ୍ରସଂଗର ବିବିଧ ବୈଚିତ୍ର୍ୟ ଉପଲବ୍ଧି ତଥା କାବ୍ୟର ଗୌରବ ଓ ଅଗୌରବ ନିରୂପଣରେ ଏହା ସହାୟକ ହେବ । ସମ୍ଭୋଗର ପ୍ରାକୃତ ବା ଅପ୍ରାକୃତ ରୂପ ଉପରେ ବିଶେଷ ଗୁରୁତ୍ୱ ଆରୋପ କରାନଯାଇ ଏକ ମୌଳିକ ମାନବୀୟ ବୃତ୍ତିର ସ୍ୱରୂପ ଓ ଶୈଳ୍ପିକ ରୂପାୟନ ଦୃଷ୍ଟିରୁ ତା'ର ସଫଳତା ଓ ବିଫଳତାକୁ ଅଗ୍ରାଧିକାର ଦିଆଯିବା ଆବଶ୍ୟକ । କାରଣ କୌଣସି ଏକ କାଳର ରୁଚିଦ୍ୱାରା କଳା ପରିପୁଷ୍ଟ ହେଲେ ହେଁ ଜୀବନର ଅନ୍ତରଂଗ ପରିଚୟ ଓ କାବ୍ୟିକ ସିଦ୍ଧି ପ୍ରଦାନ କରିବାରେ ତାହା ସମର୍ଥ ହେବା ଏକାନ୍ତ ବାଞ୍ଛନୀୟ ।

## ସମ୍ଭୋଗର ବିଭାଗ-



## ଗୌଣ ସମ୍ଭୋଗ-

ସ୍ୱପ୍ନ-ଶିଶୁ ଶଙ୍କରଙ୍କ 'ଉଷାଭିଳାଷ' କାବ୍ୟର ନାୟିକା ଉଷା ଉମାଙ୍କ ପ୍ରସାଦରୁ ସ୍ୱପ୍ନରେ ନାୟକ ଅନିରୁଦ୍ଧ ସହ ସମ୍ଭୋଗମଗ୍ନା [୨୨]। ଏଥିରେ ରତି ଓ ବିପରୀତ ରତିର ଉଲ୍ଲେଖ ଦେଖାଯାଏ । କିନ୍ତୁ ବର୍ଣ୍ଣନା ଖୁବ୍ ସଂକ୍ଷିପ୍ତ ଓ ପ୍ରତ୍ୟକ୍ଷ । ମିଳନର ବିବିଧ ପର୍ଯ୍ୟାୟ ସଂପର୍କିତ ସବିଶେଷ ବିବରଣ ଏଥିରେ ସଂପୂର୍ଣ୍ଣରୂପେ ପରିହୃତ ।

ଲୋକନାଥ ବିଦ୍ୟାଧରଙ୍କ କାବ୍ୟ ନାୟିକା ସର୍ବାଙ୍ଗସୁନ୍ଦରୀ ରାତ୍ରିର ଚତୁର୍ଥ ପ୍ରହରରେ ରତ୍ନମାଳା କଟକର ଗଜକୁମାର ଅବନୀ ତିଳକକୁ ସ୍ୱପ୍ନରେ ଦେଖି ତା'ର ରୂପ ଓ ସୌନ୍ଦର୍ଯ୍ୟରେ ବିମୁଗ୍ଧା । ନାୟିକାର ଚିବୁକ ସ୍ପର୍ଶ କରି [୨୩] ନାୟକ ପ୍ରୀତି ସଂଭାଷଣ ନିମିତ୍ତ ଉଦ୍ୟତ ହେଉଥିବା ଅବସ୍ଥାରେ ନିଦ୍ରାନାଶ ହେତୁ ସଂଭୋଗ ବ୍ୟାହତ । ଭାଷାର ସରଳତା ଓ ବିଷୟ ଉପସ୍ଥାପନାର ଶାଳୀନତା ଯୋଗୁଁ ପ୍ରସଂଗଟି ବିଶେଷ ହୃଦୟଗ୍ରାହୀ ।

ଉପେନ୍ଦ୍ରଙ୍କ ଲାବଣ୍ୟବତୀ କାବ୍ୟରେ ସ୍ୱପ୍ନ ଦର୍ଶନ ଅଧ୍ୟାୟ ବିସ୍ତୃତ ଓ କାବ୍ୟିକ ପରିପାଟିଯୁକ୍ତ । ଶିବ ଓ ପାର୍ବତୀଙ୍କ କରୁଣାରୁ ନାୟକ ଓ ନାୟିକାଙ୍କ ମଧ୍ୟରେ ଏହି ମିଳନର ସୂତ୍ରପାତ ହୋଇଅଛି । ଲାବଣ୍ୟବତୀର ସୌନ୍ଦର୍ଯ୍ୟ ଚିତ୍ରଣ ପାଇଁ କବି ଏଠାରେ ଯଥାର୍ଥ ଅବସର ସୃଷ୍ଟି କରିଛନ୍ତି । ନାୟିକାର ପ୍ରତି ଅଂଗ ଓ ବିବିଧ ଅଳଂକାର ଭୂଷଣର ରମଣୀୟ ବର୍ଣ୍ଣନା ପାଠ କଲେ ମଧ୍ୟଯୁଗୀୟ ରାଜ ଅନ୍ତଃପୁରଚାରୀ ଲଳନାର ଏକ ମନୋଜ୍ଞ ଚିତ୍ର ଆମ ଚକ୍ଷୁ ସମକ୍ଷରେ ଉଦ୍ଭାସିତ ହୋଇଉଠେ । 'ଚରଣେ ଅଳତା ପରି' ନାରୀର ଅନୁସରଣ କରିବା କିମ୍ବା ତା'ର ବସନ ଭାଗ୍ୟ ଲାଭ କରିବା ପାଇଁ ପୁରୁଷର ଅନୁରକ୍ତି ନିବେଦନ ସାମନ୍ତବାଦୀ ଜୀବନ ଦୃଷ୍ଟିର ପରିଚୟ ବହନ କରେ [୨୪]। ନାୟିକାର ମୁଖ ଚୁମ୍ବନ ଅନ୍ତେ ପରସ୍ପର ମଧ୍ୟରେ ମୁଦ୍ରିକା ଓ ମୋତିମାଳ ବିନିମୟର ଉଲ୍ଲେଖ କରି ମିଳନକୁ ବୈଧତା ଦେବା ନିମନ୍ତେ କବି ପ୍ରୟାସୀ ହୋଇଛନ୍ତି । ଅନନ୍ତର ଦେବୀଙ୍କ ମାୟା-ଅପହରଣ ହେତୁକ ସ୍ୱପ୍ନାନ୍ତର ବିପ୍ରଲମ୍ଭ ପରିକଳ୍ପିତ । ଦେହ ସ୍ପର୍ଶଠାରୁ (ଜାନୁ ଧରି ଦେଲ ହଲାଇ) ଚୁମ୍ବନ ଦାନ ପର୍ଯ୍ୟନ୍ତ (ବେସି ବସାଇଲ କୋଳେ ଲପନ ଚୁମ୍ବିବା

ବେଳେ ) କାବ୍ୟାଂଶ ପ୍ରଥମ ମିଳନକାମୀ ନର ନାରୀର ଦୈହିକ ଓ ମାନସିକ ଅବସ୍ଥାର ସୁନ୍ଦରତମ ଅଭିବ୍ୟକ୍ତି ବହନ କରେ । ନାୟିକାର ସ୍ୱାଭବିକ ଲଜ୍ଜା, ରୂପମୁଗ୍ଧତା ଓ ପ୍ରଣୟ ସ୍ୱୀକୃତି ତଥା ନାୟକର କାମୋତ୍‌କଣ୍ଠା, ତଦ୍‌ଗତପ୍ରାଣତା ଓ ବିନୀତ ପ୍ରୀତି ସଂଭାଷଣ ଲଳିତ ଭାଷା ଓ ଛନ୍ଦର ଅପୂର୍ବ ସମନ୍ୱୟରେ ଏକାନ୍ତ ରମଣୀୟ ।

ଅଭିମନ୍ୟୁଙ୍କ 'ବିଦଗ୍ଧ ଚିନ୍ତାମଣି'ରେ ବର୍ଣ୍ଣିତ ସ୍ୱପ୍ନ-ସଂଭୋଗ ଦୃଶ୍ୟ ଭଞ୍ଜଙ୍କ 'ଲାବଣ୍ୟବତୀ' ଦ୍ୱାରା ବହୁଳ ଭାବେ ପ୍ରଭାବିତ । ନାୟକ ନାୟିକାଙ୍କ ମିଳନ ନିମନ୍ତେ କବି ଯୋଗମାୟା ଚରିତ୍ରର ଅବତାରଣା କରିଛନ୍ତି । ରାଧାଙ୍କ ଅଳଙ୍କାର ଓ ବେଶଭୂଷାରେ ଉଜ୍ଜ୍ୱଳ୍ୟତା ବିଶେଷ ଭାବେ ଆରୋପିତ । ଅଙ୍ଗ-ସୌନ୍ଦର୍ଯ୍ୟ ବର୍ଣ୍ଣନାର ଭାବ ସଂପଦ ପାଇଁ ଭଞ୍ଜଙ୍କଠାରେ କବି ଋଣୀ ହୋଇଥିଲେ ହେଁ ତାହା ଏ ସ୍ଥଳରେ ଅଧିକ ମାର୍ଜିତ ଓ ଆକର୍ଷଣୀୟ [୨୪] । ଚନ୍ଦ୍ରରଜନୀ, ଦେହ ସ୍ପର୍ଶ, ପ୍ରୀତି ସଂବୋଧନ, ମୁଦ୍ରିକା ଓ ରତ୍ନମାଳା ବିନିମୟ, ମୁଖ ଚୁମ୍ବନ, ସ୍ୱପ୍ନାନ୍ତର ଆଦି 'ଲାବଣ୍ୟବତୀ'ର ଅନୁବର୍ତ୍ତନ ମାତ୍ର । ଭାଷା ରୀତିରେ ଅଭିମନ୍ୟୁ ଆବେଗ ପ୍ରବଣତା ପରିହାର କରି କିଂଚିତ୍ ଆଳଂକାରିକ ଓ ସଂସ୍କୃତନିଷ୍ଠ ହୋଇ ପଡ଼ିଛନ୍ତି ।

ବ୍ରଜନାଥଙ୍କ 'ଅମ୍ବିକା ବିଳାସ'ରେ ଶିବ ଓ ପାର୍ବତୀଙ୍କ ସ୍ୱପ୍ନ ସଂଭୋଗ ବର୍ଷା ରଜନୀ ପୃଷ୍ଠଭୂମିରେ ବର୍ଣ୍ଣିତ । ନାୟକର ନାୟିକାସ୍ତୁତି, ଅଧରପାନ ଓ ସ୍ତନ ପରିରମ୍ଭ ଚିତ୍ର ଅତି ସଂକ୍ଷିପ୍ତ ଓ ବୈଚିତ୍ର୍ୟହୀନ । ପ୍ରଣୟାନୁରକ୍ତ ହୃଦୟର କୌଣସି ପରିଚୟ ଏଥିରେ ଦେଖିବାକୁ ମିଳେ ନାହିଁ ।[୨୫]

ପଦ୍ମନାଭ ଶ୍ରୀଚନ୍ଦନଙ୍କ 'ଶଶିରେଖା'କାବ୍ୟର ସ୍ୱପ୍ନ ଦୃଶ୍ୟ ଭଞ୍ଜଙ୍କ 'ଲାବଣ୍ୟବତୀ' ପ୍ରଭାବିତ । ଏଥିରେ କାବ୍ୟିକ ସୁଷମାର ଅଭାବ ସର୍ବତ୍ର ପରିଦୃଷ୍ଟ । ବ୍ୟତିକ୍ରମ ଏତିକି ଯେ ଚନ୍ଦ୍ରଭାନୁ ଲାବଣ୍ୟବତୀର ନିଦ୍ରାନାଶ ପାଇଁ ଜାନୁସ୍ପର୍ଶ କରିଥିବା ବେଳେ 'ଶଶିରେଖାର' ନାୟକ ନାୟିକାର ପାଦସ୍ପର୍ଶ କରିଛି ।[୨୬]

କବିସୂର୍ଯ୍ୟଙ୍କ 'ଚନ୍ଦ୍ରକଳା' କାବ୍ୟରେ ଏହି ପ୍ରସଙ୍ଗ ସୂଚନାତ୍ମକ । ତ୍ରିପୁର ସୁନ୍ଦରୀଙ୍କ ଅନୁକଂପାରୁ ଚନ୍ଦ୍ରକଳା ଅନଙ୍ଗସୁନ୍ଦରର ସ୍ୱପ୍ନ-ସାନିଧ୍ୟ ହେତୁକ କାମ-ସୁଖ ଅନୁଭବ କରିଥିବା କଥା ଏଥିରେ ଉଲ୍ଲିଖିତ ।[୨୮]

ମାୟା:–କବିସୂର୍ଯ୍ୟ 'ଚନ୍ଦ୍ରକଳା' କାବ୍ୟର ନାୟକ ଅନଙ୍ଗସୁନ୍ଦର ଚରିତ୍ରରେ ମାୟା ସଂଭୋଗ ଦୃଶ୍ୟ ଆରୋପ କରି ପରମ୍ପରାରେ ନୂତନତ୍ୱ ଫୁଟାଇଛନ୍ତି । ଉପେନ୍ଦ୍ରଙ୍କ 'ଲବଣ୍ୟବତୀ' କାବ୍ୟରେ ଐନ୍ଦ୍ରଜାଳିକର ରମ ଚରିତ ପ୍ରଦର୍ଶନ ପ୍ରସଙ୍ଗ କ୍ରମେ ନାୟକ ନାୟିକାଙ୍କ ମାୟା ସାକ୍ଷାତ ଓ ପରସ୍ପର ଅନୁରକ୍ତିର ଚିତ୍ର ଅଙ୍କିତ । କିନ୍ତୁ 'ଚନ୍ଦ୍ରକଳା'ରେ ଇନ୍ଦ୍ରଜାଲ ପ୍ରଦର୍ଶନ ସଙ୍ଗେ ସଙ୍ଗେ ଉଭୟଙ୍କ ସଂଭୋଗ ଦୃଶ୍ୟ ବର୍ଣ୍ଣିତ । କୁହୁକ ବିଦ୍ୟା ବଳରେ ସଭା ମଣ୍ଡପର ସକଳ ପ୍ରଦୀପାବଳି ନିଷ୍ପ୍ରଭ ହେବା ଉତ୍ତାରୁ ନାୟକ ନାୟିକାଙ୍କ ପରସ୍ପର ସଂକ୍ଷିପ୍ତ ପରିଚୟ ପ୍ରଦାନ କ୍ରମେ ଦୁହେଁ ଦେହ ଭୋଗରେ ଅଂଶ ଗ୍ରହଣ କରିଛନ୍ତି । ଏଥିରେ ଆଲିଙ୍ଗନ, ଅଧରପାନ, ଦନ୍ତକ୍ଷତ ଆଦି ସମ୍ଭୋଗର ବିବିଧ ବିଳାସ ଯଥାବିଧି ରୂପାୟିତ ।[୨୯] ରଘୁନାଥ ହରିଚନ୍ଦନଙ୍କ 'ଲୀଳାବତୀ' କାବ୍ୟର ଇନ୍ଦ୍ରଜାଲ ପ୍ରଦର୍ଶନ ପର୍ଯ୍ୟାୟରେ ନାୟକର ନାୟିକା-ସ୍ତନ ସ୍ପର୍ଶ ଦୃଶ୍ୟ ଅତୀବ ପ୍ରୀତିପ୍ରଦ ।[୩୦]

ଉପରୋକ୍ତ ଆଲୋଚନାରୁ ଜଣାଯାଏ ଯେ କେବଳ 'ଉଷାଭିଳାଷ', ଓ 'ଚନ୍ଦ୍ରକଳା' କାବ୍ୟରେ ପରିପୂର୍ଣ୍ଣ ସମ୍ଭୋଗର ଚିତ୍ର ଅଙ୍କିତ । କିନ୍ତୁ ଏଥିରେ ନାରୀ ପୁରୁଷର ମାନସିକ ଜଗତ ପ୍ରତି ବିଶେଷ ଦୃଷ୍ଟି ଦିଆଯାଇ ନାହିଁ । 'ସର୍ବାଙ୍ଗସୁନ୍ଦରୀ, 'ଲବଣ୍ୟବତୀ', 'ବିଦଗ୍ଧ ଚିନ୍ତାମଣି', 'ଅମ୍ବିକା-ବିଳାସ' ଓ 'ଶଶିରେଖା' କାବ୍ୟରେ ସଂଭୋଗର ପୂର୍ଣ୍ଣତା ନାହିଁ । ଏଥି ମଧ୍ୟରୁ 'ଲବଣ୍ୟବତୀ'ର ସ୍ୱପ୍ନ ପ୍ରସଙ୍ଗ ଯଥାର୍ଥ କାବ୍ୟ ସୁଷମା ମଣ୍ଡିତ । ଏହି କାବ୍ୟରେ ଭାଷା ଓ ଭାବର ଯେଉଁ ମଧୁର ସମନ୍ୱୟ ପରିଦୃଷ୍ଟ ହୁଏ, ତାହା ଅନ୍ୟତ୍ର ଦୁର୍ଲଭ ।

## ମୁଖ୍ୟ ସଂଭୋଗ-

ବାକ୍‌ଦତ୍ତା – ପ୍ରତାପ ରାୟଙ୍କ 'ଶଶିସେଣା' କାବ୍ୟର ନାୟକ ନାୟିକାଙ୍କ ଚରିତ୍ରରେ ବାକ୍‌ଦାନ ହେତୁକ ପ୍ରଣୟ ଜୀବନର ଗୌରବ ଅଙ୍କିତ । ନିଭୃତ ଉଦ୍ୟାନରେ ନବୀନ ପ୍ରଣୟୀ ଓ ପ୍ରଣୟିନୀଙ୍କ ମିଳନ ଦୃଶ୍ୟର ନିରାଡ଼ମ୍ବର ଚିତ୍ର ଏ ସ୍ଥଳରେ ଅତୀବ ମନୋରମ । ବର୍ଣ୍ଣନାରେ କୌଣସି କାବ୍ୟିକ ଅତିରଂଜନ ନାହିଁ । ବରଂ ସହଜ ସରଳ ଭାଷା ଭଙ୍ଗୀରେ ଚିତ୍ରିତ ସଂଭୋଗ ପ୍ରସଂଗ ରୁଚି ସମ୍ପନ୍ନ ଓ ଗ୍ରାମ୍ୟତାଯୁକ୍ତ [୩୨]।

ବନମାଳୀ ଦାସଙ୍କ 'ଗ୍ରଟ ଇଚ୍ଛାବତୀ ' କାବ୍ୟରେ ଖଡ଼ି ଗଡ଼ିଯିବା ଘଟଣାକୁ କେନ୍ଦ୍ରକରି ନାୟକ ନାୟିକା ପରସ୍ପର ବିବାହ ନିମିତ୍ତ ସତ୍ୟବଦ୍ଧ [୩୬]। ପୁଷ୍ପୋଦ୍ୟାନର ନିର୍ଜନ ପରିବେଶରେ ଯୁବକ ଯୁବତୀ ଦୁହେଁ ଦୁହିଁଙ୍କ ପ୍ରତି ଯେପରି ଭାବେ ଆକୃଷ୍ଟ ହୋଇଛନ୍ତି, ତାହା ଅତ୍ୟନ୍ତ ସ୍ୱାଭାବିକ ।[୩୭] ଏ କ୍ଷେତ୍ରରେ ସଂଭୋଗ ବର୍ଣ୍ଣନାର କୌଣସି ସଂକୋଚ ନାହିଁ ; ଅଥଚ କୌଣସି ସ୍ଥୂଳତା କିଂବା ଆଡମ୍ବର ମଧ୍ୟ ନାହିଁ । ଗୁରୁଙ୍କ ନିଷେଧ ହେତୁ ସେମାନଙ୍କ ମଧ୍ୟରେ ଆଉ ସାକ୍ଷାତ ସଂଭବ ନ ହେବାରୁ ବିରହ ବିଧୁରା ନାୟିକା ସଖୀ ଅମୃତବତୀ ଜରିଆରେ ନାୟକର ଅନ୍ତଃପୁର ଆଗମନ ପଥ ପରିଷ୍କାର କରିଦେଇଛି । ଏ କ୍ଷେତ୍ରରେ ପ୍ରଦତ୍ତ ଗୋପନ ମିଳନ ଚିତ୍ର ପୂର୍ବ ଭଳି ସଂକ୍ଷିପ୍ତ ଓ ହୃଦୟଗ୍ରାହୀ ।[୩୮] କିନ୍ତୁ ବିବାହ ପର ମଧୁଶଯ୍ୟା ବିଧାନରେ କୌଣସି ଚମତ୍କାରିତା ନାହିଁ । ଶୃଙ୍ଗାର ଉତ୍କଟତା ପରିବର୍ତ୍ତେ କବି ସର୍ବତ୍ର ସ୍ୱଚ୍ଛ ସଂଭୋଗ ପରମ୍ପରାର ବାର୍ତ୍ତା ପ୍ରଚାର କରିଅଛନ୍ତି ।

ପୂର୍ବ ପ୍ରସଂଗକୁ ଆଧାର କରି ଧନଞ୍ଜୟ ଭଞ୍ଜଙ୍କ 'ଇଚ୍ଛାବତୀ' କାବ୍ୟରେ ଇଚ୍ଛାବତୀ ଓ ମଧୁକରର ପ୍ରେମକାହାଣୀ ଅଙ୍କିତ । କପାଳୀ ମଠରେ ବିଦ୍ୟାଧ୍ୟୟନ କରୁଥିବା ବେଳେ ନାୟକର ପ୍ରଣୟ ପ୍ରସ୍ତାବ ପ୍ରତି ନାୟିକା ସମର୍ଥନ ଜ୍ଞାପନ କରିଅଛି [୩୯]। ଗଣେଶ ଚତୁର୍ଥୀ ଦିନ ପୁଷ୍ପ-ଚୟନ କାଳରେ ଦୁହିଁଙ୍କ ପ୍ରଣୟାନୁରାଗର ଯେଉଁ ଚିତ୍ର ପରିକଳ୍ପିତ, ତାହା ଯଥାର୍ଥ ହୋଇନାହିଁ । ଷଷ୍ଠଛାନ୍ଦଠାରୁ (ସମ୍ଭୃତ 'ଚୌରପଞ୍ଚାଶିକା'ର

ଅନୁସରଣ ହେତୁ ) କାବ୍ୟର ମୌଳିକତା ବ୍ୟାହତ । ଶେଷ ଛାନ୍ଦରେ ବର୍ଣ୍ଣିତ ମଧୁଶଯ୍ୟା ପ୍ରସଙ୍ଗ ମାର୍ଜିତ; କିନ୍ତୁ କାବ୍ୟିକ ଐଶ୍ୱର୍ଯ୍ୟହୀନ । ଏଠାରେ 'ଗୁପ୍ତ ଇଚ୍ଛାବତୀ'ର ସଫଳତା ଉଲ୍ଲେଖଯୋଗ୍ୟ ।

ରାମଚନ୍ଦ୍ର ପଟ୍ଟନାୟକଙ୍କ 'ଅନୁରାଗବତୀ' କାବ୍ୟରେ ଏକଦା ନାୟିକାର ଖସିଯାଇଥିବା ନାରିକେଳଟିଏ ଆଣିଦେବାର ସମ୍ମତି ଦେଇ ନାୟକ ତା'ର ପ୍ରଣୟ-ପ୍ରାର୍ଥୀ ହୋଇଥିବା ବର୍ଣ୍ଣିତ । ସେହିଦିନଠାରୁ ସରୋବର ତଟବର୍ତ୍ତୀ ଉପବନରେ ପ୍ରତ୍ୟହ ସେମାନଙ୍କର ଗୋପନ ନିଶି-ମିଳନ ସଂଘଟିତ [୩୬]।

ସକଳ କ୍ଷେତ୍ରରେ ବାକ୍‌ଦତ୍ତା ନାୟିକାଗଣ ସେମାନଙ୍କ ପ୍ରଣୟୀମାନଙ୍କୁ ଯଥାବିଧି ବିବାହ କରିଥିବାର ଦେଖାଯାଏ । ସତ୍ୟପାଳନ ପ୍ରତି ନାୟିକାମାନଙ୍କର ଗଭୀର ନିଷ୍ଠା ଓ ଆନ୍ତରିକତା ଏହି ସବୁ କାବ୍ୟରେ ଉଚ୍ଚସ୍ଥାନ ଲାଭ କରିଅଛି ।

ମନ୍ତ୍ରୋପଚାରଣୀ—ଉପେନ୍ଦ୍ର ଭଞ୍ଜଙ୍କ 'ସୁଭଦ୍ରା ପରିଣୟ'ରେ ନାୟକ ଅର୍ଜୁନଙ୍କୁ ବଶ କରିବା ପାଇଁ ନାୟିକା କର୍ତ୍ତୃକ ମନ୍ତ୍ରୋପଚାର ବିଧାନର ସଫଳତା ଉଲ୍ଲିଖିତ । ନାୟକର ଚାଟୁରେ ନାୟିକାର ଅଧର, ନେତ୍ର ବେଶଭୂଷାଦିର କାବ୍ୟିକ ଗୌରବ ଓ ପୁରୁଷର କାମାତୁରତା ବର୍ଣ୍ଣିତ । ସେମାନଙ୍କ ଗୋପନ ସଂଭୋଗରେ ଦେହ ବିଳାସର ପ୍ରତ୍ୟକ୍ଷ ଚିତ୍ରଣ ନାହିଁ । କବି ଦୁହିଁଙ୍କର ରତିକ୍ରୀଡ଼ାକୁ ଏକ ପ୍ରେମ ପୁସ୍ତକ ସର୍ଜନା ରୂପେ କଳ୍ପନା କରିଛନ୍ତି [୩୭]। ଉଭୟେ ସେହି ଗ୍ରନ୍ଥ ଅଧ୍ୟୟନ କରୁ କରୁ ରାତ୍ରି ନିଃଶେଷ ହୋଇଯାଇଛି । ସଂଭୋଗ ବର୍ଣ୍ଣନା ନିମନ୍ତେ ଏଠାରେ ଅଭିନବ କୌଶଳ ପ୍ରଦର୍ଶିତ ।

ବଚାହୃତା (ପଣବଣ)—ଓଡ଼ିଆ ରୀତି କାବ୍ୟରେ ବିବାହିତା ନାୟିକା ସଂଭୋଗର ବହୁଳ ବର୍ଣ୍ଣନା ପରିଦୃଷ୍ଟ । ଏ କ୍ଷେତ୍ରରେ ସାମାନ୍ୟ ବ୍ୟତିକ୍ରମ (ପରିମଳା) ଛଡ଼ା ସର୍ବତ୍ର ଦାମ୍ପତ୍ୟ ପ୍ରେମର ମହିମା ଉଦ୍‌ଘୋଷିତ ।

ଅର୍ଜୁନ ଦାସଙ୍କ 'ରାମବିଭା' କାବ୍ୟରେ ରାମଚନ୍ଦ୍ର ଓ ସୀତାଙ୍କ କେଳି ବର୍ଣ୍ଣନା ସରଳ ଓ ସୁନ୍ଦର । ନାୟକ ସମ୍ମୁଖରେ ନାୟିକାର ଉପସ୍ଥିତିକୁ କବି କେଶରୀ ସମ୍ମୁଖରେ ବାଳ କୁରଙ୍ଗୀର ଦଶା ସହ ତୁଳନା କରିଛନ୍ତି । ଅଧର ପାନ ଓ ଚୁମ୍ବନର ଚିତ୍ର ରୁଚି ସମ୍ମତ । ସୁରତି ବ୍ୟାପାର ପ୍ରସଂଗରେ ନଗ୍ନତା ପରିହାର କରଯାଇଛି । ଅଥଚ କାମବିଳାସର ଅର୍ଥମୟ ଅଭିବ୍ୟକ୍ତି ଏଥିରେ ପ୍ରଦର୍ଶିତ [୩୮] । ଭଗୀରଥୀରେ ଚନ୍ଦ୍ରର ଉଦୟ ଓ ଅସ୍ତ--ଏହି ଉପମା ପ୍ରୟୋଗ ଯୋଗୁଁ ସଂଭୋଗ ଦୃଶ୍ୟର ସୌନ୍ଦର୍ଯ୍ୟ ଓ ପବିତ୍ରତା ବହୁଗୁଣିତ [୩୯] । ମନେହୁଏ ଭାରତୀୟ ସଂସ୍କୃତିରେ ନାୟକ ନାୟିକାଙ୍କ ଗୌରବମୟ ପ୍ରତିଷ୍ଠା ପ୍ରତି କବି ଯଥାର୍ଥ ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ କରିଛନ୍ତି । ତାଙ୍କ 'କଳ୍ପଲତା' କାବ୍ୟର ନାୟକ ନାୟିକାଙ୍କ ସଂଭୋଗ ଚିତ୍ର ସହଜ ଓ ସ୍ୱାଭାବିକ [୪୦] । ଦେହଭୋଗର ବିବିଧ ପର୍ଯ୍ୟାୟ ଯଥାରୀତି ବର୍ଣ୍ଣିତ ହୋଇଥିଲେ ହେଁ ତାହା ଅଶ୍ଳୀଳତାମୁକ୍ତ ।

ଶିଶୁ ଶଙ୍କରଙ୍କ 'ଉଷାଭିଳାଷ' କାବ୍ୟର ନାୟିକା ଗୁରୁ ବିରହ ପୀଡ଼ାରେ ଅଧୀରା ହେବାରୁ ସଖୀ ଚିତ୍ରଲେଖା ମନ୍ତ୍ରବଳରେ ନାୟକ ଅନିରୁଦ୍ଧଙ୍କୁ ଆଣି ତା'ର ଅନ୍ତଃପୁରରେ ପହଞ୍ଚାଇ ଦେଇଛି । ଚାଟୁବାକ୍ୟରେ ମୋହିତା ନାୟିକାକୁ ଗାନ୍ଧର୍ବ ରୀତିରେ ବିବାହ କରି ନାୟକ ତା' ସହିତ ସଂଭୋଗଲିପ୍ତ । ମିଳନକାଳୀନ ବିଭିନ୍ନ ବିକାର ଏଠାରେ ଅତି ସରଳ ସରସ ଭାବେ ଚିତ୍ରିତ [୪୧] । ନାୟିକା ଚରିତ୍ରରେ ଲଜ୍ଜା ଓ କାମ ବିହ୍ୱଳତାର ମଧୁର ସମନ୍ୱୟ ଯୋଗୁଁ କଳାକୃତି ବିଶେଷ ଗୌରବ ମଣ୍ଡିତ । କିନ୍ତୁ ରତି ଲୀଳା ପ୍ରସଂଗ ବୈଚିତ୍ର୍ୟହୀନ ।

ପାର୍ଥ ଶ୍ରୀଚନ୍ଦନଙ୍କ 'କଳାବତୀ' କାବ୍ୟର ବର୍ଣ୍ଣନାନୁସାରେ ବ୍ରାହ୍ମଣର ମନ୍ତ୍ରବଳରେ ନାୟକ ନାୟିକା-ଅନ୍ତଃପୁରକୁ ଆନୀତ । ଯକ୍ଷ ବିଭା ଅନ୍ତେ ଉଭୟେ ଭୋଗ ବିଳାସରେ କାଳ ଅତିବାହିତ କରିଛନ୍ତି । ଏଠାରେ ସଂଭୋଗ ଚିତ୍ର ସଂକ୍ଷିପ୍ତ ଓ ନଗଣ୍ୟ [୪୨]। ନାୟକର ବିରହ ଭାବନାରେ କିନ୍ତୁ ସଂଭୋଗର ବିସ୍ତୃତ ବର୍ଣ୍ଣନା ପରିଦୃଷ୍ଟ ।

ବିଷ୍ଣୁଦାସଙ୍କ 'ପ୍ରେମ ଲୋଚନା' କାବ୍ୟରେ ନାୟକ ନାୟିକାଙ୍କ ମଧୁଶଯ୍ୟା ସଂଭୋଗ ବିଧାନ ସଂକ୍ଷିପ୍ତ ଓ ରସାଳ । ଗଜକୁମାର ସୁଧାକରର ପ୍ରଣୟ ଋତୁରେ କାମାତୁରତା ସୁସ୍ପଷ୍ଟ । କିନ୍ତୁ ଦେହଭୋଗରେ ଉଭୟଙ୍କର ଯଥାର୍ଥ ଅଂଶଗ୍ରହଣ ସୀମିତ ବର୍ଣ୍ଣନା ପରିପାଟିରେ ମନୋହର[୫୩]। ପ୍ରକାରନ୍ତର ସଂଭୋଗ ଚିତ୍ରଣରେ କବିଙ୍କ ଧ୍ୟାନ ବିଶେଷ ଭାବେ ନିବଦ୍ଧ । ଅଧର, ଓଷ୍ଠ, ଉରଜ, ସୁରପୁର ଆଦି ନାରୀର ସର୍ବାଙ୍ଗରେ ପୁରୁଷର ବିଳାସ ପ୍ରିୟତା କାବ୍ୟର ଏହି ଅଂଶକୁ ରସ ରଂଜିତ କରିଛି[୫୪]। କାବ୍ୟିକ ବ୍ୟଞ୍ଜନାର ଅଭାବ ଥିଲେ ହେଁ ଭାଷାର ନିରଡ଼ମ୍ବରତା ଓ ପ୍ରକାଶ ଭଙ୍ଗୀର ପରିଚ୍ଛନ୍ନତା ହେତୁ ଏହା ସୁଖବୋଧ୍ୟ ।

ହରିହର ନରେନ୍ଦ୍ରଙ୍କ 'ମଦାଳସା' କାବ୍ୟର ନାୟକ ଋତୁଧ୍ୱଜ ଅସୁର ପାତାଳକେତୁର ପଶ୍ଚାତ୍‌ଧାବନ କରୁ କରୁ ପାତାଳପୁରରେ ପ୍ରବେଶ କ୍ରମେ ନାୟିକାର ପ୍ରଣୟ ପାଶରେ ଆବଦ୍ଧ । ଅଭିନବ ଚୈତନ୍ୟ ନାମକ ଜନୈକ ଋଷି ଯୋଗବଳରେ ସେମାନଙ୍କ ପ୍ରେମ ପ୍ରସଙ୍ଗ ଅବଗତ ହୋଇ ସେହି ସ୍ଥାନକୁ ଆସି ଦୁହିଁଙ୍କର ବିବାହ କାର୍ଯ୍ୟ ସମ୍ପାଦନ କରନ୍ତି । ଅତଃପର ମଦନ ମହୋତ୍ସବରେ ଦୁହିଁଙ୍କର ମଧୁଶଯ୍ୟା ରାତ୍ରି ନିଃଶେଷିତ ହୁଏ । ସମ୍ଭୋଗ ବର୍ଣ୍ଣନା ଏଠାରେ ତରଳ ଓ ରସସିକ୍ତ । କେଳି ବିଳାସରେ ନାରୀ ପୁରୁଷର ତନ୍ମୟତା ଓ ବିବିଧ ବିକାର ଅକୃତ୍ରିମ୍ ଭଙ୍ଗୀରେ ରୂପାୟିତ । ସ୍ଥଳ ବିଶେଷରେ ସ୍ଥୂଳତା ଓ ଭୋଗ ଆର୍ଦ୍ରତାର ଅପୂର୍ବ ସମନ୍ୱୟ ପରିଲକ୍ଷିତ[୫୫]।

କାର୍ତ୍ତିକ ଦାସଙ୍କ 'ରୁକ୍ମିଣୀ' ବିଭା କାବ୍ୟରେ ନାୟିକାର ମଧୁଶଯ୍ୟା ବେଶ ରଚନା ପ୍ରତି ବିଶେଷ ଧ୍ୟାନ ଦିଆଯାଇଥିବା ସ୍ଥଳେ ସଂଭୋଗ ଚିତ୍ର ସୂଚନାତ୍ମକ[୫୬]। ନାୟକ ନାୟିକାକୁ କୋଳାଗ୍ରତ କରିବା ଦୃଶ୍ୟରେ ଏହା ସୀମିତ । ତତ୍‌ପରବର୍ତ୍ତୀ ଭାବ ପରିକଳ୍ପନା କରିବା ନିମନ୍ତେ ଭକ୍ତିପୂର୍ଣ୍ଣ ନିବେଦନ ଜଣାଇ କବି ବର୍ଣ୍ଣନାରୁ କ୍ଷାନ୍ତ ହୋଇଛନ୍ତି । ଓଡ଼ିଆ କାବ୍ୟଧାରାରେ ଏ ପ୍ରକାର ସଂଭୋଗଚିତ୍ରଣ-ସଂଯମ କ୍ୱଚିତ୍ ପରିଦୃଷ୍ଟ ।

ଧନଞ୍ଜୟ ଭଞ୍ଜଙ୍କ 'ଅନଙ୍ଗରେଖାରେ' ନାୟକ ନାୟିକାଙ୍କ ମଧୁଶଯ୍ୟା-ସମ୍ଭୋଗ ବିଳାସର ଚିତ୍ର ଦୀର୍ଘ ଓ ଅନାବୃତ । ଏ ପ୍ରସଙ୍ଗରେ କବି କାମଶାସ୍ତ୍ରର ଅନୁସରଣ କରିଥିବା କଥା ସ୍ପଷ୍ଟ ଉଲ୍ଲେଖ କରିଛନ୍ତି [୫୭] । ସୁତରାଂ ଆଦିରସର ମାଧୁର୍ଯ୍ୟ ପରିବର୍ତ୍ତେ ଏହା ସ୍ଥୂଳତା ଓ ନଗ୍ନତାରେ ପର୍ଯ୍ୟବସିତ । ଚୁମ୍ବନ, ଆଲିଙ୍ଗନ, ନଖ ଓ ଦନ୍ତ କ୍ଷତ, ବିବସନ, ମୁଷ୍ଟି ପ୍ରହାର, ବିପରୀତ, ନାହିଁ ନାହିଁ, ଈଷି ଈଷି, ଆଦି ରତିକ୍ରୀଡ଼ାର ବିବିଧ ବିଧାନ ଉତ୍କଟ କାମୁକତା ଓ ରୁଚିହୀନତାର ସ୍ୱାକ୍ଷର ବହନ କରେ । ବିଶେଷତଃ ନାୟିକାର ସ୍ମରପୁର ବର୍ଣ୍ଣନାରେ [୫୮] କବିର ଯେଉଁ ଆଗ୍ରହାତିଶଯ୍ୟ ଦେଖାଯାଏ, ତାହା କେବଳ ଶୃଙ୍ଗାର-ଲୋଲୁପ-ଦୃଷ୍ଟିର ଫଳଶ୍ରୁତି ବ୍ୟତୀତ ଅନ୍ୟ କିଛି ନୁହେଁ । ନାୟକ ନାୟିକାଙ୍କ ପ୍ରବାସାନ୍ତର ମିଳନ ଦୃଶ୍ୟ ସଂକ୍ଷିପ୍ତ ଓ ଶାଳୀନ । ଧନଞ୍ଜୟଙ୍କ 'ରତ୍ନମଞ୍ଜରୀ' କାବ୍ୟରେ ମଧ୍ୟ କାମଶାସ୍ତ୍ରର ଅନୁବର୍ତ୍ତନ ଦେଖାଯାଏ । ନାୟକ ନାୟିକାଙ୍କ ମଧୁଶଯ୍ୟା ମିଳନ ପ୍ରସଙ୍ଗରେ ସ୍ତମ୍ଭ, ସ୍ୱେଦ, ରୋମାଞ୍ଚ ଆଦି ସାତ୍ତ୍ୱିକ ବିକାରର ବର୍ଣ୍ଣନା ମୌଳିକତା ଓ ସୌନ୍ଦର୍ଯ୍ୟ ଦୃଷ୍ଟିରୁ ସଫଳତା ଲଭ କରିପାରି ନାହିଁ [୫୯] । ତେବେ 'ରତ୍ନମଞ୍ଜରୀ'ର ସମ୍ଭୋଗ ଦୃଶ୍ୟ 'ଅନଙ୍ଗରେଖା' ପରି ଉତ୍କଟ ଓ ଅସ୍ୱାଦ୍ୟ ନୁହେଁ । କିନ୍ତୁ ତାଙ୍କ 'ରଘୁନାଥ ବିଳାସ'ରେ ଅଙ୍କିତ ନାୟକ ନାୟିକାଙ୍କ ମଧୁଶଯ୍ୟା ଚିତ୍ର ଅତ୍ୟନ୍ତ ରମଣୀୟ । ଏଥିରେ ଦେହୋପଭୋଗର ସୂଚନା ସୀମିତ । ପକ୍ଷାନ୍ତରେ ନବ ସଙ୍ଗମ ଭୀତା ନାୟିକାର ଶାରୀରିକ ବିକାର, ଦାମ୍ପତ୍ୟ ପ୍ରୀତିର ଆଦର୍ଶ ଓ ସରସ କାବ୍ୟରୀତି ସମନ୍ୱୟରେ ପ୍ରସଙ୍ଗଟି ହୋଇଛି ରୁଚିଶୀଳ ଓ ହୃଦୟଗ୍ରାହୀ [୬୦] ।

ଲୋକନାଥ ବିଦ୍ୟାଧରଙ୍କ 'ସର୍ବାଙ୍ଗ ସୁନ୍ଦରୀ' କାବ୍ୟରେ ନାୟକ ନାୟିକାଙ୍କ କେଳିପୁରର ମନୋହର ବର୍ଣ୍ଣନା ପ୍ରଦତ୍ତ । ଶୃଙ୍ଗାର ଚେତନାକୁ ଉଦ୍ଦୀପ୍ତ କରିବା ପାଇଁ ଚତୁଃଷଷ୍ଠୀ ବନ୍ଧ ତଥା କେତେକ ପୁରାଣ ପ୍ରସିଦ୍ଧ ପ୍ରେମ କାହାଣୀ ଗୃହକାନ୍ଥରେ ଚିତ୍ରିତ ହୋଇଥିବାର କବି ଦର୍ଶାଇଛନ୍ତି । ଏଠାରେ ସଂଭୋଗ ପ୍ରସଙ୍ଗ ଉଚ୍ଛୃଙ୍ଖଳତାହୀନ ଓ ସରସ [୬୧] । ନାୟକ ନାୟିକା କାମଶାସ୍ତ୍ର ବିଧି ଅନୁସରଣ କରି ସୁଖୀ ହୋଇଥିବା କଥା ଉଲ୍ଲିଖିତ ଥିଲେ ହେଁ ବର୍ଣ୍ଣନାରେ ତା'ର ଆକ୍ଷରିକ ଅନୁସରଣ କରଯାଇ ନାହିଁ ।

ପକ୍ଷାନ୍ତରେ ରତି ସୁଖର ଉତ୍କର୍ଷ କଳ୍ପନା-ଚିତ୍ରର ରମଣୀୟତାରେ ସମୃଦ୍ଧ [୫୨] । ନିଶାବସାନରେ ନାୟକ ନିକଟରୁ ନାୟିକାର ବିଦାୟକୁ କୁସୁମ ବନିକାରୁ ମଧୁକାଳର ବିଦାୟ ସହ ତୁଳନା କରି କବି ଅପୂର୍ବ ଉପମା-ସୌନ୍ଦର୍ଯ୍ୟ ପ୍ରତିଷ୍ଠାରେ ସମର୍ଥ ହୋଇଛନ୍ତି [୫୩] । ତାଙ୍କର 'ଚିତ୍ରକଳା' କାବ୍ୟରେ ବର୍ଣ୍ଣିତ ସମ୍ଭୋଗ ଚିତ୍ର କାମ-ବିଳାସ-ପ୍ରଧାନ [୫୪] । ଭାଷାଗତ ସରଳତା ଓ ସରସତା ଏହାର କେବଳ ମାତ୍ର ଆକର୍ଷଣ । ନାୟିକାର ରତାନ୍ତ ଅବସ୍ଥା ଗଜ ମଥିତ ପଦ୍ମଲତା ଏବଂ ରାହୁ ଗ୍ରାସିତ ଚନ୍ଦ୍ର ସହ ତୁଳିତ । କଳା ଦୃଷ୍ଟିରୁ 'ଚିତ୍ରକଳା' ଅପେକ୍ଷା 'ସର୍ବାଙ୍ଗ ସୁନ୍ଦରୀ'ର ଗୌରବ ଅଧିକ ।

ଉପେନ୍ଦ୍ର ଭଞ୍ଜଙ୍କ 'ବୈଦେହୀଶ ବିଳାସ'ରେ ମଧୁଶଯ୍ୟା ସଂଭୋଗ ପଡ଼ଋତୁ ରୂପେ ପରିକଳ୍ପିତ । ଏଥିରେ କବିର ବର୍ଣ୍ଣନା ବିଳାସ ଉଚ୍ଚକୋଟୀର ହୋଇଥିଲେ ହେଁ ଉପଭୋଗର ରମଣୀୟତା ନାହିଁ । ଶବ୍ଦ ଓ ଅର୍ଥର କୁଟିଳତା ହିଁ ଏଠାରେ ମୁଖ୍ୟ [୫୫] । 'ଲାବଣ୍ୟବତୀ'ରେ ନାୟକ ନାୟିକାଙ୍କ ମଧୁଶଯ୍ୟାର ବିଶଦ ଦୃଶ୍ୟ ବର୍ଣ୍ଣିତ । ନାୟକ ଚାଟୁ,' ଚୁମ୍ବନ, ଆଲିଙ୍ଗନ, ଚନ୍ଦ୍ରଗ୍ଳନ, ରତି ଓ ବିପରୀତ ରତି ଆଦି ସଂଭୋଗର ବିବିଧ ବିଭବ ଯଥାରୀତି ଏଥିରେ ରକ୍ଷିତ । କିନ୍ତୁ କାବ୍ୟ ବ୍ୟଞ୍ଜନାର ଅଭାବ ଓ ଉକ୍ତି ପ୍ରତ୍ୟକ୍ଷତା ଯୋଗୁଁ ଏହା ଉଗ୍ର ଶୃଙ୍ଗାରିକତାରେ ପରିଣତ ହୋଇଛି [୫୬]। ସ୍ଥଳ ବିଶେଷରେ ଅଶ୍ଳୀଳତା ମଧ୍ୟ ପରିଦୃଷ୍ଟ [୫୭] । ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଭାଷାରେ– "ଏପରି ରମଣମାନଙ୍କର ବର୍ଣ୍ଣନା ପ୍ରାଚୀନ କବିଗତ ପରଂପରାର ଅନୁରୋଧରେ ହେଲେ ହେଁ ସୁରୁଚିର ଅନୁକୂଳ ନୁହେଁ [୫୮] ।" ସାମନ୍ତୀୟ ଐଶ୍ୱର୍ଯ୍ୟରେ ପରିପୁଷ୍ଟ ପୁରୁଷର ଜୀବନାଦର୍ଶ ଏଠାରେ ନାରୀର ଜାନୁସିଂହାସନ ଅଧିଷ୍ଠାନକୁ ରାଜପଦାଭିଷେକ ରୂପେ ସ୍ୱୀକୃତି ଜଣାଇଅଛି । ରଚନା ରୀତି ସ୍ୱଚ୍ଛ ଓ ସାବଲୀଳ ହୋଇଥିବାରୁ ପାଠକର ଚିତ୍ତ ଜୟ କରିବାକୁ ଏହା ସମର୍ଥ । କିନ୍ତୁ ରସର ଆବେଦନ ଅପେକ୍ଷା ଦେହ ହିଁ ଏଠାରେ ମୁଖ୍ୟ ହୋଇଥିବାରୁ କବିତାର ପ୍ରାଣ ସୌନ୍ଦର୍ଯ୍ୟ ପରାହତ । 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ର କେଳିପୁର ଚିତ୍ରସଜ୍ଜା ପ୍ରସଙ୍ଗରେ କବି ସ୍ୱୀୟ ଶ୍ରୀରାମଚନ୍ଦ୍ର-ଅନୁଗତ-ପ୍ରାଣତାର ପରିଚୟ ପ୍ରଦାନ କରିଛନ୍ତି [୫୯]। କୃଷ୍ଣଲୀଳା ପ୍ରତି ତାଙ୍କର ବିରାଗ ଏଥିରୁ ଲକ୍ଷ୍ୟ କରାଯାଇପାରେ । ପରବର୍ତ୍ତୀ କାଳରେ

ସମାଲୋଚନାର ଶରବ୍ୟ ହୋଇ ସେ କୃଷ୍ଣ-କାବ୍ୟ ପ୍ରଣୟନରେ ଆଗ୍ରହୀ ହୋଇଥିବେ । ଆଲୋଚ୍ୟ କାବ୍ୟର ସଂଭୋଗ ବର୍ଣ୍ଣନା ଦୀର୍ଘ; କିନ୍ତୁ ଉକ୍ତି-କୌଶଳ-ସର୍ବସ୍ୱ । କେଳି ଆରମ୍ଭରେ ନାୟକର ନାୟିକାକୁ କୋଳାଗ୍ରତ କରିବା ଦୃଶ୍ୟ ମଦାନ୍ଧ ହସ୍ତୀର କମଳ ଲତା ଉତ୍ପାଟନ ସହ ତୁଳିତ । ରତି ଲୀଳା ପ୍ରସଙ୍ଗରେ କବି ଷଡ଼ରତ୍ନ, ବିବିଧ ଅଳଂକାର (ଶ୍ଳେଷ, ଯମକ, ବକ୍ରୋକ୍ତି ଆଦି) ତଥା ଦ୍ୟୁତ କ୍ରୀଡ଼ାର ଉଲ୍ଲେଖ କରି ସ୍ୱୀୟ କଳ୍ପନା ଶକ୍ତିର ବୈଚିତ୍ର୍ୟ ପ୍ରକାଶ କରିଛନ୍ତି [୬୦]। କିନ୍ତୁ ଏଥିରେ ମିଳନର ଆବେଗ, ଉଲ୍ଲାସ ଓ ତନ୍ମୟତା ବ୍ୟାହତ ହୋଇଅଛି । ସମକାଳୀନ କବି ପରମ୍ପରାରେ ଏହା ସମାଦୃତ ହୋଇପାରେ, ମାତ୍ର ଯୌବନର ଚିରନ୍ତନ କାମନା ଓ ପ୍ରଣୟର ଇନ୍ଦ୍ରିୟ ମୁଗ୍ଧ ଅନୁଭବ ଏଥିରେ ଅସ୍ପଷ୍ଟ । ସଂଭୋଗର ଉଚ୍ଛୃଙ୍ଖଳତା ବିବର୍ଜିତ ହୋଇଥିଲେ ହେଁ 'ଲାବଣ୍ୟବତୀ'ର ସରସ ଓ କୋମଳ ଭାଷା ବିନ୍ୟାସ ଏ କ୍ଷେତ୍ରରେ ଅଲଭ୍ୟ ।

'ସୁବର୍ଣ୍ଣରେଖା' କାବ୍ୟରେ ମଧୁଶଯ୍ୟା ବିଳାସର ବର୍ଣ୍ଣନା ନାହିଁ । ପ୍ରବାସାନ୍ତର ସଂଭୋଗ ଚିତ୍ର ଏଥିରେ ସଂକ୍ଷିପ୍ତ, ସରଳ ଓ ପ୍ରତ୍ୟକ୍ଷ । ନାୟକ ନାୟିକାର ଦେହୋପଭୋଗ କରି ମର୍ତ୍ତ୍ୟରେ ଇନ୍ଦ୍ର ସଂପତ୍ତି ଲାଭ କରିଥିବା ଗୌରବରେ ସ୍ନାତ [୬୧] । 'ରସଲେଖା'ରେ ମଧୁଶଯ୍ୟା ସଂଭୋଗ ବର୍ଣ୍ଣନା ଦୀର୍ଘ ଓ ସରସ । 'ଲାବଣ୍ୟବତୀ'ର ରତିବିଧାନ ଏଥିରେ ମଧ୍ୟ ଅନ୍ତର୍ଭୁକ୍ତ । ଗୋଟିଏ ସ୍ଥାନରେ ଅର୍ଥଧ୍ୱନିର ପ୍ରୟୋଗ ଅତ୍ୟନ୍ତ ଚମତ୍କାର । ସୁରତ-କ୍ରୀଡ଼ା ଚଞ୍ଚଳ ନାୟକ ହାତରେ ନାୟିକାର ମଲ୍ଲୀଫୁଲ ଅର୍ପଣ ତାହାର ଅଙ୍ଗପୀଡ଼ା ସୂଚକ [୬୨] । କାବ୍ୟ ବର୍ଣ୍ଣିତ ପ୍ରବାସାନ୍ତ ସଂଭୋଗ ଗୋଟିଏ ମାତ୍ର ପଦରେ ରୂପାୟିତ । କବି ଏହାକୁ ମହାକ୍ଷୁଧାବନ୍ତର ଅମୃତ ଭୋଜନ ସଙ୍ଗେ ତୁଳନା କରିଅଛନ୍ତି [୬୩] । 'ପ୍ରେମ ସୁଧାନିଧି'ରେ ନାୟକ ନାୟିକାଙ୍କ ମଧୁଶଯ୍ୟା-ମିଳନ ଦୃଶ୍ୟର ବର୍ଣ୍ଣନା ନିମନ୍ତେ କୃଷିକାର୍ଯ୍ୟ [୬୪], ମଲ୍ଲଯୁଦ୍ଧ [୬୫], ଯଜ୍ଞକର୍ମ [୬୬] ଆଦି ଉପମାର ଅବତାରଣା କରାଯାଇଛି । ନାୟିକାର ବିପରୀତ ରତି ନର୍ତ୍ତକୀର ଲାସ୍ୟ ଲୀଳା ରୂପେ ଏଠାରେ ଅଭିହିତ [୬୭] । ଉପମାଗୁଡ଼ିକର ଯଥାର୍ଥ୍ୟ ପ୍ରସ୍ଫୁଟନ ପାଇଁ ଯଥୋଚିତ ବିଶ୍ଳେଷଣ ମଧ୍ୟ ପ୍ରଦତ୍ତ । ଫଳତଃ ପ୍ରସଙ୍ଗର ସୌନ୍ଦର୍ଯ୍ୟରୁ କବିଦୃଷ୍ଟି

ଅଳଂକାର ସ୍ପର୍ଦ୍ଧା ଦିଗକୁ ପ୍ରସାରିତ । ପୁନଶ୍ଚ ଶୃଙ୍ଗାର ଭାବନାରେ ଯୁଦ୍ଧ ଭାବନାର ଅନୁପ୍ରବେଶ ହେତୁ ଉପଭୋଗର ମାଧୁର୍ଯ୍ୟ ନିଷ୍ପିଷ୍ଟପ୍ରାୟ । 'ରସିକ ହାରବଳୀ' କାବ୍ୟର ମଧୁଶଯ୍ୟା ବିଧାନ 'ଲାବଣ୍ୟବତୀ' ଓ 'ରସଲେଖା' ପରି କାମଶାସ୍ତ୍ରୀୟ ମାର୍ଗ ଅନୁସରଣ କରିଛି । ନୀବୀ ମୋକ୍ଷଣରେ ମୋକ୍ଷ ଭାବନା ଏବଂ ରତିସୁଖ ନିକଟରେ ଇନ୍ଦ୍ରପଦର ତୁଚ୍ଛତା ପୁରୁଷର ଆଦର୍ଶ ରୂପେ ଏଠାରେ ଗୃହୀତ [୭୮] । କବି ସ୍ପଷ୍ଟତଃ ବାତ୍ସାୟନଙ୍କ ନିକଟରେ ନିଜର ଋଣ ସ୍ୱୀକାର କରିଛନ୍ତି [୭୯]।

ବ୍ରଜନାଥଙ୍କ 'ଅମ୍ବିକା ବିଳାସ' କାବ୍ୟୋଲ୍ଲିଖିତ ଶିବ ଓ ସତୀଙ୍କ ସଂଭୋଗ ଚିତ୍ରରେ ଏକ ନିର୍ଦ୍ଦିଷ୍ଟ ରଚନା ରୀତି ଅନୁସୃତ । ଦ୍ୱିତୀୟ ଛାନ୍ଦର ପ୍ରତ୍ୟେକ ପାଞ୍ଚ ପଦକୁ କବି ଗୋଟିଏ ଗୋଟିଏ ଭାବ ଏକକ ରୂପେ ଗ୍ରହଣ କରିଛନ୍ତି । ଏହି ଏକକ ଅନ୍ତର୍ଗତ ପ୍ରତ୍ୟେକ ପଦର ଶେଷ ପାଦରେ ଦେଖା ଦେଇଛି ପୁନରାବୃତ୍ତି । ସୁତରାଂ ସୀମିତ ପରିସର ମଧ୍ୟରେ ନାୟକ ନାୟିକାଙ୍କ ଶୃଙ୍ଗାର ବିଳାସ ବନ୍ଦୀ ହୋଇ ଯାଇଛି । ବିପରୀତ ରତି ଏଠାରେ ବର୍ଷାକାଳ ରୂପେ କଳ୍ପିତ [୮୦] । ନାୟିକାର ଅଂଗଶୋଭି କର୍ପୂର ରଜ, ମୁଚୁକି ଶେଯ, କବରୀ ଝରା, ପୀନ ସ୍ତନ ଉପର ହାର, ଅଣ୍ଟା କିଂକିଣୀ, ଆଖିର କଜ୍ଜ୍ୱଳ, ଅଙ୍ଗ କୁଙ୍କୁମ, ଅଧର ପାନବୋଳ, ବାଜଣା ବୀଣା, ଅତନୁ ଶାସ୍ତ୍ର ରୂପେ ଶୋଭା ପାଇବାକୁ ନାୟକର କାମନା ନାରୀ–ଅନୁଗତ–ପୌରୁଷର ପରିଚୟ ବହନ କରେ [୮୧] । ନାରୀର ଆଖିରେ ମୋକ୍ଷ, ହସରେ ଅମୃତ, ପାଦତଳେ ଅଣିମା କଳ୍ପନା କରି କବି ଏହାକୁ ଜୀବନର ମହିମା ରୂପେ ସାଦର ସ୍ୱୀକୃତି ଜଣାଇଛି [୮୨] । ଏସବୁ କ୍ଷେତ୍ରରେ ଭଂଜୀୟ କଳ୍ପନା–କୌଶଳର ସମାବେଶ ହିଁ ଦେଖାଯାଏ । ରସମୟତାର ଅଭାବ ଏହି କାବ୍ୟର ଅନ୍ୟତମ ଅଗୌରବର କାରଣ । ଶିବ ପାର୍ବତୀଙ୍କ ମଧୁଶଯ୍ୟା ମିଳନର ଯେଉଁ ଚିତ୍ର ଏଥିରେ ପ୍ରଦତ୍ତ ତହିଁରେ ସଂଭୋଗ ପ୍ରସଙ୍ଗ ଗୋଟିଏ ପାଦରେ ସୀମାବଦ୍ଧ [୮୩] । କିନ୍ତୁ ପରବର୍ତ୍ତୀ ଛାନ୍ଦରେ ନାୟିକାର ସୁରତାନ୍ତ ଦୃଶ୍ୟ ବିସ୍ତୃତ ଓ ମନୋହର । ଏଥିରୁ ସଂଭୋଗ ବିଧାନର ସ୍ପଷ୍ଟ ସୂଚନା ମିଳେ । କବିଙ୍କ 'କେଳି କଳାନିଧି' କାବ୍ୟରେ ଏହା ପରଂପରାନୁସାରୀ । ବର୍ଣ୍ଣନା କ୍ରମେ ଗୋଟିଏ ସ୍ଥାନରେ

କାନ୍ତ ଗୁଣିଆ ଦ୍ୱାରା ନାୟିକାର କାମଭୂତ ଛଡ଼ାଇବା ଓ ଅନ୍ୟ ଏକ ସ୍ଥାନରେ ସ୍ୱର-ଦୁର୍ଗ ଜୟ କରିବାର ବିଶଦ ଚିତ୍ର ଅଙ୍କିତ । କିନ୍ତୁ ସ୍ଥୂଳତା ଓ ନଗ୍ନତାର ଉପସ୍ଥାପନ ସ୍ଥଳ ବିଶେଷରେ ନିତାନ୍ତ ଅରୁଚିକର [୭୪] ।

ଯଦୁମଣିଙ୍କ 'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର'ରେ ସଂଭୋଗ ଦୃଶ୍ୟ ଗୋଟିଏ ପଦରେ ସୀମିତ [୭୫] । ତାହା ପୁଣି ଏପରି ଶବ୍ଦ କୁଣ୍ଠିତା ଓ ଶୁଚିତା ପରିବୃତ୍ତ ଯେ ଏଥିରେ ଦେହ ଗନ୍ଧର ପ୍ରଶ୍ନ ନାହିଁ । ଅନ୍ୟ ଦୃଷ୍ଟିରୁ ଏହା ଜୀବନ ଉତ୍ତାପ ହୀନ । 'ରାଘବ ବିଳାସ'ର ମଧୁଶଯ୍ୟା ପ୍ରସଙ୍ଗ ପୂର୍ଣ୍ଣତଃ 'ବୈଦେହୀଶ ବିଳାସ'କୁ ଅନୁସରଣ କରିଛି [୭୬] ।

ଜଗନ୍ନାଥ ନୃପଙ୍କ 'ପ୍ରଭବତୀ ପରିଣୟ'ରେ ସମ୍ଭୋଗର ବର୍ଣ୍ଣନା ସରଳ ଓ ମଧୁର । ଭ୍ରମର ରୂପରେ ନାୟକର ନାୟିକା-ଅନ୍ତଃପୁରରେ ପ୍ରବେଶ ଓ ଗନ୍ଧର୍ବ ବିବାହ ଅନ୍ତେ ହର୍ଷୋତ୍‌ଫୁଲ୍ଲ ଚିତ୍ତରେ ଦୁହିଁଙ୍କର ମଧୁଶର୍ଯ୍ୟା ଯାପନ ଚିତ୍ର କଳାଗତ ସଫଳତା ହାସଲ କରି ପାରିନାହିଁ । କାବ୍ୟରୀତି ଭଂଜୀୟ ଆଦର୍ଶରେ ବିଶେଷ ଭବେ ଅନୁପ୍ରାଣିତ । ମାତ୍ର ଦେହୋପଭୋଗ ବର୍ଣ୍ଣନାରେ ସର୍ବତ୍ର ଶାଳୀନତା ପରିଦୃଷ୍ଟ [୭୭] ।

ବିବାହିତା (ପରବଶ)- ନରସିଂହ ସେଣଙ୍କ 'ପରିମଳା' କାବ୍ୟର ସ୍ୱକୀୟା ନାୟିକା ଚିତ୍ରଣରେ ବ୍ୟତିକ୍ରମ ଦୃଷ୍ଟିଗୋଚର ହୁଏ । ପରିମଳା ପୁଷ୍ପବତୀ ହେବା ଉତ୍ତାରୁ ଗନ୍ଧର୍ବ ଚିତ୍ରରଥ ସହ ପ୍ରଣୟଲିପ୍ତା ଏବଂ ମର୍ତ୍ତ୍ୟ-ଯୁବକକୁ ରତିଦାନ ନ କରିବାକୁ ସତ୍ୟାନୁବଦ୍ଧା । ସୁତରାଂ ନାୟକ ମକରକେତୁ ପରିମଳାକୁ ବିବାହ କରି ମଧ୍ୟ ସମ୍ଭୋଗ ସୁଖରୁ ବଞ୍ଚିତ । ଏଠାରେ ନାୟିକାର ପରବଶ-ଗୋପନ-ପ୍ରୀତିଚିତ୍ର ସରସ ଓ ସଂକ୍ଷିପ୍ତ [୭୮] । ନାୟକର ଖେଦ, ମିଳନର ତନ୍ମୟତା ଓ ପ୍ରଣୟୀ ପ୍ରଣୟିନୀଙ୍କ ବିଦାୟ ଦୃଶ୍ୟ ଅତ୍ୟନ୍ତ ହୃଦୟସ୍ପର୍ଶୀ । ସମୟକ୍ରମେ ନାୟକ ଆଲୌକିକ ସାଧନା ବଳରେ ନାୟିକାର ପ୍ରୀତିଲାଭ କରିବାକୁ ସମର୍ଥ ହୋଇଅଛି । ଦାମ୍ପତ୍ୟ ସମ୍ଭୋଗ ପ୍ରସଙ୍ଗ ବିସ୍ତୃତ ଓ ଉଦ୍ଦାମ । ନାୟିକାର ଗୋପନାଙ୍ଗ ତଥା ବିପରୀତ ରତିର ନିର୍ଲଜ୍ଜ ବର୍ଣ୍ଣନା ଯେପରି ସ୍ଥୂଳ ସେହିପରି ରୁଚିହୀନ [୭୯] । ଶୃଙ୍ଗାରର

କାବ୍ୟିକ ସୌନ୍ଦର୍ଯ୍ୟ ବିବୃତ ହେବା ପରିବର୍ତ୍ତେ ଏଥିରେ ଉଚ୍ଛୃଙ୍ଖଳତା ଓ କାମୁକତାହିଁ ପ୍ରକଟିତ । ସୁରେନ୍ଦ୍ର ମହାନ୍ତି ଯଥାର୍ଥରେ କହିଛନ୍ତି–"ଏହା ମିଳନାତ୍ମକ ଆଦିରସର ମାଧୁର୍ଯ୍ୟ ପରିବର୍ତ୍ତେ ମୈଥୁନର ଅଶ୍ଳୀଳ ବୀଭତ୍ସରସ ସୃଷ୍ଟି କରିଛି [୮୦]।" ଶାପମୁକ୍ତି ପରେ ପରିମଳା ସ୍ୱର୍ଗକୁ ଫେରିଯାଇ ପୁନରାୟ ଚିତ୍ରରଥ ସହ ମିଳନ ପ୍ରବୃତ୍ତା । କପଟ ପ୍ରୀତିରେ ରତଥାଇ ସେଠାରେ ସେ ନାୟକକୁ ଆନ୍ତରିକତାର ସହ ସ୍ମରଣ କରିଛି । ଓଡ଼ିଆ କାବ୍ୟ ଜଗତରେ ଏହି ଜାତୀୟ ସମ୍ଭୋଗ ବୈଚିତ୍ର୍ୟ ଏକାନ୍ତ ଦୁର୍ଲ୍ଲଭ ।

## ପରକୀୟା–

ବୈଷ୍ଣବ ସାହିତ୍ୟରେ ପରକୀୟା ତତ୍ତ୍ୱ ଧର୍ମ ଓ ଦର୍ଶନ ଭିତ୍ତିକ ଏକ ସୁଦୃଢ଼ ପରମ୍ପରା ଉପରେ ପ୍ରତିଷ୍ଠିତ । 'ଉଜ୍ଜ୍ୱଳ ନୀଳମଣି'ରେ ଅଛି–"ଯେଉଁ ନାରୀଗଣ ଇହଲୋକ ପରଲୋକ ସମ୍ବନ୍ଧୀୟ ଧର୍ମକୁ ଉପେକ୍ଷା କରି ଆସକ୍ତି ବଶତଃ ପର ପୁରୁଷ ନିକଟରେ ଆତ୍ମସମର୍ପଣ କରନ୍ତି ଏବଂ ଯେଉଁମାନେ ବିବାହ ବିଧି ଦ୍ୱାରା ଅସ୍ୱୀକୃତା, ସେମାନଙ୍କୁ ପରକୀୟା କୁହାଯାଏ [୮୨]।" ଚୈତନ୍ୟଚରିତାମୃତାକାର କହନ୍ତି–'ପରକୀୟା ଭାବେ ଅତିରସେର ଉଲ୍ଲାସ । ବ୍ରଜ ବିନା ଇହାର ଅନ୍ୟତ୍ର ନାହିଁ ବାସ [୮୩]।' ସୁତରାଂ ସକଳ ବୈଷ୍ଣବ କାବ୍ୟର ରାଧା ଓ ଗୋପୀଭାବନା ଭକ୍ତି ଶାସ୍ତ୍ରର ଶୃଙ୍ଖଳାଧୀନ ହେବା ସ୍ୱାଭାବିକ । ଶୃଙ୍ଗାର ରସ ପର୍ଯ୍ୟାୟରେ ପରୋଢ଼ା ରମଣୀର ସ୍ଥାନ ଅଳଙ୍କାର-ଶାସ୍ତ୍ର ନିଷିଦ୍ଧ । କିନ୍ତୁ ସେହି ନିଷେଧ ପ୍ରାକୃତ ନାୟିକା ପ୍ରତି ପ୍ରଯୋଜ୍ୟ, ଅପ୍ରାକୃତ ନାୟିକା ପ୍ରତି ନୁହେଁ [୮୪]।

ଓଡ଼ିଆ ରୀତି କାବ୍ୟର ସାମଗ୍ରିକ ବିଚାର ପ୍ରସଙ୍ଗରେ ବୈଷ୍ଣବ ସାହିତ୍ୟ ତତ୍ତ୍ୱକୁ ଆଲୋଚନାର ମାନଦଣ୍ଡ ରୂପେ ଗ୍ରହଣ କରିବା ସମୀଚୀନ ହେବ ନାହିଁ । ପରକୀୟା ସମ୍ଭୋଗର କାବ୍ୟିକ ସୌନ୍ଦର୍ଯ୍ୟ, ମାନବିକ ଆବେଦନ ଓ ରୂପ ବୈଚିତ୍ର୍ୟ ପ୍ରତି ଏଠାରେ ବିଶେଷ ଧ୍ୟାନ ଦେବା ଯଥାର୍ଥ ହେବ ।

କନ୍ୟା(ଅରକ୍ଷୋବତୀ)–

ରାମଚନ୍ଦ୍ର ପଟ୍ଟନାୟକଙ୍କ 'ହାରବତୀ' କାବ୍ୟର ଅରକ୍ଷୋବତୀ ନାୟିକା ଗୁଡ଼କାର କନ୍ୟା ଗ୍ରାମଯୁବକକୁ ପ୍ରୀତିଦାନ ନିମନ୍ତେ ସତ୍ୟବଦ୍ଧା । ସରୋବର ସ୍ନାନ ଘାଟରେ ଉଭୟଙ୍କର ପ୍ରତ୍ୟହ ନିଭୃତ ମିଳନ ସଂଘଟିତ । ଶୃଙ୍ଗାର ଚର୍ଯ୍ୟା ପ୍ରସଂଗରେ ନିଷିଦ୍ଧ ହେଲେ ହେଁ ଏହା ବାସ୍ତବ ଜୀବନ-ଦୃଷ୍ଟି ସମ୍ମତ । ଏଠାରେ ବିଶ୍ୱ ପ୍ରସିଦ୍ଧ କଥାକାର ନବକୋଭ୍ (Nabakov)ଙ୍କ ଲୋଲିତା (Lolita) ଉପନ୍ୟାସର ନାୟିକା ଆମର ସ୍ମରଣୀୟ । ହାରବତୀ ଚରିତ୍ର ଓଡ଼ିଆ କାବ୍ୟ ଜଗତରେ ସଂପୂର୍ଣ୍ଣ ଅଭିନବ । ନାୟକ ନାୟିକାଙ୍କ ପ୍ରଣୟ ବର୍ଣ୍ଣନାରେ କୈଶୋରର ଆବେଗ, ଉଷ୍ଣତା ଓ ଆକୁଳତା ସଯତ୍ନ ରୂପାୟିତ । ଭାଷା ସରଳ ଓ ଭାବାନୁଗତ । ମିଳନର ସ୍ୱାଭାବିକତା ଓ ରୁଚିଶୀଳତା କାବ୍ୟର ଅନ୍ୟତମ ବିଶିଷ୍ଟ ବିଭବ ।[୮୪]

କନ୍ୟା 'ରକ୍ଷୋବତୀ'– କୁସୁମବତୀ ହେବା ଉତ୍ତାରୁ ପୂର୍ବୋକ୍ତ ହାରବତୀ ଦୂତୀ ହାତରେ ମୁଦ୍ରିକା ଦେଇ ନାୟକ ନିକଟକୁ ମିଳନ-ସଂକେତ ପ୍ରେରଣ କରିଛି । ସେହିଦିନ ଦୂତୀ ଗୃହରେ ସେମାନଙ୍କର ସୁରତୋତ୍ସବ-ଗର୍ତ୍ତି ଯାପିତ । ଏଠାରେ ସଂଭୋଗର ବର୍ଣ୍ଣନା ସଂକ୍ଷିପ୍ତ ଓ ସହଜ ।[୮୬]

ଏ ପ୍ରସଂଗରେ ନରସିଂହ ସେଣଙ୍କ 'ପରିମଳା' ମଧ୍ୟ ଆମର ସ୍ମରଣୀୟ ।[୮୭] ନାୟିକା ପୁଷ୍ପବତୀ ହେବା ପରେ କାମ ପୀଡ଼ାରେ ଅଧୀର ହେବା ଏବଂ ଗଂଧର୍ବ ଚିତ୍ରରଥର ରୂପରେ ମୋହିତା ହୋଇ ତାହାକୁ ସୁରତିଦାନ କରିବା ବିଷୟ ପୂର୍ବେ ଆଲୋଚିତ ହୋଇଛି । କାବ୍ୟର ଆଦର୍ଶ ସ୍ୱକୀୟା ଭିତ୍ତିକ ହୋଇଥିଲେ ହେଁ ଆଦ୍ୟ ଯୌବନରେ ନାୟିକାର ଅନ୍ୟ ନିକଟରେ ଦେହ ମନ ସମର୍ପଣ ପରକୀୟାତ୍ୱର ପରିସରଭୁକ୍ତ ।

## ପରୋଢ଼ା (ନାୟିକା)–

କାଳ୍ପନିକ କାବ୍ୟ–ଉପରୋକ୍ତ, 'ହାରବତୀ' କାବ୍ୟର ନାୟିକା ପିତାମାତାଙ୍କ ଆୟୋଜନ କ୍ରମେ ଅନ୍ୟ ଯୁବକକୁ ବିବାହ କରି ମଧ୍ୟ

ନାୟକ ସହ ଗୋପନ-ପ୍ରଣୟ ଲିପ୍ତା । ଶ୍ୱଶୁର ଗୃହକୁ ଯିବା ପୂର୍ବରୁ ସେ କଦଳୀ ବଣରେ ପ୍ରେମିକ ସହ ମିଳିତ ହେବାକୁ କୁଣ୍ଠାବୋଧ କରିନାହିଁ । ନାୟିକାର ଅନୁପସ୍ଥିତିରେ ନାୟକ ବିରହ ପୀଡ଼ାରେ ଅଧୀର ହୋଇ ଦୂତୀ ହାତରେ ତା'ର ଶ୍ୱଶୁରାଳୟକୁ ବାର୍ତ୍ତା ପଠାଇଛି । ନାୟିକା ପିତାଗୃହକୁ ଫେରିବା ପରେ ପୁନରାୟ ଉଭୟଙ୍କ ମଧ୍ୟରେ ଅବୈଧ ପ୍ରଣୟ ଲୀଳା ସଂଘଟିତ । ସର୍ବତ୍ର ଭାଷା ସରସ ଓ ସଂଭୋଗ ବର୍ଣ୍ଣନା ଶାଳୀନ ।[୮୮] ପ୍ରେମର ଆଦର୍ଶ ଅପେକ୍ଷା ଦେହ ଭୋଗ ପ୍ରତି ଗଭୀର ଆସକ୍ତି ଏଥିରେ ପରିଦୃଷ୍ଟ । ଓଡ଼ିଆ କାଳ୍ପନିକ କାବ୍ୟଧାରାରେ ଏପରି ରକ୍ତ ଚଞ୍ଚଳ ପରକୀୟା ପ୍ରେମର ଦୃଷ୍ଟାନ୍ତ ବିରଳ ।

କୃଷ୍ଣକାବ୍ୟ–ଦେବ ଦୁର୍ଲଭଙ୍କ 'ରହସ୍ୟମଞ୍ଜରୀ'ର ବର୍ଣ୍ଣନାନୁସାରେ ଶ୍ରୀକୃଷ୍ଣ ଅଷ୍ଟପାଟବଂଶୀଙ୍କ ସହ ଗରୁଡ଼ ପୃଷ୍ଠରେ ଦ୍ୱାରକାରୁ ଆସି ଗୋପପୁରରେ ଉପସ୍ଥିତ । ରାଧାପ୍ରେମର ମହତ୍ତ୍ୱ ପ୍ରଦର୍ଶନ କରିବା ଥିଲା ଏହି ଆଗମନର ଉଦ୍ଦେଶ୍ୟ । କଦମ୍ବ ମୂଳରେ ବିରାଜିତ ହୋଇ ଶ୍ରୀକୃଷ୍ଣ ତାଙ୍କର ବଂଶୀରେ ତ୍ରିଭୁବନ ମୋହନ ସ୍ୱର ସଂଗ୍ରର କରନ୍ତେ ତାହା ଜଳ ସ୍ଥଳ ଆକାଶ ସର୍ବତ୍ର ଅନୁରାଗର ଅନୁରଣନ ସୃଷ୍ଟି କରିଛି । ସେହି ଧ୍ୱନି ଶ୍ରବଣ କରି ବିରହିଣୀ ରାଧାଙ୍କ କାରୁଣ୍ୟ ମନ୍ଥିତ ହୃଦୟରେ ସହସା ଦେଖା ଦେଇଛି ପୁଲକର ଉଦ୍‌ବେଳ । ବଂଶୀର ରାଧା ରାଧା ଡ଼ାକରେ ବିହ୍ୱଳିତା ହୋଇ ସେ ଧାଇଁ ଆସିଛନ୍ତି ସେହି କଦମ୍ବ ମୂଳକୁ । ନାୟିକା ଓ ନାୟକଙ୍କ ଅଭିମାନ ଓ ପ୍ରୀତି ବୋଧନରେ ପ୍ରେମର ଆଦର୍ଶ ଓ ଉତ୍‌କର୍ଷ ଅଭିବ୍ୟଂଜିତ । ଦୁହିଁଙ୍କର ଦେହ ଓ ହୃଦୟର ମିଳନ କ୍ରମେ ନିବିଡ଼ରୁ ନିବିଡ଼ତର ହୋଇ ସୁଖୋପଲବ୍‌ଧିର ଶୀର୍ଷ ବିନ୍ଦୁରେ ଉପନୀତ ହୋଇଅଛି । ସଂଭୋଗ ଚିତ୍ର ଅଙ୍କନରେ କବିଙ୍କର ଅସାଧାରଣ କୃତିତ୍ୱ ଏଠାରେ ଏକାନ୍ତ ଉଲ୍ଲେଖ-ଯୋଗ୍ୟ[୮୯] । କାମଧର୍ମକୁ ପରମ ରସମୟ ରମଣୀୟତା ପ୍ରଦାନ ପୂର୍ବକ ତାହାକୁ ଜୀବନର ଉଚ୍ଚାଙ୍ଗ ଅନୁଭବରେ ରୂପାନ୍ତରିତ କରିବା ଏହି କାବ୍ୟର ଅନୁପମ ଭାବ ସଂପଦ । ସୁରୁଚି ଓ ସୌନ୍ଦର୍ଯ୍ୟ ପ୍ରତି କବିଙ୍କର ଗଭୀର ଆନୁଗତ୍ୟ ଏ ପ୍ରସଂଗରେ ଲକ୍ଷଣୀୟ[୯୦] ।

ପୁରୁଷୋତ୍ତମ ଦାସଙ୍କ 'କାଞ୍ଚି କାବେରୀ' କାବ୍ୟରେ ସଂଭୋଗ ଶୃଙ୍ଗାର ଭକ୍ତିକ ଅଲୌକିକତା ଆଶ୍ରିତ । ନାୟକ ନାୟିକାଙ୍କ ମଧ୍ୟରେ ପ୍ରାକୃତ ଚୁମ୍ବନ ଓ ଆଲିଙ୍ଗନାଦିର ବିନିମୟ ପରିବର୍ତ୍ତେ କବି ଅଭୂତ ଦୃଶ୍ୟ ପରିକଳ୍ପନା କରିଛନ୍ତି [୯୧] । ଜଗନ୍ନାଥଙ୍କର ଦକ୍ଷିଣ ପାଦରେ ପୁଂସତ୍ୱ ଆରୋପଣ ଓ ତାହାକୁ ସ୍ପର୍ଶ କରି ମାଣିକୀର ମଦନବାଞ୍ଛା ପୂରଣ–କେବଳ କାବ୍ୟିକ ଅତିରଞ୍ଜନ ନୁହେଁ, ଶୃଙ୍ଗାର ବିନ୍ୟାସର ପରିପନ୍ଥୀ ମଧ୍ୟ ।

ଦୀନକୃଷ୍ଣ ଦାସଙ୍କ 'ରସକଲ୍ଲୋଳ'ରେ ଗୋପାଙ୍ଗନାମାନଙ୍କ ସହ ଶ୍ରୀକୃଷ୍ଣଙ୍କ ଜଳକେଳି, ବସ୍ତ୍ରହରଣ, କାନନ ବିହାର ଆଦିର ବିସ୍ତୃତ ଓ ରସମୟ ଚିତ୍ର ପ୍ରଦତ୍ତ । ସଂଭୋଗ ବର୍ଣ୍ଣନାରେ ନାୟିକା ରାଧାଙ୍କର ଭୂମିକା ଗୌଣ । ଗୋଟିଏ ସ୍ଥାନରେ ଉଲ୍ଲିଖିତ ନାୟକ ନାୟିକାଙ୍କ ନିକୁଞ୍ଜ ବିଳାସ ଦୃଶ୍ୟ ଅତ୍ୟନ୍ତ ମନୋରମ [୯୨] । କିନ୍ତୁ ଏଥିରେ ସୁରତ ଲୀଳାର ସୂଚନା ନାହିଁ । ପ୍ରଣୟୀ ପ୍ରଣୟିନୀଙ୍କ ଅନୁରାଗମୟ ଉକ୍ତି ପ୍ରତ୍ୟୁକ୍ତି, ଦେହ ଓ ମନର ପ୍ରୀତି ପ୍ରସନ୍ନତା ଓ ପ୍ରକୃତିର ଲଳିତ ରୂପ ବିଭବ ଛନ୍ଦୋମୟ କାବ୍ୟିକ ରୀତିରେ ଅଭିବ୍ୟକ୍ତ । ନାରୀକୁ ବୀଣା ଓ କରଜ କ୍ଷତକୁ ଆଳାପନ ସହ ତୁଳନା କରି କବି ସଂଭୋଗ ବ୍ୟଂଜନାର ଅପୂର୍ବ ରମ୍ଯତା ସୃଷ୍ଟି କରିଛନ୍ତି ।[୯୩] କାମତ୍ରସ୍ତ ସଂସାରରେ କନ୍ଦର୍ପ ରସର ଶ୍ରେଷ୍ଠତ୍ୱ ଘୋଷଣା କରିବାକୁ ସେ ଟିକେ ହେଲେ କୁଣ୍ଠିତ ହୋଇ ନାହାନ୍ତି [୯୪] ।

ଉପେନ୍ଦ୍ର ଭଞ୍ଜଙ୍କ 'ଛାନ୍ଦ ଭୂଷଣ'ରେ ରାଧାଙ୍କ ପରିବର୍ତ୍ତେ ବୃନ୍ଦାବତୀ କାବ୍ୟ ନାୟିକା ରୂପେ ଗୃହୀତା । ନାୟକ ନାୟିକାଙ୍କ ସମ୍ଭୋଗ ବର୍ଣ୍ଣନା ଏଥିରେ ସଂକ୍ଷିପ୍ତ । ଗୋପାଙ୍ଗନାମାନଙ୍କ ସହ ରାସକେଳି ଅବସରରେ ଶ୍ରୀକୃଷ୍ଣ ବୃନ୍ଦାବତୀଙ୍କୁ ସଙ୍ଗରେ ଧରି ଅନ୍ତର୍ହିତ ହୋଇ ଯାଇଛନ୍ତି । ଉଭୟଙ୍କ ଉକ୍ତି ପ୍ରତ୍ୟୁକ୍ତିରେ ହୃଦୟର ପ୍ରୀତି ସାନ୍ଦ୍ରତା ପ୍ରସ୍ଫୁଟିତ ।[୯୫] କବି ସଂଭୋଗରେ ରତି ସମରର ନୈପୁଣ୍ୟ ଦେଖାଇବାକୁ କୁଣ୍ଠିତ । ଚୁମ୍ବନ ଓ ଆଲିଙ୍ଗନର ସମାବେଶରେ ପ୍ରେମର ବର୍ଣ୍ଣାଢ୍ୟ ଚିତ୍ର ଅଙ୍କନ କରିବାକୁ ସେ ଏଠାରେ ତତ୍ପର ।[୯୬] ତାଙ୍କର 'କଳା କଉତୁକ' କାବ୍ୟରେ ଚନ୍ଦ୍ରାବଳୀ ନାୟିକା ରୂପେ ଅବତୀର୍ଣ୍ଣା । ନାୟକ ନାୟିକାଙ୍କ ମିଳନ ଦୃଶ୍ୟର ଅଭାବ ହେତୁ କାବ୍ୟଟି ଅସଂପୂର୍ଣ୍ଣ ବୋଲି ଅନୁମାନ କରାଯାଏ ।

ଅଭିମନ୍ୟୁଙ୍କ 'ବିଦଗ୍ଧ ଚିନ୍ତାମଣି'ରେ ରାଧା ଓ କୃଷ୍ଣଙ୍କ ସଂଭୋଗ ଦୃଶ୍ୟର ଅବତାରଣା ସୁଦୀର୍ଘ ଏବଂ ପାରଂପରିକ । ଅଭିସାର, ନବ ସଂଗମ ରାତ୍ରି, ମିଳନ, ରତାନ୍ତ ବାହୁଡ଼ା, ସଖୀ ପରିହାସ ଆଦି କ୍ରମରେ କବି ମଧ୍ୟଯୁଗୀୟ କାବ୍ୟାଦର୍ଶର ସକଳ ବିଧାନକୁ ସାଧୁ ସ୍ୱୀକୃତି ଜଣାଇଛନ୍ତି । ନାୟିକାର ଅଭିସାରୀ ବେଶରେ ସେନାନୀତ୍ୱର ପରିକଳ୍ପନା ଏକାନ୍ତ ଅଭିନବ ।[୯୭] ସଂକେତ ସ୍ଥଳକୁ ତା'ର ଆଗମନ ପ୍ରସଙ୍ଗରେ କବି ଭାବନା ସତତ ତରଂଗାୟିତ । ସେ ସତେକି—ତାପ ଖଣ୍ଡନ କାରିଣୀ ସ୍ୱର ତରଙ୍ଗିଣୀ, ଅଶେଷ ଲକ୍ଷ୍ମୀ ସମନ୍ୱିତା ମହାଲକ୍ଷ୍ମୀ, ବାଞ୍ଛାଦାୟକ ଚିନ୍ତାମଣି, କୃପାସିନ୍ଧୁ ମିଳନାଭିଳାଷୀ ପ୍ରେମ-ଅମୃତ ନଦ ଇତ୍ୟାଦି । ନାୟକ ରାତ୍ରି ପ୍ରସଙ୍ଗ ଶୃଙ୍ଖଳା (ପର) ରୀତିରେ ରଚନା କରାଯାଇଥିବାରୁ ତାହା ଆବେଦନ ବିହୀନ । ଭଞ୍ଜୀୟ କାବ୍ୟଧାରା ଅନୁସରଣରେ କବି ସଂଭୋଗକୁ ବର୍ଷାକାଳ, କୃଷି, ମଲ୍ଲଯୁଦ୍ଧ, ଷଡ଼ଋତୁ ସହ ତୁଳନା କରିଥିବାରୁ ଏଠାରେ ଉପମା ବୈଚିତ୍ର୍ୟର ଅଭାବ ଦୃଷ୍ଟିଗୋଚର ହୁଏ[୯୮] । ଯେଉଁଠାରେ କିଞ୍ଚିତ୍ ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ତାହା ଏକାନ୍ତଭାବେ ଭକ୍ତିତତ୍ତ୍ୱ ଗର୍ଭିତ । ସହସ୍ର ଦଳ କମଳ, ମହାଯୋଗମାୟା ପୀଠ, ଷଡ଼ଶକ୍ତି, ଚାରିବର୍ଗ, ତୁରୀୟାନ୍ତ ଆଦିର ଉଲ୍ଲେଖ ଦ୍ୱାରା ନାୟକ ନାୟିକାଙ୍କ ମିଳନ ଚିତ୍ର ନୀରସ, ଜଟିଳ ଓ ପ୍ରାଣହୀନ ହେବା ସ୍ୱାଭାବିକ[୯୯] । ନାୟିକାର ରତ୍ୟାନ୍ତ ବାହୁଡ଼ା ଦୃଶ୍ୟ କିୟତ୍ ପରିମାଣରେ ରମଣୀୟ ଓ ରସସିକ୍ତ । ସର୍ବତ୍ର ଭାଷା ପ୍ରୟୋଗରେ ସଂସ୍କୃତାନୁରାଗ ଅଭିରୁଚି ଦେହୋପଭୋଗର ମଧୁରତା ଓ ତନ୍ମୟତା ପ୍ରକାଶ କରିବାରେ ଅସମର୍ଥ । କିନ୍ତୁ କବିଙ୍କ ଅଭିଜାତ ଶବ୍ଦ ବିନ୍ୟାସ ଦକ୍ଷତା ଓ ବିପୁଳ ଶାସ୍ତ୍ରଜ୍ଞାନ ତାଙ୍କ କବିତ୍ୱକୁ ଉଚ୍ଚ ଅହମିକା ପ୍ରଦାନ କରିଛି ।

ବ୍ରଜନାଥଙ୍କ 'ଶ୍ୟାମ ରାସୋତ୍ସବ'ର ବୃନ୍ଦାବତୀ-ସଂଭୋଗ ବର୍ଣ୍ଣନା ସହଜ ଓ ସରଳ ହେଲେ ହେଁ କାବ୍ୟିକ ପରିପାଟିରୁ ବିଞ୍ଚିତ[୧୦୦] । ରତି ଓ ବିପରୀତ ରତିର ସୂଚନା ମାତ୍ର ଏଥିରେ ପ୍ରଦତ୍ତ । ନାୟକ ନାୟିକାଙ୍କ ଆବେଗ, ଅନୁରାଗ ଓ ଅନୁଭୂତିର ଯଥାର୍ଥ ସ୍ୱାକ୍ଷର ଏହା ବହନ କରେ ନାହିଁ ।

କବିସୂର୍ଯ୍ୟ 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ'ରେ ରାଧା ଓ କୃଷ୍ଣଙ୍କ ମିଳନର ରସଚିତ୍ର ଅଙ୍କନ କରିବାରେ ଅପୂର୍ବ ସିଦ୍ଧିର ଅଧିକାରୀ । ବାସନ୍ତୀ ପ୍ରକୃତିର ମନୋହର ବିଳାସ ମଧ୍ୟରେ ନିକୁଞ୍ଜ-କେଳି-କଳାଭିଳାଷୀ ନାୟକ ନାୟିକା ଶ୍ୟାମ ଓ ଗୌର ଜ୍ୟୋତି ରୂପେ ଉଦ୍ଭାସିତ ହୋଇ ପରସ୍ପର ଆଲିଙ୍ଗନ ପାଶରେ ଆବଦ୍ଧ [୧୦୧] । ପ୍ରସଙ୍ଗତଃ ଗନ୍ଧାମୋଦିତ ପରିବେଶ, ଭ୍ରମର-ଶ୍ରେଣୀର ମଧୁ ଗୁଞ୍ଜନ, କୋକିଳ କୁଳର କଳଘୋଷ ସହ ପ୍ରଣୟୀ ପ୍ରଣୟିନୀଙ୍କର ଶ୍ରୀଅଙ୍ଗ ସୌରଭ, ମଞ୍ଜୀରର ନିକ୍ୱଣ, କଟିମେଖଳାର ରଣତ୍କାର ଆଦିର ସମାବେଶରେ ମିଳନ ମହୋଲ୍ଲାସର ପରିକଳ୍ପନା କବିଙ୍କ ଶିଳ୍ପକୁଶଳତାର ଚରମ ନିଷ୍ଠା ଘୋଷଣା କରେ । ଦେହୋପଭୋଗ ବର୍ଣ୍ଣନାରେ ଦେହକୁ ଉର୍ଦ୍ଧ୍ୱତନ ସୌନ୍ଦର୍ଯ୍ୟ ମଣ୍ଡିତ କରି ଆନନ୍ଦଲୋକ ସୃଷ୍ଟିର ରମଣୀୟ ପ୍ରଚେଷ୍ଟା ଏଠାରେ ବାସ୍ତବିକ ଅଭିନନ୍ଦନୀୟ । ନନ୍ଦନ ବନସ୍ଥ ପୁଷ୍ପବୃଷ୍ଟି, ଗନ୍ଧର୍ବମାନଙ୍କ ସଙ୍ଗୀତ ଗାନ, ଦେବଦାସୀମାନଙ୍କର ନୃତ୍ୟ, ଦେବଲୋକରେ ମର୍ଦ୍ଦଳଘୋଷ ଆଦିର ଉଲ୍ଲେଖ କବିଙ୍କ ଭକ୍ତି ବିହ୍ୱଳ ମାନସିକତାର ପରିଚୟ ବହନ କରେ । ଏତଦ୍‌ଭିନ୍ନ ନିର୍ମଳ କବିତ୍ୱର ମାନଦଣ୍ଡରେ ମଧ୍ୟ ସଂଭୋଗ ଦୃଶ୍ୟର ଉତ୍କର୍ଷକୁ ଅସ୍ୱୀକାର କରାଯାଇ ନପାରେ । ସୁରତାନ୍ତ ରତ୍ନରେ ନାୟକ ଚରିତ୍ରର ପୂର୍ବ ସୌନ୍ଦର୍ଯ୍ୟ ଅକସ୍ମାତ୍ ଶିଥିଳ ହୋଇ ପଡ଼ିଛି [୧୦୨] । ଏଥିରେ ସଂକୁଚିତ ଆଦର୍ଶ ଓ ସାମନ୍ତୀୟ ଜୀବନ ଦୃଷ୍ଟି ଉତ୍କୀର୍ଣ୍ଣ ।

ହରିବଂଶ ରାୟଙ୍କ 'ପ୍ରେମ କଳ୍ପଲତା' କାବ୍ୟରେ ଶ୍ରୀମତୀସଂଭୋଗ ଚିତ୍ରଣ ବୈଚିତ୍ର୍ୟମୟ । ଛଦ୍ମବେଶୀ ନାୟକ ଶ୍ରୀକୃଷ୍ଣ ବାରମ୍ବାର ନାୟିକା ନିକଟରେ ପ୍ରଣୟ ପ୍ରାର୍ଥୀ । ଏକଦା ବକ୍ଷରେ କଦମ୍ବ ପୁଷ୍ପ ଓ ଗ୍ରେଳି, ମସ୍ତକରେ ବେଣୀ, ଅଙ୍ଗରେ ପଟନୀ ଶାଢ଼ୀ, ହସ୍ତରେ ମଣିମୟ ଚୂଡ଼ି, ଅଙ୍ଗୁଳିରେ ମାଣିକ୍ୟ ମୁଦ୍ରିକା ଆଦି ଧାରଣ କରି ସେ ମଦନକୁଞ୍ଜରେ ଉପସ୍ଥିତ । ରଚୁବାଣୀ, ଚୁମ୍ବନ ଓ ଆଲିଙ୍ଗନ ବିଧାନରେ ତାଙ୍କ ବକ୍ଷ ଦେଶର କଦମ୍ବ ପୁଷ୍ପ ସ୍ଥାନ ଚ୍ୟୁତ ହେବାରୁ ସେଦିନ ମାନିନୀ ରାଧାଙ୍କର ଦୁର୍ଜ୍ଜୟ ମାନ ସହସା ଅପସାରିତ ହୁଏ । ଆଉ ଥରେ ରଜାଙ୍କର ଜ୍ୟେଷ୍ଠା ଭଗ୍ନୀ ରୂପେ ସେ

ଲଟିଲାପୁରରେ ପ୍ରବେଶ କରି ନାୟିକା ସହ ପରମ ଉଲ୍ଲାସରେ ରାତ୍ରି ଯାପନ କରନ୍ତି ।[୧୦୩] ଚେତନାହତା ରାଧାଙ୍କୁ ଚିକିତ୍ସା ପାଇଁ ବିଦ୍ୟାବାଳୀ ରୂପେ ନାୟକର ଆଗମନ ଓ ଚନ୍ଦ୍ରଶାଳାପୁରରେ ଦୁହିଁଙ୍କର ଏକତ୍ର ଅବସ୍ଥାନ ପୂର୍ବପ୍ରସଂଗ ପରି ଏକ ରସାଳ କଳ୍ପନା ।[୧୦୪] କିନ୍ତୁ ମିଳନ ବର୍ଣ୍ଣନାରେ ରୁଚିତା ଓ ସଂଯମ ସର୍ବତ୍ର ପରିଲକ୍ଷିତ । କବିଙ୍କର ଭକ୍ତି ତନ୍ମୟ ଦୃଷ୍ଟିରେ ଏଭଳି ସମ୍ଭୋଗ ଚର୍ଯ୍ୟା ଗୌରବହୀନ ହୋଇ ନପାରେ । ମାତ୍ର ନାୟକର ଚାରିତ୍ରିକ ମହତ୍ତ୍ୱ ଯେ ଏଥିରେ କ୍ଷୁର୍ଣ୍ଣ ହୋଇଛି ଏହା ନିଃସନ୍ଦେହ ।

ଉପ ନାୟିକା—ବୈଷ୍ଣବ ଧର୍ମ ଓ ସଂସ୍କୃତି ପରଂପରାରେ ନାୟିକା ରୂପେ ରାଧାଙ୍କ ଶ୍ରେଷ୍ଠତ୍ୱ କୀର୍ତ୍ତିତ । କିନ୍ତୁ କାବ୍ୟ ପରଂପରାରେ ଏହା ସର୍ବତ୍ର ସ୍ୱୀକୃତ ହୋଇନାହିଁ । ବୃନ୍ଦାବତୀ ଓ ଚନ୍ଦ୍ରାବଳୀଙ୍କୁ ଅନେକ କ୍ଷେତ୍ରରେ ଆମେ କାବ୍ୟ-ନାୟିକା ରୂପେ ଦେଖିବାକୁ ପାଉଁ । ମାତ୍ର ରାଧା ଯେଉଁଠାରେ ମୁଖ୍ୟ ନାୟିକା ରୂପେ ଅବତୀର୍ଣ୍ଣା ସେଠାରେ ଏମାନେ ଉପନାୟିକା ରୂପେ ପ୍ରତିଷ୍ଠିତା । ମାତ୍ର କୁବୁଜାର ଉପନାୟିକାତ୍ୱ ସର୍ବତ୍ର ସ୍ୱୀକୃତ ।

ଦୀନକୃଷ୍ଣଙ୍କ 'ରସକଲ୍ଲୋଳ'ରେ (କଂସ ନିଧନ ଅନ୍ତେ) ଶ୍ରୀକୃଷ୍ଣଙ୍କ କୁବୁଜା ରମଣ ଏକ ବଳିଷ୍ଠ ପ୍ରୀତି ପ୍ରସଙ୍ଗ । ଏଠାରେ ଉପନାୟିକା ବାସ ସଜ୍ଜିକା ଓ ନାୟକ ରସିକରାଜ ।[୧୦୫] କୁବୁଜାପୁରୀର ଅତୁଳନୀୟ ସାଜସଜ୍ଜା ନିକଟରେ କୁବେରପୁର ନିନ୍ଦିତ । ପ୍ରିୟତମର ଅଭ୍ୟର୍ଥନା ଲାଗି ବିପୁଳ ଆୟୋଜନର ଚିତ୍ର ଅତ୍ୟନ୍ତ ମନୋରମ । ସଂଭୋଗ ବର୍ଣ୍ଣନା ସଂକ୍ଷିପ୍ତ ଓ ମାର୍ଜିତ ।[୧୦୬] ଭକ୍ତି ଭାବନାର ବିସ୍ତୃତ ପରିଧି ଭିତରେ ଦେହସର୍ବସ୍ୱତା ନିଷିଦ୍ଧ ପ୍ରାୟ ।

ଭୂପତି ପଣ୍ଡିତଙ୍କ 'ପ୍ରେମ ପଞ୍ଚାମୃତ'ରେ ବୃନ୍ଦାବତୀ-ଶ୍ରୀକୃଷ୍ଣ ଅନ୍ତର୍ଦ୍ଧାନ ପ୍ରସଙ୍ଗ ବର୍ଣ୍ଣିତ । ନିର୍ଜ୍ଜନ ବିହାର ଓ ସୁରତ ବିଳାସ ଥିଲା ନାୟକର ଏକାନ୍ତ ଅଭିଳାଷ ।[୧୦୭] କିନ୍ତୁ ସ୍କନ୍ଧାରୋହିଣୀ ଏହି ଗୋପାଙ୍ଗନାଠାରେ ଗର୍ବ ଭାବନା ଜାତ ହେବାରୁ ସେ ପଥ ମଧ୍ୟରେ ପରିତ୍ୟକ୍ତା । (କାବ୍ୟରେ ରାଧା ଗର୍ବରହିତା, ସଦ୍‌ଗୁଣବତୀ, ପ୍ରିୟଗତପ୍ରାଣା ହୋଇ ଥିବାରୁ ବୃନ୍ଦାବତୀର ଉପନାୟିକାତ୍ୱ ସୁସ୍ପଷ୍ଟ) ।

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ 'ଯୁଗଳ ରସାମୃତ ଭଉଁରୀ'ରେ ବର୍ଣ୍ଣିତ ଚନ୍ଦ୍ରାବଳୀ ସଂଭୋଗ ଚିତ୍ର ଅଭିନବ କାବ୍ୟ-ବ୍ୟଂଜନା ସମୃଦ୍ଧ [୧୦୮] । ପାରଂପରିକତା ପରିହାର କରି ପ୍ରସଙ୍ଗକ୍ରମେ କବି ଏଠାରେ ଯେଉଁ ସୁସ୍ୱାଦୁ ଭୋଜନର ପରିକଳ୍ପନା କରିଛନ୍ତି ତାହା ତାଙ୍କ ଉତ୍ତମ ରସିକତା ଓ କଳା କୁଶଳତାର ପରିଚୟ ପ୍ରଦାନ କରେ । କିନ୍ତୁ 'ପ୍ରେମ ତରଂଗିଣୀ'ର ଏହି ବିଭବ ଏକାନ୍ତ ଗତାନୁଗତିକ [୧୦୯] ।

ଅଭିମନ୍ୟୁଙ୍କ 'ବିଦଗ୍ଧ ଚିନ୍ତାମଣି'ରେ ଚନ୍ଦ୍ରାବଳୀ ସଂଭୋଗ ବର୍ଣ୍ଣନା ବିସ୍ତୃତ ଓ ପରଂପରାନୁସାରୀ । ସଂକେତ ସ୍ଥଳରେ ଦୁହିଁଙ୍କର ମିଳନ ନିମନ୍ତେ ସଖୀ ମନ୍ତ୍ରଣା ଓ ଆୟୋଜନ ଯଥାରୀତି ସମାହିତ । ନାୟକର ଘଟ୍ଟ ଅଳଂକାର (ନିୟମ ଯମକ) ସର୍ବସ୍ୱ ହୋଇଥିବାରୁ ଭବୋଦ୍ଦୀପକତା ବ୍ୟାହତ ହେବା ସ୍ୱାଭାବିକ । ତଥାପି ପୁରୁଷର କାମାତୁରତା ସ୍ଥଳ ବିଶେଷରେ ନଗ୍ନ ଓ ପ୍ରତ୍ୟକ୍ଷ [୧୧୦] । ସଂଭୋଗ ଦୃଶ୍ୟ କାମ ଶାସ୍ତ୍ରୀୟ କହିଲେ ଅତ୍ୟୁକ୍ତି ହେବନାହିଁ । ବ୍ୟଂଜନାର ଅଭାବ ହେତୁ ଏହା କେବଳ ବର୍ଣ୍ଣନାତ୍ମକ କଥା-ରୀତିରେ ପରିଣତ ହୋଇଛି [୧୧୧] । ନାରୀ ପୁରୁଷର ହୃଦୟୋଦ୍ଦୀପକତା ଏଥିରେ ପ୍ରକାଶ ପାଇନାହିଁ । ତେବେ ନାୟିକା ସଂଭୋଗ ପ୍ରସଙ୍ଗ ତୁଳନାରେ ଏହା ଅଧିକ ବାସ୍ତବଧର୍ମୀ ।

'ପ୍ରେମ କଳ୍ପଲତା'ରେ ଚନ୍ଦ୍ରାବଳୀ-ସଂଭୋଗ ସଂକ୍ଷିପ୍ତ ଓ ସହଜ [୧୧୨] । ଏଥିରେ ଦେହ-ବିଳାସର ସାମାନ୍ୟତମ ସୂଚନା ମଧ୍ୟ ନାହିଁ [୧୧୩] । କବିଙ୍କ ଭକ୍ତି ଭାବନା କାମ ଗନ୍ଧଠାରୁ ଦୂରରେ ରହିବାକୁ ସଦା ସଚେତନ ବୋଲି ମନେହୁଏ ।

## ବହୁ ନାୟିକା–

ରାସଲୀଳା–ଜଳକ୍ରୀଡ଼ା ପ୍ରସଙ୍ଗରେ ଶ୍ରୀକୃଷ୍ଣଙ୍କ ବହୁନାୟିକା ସଂଭୋଗ ଧାର୍ମିକ ଓ କାବ୍ୟିକ ପରଂପରାରେ ସ୍ୱୀକୃତ । ସକଳ କ୍ଷେତ୍ରରେ ନାୟକର

ଅଲୌକିକ ଲୀଳା ଉପରେ ପ୍ରାଧାନ୍ୟ ଦିଆଯାଇଛି । ଶ୍ରୀମଦ୍ ଭାଗବତ ଓ ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତ ଅବଲମ୍ବନରେ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ନାୟକର ସ୍ଥିର ବୀର୍ଯ୍ୟତ୍ୱ ଓ ଅକ୍ଷୁଣ୍ଣ ଚରିତ୍ର ଉପରେ ଗୁରୁତ୍ୱ ଆରୋପ କରିଛନ୍ତି [୧୧୪] । ଏଠାରେ ବିଷୟଟିର ପୌରାଣିକ ଭିତ୍ତି ଓ ଦାର୍ଶନିକ ବିଚାର ଅତିରିକ୍ତ କେବଳ ଶୃଙ୍ଗାର ଚେତନାର ପରିଣତି ସଂପର୍କିତ ଆଲୋଚନା ଆମର କାମ୍ୟ ।

ଦେବ ଦୁର୍ଲଭଙ୍କ 'ରହସ୍ୟ ମଂଜରୀ'ରେ ନୃତ୍ୟ ଗୀତ, ବାଦ୍ୟର ବିପୁଳ ସଂଭାର ମଧ୍ୟରେ ରାସଲୀଳାନୁଷ୍ଠାନର ଦୃଶ୍ୟ ପରିକଳ୍ପିତ । ଉତ୍ସବର ଉନ୍ମତ୍ତ ପରିବେଶରେ ଗୋପାଙ୍ଗନାଗଣ ଶ୍ରୀକୃଷ୍ଣଙ୍କ ସହ ଶୃଙ୍ଗାର ବିଳାସରେ ନିମଜ୍ଜିତା ହେବାପାଇଁ ବ୍ୟାକୁଳ [୧୧୫] । ସେମାନଙ୍କ ମଦନବାଞ୍ଛା ପରିପୂରଣ ନିମିତ୍ତ ନାୟକ ଏକତ୍ର ଅନେକ ହୋଇ ପ୍ରତ୍ୟେକଙ୍କ ସହ ଲୀଳା ରଚନା କରିଛନ୍ତି । ଏଥିରେ ଦେହ ଭୋଗର ବିଶଦ ଚିତ୍ର ଅପେକ୍ଷା ମିଳନ ତନ୍ମୟତାର ପବିତ୍ର ଭାବ ସୌନ୍ଦର୍ଯ୍ୟ ବିଶେଷ ରୂପେ ଅଭିବ୍ୟକ୍ତ [୧୧୬] । କବିଙ୍କ ଦୃଷ୍ଟି ଏକାନ୍ତ ଭାବେ ଭକ୍ତିକୈନ୍ଦ୍ରିକ । କିନ୍ତୁ ଆନନ୍ଦ ମୁଖରିତ ନିକୁଞ୍ଜ ଭୂମି ଓ କାମୋଲ୍ଲାସର ବର୍ଣ୍ଣନା ଯଥାର୍ଥତଃ ମନୋହର ।

ରାମ ଦାସଙ୍କ 'ଗୋପୀ ଚନ୍ଦନ' କାବ୍ୟର ବର୍ଣ୍ଣନାନୁସାରେ ରାସ ମିଳନ ଦ୍ୱାରକାପୁରୀରେ ଅନୁଷ୍ଠିତ । ଏଥିରେ ଗୋପାଙ୍ଗନାମାନଙ୍କ ସହ ଅଷ୍ଟପାଟବଂଶୀ ମଧ୍ୟ ରାସମଣ୍ଡଳୀରେ ଯୋଗ ଦେଇଛନ୍ତି [୧୧୭] । ଉତ୍ସବର ଆରମ୍ଭରେ ନବ ବସନ୍ତର ସମାଗମ ଏବଂ ନାୟିକାମାନଙ୍କର ଗୀତ, ବାଦ୍ୟ ଓ ନୃତ୍ୟର ସମାବେଶ ଅତ୍ୟନ୍ତ ରୁଚିପୂର୍ଣ୍ଣ ଢଂଗରେ ଚିତ୍ରିତ । ସକଳ ପ୍ରେୟସୀଙ୍କ ସହ ମାୟା କୃଷ୍ଣଙ୍କର ରାସ ବିଳାସ ଦେହାଶ୍ରୟୀ ହେଲେ ହେଁ କାମୁକତାମୁକ୍ତ । ସାମଗ୍ରିକ ଭାବରେ ଏହା ଭକ୍ତି ଭାବ ପ୍ରଧାନ । ପ୍ରକାଶ ରୀତି ସରଳ ଓ ଜଟିଳ ତତ୍ତ୍ୱ ବିବର୍ଜିତ । 'ରହସ୍ୟ ମଂଜରୀ' ଓ 'ଗୋପୀ ଚନ୍ଦନ' କାବ୍ୟ ଦ୍ୱୟ ସମ ବିଷୟ ଆଧାରିତ । ମାତ୍ର କବି ଦୃଷ୍ଟି ସଂପୂର୍ଣ୍ଣ ପୃଥକ୍ ।

ଦୀନକୃଷ୍ଣଙ୍କ 'ରସକଲ୍ଲୋଳ'ର ଗୋପୀ-କୃଷ୍ଣ ଲୀଳା ପ୍ରସଙ୍ଗ ଋତୁ ପର୍ଯ୍ୟାୟ କ୍ରମେ ବିବୃତ । ନାୟକର ଗୋପୀମାନଙ୍କ ସହ ହିମ ଋତୁକାଳୀନ ପ୍ରୀତି, ପରିହାସ ଓ ସମ୍ଭୋଗ-କେଳି-କୌତୁକ ଚିତ୍ର ସରସ ଓ ରସସିକ୍ତ [118] । ଆଲିଙ୍ଗନ ଓ କୁଚ ପରିରମ୍ଭାଦି ଏଥିରେ ସୂଚିତ ହୋଇ-ଥିଲେ ମଧ୍ୟ ତାହା ସ୍ଥୂଳତା ଦୋଷମୁକ୍ତ । ଏଠାରେ କବିଙ୍କ ଶୃଙ୍ଗାର ଭାବନା କାମଶାସ୍ତ୍ରର ବିହିତ ଗଣ୍ଡି ଅତିକ୍ରମ କରି ରସାନୁଭବର ଏକ ସ୍ୱପ୍ନଲୋକ ସୃଷ୍ଟି କରିଛି । ତାଙ୍କ ଦୃଷ୍ଟିରେ କାମର ମହିମା କୀଟଠାରୁ ବ୍ରହ୍ମ ପର୍ଯ୍ୟନ୍ତ ପରିବ୍ୟାପ୍ତ । ଶିଶିର ଋତୁରେ ଗୋପାଙ୍ଗନାମାନଙ୍କ ସହ ଶ୍ରୀକୃଷ୍ଣଙ୍କ କାମ-କୌତୁକ ଅତ୍ୟନ୍ତ ରସିକତାପୂର୍ଣ୍ଣ । ପ୍ରସଙ୍ଗ ସଂକ୍ଷିପ୍ତ କିନ୍ତୁ ପ୍ରୀତି ମଧୁର [119] । ବସନ୍ତ ପ୍ରକୃତି ଓ ନାୟିକା ସମାବୃତା କୃଷ୍ଣଙ୍କ କୁସୁମ କାନନ ବିହାର ବର୍ଣ୍ଣନା ବିସ୍ତୃତ । ଯୁବତୀମାନଙ୍କ ପରସ୍ପର ହାସ ପରିହାସରେ ଋତୁ ସୌନ୍ଦର୍ଯ୍ୟ ଓ କୃଷ୍ଣ-ପ୍ରୀତି ଚିନ୍ତା ହୃଦୟ ରସରେ ରସାଣିତ । ସ୍ଥଳ ବିଶେଷରେ ସଂଭୋଗ ବିଧାନଗତ ବଂଧ ସଂଯୋଗ ବିଧିର ଉଲ୍ଲେଖ ଦେଖାଯାଏ [୧୨୦] । କିନ୍ତୁ ତାହା ଏପରି ଗୌଣ ଯେ କବିଙ୍କ କାବ୍ୟଯଶରେ କୌଣସି ଅନ୍ତରାୟ ସୃଷ୍ଟି କରେ ନାହିଁ । ଗ୍ରୀଷ୍ମ କାଳୀନ ଜଳକେଳି ଓ ବସ୍ତ୍ରହରଣ ପ୍ରସଙ୍ଗ ଯୌବନର ଉଦ୍‌ବେଳିତ ପ୍ରୀତି ବିଳାସରେ ମୂର୍ଚ୍ଛିତ [୧୨୧] । ସ୍ନାନାନ୍ତ ରମଣୀମାନଙ୍କର ଅନାବୃତ ଦେହଶୋଭା ବର୍ଣ୍ଣନା କେବଳ ଅଶ୍ଳୀଳତା ରହିତ ନୁହେଁ, ସୌନ୍ଦର୍ଯ୍ୟସ୍ନିଗ୍ଧ ମଧ୍ୟ । ଶାରଦୀୟ ବିହାର ଦୁଇ ପର୍ଯ୍ୟାୟରେ ବିଭକ୍ତ । ପ୍ରଥମଟିରେ କୃଷ୍ଣଙ୍କ ବେଣୁନାଦ ହେତୁକ ଯୁବତୀ ମାନଙ୍କର ବିଭ୍ରମ ବେଶ ବାସରେ ନିକୁଞ୍ଜ ଅଭିସାର, କେଳି କୁଞ୍ଜରେ ନୃତ୍ୟଗୀତ ଓ ସଂଭୋଗ ବିଳାସ ବର୍ଣ୍ଣିତ [୧୨୨] । ରାଧାଗର୍ବ ମୋଚନୋତ୍ତର ମହାରାସର ବର୍ଣ୍ଣନା ଦ୍ୱିତୀୟ ପର୍ଯ୍ୟାୟର ଅନ୍ତର୍ଗତ । ଏଠାରେ କୃଷ୍ଣଙ୍କ ବହୁ କୃଷ୍ଣତ୍ୱ ସକଳ ଗୋପରମଣୀଙ୍କ ସହ ରମଣର ଚିତ୍ର ପରିଦୃଷ୍ଟ । ରତିକ୍ରୀଡ଼ାର ବିବରଣ ଦେବାକୁ ଯାଇ କବି କାମଶାସ୍ତ୍ରୀୟ ପ୍ରଗଳ୍‌ଭତା ପ୍ରକାଶ କରିଛନ୍ତି । ସଂଭୋଗ ସହ ସମର, କୃଷି, ବର୍ଷାକାଳର ତୁଳନାରୁ ପରମ୍ପରା ପ୍ରତି ତାଙ୍କର ସମର୍ଥନ ସୂଚିତ୍ [୧୨୩] । ଏ ସ୍ଥଳରେ କବି କଳ୍ପନା ବୈଚିତ୍ର୍ୟହୀନ ହେବା ସ୍ୱାଭାବିକ । ଅନ୍ୟତ୍ର ପ୍ରେମର ବିବିଧ ରଂଗ ରଙ୍ଗ ମଞ୍ଜୁଳ ଭାବ ଓ ଭାଷା ସମନ୍ୱୟରେ ପ୍ରକାଶିତ । 'ରସକଲ୍ଲୋଳ' ବର୍ଣ୍ଣିତ ରାସଲୀଳାର ବିସ୍ତୃତି

ଓ ପ୍ରୀତି ରସମୟତା ଓଡ଼ିଆ କାବ୍ୟ ଜଗତରେ ଅତୁଳନୀୟ । ସବୁଠାରୁ ଉଲ୍ଲେଖଯୋଗ୍ୟ ଏହି ଯେ ସଂଭୋଗ ଚିତ୍ରଣରେ କବି ସର୍ବତ୍ର ନିଜସ୍ୱ ଭକ୍ତି ବିହ୍ୱଳତାର ସ୍ୱାକ୍ଷର ଅଙ୍କନ କରିଯାଇଛନ୍ତି । ସୁତରାଂ 'ରସକଲ୍ଲୋଳ'ର ଦେହୀ କୃଷ୍ଣ-ଗୋପାଙ୍ଗନା ମିଥୁନ ମୂର୍ତ୍ତି ନିକଟରେ ଜଣେ ଭକ୍ତ କବିର କୋଟି ନମସ୍କାର ଅଜାଡ଼ି ହୋଇପଡୁଥିବାର ଆମେ ଦେଖୁ ।

ଭୂପତିଙ୍କ 'ପ୍ରେମ ପଞ୍ଚାମୃତ'ରେ ରାସଲୀଳା ପୂର୍ବରୁ କୃଷ୍ଣ ଓ ଗୋପାଙ୍ଗନାଙ୍କ ଗାନ୍ଧର୍ବ ବିବାହର ଉଲ୍ଲେଖ ଦେଖାଯାଏ । ବୃକ୍ଷଲତା,ଫଳପୁଷ୍ପ, ଖଗ ମୃଗାଦି ପ୍ରକୃତିର ସକଳ ଅଙ୍ଗ ଏହି କାର୍ଯ୍ୟ ସମ୍ପାଦନରେ ସହଯୋଗ କରିଛନ୍ତି [୧୨୪] । କୃଷ୍ଣଙ୍କର ମାୟା ରୂପ ଧାରଣ ଓ ଗୋପ ଯୁବତୀଙ୍କ ସହ ନୃତ୍ୟ ଗୀତ, ଆମୋଦ ବିଳାସର ବର୍ଣ୍ଣନା ଏଠାରେ ଅତୀବ ମନୋଜ୍ଞ । ସେହି ଅପୂର୍ବ ରାସ ସନ୍ଦର୍ଶନରେ ଜଡ଼ରେ ଜୀବନ ଓ ଜୀବନରେ ଜଡ଼ ଭାବ ସଞ୍ଚରିତ [୧୨୫] । ନୃତ୍ୟାନ୍ତରେ ସୁରତ ଲୀଳାର ଚିତ୍ର ପ୍ରଦତ୍ତ । ସ୍ଥାନେ ସ୍ଥାନେ ଦେହଭୋଗର ସୂଚନା ପ୍ରତ୍ୟକ୍ଷ, ମାତ୍ର ସଂକ୍ଷିପ୍ତ [୧୨୬] । ପ୍ରକୃତିର ମନୋହର ଦୃଶ୍ୟ ପରିକଳ୍ପନା, ନାୟକ ନାୟିକାଙ୍କ ଅନୁରାଗ ସ୍ନିଗ୍ଧ ଭାବଭଙ୍ଗୀ ଓ ଭାଷାର ଅକୃତ୍ରିମତା ଦୃଷ୍ଟିରୁ ପ୍ରସଙ୍ଗଟିର ରସଘନ ଉତ୍କର୍ଷ ସ୍ୱୀକୃତ ।

ଉପେନ୍ଦ୍ରଙ୍କ 'ଛାନ୍ଦ ଭୂଷଣ'ର କୃଷ୍ଣଗୋପାଙ୍ଗନା ରାସ ଚିତ୍ର ପୂର୍ବବର୍ତ୍ତୀ କାବ୍ୟ ସମୂହର ଗୌରବ ଲାଭ କରିପାରିନାହିଁ । ନାୟକର ବହୁରୂପ ଧାରଣରେ କବି ଯୋଗମାୟାଙ୍କ ପ୍ରଭାବ ଦର୍ଶାଇଛନ୍ତି [୧୨୭] । ଚୁମ୍ବନ, ଆଲିଙ୍ଗନ, ନଖକ୍ଷତ ଆଦିର ଉଲ୍ଲେଖ ଆବେଦନହୀନ । ଯୁବତୀମାନଙ୍କ ଜାନୁ ସିଂହାସନ ଆରୋହଣରେ ନାୟକର ଯୁବରାଜ ଭାବନା ମଧ୍ୟଯୁଗୀୟ ଜୀବନାଦର୍ଶ ଭିତ୍ତିକ [୧୨୮] । ଆଲଂକାରିକ ଭାଷା ପ୍ରୟୋଗ ହେତୁ ଅନେକ ସ୍ଥଳ ରସହୀନ ମନେହୁଏ ।

ବ୍ରଜନାଥଙ୍କ 'ଶ୍ୟାମ ରାସୋତ୍ସବ'ର ରାସ ବର୍ଣ୍ଣନା ବିଶେଷ ଭାବେ ଦେହଭୋଗ ଆଧାରିତ [୧୨୯] । ଏଥିରେ କେଳି କୁଞ୍ଜ ବିଳାସ କିମ୍ବା ନାୟକ ନାୟିକା ଚରିତ୍ରର ସରସତା ଏକାନ୍ତ ଦୁର୍ଲଭ ।

ରଙ୍ଗଲୀଳା—ଛଦ୍ମବେଶୀ ଶ୍ରୀକୃଷ୍ଣଙ୍କ ଗୋପୀ ସମ୍ଭୋଗ ଏହି ଲୀଳାର ଅନ୍ତର୍ଗତ । କେତେବେଳେ କାଚରା, ଶଙ୍ଖାରୀ, କୈବର୍ତ୍ତ ଆଦି (ପୁରୁଷ) ବେଶରେ; କେତେବେଳେ ନାପିତୁଣୀ, ଶବରୁଣୀ, ରଜକିନୀ ଆଦି (ନାରୀ) ବେଶରେ; କେତେବେଳେ କଳାଭୂତ ରୂପରେ ତାଙ୍କର ଆବିର୍ଭାବ ବୈଷ୍ଣବ କାବ୍ୟ ପରମ୍ପରାରେ ସୁପରିଚିତ । ଏହି ସକଳ ଅଲୌକିକତାରେ କବିର ଭକ୍ତି ତନ୍ମୟ ଦୃଷ୍ଟି କୌଣସି ଅସଙ୍ଗତି ଦେଖେନାହିଁ । କାଳିନ୍ଦୀଚରଣ ପାଣିଙ୍କ ଭାଷାରେ—"ରାଧା ଯେ ଶ୍ୟାମଙ୍କର ଉପଭୋଗ୍ୟା ଏ ବିଷୟରେ କୌଣସି ଅସଙ୍ଗତି ନାହିଁ । ଅତଏବ ସେ ବିଷୟରେ ସର୍ବପ୍ରକାର ଛଳନା, ବଞ୍ଚନା ନିର୍ଲଜ୍ଜତା ଓ ଦୁଃସାହସ ଲୌକିକ ବିଚାରର ଅତୀତ । ଏହି ସମସ୍ତ ଆଶ୍ରୟ କରି ରଙ୍ଗ ରସିକତା ପଦ୍ୟାବଳୀ ସାହିତ୍ୟରେ ରସ ସୃଷ୍ଟିର ଅଙ୍ଗୀଭୂତ ହୋଇଅଛି" [୧୩୦] । ଗୋଟିଏ ଯୁଗର ସାହିତ୍ୟ ହିସାବରେ ଏହାକୁ ଉପେକ୍ଷା କରାଯାଇନପାରେ ।

'ରସକଲ୍ଲୋଳ'ରେ କାଚରା, ଶଙ୍ଖାରୀ, କୈବର୍ତ୍ତ, ମାଳୀ, କଳାଭୂତ, ଘଟୁଆଳ ଆଦି ରୂପେ ଶ୍ରୀକୃଷ୍ଣଙ୍କ ଆବିର୍ଭାବ ଯଥାରୀତି ଉଲ୍ଲିଖିତ [୧୩୧] । ଗୋପୀମାନଙ୍କ ସହ ନାୟକର ପରିହାସ ଛଳରେ କଟି, କୁଚ, କଟାକ୍ଷାଦିର ଶୃଙ୍ଗାରସିକ୍ତ ବର୍ଣ୍ଣନା ଏ ସ୍ଥଳରେ ପ୍ରଦତ୍ତ । 'ଛାନ୍ଦ ଭୂଷଣ'ର ନାୟକ ମାର୍ଜାର, ଭଗିନୀ, ଧୀବର, ଘଟୁଆଳ, କାଚରା, ଭୂତ ରୂପ ଧାରଣ କରି ଗୋପ-ଯୁବତୀଙ୍କ ସହ ରତି ଲୀଳାରେ ଲିପ୍ତ [୧୩୨] ।'ବିଦଗ୍ଧ ଚିନ୍ତାମଣି'ରେ ସପ୍ତନାରୀ ବେଶ (ଶବରୁଣୀ, ନାପିତୁଣୀ, ଗନ୍ଧିନୀ, ଗାୟେଣୀ, କାଚରାଣୀ, ରଜକିନୀ, ପାଟରାଣୀ) ଧାରଣ କରି ରାଧାଙ୍କ ସହ ନାୟକର ପ୍ରୀତିପରିହାସ ତଥା ପରସ୍ପର ଚୁମ୍ବନ ଓ ଆଲିଙ୍ଗନର ସରସ ବର୍ଣ୍ଣନା ଦେଖିବାକୁ ମିଳେ [୧୩୩] ।

ପ୍ରସଙ୍ଗ କ୍ରମେ ଶ୍ରୀକୃଷ୍ଣଙ୍କ ଶୈଶବ ରଙ୍ଗଲୀଳା ମଧ୍ୟ ଏଠାରେ ଉଲ୍ଲେଖଯୋଗ୍ୟ । ଅବାସ୍ତବ ହେଲେ ହେଁ ଭକ୍ତି ରସାପ୍ଲୁତ କବି ହୃଦୟ ଏହାକୁ ଅସ୍ୱୀକାର କରିପାରିନାହିଁ । କିନ୍ତୁ ଏପରି ବର୍ଣ୍ଣନା ଯେ ଏକାନ୍ତଭାବେ ଭକ୍ତିକ ଅତିରଞ୍ଜନ ଏଥିରେ ଦ୍ୱିମତ ହେବାର ନାହିଁ । ଦନାଇ ଦାସଙ୍କ

'ଗୋପୀ ଭଷାରେ' ଏହାର ଶୃଙ୍ଗାରସିକ୍ତ ଚିତ୍ର ପ୍ରଦତ୍ତ । ଶିଶୁ କୃଷ୍ଣ କେଉଁଠାରେ ସ୍ତନାଲିଙ୍ଗନ ଓ ଚୁମ୍ବନ ଦାନ ପୂର୍ବକ କେଉଁ ଗୋପୀକୁ କାମଜ୍ୱାଳାରେ ପୀଡ଼ିତା କରିଛନ୍ତି ତ କେଉଁଠାରେ ତରୁଣ ରୂପ ଧାରଣ ପୂର୍ବକ କେଉଁ ଗୋପୀକୁ ଚତୁଃଷଷ୍ଠୀ ବଂଧ ବିଧାନରେ ସୁରତି ସୁଖ ପ୍ରଦାନ କରିଛନ୍ତି [୬୩୫] । ଭଷା ସ୍ୱଚ୍ଛନ୍ଦ ଓ ରସସିକ୍ତ ହୋଇ ଥିବାରୁ କାବ୍ୟଟିର ଆଦର ସୀମାତୀତ । ଉପେନ୍ଦ୍ରଙ୍କ 'ଛାନ୍ଦ ଭୂଷଣ'ରେ ଏହି ପ୍ରସଂଗ ସଂକ୍ଷିପ୍ତ ସ୍ଥାନ ଅଧିକାର କରିଛି । ଶିଶୁ କୃଷ୍ଣ ତରୁଣ ରୂପରେ ଆବିର୍ଭୂତ ହୋଇ କୌଣସି ଗୋପୀ ସହ ସଂଶ୍ଳେଷଲିପ୍ତ ହେବାର ବର୍ଣ୍ଣନା ଏଥିରେ ପ୍ରଦତ୍ତ [୬୩୬] ।

ଅଳଂକାର ଶାସ୍ତ୍ରର ନିଷେଧ ସତ୍ତ୍ୱେ କାବ୍ୟଧାରାରେ ଏ ସବୁର ପ୍ରଚଳନ ଗୃହୀତ । ଶୃଙ୍ଗାର ଚର୍ଚ୍ଚିତ ବୈଷ୍ଣବ ଭକ୍ତିଭବନାର ଏକ ଗ୍ରାମୀଣ କୌତୂହଳମୟତା ମଣ୍ଡିତ ରଙ୍ଗଲୀଳା ପ୍ରସଙ୍ଗ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟକୁ ଅହେତୁକ କାମ ବିଳାସରେ ଉଚ୍ଛଳିତ କରିଛି ।



ପାଦଟୀକା-

୧। କି କରିବି କି ବୋଲିବି ନ ଜାଣଇଁ କିଛି
କେବଳ ଘରୀରେ ମୋର ନିଃଶ୍ୱାସ ବହୁଛି ।
ଘୁଟ ଇଛାବତୀ-୨ ୭୮

୨। ଯେହା ଶୁଣି ଇଛାବତୀ ସନ୍ତୋଷ ହୋଇଲ
ମୁଖରେ ଚୁମ୍ବନ ଦେଇ କୋଳେ ବସାଇଲ ।
ଭୁଜରେ ଭିଡ଼ିଣ କୋଳ କରନ୍ତେ ହରଷ
ଘୁଟ ଇଛାବତୀ ଦୁହେଁ କେହି ନାହିଁ ପାଶ ।
ନାନାମତେ ପରିବନ୍ଧେ କାମେଣ ମାତିଲେ
ମଦନ ଆକୁଳ ବେନି ଅଙ୍ଗୁ ଶାନ୍ତି କଲେ ।
ଘୁଟ ଇଛାବତୀ—୨,୭୯ ୮୧

୩। ଜାଣଇ ନାହିଁ ମେଲଣି ଦେବାର ରୀତି ଯୁବାଠାରୁ ଜବାଧରୀ
ସ୍ନେହ ରଖିଥାଅ ପାଇଟି ଏତେକ କହିଉଠେ କୃଶୋଦରୀ ।
ଅନୁରାଗେ ଯେବେ ରସିକ କହଇ ଆଉଥରେ କୋଳେ ବସ
ଅନ୍ତରେ ପ୍ରେମ ବାହାରେ ଲଜରଖି ହୋଉଥାଇ ହସ ହସ ।
ହାରବତୀ ୩,୧୨-୧୩

୪। ନହି ନହି କହଇ ନୟନ ଝର ନୋର
ଥିତି ରହଲି ରହି ସୟନକ ଓର
ଆଲିଙ୍ଗିଏ ନିବିବଂଧ ବିନୁ ଖୋରି
କର କୁଚ ପରସ ସେହି ଭେଲ ଥୋରି ।
ବିଦ୍ୟାପତି ପଦ୍ୟାବଳୀ-ପୃ ୪୯

୫। ସୁରତ ପିୟାସେ ଧରଲ ପହୁଁ ପାନି
କରେ କର ବାରଇ ତରଲ ନୟାନୀ
ଉଠ ପରିରମ୍ଭେଣ ପରଶିତେ ଗାତ
ନହିଁ ନହିଁ ବୋଲି ଢୁଲୟତ ମାଥ । (ଉଦ୍ଧୃତି)
ବୈଷ୍ଣବ ସାହିତ୍ୟ ପ୍ରବେଶିକା-ପୃ ୧୦୯

୬। ଲହୁ ଲହୁ ଚୁମ୍ବଇ ବୟାନ
ସରସ ବିରସ ହୃଦି ସଜଳ ନୟାନ
ସାହସେ ଉରେ କର ଦେଇ
ମନହି ମନୋଭବ ତବ ନାହିଁ ଭେଲ ।
ବିଦ୍ୟାପତି ପଦ୍ୟାବଳୀ-ପୃ ୧୦୧

୭। ରସ ବାରିଧି ୧୯/୨୪-୨୫
(ଅନୁସରଣ-ଗୀତଗୋବିନ୍ଦ ୧୨/୧୦)

୮। ନାନା ବିନୋଦେ ହସ ରସେ ବଞ୍ଚନ୍ତି ସୁଖେ ସେ ଦିନ
ନୃପତି କୁମାରୀ କି କରିବ ବୋଲି ଥାଇ ସେ କୁମର ମନ ।
ନା ଗୋ ଯେ । ଶଶିସେଣା-୧୩/୯

୯। ଏମନ୍ତ ଶୁଣି ହେଲା ବାଳାର ହରଷ ଉଦୀପନ
ଏକ ଅଙ୍ଗକେ ଭେଟିଲ ଭଲ ଉଭୟେ ଅନୁମାନ
ଦରହାସ୍ୟ ବକ୍ର କଟାକ୍ଷେ ବାମା ଚାହିଁଲା କାନ୍ତମୁଖ
ହେଳେ ହରିଲା ପ୍ରାଣନାଥର ଦୁଃସହ କାମଦୁଃଖ ।
ଚିତ୍ରକଳା-୧୨/୧୩

୧୦। କଳ୍ପଲତା ୧୩/୪୦, ଅନଙ୍ଗରେଖା-୨୫/୨୨, ଲାବଣ୍ୟବତୀ-୪୭/୨୫,
ସୁବର୍ଣ୍ଣରେଖା-୫/୧୨-୧୪, ପ୍ରେମ ସୁଧାନିଧି-୧୬/୧୨,
ରସିକ ହାରବଳୀ-୧୫/୧୨, ସୁକୁତଳା-୭/୨୧-୨୩

୧୧। ପିପଳ ପଲ୍ଲବ ଉପମୟ ଅଂଗ ଦିଶେ
କି କି ଭାବେ ପୁନ ପୁନ କରଇ ତହିଁ ରସେ
ସରୋଜ-ଲୋଚନା ତାକୁ ଅନାଏତ ହୋଇ
କି କି କଲ କି ହୋଅଇ ତା' ଜାଣି ନପାରଇ ।
ସୁକୁତଳା-୭/୨୯-୩୦

୧୨। ଦ୍ଵିଧାସ୍ୟାଦାଗତିଃ ପ୍ରାଦୁର୍ଭାବଶ୍ଚେତି ସ ସଙ୍ଗମଃ ।
ଉଜ୍ଜ୍ଵଳ ନୀଳମଣି-ମୁଖ୍ୟ ସଂଭୋଗ/୧୩

୧୩। କାନନ ମଧ୍ୟୁ ବାହାର ହୋଇଲେ ନାଗର ବର
କରି ମନ୍ଦହାସ ଧୀର । ରଂଗ ଅଧର । ମେ ହନ ।
ରସ କଲ୍ଲୋଳ-୨୨/୫୪

୧୪। କଳ୍ପଲତା ୧୦/୩୧-୩୮

୧୫। ରତେ ମଉଷେଯେ ବିଳେ ଇଚ୍ଛାବତୀ ଗୃଟ
ଚଉଷଠୀ ବନ୍ଧେ ରତ କଲେକ ବହୁତ ।
ଗୃଟ ଇଚ୍ଛାବତୀ-୫/୪୭

୧୬। ନାନା ବିନୋଦେ ସେ ବେନିଜନ
ନୃପ ପୁରେ ବଞ୍ଚିଲେ ସେ ଦିନ...
ଇଚ୍ଛାବତୀ-୧୦/୬୦

୧୭। ଶୂନ୍ୟଂ ବାସଗୃହ ବିଲୋକ୍ୟ ଶୟନାଦୁତ୍‌ଥାୟ କିଞ୍ଚିଛନୈ
ନିଦ୍ରା ବ୍ୟାଜ୍ୟମୁପାଗତସ୍ୟ ସୁଚିରଂ ନିର୍ବର୍ଣ୍ୟ ପତ୍ୟୁମୁଖମ
ବିଶ୍ରବ୍ଧଂ ପରିଚୁମ୍ବ୍ୟ ଜାତପୁଲକାମାଲୋକ୍ୟ ଗଣ୍ଡସ୍ଥଳୀଂ
ଲଜ୍ଜାନମ୍ରମୁଖୀ ପ୍ରିୟେଣ ହସତା ବାଳା ଚିରଂ ଚୁମ୍ବିତା ।
କାବ୍ୟ ପ୍ରକାଶ-ପୃ ୧୧୨

୧୮। ଯେହା ଶୁଣି ଇଚ୍ଛାବତୀ ସନ୍ତୋଷେ ହୋଇଲ
ମୁଖରେ ଚୁମ୍ବନ ଦେଇ କୋଳେ ବସାଇଲ ।
ଗୃଟ ଇଚ୍ଛାବତୀ-୨,୭୯

୧୯। ତ୍ୱଂ ମୁଗ୍‌ଧାକ୍ଷି ବିନୈବ କଞ୍ଚୁଳିକୟା ଧତ୍ସେ ମନୋହାରିଣୀଂ
ଲକ୍ଷ୍ମୀମିତ୍ୟ ଭି ଧାୟିନୀ ପ୍ରିୟତମେ ତଦ୍‌ବୀଟିକା ସଂସ୍ପୃଶି ।
ଶଯ୍ୟୋପାନ୍ତ ନିବିଷ୍ଟ ସସ୍ମିତ ସଖୀ ନେତ୍ରୋତ୍ସବାନନ୍ଦିତୋ
ନିର୍ଯ୍ୟାତଃ ଶନକୈରଲୀକ ବଚନୋପନ୍ୟାସମାଳୀଜନଃ ।।
କାବ୍ୟ ପ୍ରକାଶ-ପୃ ୧୧୩

୨୦। ଅଞ୍ଚଳ ଧରିଣ କୁମରମଣି
କୋଳରେ ଧରି ବସାଇଲେ ଆଣି
ଆରତେ ଅଧର ମଧୁପାନ
କୁମାରୀ ଲଜେ ବୁଜିଲା ନୟନ ।
କଳ୍ପଲତା-୧୦/୩୧

୨୧। ବୈଦେହୀଶ ବିଳାସ-୧୫/୨୧, ଲବଣ୍ୟବତୀ-୩୩/୬, କୋଟି-ବ୍ରହ୍ମାଣ୍ଡ ସୁନ୍ଦରୀ-୩୪/୩୩

୨୨। ଯେସନେ ରମିଲ ତାକୁ ରମଣୀ ମଣି
ଅନିରୁଦ୍ଧ ତେସନେ ରମିଲ ତରୁଣୀ ।

ଉଷାଭିଳାଷ-୪/୪୯

୨୩। ସୁନ୍ଦରୀ ଶୟନ କଲ ପଲଙ୍କେ ବସିଲ
ହସ ହସ ହୋଇ ତା' ଚିବୁକେ କର ଦେଲ ।

ସର୍ବାଙ୍ଗ ସୁନ୍ଦରୀ-୨।୧୯

୨୪। ଏକାନ୍ତେ କର କୋରକ କରି ତରୁଣ-ତିଳକ ବୋଇଲ ହେ
ଜୀବେଶ୍ୱରୀ ବିନୟ ଘେନ । ଚରଣେ ଅଳତା ପରି ପଛେ
ପଛେ ଛାଇ ପରି ଅନୁସରିଥିବାକୁ ମୋ ହେଉଛି ମନ ।
ମୋତେ ଦିଅ ବସନ ଭଗ୍ୟ । ହେଲିଣି ସବୁ ମତେ ମୁଁ
କୃତାର୍ଥ ଯୋଗ୍ୟ ।

ଲବଣ୍ୟବତୀ-୧୧।୩୦

୨୫। ବିଶ୍ୱଚିତ୍ତ ବଶ ପାଇଁ ପ୍ରୀତି ମୂର୍ତ୍ତିମନ୍ତ ହୋଇ
ଅଣିମାଦି ଦେବ ଅଣି ହୋଇ ଶୋଇଛି .....

ବିଦଗ୍‌ଧ ଚିନ୍ତାମଣି-୩୦।୧୯

ତୁଳନା—

ଅଣିମାଦି ସୁଖଦାୟୀ ଶୋଇଅଛି ଅଣିଆଇ
ପଲ୍ୟଙ୍କ ଅଙ୍କରେ ଦେଖ ଏମନ୍ତ ଶୋଘ ........

ଲବଣ୍ୟବତୀ-୧୧।୧୨

୨୬। ଅବଲମ୍ବ କରି କୁଚକୁମ୍ଭ
ଅବିଳମ୍ବେ କଲେ ପରିରମ୍ଭ
ଅନା ! ଧନ କହି ଅନ୍ତର୍ଦ୍ଧାନ ହୋଇ
ଯାନ୍ତେ ଗଲ ଛାଡ଼ି ନିଦ୍ରାରମ୍ଭ ।

ଅମ୍ବିକା ବିଳାସ-୧୨/୧୮

୨୭। ଧୀରେ କର ନିବେଶିଲ ପଦ କମଳେ ।

ଶଶିରେଖା- ୧୧/୨୪

୨୮। ତ୍ରିପୁର ସୁନ୍ଦରୀ ପରସାଦୁ ଅନଙ୍ଗସୁନ୍ଦର ସଂଭୋଗ ସୁମନୋହର

ସ୍ୱପନ ହେଲ । .... । ଚନ୍ଦ୍ରକଳା-୨୦/୫୨

୨୯। ଚନ୍ଦ୍ରକଳା–୨୦/୪୯-୫୦

୩୦। ନୃପ ସୁତ ସେ ସ୍ତନ ଛୁଇଁଲ କଚଅଗ୍ରେ
ନୃପ ସୁତା ତନୁ ପୁଲକାଙ୍କିତ ସମଗ୍ରେ ।

ଲୀଳାବତୀ-୯/୮୬

୩୧। କୁଚ ଶମ୍ଭୁରେ ପାଣି ପଦ୍ମ ଦେଇ
ଧରି ଅଧରୁ ଅମୀୟ ପିଅଇ ।
ବାଳୀ ସାତ୍ତ୍ୱିକ ବିକାରେ ତରଳ
କଟି ଭଲୁସି ଖସିଲ ଦୁକୂଳ ।
ତନୁ ରୋମାଞ୍ଚିତ ହୁଏ ଜଘନ
ଚଉଷଠି ପରିବଂଧେ ବିଧାନ ।

ଶଶିସେଣା-୫/୧୦-୧୨

୩୨। ଯାହାତୁ ବୋଇଲୁ ଗୁପ୍ତ ଚିନ୍ତା ତୁ ନକର
ନିଶ୍ଚୟେ ଭବିନୀ ମୁହିଁ ହୋଇବି ତୋହର ।

ଗୁପ୍ତ ଇଚ୍ଛାବତୀ-୨/୩୧

୩୩। ଭୁଜରେ ଭିଡ଼ିଣ କୋଳ କରନ୍ତେ ହରଷ
ଗୁପ୍ତ ଇଚ୍ଛାବତୀ ଦୁହେଁ କେହି ନାହିଁ ପାସ
ନାନାମତେ ପରିବଂଧେ କାମେଣ ମାତିଲେ
ମଦନ ଆକୁଳ ବେନି ଅଙ୍ଗୁ ଶାନ୍ତି କଲେ ।

ଗୁପ୍ତ ଇଚ୍ଛାବତୀ-୨/୮୦-୮୧

୩୪। ଗୁପ୍ତ ଇଚ୍ଛାବତୀ ୩/୨୪-୨୫

୩୫। ରମା ବେନିକର କରେଣ ଧରିଣ ବୋଇଲ କୁମରମଣି
ତୁ ମୋର ରମଣୀ ହେବୁ ପ୍ରାଣମଣି କରିବୁ ନିଷ୍ଟେ ଏ ବାଣୀ ।
ଶୁଣି ସଲଜିତ କୁରଂଗୀ ନୟନୀ କଲ ତାରେ ସନମତ
ଗୁରୁଏ ଜାଣିଲେ ଅସାର ହୋଇବ ବୋଲି ଚଳିଲ ତୁରିତ ।

ଇଚ୍ଛାବତୀ ୨/୩୨-୩୩

୩୬। ଓଡ଼ିଆ କାବ୍ୟ କୌଶଳ (ଅପ୍ରକାଶିତ ସନ୍ଦର୍ଭ)-ପୃ ୭୭୧

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ

୩୭। ସଜ୍ଜିତ ପ୍ରେମ ପୁସ୍ତକ ପ୍ରାଣନାଥ କଲ
ସତୀକ୍ଷଣ କରକରେ କଜ୍ଜା ପ୍ରସାରିଲ ।
ସ୍ୱୟଂ ଆଦରଶ ମୁଖୀ ଆଦରଶ କରି
ଶ୍ରମ ଘର୍ମ ମିଶା ମୃଗ ମଦ କଳା ଧରି ଯେ ।

ସୁଭଦ୍ରା ପରିଣୟ-୧୩/୭

୩୮। କେ କାହାକୁ କି କରନ୍ତି କେହି ତା ନଜାଣି
ନ ଜାଣନ୍ତି କେ କାହାକୁ କିସ କିସ ଭଣି ।
ବଢିଲ ମଦନ ମହାନଦୀ ଭେଳା
ୟଭବେ ସକଳ ଲଜ ଧଇର୍ଯଇ ଗଲ ।

ରମବିଭ-୧୧/୭୮-୭୯

୩୯। କ୍ଷଣେ କ୍ଷଣେ ଚଇତନ ଉଠବସ ହୁଏ
ଚନ୍ଦ୍ର ଉଠି ବୁଡ଼େ ଯେଲ୍ହେ ଭଗୀରଥୀ ଶୋହେ ।

ରମବିଭ-୧୧/୮୧

୪୦। କଳ୍ପଲତା ୧୧/୩୧-୩୮

୪୧। ତନୁ ପୁଲକି ଉଠେ ଘନ ଘନ
କମ୍ପେ ଅଧର ଉରଜ ଜଘନ
ତନୁ ଶିଥିଳ ବାଣୀ ଅଶକତ
ଖସେ ବସନ-କଟିରୁ ତୁରିତ ।

ଉଷାଭିଳାଷ-୮/୭-୮

୪୨। ପୁରେ ରହିଲେ କୁମର କୁମାରୀ
ଯେତେ ଯେତେ କ୍ରୀଡ଼ା କହି ନପାରି ।

କଳାବତୀ-୪/୧୬

୪୩। ଯେସନ କହି ଚିବୁକ ଧରି ତା'ର ବିମ୍ବାଧରେ ଦେଲ ଚୁମ୍ବନ
ଉରଜ ଉପରୁ ବସନ କାଢ଼ି ସେ ନିବିଡ଼େ କଲ ଆଲିଙ୍ଗନ
ରସବତୀ କି
ଚୁମ୍ବ ଆଲିଙ୍ଗନ ମାଗିଲ
ରମଣୀ ରତନ କରିବାର ବିଧି ନାୟକ ବହୁ ବୋଲେ କଲ ।

ପ୍ରେମ ଲୋଚନା-୧୪/୧୮

୪୪। ପ୍ରେମ ଲୋଚନା-୨୦/୩୪-୫୦

୪୫। କାମ ସଦନେ ନାନାବିଧି ବିକାର କରନ୍ତେ ରସିକ ବର
ମୃଦୁବାତେ ପୁଷ୍ପଲତା ଯେହ୍ନେ କଂପେ ତେହ୍ନେ ତରୁଣୀ ନିକର ।

ମଦାଳସା-୬,୧୧

୪୬। ପଲଙ୍କୁ ଓହ୍ଲାଇ ସେ ଆପଣେ ଯଦୁ ସାଇଁ
ରକ୍ମିଣୀଙ୍କି ନିଜ ଜାନୁ ଉପରେ ବସାଇ ।

ରକ୍ମିଣୀ ବିଭା-୯/୮୫

୪୭। 'ମଧୁଶଯ୍ୟା କେଳି' ଏହୁ ଛାନ୍ଦ ନାମ କଉତୁକେ ଏହା ରଞ୍ଚିଲି
କାମଶାସ୍ତ୍ରରୁ କିଛି ପ୍ରକାଶିଲି ।

ଅନଙ୍ଗରେଖା-୧୨/୪୩

୪୮। ଅନଙ୍ଗରେଖା-୧୨/୨୬-୨୭

୪୯। ଯେତେବେଳେ କଂପିଲ ବେନି ଦେହା
ପୁଣ୍ୟବଳେ ହୋଇଲ ସ୍ତମ୍ଭ ସାହା ।

ରତ୍ନ ମଞ୍ଜରୀ-୨୨/୫୪

୫୦। ନଚଳଇ ଚଳଇ ମନ୍ଥର ଗମନୀ
ସାତ୍ତ୍ୱିକେ ଚଳଇ ଅଙ୍ଗ
କହନ୍ତେ ବାଣୀ ତା' ହୋଏ ସ୍ୱରଭଙ୍ଗ
ଅଗ୍ରତେ ଜିଇ ଅନଙ୍ଗ

× × ×

ତୁମ୍ଭ ଚରଣ ଯୁଗରେ ମୁହିଁ ଏକା ଦାସୀ
ହୋଇଥିବି ପୁଣି
ଏହି ବର ମୁଁ ମାଗଇ ମହାବାହୁ
ଶୁଣିବା କୋଦଣ୍ଡ ପାଣି ।
ରଘୁନାଥ ବିଳାସ-୧୪.୪୨-୫୪

୫୧। କେତେବେଳେ କି ହେଉଛି ସୁନ୍ଦରୀର ମନ
କାନନ ବିହଙ୍ଗେ କି ପଡ଼ିଲା ବନ୍ଧନ ।
କାମଶରେ କାତରତା ହେଉଛି ବାଳିକା
ମନ୍ଦବାତେ କଂପୁଛି କି କୁସୁମ ଲତିକା ।
ସର୍ବାଙ୍ଗ ସୁନ୍ଦରୀ-୧୩/୨୧

୫୨। ବିଗ୍ରରନ୍ତି ମନସିଜ ସୁଖ ଏଡ଼େ ରସ
ଏହା ଛାଡ଼ି ମୂଢ଼ ଦେବେ ପିବନ୍ତି ପୀୟୂଷ
ପୁଣ ପୁଣ ବାଳା ସେହି ରସ ଆସ୍ୱାଦନେ
ବିଗ୍ରରଇ ଭଗ୍ୟହୀନ ବ୍ରହ୍ମଚାରୀ ମାନେ ।
ସର୍ବାଙ୍ଗ ସୁନ୍ଦରୀ-୧୩,୩୧

୫୩। ସର୍ବାଙ୍ଗ ସୁନ୍ଦରୀ-୧୩ ୪୬

୫୪। ଦୃଢ଼େ ଉଚକୁଚ କଲା ମର୍ଦନ । ଅଙ୍ଗେ ଗ୍ରଳଇ କରରୁହ ମାନ ।
ନୀବୀ ବଂଧ କଲା ପୁଣି ମୋକ୍ଷଣ । ନାନା ବଂଧେ ଆରମ୍ଭିଲା ରମଣ ।
ଚିତ୍ରକଳା-୧୦/୨୮-୨୯

୫୫। ବୈଦେହୀଶ ବିଳାସ-୧୫/୧୮-୨୦

୫୬। ପୁଂସ କକ୍ଷମୂଳେ ଟିପି ଦେଇ ନଖ ମୂନ
କୁଚାଗ୍ରେ ସମଗ୍ରେ କଲା ରସନା ଗ୍ରଳନ ଯେ ।
ଲାବଣ୍ୟବତୀ-୩୩/୧୬

୫୭। ନିତମ୍ବେ ହାଣ୍ଟୋଳି ଠୁକ୍ତୁ ଚେତନା ବସିଲା
ଭିଡ଼ି ମହାମଭେ ରମା ସୁରତେ ରସିଲା ।
ଲାବଣ୍ୟବତୀ-୩୩/୨୦

୫୮। ଲାବଣ୍ୟବତୀ (ପ୍ରାଚୀ)-ମୁଖବଂଧ/ପୃ ୧୩୬

୫୯। ଗୋପୀକୃଷ୍ଣ ଲୀଳା ଚିତ୍ର ନାହିଁ ଯହିଁ ଦେଖ।
ସୀତାରମ ପ୍ରଦୀପ ନିୟମ ଆଦି ଲେଖା ଯେ ।

କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ-୩୪/୨

୬୦। କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ-୩୪/୩୩-୪୨ (ଷଡ଼ଋତୁ), ୩୪/୪୪-୪୬ (ଅଳଂକାର), ୩୪/୪୭ (ଦ୍ୟୂତକ୍ରୀଡ଼ା)

୬୧। କ୍ରମେ କ୍ରମେ ପୁଣି ବସନ ଫିଟାଇ ଆରମ୍ଭ କଲ ସୁରତି
ରତି ପତି ଦୁଃଖ ବେଗେ ପାଶୋରିଲ ଲଭିଲ ଇନ୍ଦ୍ର ସଂପତ୍ତି ।

ସୁବର୍ଣ୍ଣରେଖା-୫/୧୪

୬୨। କ୍ରମେ ମଲ୍ଲୀଫୁଲ ବାଳା କାନ୍ତ କରେ ଦେଲ
କହିଲ ସେ ବେନି ବର୍ଣ୍ଣ ଫେଡ଼ି ନ କହିଲ ।

ରସଲେଖା-୧୪/୪୬

୬୩। ରସଲେଖା-୨୨/୧୫

୬୪। କର କୃଷିକ ରମା ଗାତ୍ର କ୍ଷେତ୍ର
ନଖ ଲଙ୍ଗଳେ ଚଷିଲା ତ୍ୱରିତ ।
ପ୍ରେମ ବୀଜକୁ ରୋପିଲ ତହିଁର
ପାଳନାକୁ ବରଷେ ସ୍ୱେଦ ନୀର ।

ପ୍ରେମ ସୁଧାନିଧି-୬/୪

୬୫। ବେନି ମାଲକି କଚ୍ଛି ସାଧନା
ତନୁ ତନୁ ଜଡ଼ି ବଂଧ ରଚନା ।

ପ୍ରେମ ସୁଧାନିଧି-୬/୬

୬୬। ପ୍ରେମ ସୁଧାନିଧି-୬।୧୦-୧୩

୬୭। ପ୍ରେମ ସୁଧାନିଧି-୬/୧୪

୬୮। (କ) ନୀବୀ ମୋକ୍ଷେ ମୋକ୍ଷକୁ ପାଇଲ ପ୍ରାୟ ହେଲ ।

ରସିକ ହାରବଳୀ-୬,୧୬

(ଖ) ବେଳୁଁ ବେଳେଁ ସୁନ୍ଦରୀମଣି ସୁରତେ ମଜ୍ଜି
ସୁଖ କରି ଆଉ ଇନ୍ଦ୍ରପଦକୁ ନ ହେଜି । × ×

ରସିକ ହାରବଳୀ-୬,୧୭

୬୯। ବାତ୍ସାୟନ ଋଷିଙ୍କୁ ଯେ ଏ ରସ ଗୋଚର
ଗୀତେ କହେ ଉପଇନ୍ଦ୍ର ଭଞ୍ଜ ବୀରବର ।

ରସିକ ହାରବଳୀ-୬/୨୯

୭୦। ଅପୂର୍ବ ବିପରୀତ ହୋଇଲା ପୁଣି
ଅଭିନବ ଅମ୍ବୁଦ ସମୟ ଜାଣି ।
ଅସମ ପୟୋଧର ଉପରେ ଘୋଟି
ଅତି ସରସେ କଲା ସୁରସ ବୃଷ୍ଟି ।

ଅମ୍ବିକା ବିଳାସ-୨/୬

୭୧। ଅମ୍ବିକା ବିଳାସ—୨/୨୦-୨୫

୭୨। ଅମ୍ବିକା ବିଳାସ—୨/୨୬

୭୩। ଅକଥନ ମନ୍ମଥ ରସ କେଳି

ଅମ୍ବିକା ବିଳାସ-୧୪/୧୫

୭୪। ବର ବକ୍ର ଅଙ୍ଗୁଳି କୁଂଚି ତାଡ଼େ
ଫିଟେ ନାହିଁ ସେ କିଳିଣି ନିବିଡ଼େ ।

କେଳି କଳାନିଧି-୫/୩୯

୭୫। ମଧୁଶଯ୍ୟା ବାସ ସୌଚିକ ସଦୃଶ
ନବ ବଧୂ ମଧୁସୂଦନେ
ହୃଦ ପଟ ଥିଲା ଏକ କରିଦେଲା
ଶୁଚିରସ ସୂଚୀ ଭେଦନେ
ପୂର୍ବକୁ ବିସ୍ତର
ଖର୍ବ କରିଦେଲା
ସର୍ବ ପର୍ବତ—ସାର୍ବଭୌମ ତନୁଜା ତନୁଯାବ ହେବା ପ୍ରକାର ।

ପ୍ରବଂଧ ପୂର୍ଣଚନ୍ଦ୍ର ୮/୫୬

୭୬। ରାଘବ ବିଳାସ-୧୫/୨୬

୭୭। ପ୍ରେମନଦୀ ପ୍ରବାହ ବୃଦ୍ଧିକି ଲଜ୍ଜା ସେତୁ
ବାଇଲେ ହେଁ ବଳବନ୍ତ ସେ ମକର କେତୁ ।
ଚଂପା ଗୋରୀ ଅଧର କଂପାଇ ଘନ ଘନ ।
ଅନୁକଂପା ଭରେ କାନ୍ତ ଅଙ୍ଗେ ହେଲା ଲୀନ ।

ପ୍ରଭାବତୀ ପରିଣୟ-୮/୧୧

୭୮। ଅନଙ୍ଗ ଜାନୁ ବାଳୀର ଉଲୁସି ରହେ
ଲବଣୀ ପିତୁଳା ପ୍ରାୟେ ହୋଇଲା କାୟେ ।

ପରିମଳା-୪/୫୬

୭୯। ଜଘନ ବେଦୀର ତଳେ ସଙ୍କଳ୍ପ ସାରି
ଥୋଇଅଛି ହେମ ପାତ୍ର ଊର୍ଦ୍ଧ୍ୱମୁଖ କରି ।

× × ×

ରୋମାଞ୍ଚିତ ମୁଖ ଖର ନିଶ୍ୱାସ ବାଳା
ହୁଂ ହୁଂ ହୁଂ ହୁଂ ବୋଲି ଜଙ୍ଘ ସ୍ଥଳରେ ଭିଡ଼ିଲା ।

ପରିମଳା-୧୦/୮୧-୧୧୫

୮୦। ଓଡ଼ିଆ ସାହିତ୍ୟର ମଧ୍ୟପର୍ବ (୧୯୬୭)-ପୃ ୯୩

୮୧। ପରିମଳାବତୀ କ୍ରମରେ ପୀରତି କପଟେ ଗନ୍ଧର୍ବେ ରସେ ।

ପରିମଳା-୧୭/୩

୮୨। ରାଗେ-ଣୈବାର୍ପିତାତ୍ମାମେ ଲୋକ ଯୁଗ୍ମାନ ପେକ୍ଷିଣା
ଧର୍ମେଣାସ୍ୱୀକୃତା ଯାସ୍ତୁ ପରକୀୟା ଭବନ୍ତି ତାଃ ।

ଉଜ୍ଜ୍ୱଳ ନୀଳମଣି-କୃଷ୍ଣବଲ୍ଲଭା/୬

୮୩। ଚୈତନ୍ୟ ଚରିତାମୃତ-୧/୪/୪୧-୪୨

୮୪। ବୈଷ୍ଣବ ସାହିତ୍ୟ ପ୍ରବେଶିକା-ପୃ ୬୨

୮୫। ଏମନ୍ତେ ପ୍ରତି ଦିବସରେ ରସରେ ସରୋବରରେ ମେଳ ହୋଇ
ଏକାନ୍ତରେ ଯୁବା କୋଳରେ ବସାଇ ବଦନେ ଚୁମ୍ବନ୍ୟ ଦେଇ
ଚିବୁକ ଧରି ଚାଟୁବାଣୀ କହିଣ ଭିଡ଼ଇ ଆସି ଭୁଜରେ
ମଖେ ମୁଖ ଦେଇ ସୁଖେ ପାନ କରେ ତା'ର ଅଧରୁ ଅଧରେ ।

ଚାଗବତୀ-୩/୧୦-୧୧

୮୬। ସୁରତି ରସେ ଉନ୍ନତି କଲା ମନତୋଷେ ।
ଉରେ ଉର ଲଗାଇ ଭିଡ଼ିଲା ବାହୁ ପାଶେ ।

ମଦନ ମଦରେ ପୁଣି ବଦନ ଚୁମ୍ବିଲ ।
ବଂଧ ସଂଯୋଗରେ ପୁଣି କୋଳେ ବସାଇଲ ।।
କଣ୍ଠେ ତୁଣ୍ଡେ ରସନା ଗ୍ରହିଲ ମୁଖଧରି ।
ଧ୍ୟାନ ହରଇ ସେ ମଦନେ ସୁକୁମାରୀ ।।
ଏଣେ ବଂଧ ବିଧାନକୁ ରସିକ ବିହିଲ ।
ଜାନୁକୁ ଜାନୁରେ ଛନ୍ଦି ଶୟନେ ରହିଲ ।।

ଭାଗବତ-୪/୪୦-୪୩

୮୭। ପରିମଳା-୪ର୍ଥ

୮୮। ଏବେ ହେ ଚରଣ ଧରି କହୁଅଛି ଶରଣ ତୋ ପ ଦେ ପଶି
ଥିବାରେ ଏଣିକି ଦିନେ ନ ଛାଡ଼ିବୁ ସେବାରେ ଥିବି ସୁକେଶି ।
ଅଲପ ତତେ ନ ଦେଖିଲେ ଦିବସ କଳପ ହୁଅଇ ମତେ
ମନସୁଖ ଅଛି କି ନାହିଁ ପୁଣି ତୋ ଚିତ୍ତ ଜାଣ କି ତୁରିତେ ।
ଏ ରୂପେ ଅନେକ ବିନୋଇ କହିଣ ଚରଣରେ ଯୁବା ପଡ଼ି
ଯୁବତି ମଣିକି ରସରେ ରସାଇ ପ୍ରେମ ରସେ ଦୁହେଁ ଜଡ଼ି ।

ଭାଗବତ ୧୦/୧୫-୧୭

୮୯। ରହସ୍ୟ ମଞ୍ଜରୀ-୧୫ଶ

୯୦। ଶୁଣି ସୁନ୍ଦରୀ ହୃଦୟ ଉଲସିତ ଯୌବନୁ ବସନ ଖସିଲ
ମୁଖେ ମୁଖ ଚୁମ୍ବି ଭୁଜେ ଭିଡ଼ି ବାଳୀ ଲମ୍ଫି ପଡ଼ି ତଳେ ପଡ଼ିଲ
ଗରୁଡ଼, ଦେଖି ମୁଖ କଲ ପିଠିକି
ପୃଷ୍ଠ ପରେ କୃଷ୍ଣରାଣୀ ଗ୍ରହୁଁଥିଲେ ପକ୍ଷୀ ଉହାଡ଼ିଲ ଦୃଷ୍ଟିକି ।

ରହସ୍ୟ ମଞ୍ଜରୀ-୧୫/୧୬

୯୧। ତାହାର ମଦନ ବାଞ୍ଛା ପୂରଇବା ପାଇଁ
ସେହି ପୟରେ ତାହାକୁ ପୁଂସଭାବ ଦେଇ
ହାସ୍ୟରସ ଭାବ ତହିଁ ପୁଲକ ଚୁମ୍ବନ ।
ସେହି ପାଦେ ମାଣିକ୍ୟର ତୋଷ ହେଲ ମନ ।

କାଞ୍ଚି କାବେରୀ-୪୬୭-୪୬୮

୯୨। ରସ କଲ୍ଲୋଳ-୨୦ଶ

୯୩। କଲି ଏବେ ମୁଁ ତୋତେ ବିଚିତ୍ର ବୀଣା
କୁଚ କନକ ତୁମ୍ବୀ ସୁକର୍ଣ୍ଣ-ଗୁଣାରେ
କରଜ ଘାତ କରେ ଯେଉଁ ଶବଦ
କର୍ଣ୍ଣ ଶୁଣିଲେ ମନ ହୁଏ ପ୍ରମୋଦ ରେ ।
ରସ କଲ୍ଲୋଳ-୨୦/୧୬

୯୪। କହଇ ଦୀନକୃଷ୍ଣ କନ୍ଦର୍ପ ରସ । କରି ପାରଇ ସେ କି ଏମନ୍ତ ବଶ ହେ
କର ହେ ସାଧୁଜନେ ମନେ ବିଷ୍ଣର । କାମବ୍ରହ୍ମ ସଂସାରେ କେମନ୍ତ ସାର ହେ
ରସ କଲ୍ଲୋଳ-୨୦/୩୪

୯୫। ମନୋହର ପଥେ ଯାଉ ଘଟୁ ବିରଚନ ।
ମୁହିଁ ଚକୋର ଚନ୍ଦ୍ରମା ତୁ ଘତକ ଘନ ଯେ ।
ମୁକୁଳ ମଞ୍ଜରୀ ମୁହିଁ ତୁହି ପରଭୃତ ।
ମାଳତୀ କୁସୁମ ତୁ ଯେ ମୁହିଁ ମଧୁବ୍ରତ ଯେ ।
ଛାନ୍ଦଭୂଷଣ-୨୫/୧

୯୬। ଛାନ୍ଦ ଭୂଷଣ-୨୫,୪

୯୭। ବିଦଗ୍ଧ ଚିନ୍ତାମଣି-୮୧/୮୩-୮୪

୯୮। ତତ୍ରୈବ-୮୩/୫, ୮୩/୬, ୮୩/୮, ୮୩/୧୦-୧୨

୯୯। ତତ୍ରୈବ-୮୩/୧୪-୨୦

୧୦୦। ଶ୍ରୀପତି ସେ ବୃନ୍ଦାବତୀ କି ସ୍ନେହେ ବସାଇ କୋଳେ
ଶତ ଶତ ସଘୁ ଚୁମ୍ବନ ଦେଲେ ମୁଖ ମଣ୍ଡଳେ ।
ଶ୍ରୀଫଳ ତୁଲ ପୀନ ସ୍ତନ ଟାଣେ କରି ମର୍ଦ୍ଦନ
ଶରୀର ବେନି ଏକ କଲେ କରି ପ୍ରେମାଲିଙ୍ଗନ ।
ଶ୍ୟାମ ରସୋତ୍ସବ-୬/୭୮

୧୦୧। ମିଶିଲ୍ଲ ଗ୍ଭରି ଲୋଚନ ବାରିରୁହ ମଦନ୍ ଲଭିଲି ଗ୍ଭରି
ମିଳିଲ୍ଲ ଶ୍ୟାମ ଗୌର ଦୁଇ ମହ ।
କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ-'ମ' ଗୀତ

୧୦୨। ଯୋଷାବର ରେ, ଯଥାର୍ଥରେ ଜାଣ ମୁଁ ତୋହର ରେ
ଯାମଳ ଭୂଧର ନିଜ ପୟୋଧର ମରଦନିଆ ଗ୍ଭକର ରେ ।
କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ-'ଯ'ଗୀତ

୧୦୩। ସେ ନିଶି ଶ୍ରୀକୃଷ୍ଣ ସୁଖେ ରାଧାଙ୍କର ମନ୍ଦିରେ ରହିଲେ
ସେ ସମୟ ସୁଖାନୁଭବମାନ କି ସରିବ କହିଲେ ।
ଉଚ୍ଛଳିତ ରସସିନ୍ଧୁ ଯାହାଙ୍କର କାହିଁ ପାରିବାର
ବୋଲେ କବି ହରିବଂଶ ଯେହୁ ରସ ବଡ଼ ଚମତ୍କାର ।
ପ୍ରେମ କଳ୍ପଲତା-୩/୫/୫୪-୫୫

୧୦୪। ତେଣେ ରାଧା ବିଦ୍ୟାବାଳୀ । ଚନ୍ଦ୍ରଶାଳା ପୁରେ ମିଳି ।।
ବିବିଧ ବିନୋଦ ରଙ୍ଗେ । ଅଳସ ଅଙ୍ଗେ ଯେ ।।
ରତ୍ନ ପଲଙ୍କେ ଶୟନ । କଲେ ଯାଇ ବେନିଜନ ।।
ସଖୀମାନେ ଗବାକ୍ଷରେ । ଗ୍ଭହିଁନ୍ତି ଧୀରେ ଯେ ।।
ପ୍ରେମ କଳ୍ପଲତା-୪/୭/୩୩-୩୪

୧୦୫। କୁବୁଜା ଯେ ହୋଇଥିଲ୍ଲ ବାସକ ସଜ୍ଜା
କଲେ ତହିଁକି ବିଜୟ ରସିକ ରଜା ।
ରସ କଲ୍ଲୋଳ-୨୯/୨୪

୧୦୬। କହୁଁ କହୁଁ ଜନମ ହେଲ୍ଲ ଅନଙ୍ଗ ।
କୁବୁଜା ସଙ୍ଗେ ରଙ୍ଗ କଲେ ଶ୍ରୀରଂଗ
କିଛି ଦିନ ତାହାର ପୁରରେ ରହିଲେ ।
କାମନା ସଂପୂର୍ଣ୍ଣ କରି ବିଜୟ କଲେ ।
ରସ କଲ୍ଲୋଳ-୨୯/୫୦-୫୧

୧୦୭। ଯହିଁକି ନେଉଛିରେ ସଖୀ ।
" ଦୋଷ ହୋଇବୁ ସ୍ଥାନ ଦେଖି ।
ସେଠାରେ ହୋଇବ ବିହାର ।
ଗୁପତେ ତୁମ୍ଭର ଆମ୍ଭର ।
ଯେ ମନୋହର ରତି ଲୀଳା
କରିବା ଆରେ ପ୍ରେମଶୀଳା ।
ଏକାନ୍ତ ସୁଖେ ଥିବା ମଜ୍ଜି ।
ଗୋପୀଏ ନ ପାଇବେ ଖୋଜି ।

ପ୍ରେମ ପଞ୍ଚାମୃତ-୨/୨୭୯-୨୮୨

୧୦୮। ସଖୀ ସାମନ୍ତ ସେବକୀ ପଦାନ୍ତି ।
ନିକୁଂଜ ପୁରେ ଯଥୋଚିତେ ସ୍ଥିତି ।

× × ×

ଉଚ୍ଚ କୁଚ ଚିତ୍ର ଲଡ଼ୁ ଯେ
ସରସ ବାହେ କର୍କସ ପ୍ରିୟସ୍ୱାଦୁ ସଜାଡ଼ିଛି
ବିହି ବଡ଼ୁ ଯେ ।

ଯୁଗଳ ରସାମୃତ ଭଉଁରୀ-୨୦/୭-୯

୧୦୯। ଉରୁ ସଂଧିରେ ଧୀରେ ଲଖ ଚଳାଇ
ଲଭି ମର୍ଦନ ଗତୁରୀ ହେ ।

ପ୍ରେମ ତରଙ୍ଗିଣୀ-୨୦/୧୧ (ଇତ୍ୟାଦି)

୧୧୦। ଜଗୁ ଜଗୁ ଭଗୁ ଭଗୁବଶୀ ନଗ୍ନ ପରିବଂଧେ
ହୁଁ ହୁଁ ହୁଁ ହୁଁ ହୁଁ ହୁଁ ଗାନେ କର ଅଙ୍କଗେଧେ ।

ବିଦଗ୍ଧ ଚିନ୍ତାମଣି-୨୦/୧୮

୧୧୧। ମିଳାଇ ଜିହ୍ୱା ଚୁଚୁକେ । ମର୍ଦ୍ଦି ନିତମ୍ବ କରକେ
ମୁଖ ବାୟୁ ଶ୍ରୁତି ବିଂକେ । ମଧୁରେ ଦେଲେ ଯେ ।।

ବିଦଗ୍ଧ ଚିନ୍ତାମଣି-୨୧/୧୧ (ଇତ୍ୟାଦି)

୧୧୨। ଚନ୍ଦ୍ରାବଳୀ ଆନନ୍ଦ କେ ପାରିବତ କହି
ଟାଙ୍କ ସ୍ନେହାଦରେ ନିଶି ବଂଗ୍ଲଇଲେ ତହିଁ ।
ପ୍ରେମ କଳ୍ପଲତା-୭/୨୭

୧୧୩। ରହସ୍ୟ ମଞ୍ଜରୀ-(ମୁଖବଂଧ) ପୃ୧ ।

୧୧୪। ଗାବନ୍ତି ବାବନ୍ତି ନୃତ୍ୟନ୍ତି ବାଳା
ଉନ୍ମଦ ମଦନ ଶରେ ବେଭୋଳା
ଗତି ଭ୍ରାନ୍ତି ଗ୍ଲତୁରୀ ମାଧୁରୀ ସାଜେ
ସ୍ମର ଘୋର ଯୁଦ୍ଧ ଗାରିମା ଗାଜେ ।
ରହସ୍ୟ ମଞ୍ଜରୀ-୧୯/୯

୧୧୫। ବିବିଧ ବଂଧେ ପରିରମ୍ଭ ଲୀଳା
ଶୃଙ୍ଗାର ରସେ ଗୋପୀକୃଷ୍ଣ ଖେଳା
ଏକ ନ ଜାଣନ୍ତି ଆରେକ ଭେଦ
ମୋ ବିନୁ କୃଷ୍ଣ ଆନ ନାହିଁ ଖେଦ ।
ରହସ୍ୟ ମଞ୍ଜରୀ-୧୯/୧୮

୧୧୬। ଷୋଳ ସସ୍ର ଗୋପୀ ଷୋଳସଏ ନାରୀ
ଅଷ୍ଟ ପାଟ ମହାଦେବୀ
ଯେକେ ଯେକେ ରୂପ ଧରି ଭବଗ୍ରାହୀ
ଯେ ଯାହାର ଭବେ ଭବି, ସୁଜନେ ହେ ।
ଗୋପୀ ଚନ୍ଦନ-୬/୯

୧୧୭। କଉତୁକରେ ବୁଲନ୍ତି ଗତିରେ
କଳାବତୀ ମାନଙ୍କ ପୀରତିରେ
କେଉଁ ଗୋପୀ ପାଶେ ହୋଇ ପ୍ରବେଶ
କଉତୁକେ କରନ୍ତି ପରିହାସ ।
କୋଳେ ରଖିଅଛୁ ତୁ ଉଷ୍ମମକୁ
କହୁ ଅଛିନି ଯାଇ ମୁଁ ହିମକୁ ।
କାହିଁଗଲ ବୋଲି ସେ ଲେଡୁଅଛି
କୁଚ କନ୍ଦରେ ଆସି ଏ ଦଶିଛି ।
ରସ କଲ୍ଲୋଳ-୧୧/୪୦-୪୩

୧୧୮। କୀଟ ବ୍ରହ୍ମ ପରିଯନ୍ତେ ଯେତେକ
କାହିଁ ନାହିଁ କନ୍ଦର୍ପ କଉତୁକ ।

ରସ କଲ୍ଲୋଳ-୧୧/୭୫

୧୧୯। କ୍ରମେ ଶିଶିର ଋତୁ ଏହି ରୂପେ
କୁହୁଡ଼ିରେ ବୋଲୁଥାନ୍ତି ଗୋପେ ।

× × ×

କାହା ନୀବୀ ଗ୍ରେର ରୂପେ ଫିଅନ୍ତି
କାହାଠାରେ ଅର୍ଦ୍ଧ ଚନ୍ଦ୍ର ଦିଅନ୍ତି ।

ରସ କଲ୍ଲୋଳ-୧୧/୮୮-୯୧

୧୨୦। କରିଣୀ ବନ୍ଧଠାରୁ କି ବନ୍ଧ ଗଲ ମାର୍ଜାର ଯାଏ ।

ରସ କଲ୍ଲୋଳ-୧୪/୩୫

୧୨୧। ରସ କଲ୍ଲୋଳ-୧୫ଶ

୧୨୨। ତତ୍ରୈବ—୧୭ଶ, ୧୮ଶ, ୧୯ଶ

୧୨୩। ତତ୍ରୈବ—୨୩/୧୩, ୨୩/୧୬, ୧୩/୧୫

୧୨୪। ପ୍ରେମ ପଞ୍ଚାମୃତ—୯/୧୭୦-୧୯୯

୧୨୫। ଅଜୀବେ ସଞ୍ଚରିଲେ ଜୀବ । ଜୀବ ହୋଇଲେ ଜଡଭବ ।
ପାଷାଣ ଦ୍ରବ ହୋଇ ବହେ । ଜଳ ପାଷାଣ ପ୍ରାୟେ ରହେ ।

ପ୍ରେମ ପଞ୍ଚାମୃତ-୯/୨୩୩-୨୩୪

୧୨୬। କନ୍ଦର୍ପ କୁବେର ଭଣ୍ଡାର । କରନ୍ତି ରତି ରତ୍ନ ଜୁର ।
ବନ୍ଧ ଷୋଡ଼ଶ ଚତୁର୍ଗୁଣ । ଏ ବିଧି ହୋଇଲା ସଂପୂର୍ଣ୍ଣ ।

ପ୍ରେମ ପଞ୍ଚାମୃତ-୯/୩୩୯-୩୪୦

୧୨୭। ଯୋଗମାୟା ବଶେ ହେଲେ ହରି ନାରୀ
ଗୋଟିକେ ଗୋଟିଏ ରୂପ ଯେ ।

ଛାନ୍ଦ ଭୂଷଣ-୨୬/୫

୧୨୮। ଯୋଷାଙ୍କ ଜାନୁରେ ବସି ସୁଖପରିହରି ହରି ଭଷିଲେ ଏ ଗୀର
ଯୁବରଜ ଆଜ ମୋତେ କରଇଇ ଗୋପପୁରେ ଗମାବର ।

ଛାନ୍ଦ ଭୂଷଣ-୨୬/୧୦

୧୨୯। ଶ୍ୟାମ ରସୋତ୍ସବ-୧୦ମ

୧୩୦। ପଦାବଳୀ ସାହିତ୍ୟ (ବଙ୍ଗଳା)-ପୃ ୧୯୯

୧୩୧। କପଟ କୁଶଳ କାମ ରୂପୀ ଯଦୁପତି
କେତେବେଳେ ଧରିଥାନ୍ତି କେମନ୍ତ ମୂରତି ।
କେତେବେଳେ କାଚରା, ଶଙ୍ଖାରୀ, କଇବର୍ତ୍ତ
କେତେବେଳେ ମାଳୀ କେତେବେଳେ କଳାଭୂତ ।

ରସ କଲ୍ଲୋଳ-୭/୬

୧୩୨। ଛାନ୍ଦଭୂଷଣ-୨୮ଶ

୧୩୩। ବିଦଗ୍ଧ ଚିନ୍ତାମଣି-୭୬ଶ

୧୩୪। କାଖ କରି ମୋ ଶଋଧା ବଳିଲ । ମୋର କୁଚରେ ହସ୍ତ ପକାଇଲ ।
ଗ୍ଭରି ଦିଗକୁ ଗ୍ଭହିଁ ଅନୁସରି । ମୁଖେ ଚୁମ୍ବନ ଦେଲ ସ୍ଥିର କରି ।
ମୋର ଅଙ୍ଗ ପୀଡ଼ିଲ ପଞ୍ଚଶର । ଦେହ ହୋଇଲ ସାତ୍ତ୍ୱିକ ବିକାର ।

× × ×

କୋଟି କନ୍ଦର୍ପ ମୂରତି ଧଇଲ । ବାଳ କୁମର ତରୁଣ ହୋଇଲ ।
ମୁଁ ଗୋ ହୋଇଲି ତାହାର ଆୟତ୍ତ । ମୋର ଅଙ୍ଗରୁ ହରିନେଲ ଚିତ୍ତ ।
ଚଉଷଠୀ ବନ୍ଧରେ ବିପରୀତ ।ଯାହା ଶୁଣି ନଥିଲ କର୍ଣ୍ଣ ପଥ । ଇତ୍ୟାଦି

ଗୋପୀଭଷା-୨ୟ

୧୩୫। ଛାନ୍ଦ ଭୂଷଣ-୨୮/୨୯

❋

# ବସ୍ତୁ ବର୍ଣ୍ଣନା

କଥାବସ୍ତୁର ଗତିଶୀଳତା, ନାୟକ ନାୟିକାଙ୍କ ଚରିତ୍ରିକ ବିକାଶ ତଥା ରସର ଯଥୋଚିତ ବିନ୍ୟାସ ପାଇଁ କାବ୍ୟରେ ନାନାବିଧ ବିଷୟର ଅବତାରଣା କରଯାଇଥାଏ । ଅଳଙ୍କାର ଶାସ୍ତ୍ରରେ ସକଳ ବର୍ଣ୍ଣନୀୟ ବସ୍ତୁ ସଂପର୍କରେ ସ୍ପଷ୍ଟ ନିର୍ଦ୍ଦେଶ ଦେଖିବାକୁ ମିଳେ । ଆଚାର୍ଯ୍ୟ ଦଣ୍ଡୀ ତାଙ୍କର 'କାବ୍ୟାଦର୍ଶ'ରେ ମହାକାବ୍ୟର ଲକ୍ଷଣ ଦେବାକୁ ଯାଇ କହିଛନ୍ତି–

ନାଗରାର୍ଣ୍ଣବ ଶୈଳର୍ତ୍ତୁ ଚନ୍ଦ୍ରାର୍କୋଦୟ ବର୍ଣ୍ଣନୈଃ
ଉଦ୍ୟାନ ସଲିଳ କ୍ରୀଡ଼ା ମଧୁପାନରତୋତ୍ସବୈଃ ॥
ବିପ୍ରଲମ୍ଭୈର୍ବିବାହୈଶ୍ଚ କୁମାରୋଦୟ ବର୍ଣ୍ଣନୈଃ
ମନ୍ତ୍ରଦୂତ ପ୍ରୟାଣାଜିନାୟକାଭ୍ୟୁଦୟୈରପି ॥ [୧]

(ଅର୍ଥାତ୍ ନଗର, ସମୁଦ୍ର, ପର୍ବତ, ଋତୁ, ଚନ୍ଦ୍ର ଓ ସୂର୍ଯ୍ୟର ଉଦୟାସ୍ତ, ଉପବନ, ଜଳକ୍ରୀଡ଼ା, ମଧୁପାନ, ପ୍ରେମୋତ୍ସବ ଆଦି ମହାକାବ୍ୟରେ ସ୍ଥାନ ଲାଭ କରିବା ବିଧେୟ । ବିପ୍ରଲମ୍ଭ, ବିବାହ, କୁମାରୋତ୍ପତ୍ତି, ମନ୍ତ୍ରଣା, ଦୌତ୍ୟ, ଅଭିଯାନ, ଯୁଦ୍ଧ ତଥା ନାୟକର ଜୟଲାଭ ମଧ୍ୟ ଏହାର ଅଙ୍ଗୀଭୂତ ।)

'ସାହିତ୍ୟ ଦର୍ପଣ'ରେ ମଧ୍ୟ ଏହି ପ୍ରସଙ୍ଗ ଯଥାରୀତି ଉଲ୍ଲିଖିତ ।

ସନ୍ଧ୍ୟା ସୂର୍ଯ୍ୟେନ୍ଦୁରଜନୀପ୍ରଦୋଷଧ୍ୱାନ୍ତ ବାସରାଃ
ପ୍ରାତର୍ମଧ୍ୟାହ୍ନମୃଗୟାଶୈଳର୍ତ୍ତୁ ବନସାଗରାଃ
ସମ୍ଭୋଗ ବିପ୍ରଲମ୍ଭୌ ଚ ମୁନି ସ୍ୱର୍ଗ ପୁରାଧ୍ୱରାଃ
ରଣ ପ୍ରୟାଣୋପଯମ ମନ୍ତ୍ର ପୁତ୍ରୋ ଦୟାଦୟଃ
ବର୍ଣ୍ଣନୀୟା ଯଥାଯୋଗଂ ସାଙ୍ଗୋପାଙ୍ଗାଅମୀ ଇହ । [୨]

(ଅର୍ଥାତ୍ ସନ୍ଧ୍ୟା, ସୂର୍ଯ୍ୟ, ଚନ୍ଦ୍ର, ରାତ୍ରି, ସାୟଂକାଳ, ଅନ୍ଧକାର, ଦିବସ, ପ୍ରାତଃକାଳ, ମଧ୍ୟାହ୍ନ, ମୃଗୟା, ଶୈଳ, ଋତୁ, ବନ, ସାଗର, ସମ୍ଭୋଗ, ବିପ୍ରଲମ୍ଭ, ଋଷି, ସ୍ୱର୍ଗ, ନଗର, ମାର୍ଗ, ଯୁଦ୍ଧଯାତ୍ରା, ବିବାହ, ମନ୍ତ୍ର, ପୁତ୍ରଜନ୍ମ ଯଥାରୀତି ସଂକ୍ଷେପରେ ବା ବିସ୍ତୃତ ଭାବରେ ମହାକାବ୍ୟରେ ବର୍ଣ୍ଣିତ ହେବ ।)

ଓଡ଼ିଆ ରୀତି କାବ୍ୟର କବିଗଣ ଅଳଙ୍କାର ଶାସ୍ତ୍ରର ଏଇ ନିର୍ଦ୍ଦେଶ ଗ୍ରହଣ କରିବାକୁ କୁଣ୍ଠିତ ହୋଇ ନାହାନ୍ତି । ଏଠାରେ ବିବିଧ ବିଷୟଗତ ବର୍ଣ୍ଣନା-ନୈପୁଣ୍ୟର ବିଚାର ଆମର ଲକ୍ଷ୍ୟ ନୁହେଁ । ବର୍ଣ୍ଣନାରେ ଶୃଙ୍ଗାର ଚେତନାର ରୂପ କିପରି ଭାବେ ପ୍ରତିଫଳିତ ତାହା ହିଁ ଏହି ଆଲୋଚନାର ପରିସରଭୁକ୍ତ ।

ନଗର—ସଂସ୍କୃତ ସାହିତ୍ୟରେ ନଗର ବର୍ଣ୍ଣନାର ପୁଷ୍କଳ ପରମ୍ପରା ପରିଦୃଷ୍ଟ । ଶ୍ରୀହର୍ଷଙ୍କ 'ନୈଷଧ' କାବ୍ୟର ଆକାଶଚାରୀ ହଂସ କୁଣ୍ଡୀନ ନଗରର ସୌନ୍ଦର୍ଯ୍ୟ ଦେଖି ବିମୁଗ୍ଧ । ଗୋଟିଏ ସ୍ଥଳରେ ବର୍ଣ୍ଣିତ ଅଛି ଯେ ସ୍ଫଟିକମଣି ନିର୍ମିତ ତଥା ଚନ୍ଦ୍ରମା ଖଣ୍ଡ ତୁଲ୍ୟ ନିଷଧଙ୍କ ଗୃହଗୁଡ଼ିକର ଶୋଭା ଦୟିତ (ରାଜା ଭୀମ) ପ୍ରତି ନିରନ୍ତର ପ୍ରବୃତ୍ତା ନାୟିକା (ପୃଥିବୀ)ର ରତି କାଳୀନ ହସ ପରି ଏକାନ୍ତ ମନୋରମ [୩] । ଏ କ୍ଷେତ୍ରରେ କବିଙ୍କ ବସ୍ତୁ ବର୍ଣ୍ଣନା କିପରି ଶୃଙ୍ଗାର ଚେତନା ଦ୍ୱାରା ଆଛନ୍ନ ତାହା ସ୍ପଷ୍ଟ ଅନୁମେୟ ।

ଆମ କାବ୍ୟଧାରାରେ ମଧ୍ୟ ନଗର ବର୍ଣ୍ଣନାର ବିପୁଳ ବୈଚିତ୍ର୍ୟ ପରିଲକ୍ଷିତ । ଅଧିକାଂଶ ସ୍ଥଳରେ କବିର ଶୃଙ୍ଗାରସିକ୍ତ ଭାବନା ଏଥିରେ ପ୍ରତିଫଳିତ । ବିଷ୍ଣୁ ଦାସଙ୍କ 'ପ୍ରେମ ଲୋଚନା'ରେ ମଧୁବତୀ ନଗରୀ ନାରୀ ରୂପେ ପରିକଳ୍ପିତ [୪] । ଉପମେୟ ଓ ଉପମାନ ମଧ୍ୟରେ ସାଦୃଶ୍ୟ ସନ୍ଧାନ କରିବାକୁ କବିଙ୍କ ତତ୍‌ପରତାର ସୀମା ନାହିଁ । କିନ୍ତୁ କାବ୍ୟିକ ସଫଳତା ଅପେକ୍ଷା ନାରୀ ମୁଖୀ ଦୃଷ୍ଟି ହିଁ ଏଠାରେ ଉଲ୍ଲେଖଯୋଗ୍ୟ ।

ଲୋକନାଥ ବିଦ୍ୟାଧରଙ୍କ 'ସର୍ବାଙ୍ଗସୁନ୍ଦରୀ'ରେ ରତ୍ନମାଳା ନଗର କ୍ଷୀର ସାଗର, ସ୍ୱର୍ଗପୁର, କପିଳାସ ରୂପେ କଳ୍ପିତ । ତାହାର ଉତ୍କର୍ଷ

ଘୋଷଣା କରିବାକୁ ଯାଇ କବି ଶୃଙ୍ଗାର-କେନ୍ଦ୍ରିକ ବିରୋଧାଭାସ ଅଳଙ୍କାରର ଆଶ୍ରୟ ନେଇଛନ୍ତି । ବର୍ଣ୍ଣନା ରସସିକ୍ତ, ସରଳ ଓ ସୁରୁଚି ସଂପନ୍ନ [୫] ।

ସକଳ ବିଭବମୟୀ ଲଙ୍କା ନଗରୀ ଉପେନ୍ଦ୍ରଙ୍କ 'ବୈଦେହୀଶ ବିଳାସ'ରେ ଉଚ୍ଚ ମାନ୍ୟତାର ଅଧିକାରୀ । ସୀତା ଅନ୍ୱେଷଣ କାଳରେ ହନୁମାନ ଏହି ନଗରୀର ଦୃଶ୍ୟରାଜି ଦେଖି ବିସ୍ମିତ । ବର୍ଣ୍ଣନା ପ୍ରସଙ୍ଗରେ କବି ରାବଣ-ରାଜ ଅନ୍ତଃପୁରୀର ଶୃଙ୍ଗାର ରସଘନ ଚିତ୍ର ଉପସ୍ଥାପନ କରିଛନ୍ତି [୬] । ହସ୍ତୀ ମନ୍ଥିତ ପଦ୍ମିନୀ ଲତା ଭଳି ସ୍ଥାନେ ସ୍ଥାନେ ଶାୟିତା ସମ୍ଭୋଗକ୍ଲାନ୍ତା ଦିବ୍ୟାଙ୍ଗନାମାନଙ୍କର ବେଶ ବାସ ବିଶ୍ଲଥ ଅଙ୍ଗଶୋଭା ଏଠାରେ କାବ୍ୟ-ସୁଷମାନ୍ୱିତ । କୁଞ୍ଚିତ ଅବଶ ଦେହ, ଉତ୍ପୀଡ଼ିତ ପୃଥୁଳ ସ୍ତନ, ରତିଶ୍ରମ ହେତୁକ ଖରଶ୍ୱାସ ମୁଂଚିତ ନାସା, ଅସ୍ତବ୍ୟସ୍ତ କେଶ, ଉନ୍ମୁକ୍ତ ଜଘନ ଦେଶ ଆଦିର ଉଲ୍ଲେଖ ଶୃଙ୍ଗାରିକତା ପ୍ରତି କବିଙ୍କ ପ୍ରଗାଢ଼ ଆସକ୍ତିର ପରିଚାୟକ । ମେଘବର୍ଣ୍ଣ ରାବଣ-ଅଙ୍କଶାୟିନୀ ବିଦ୍ୟୁତ୍ ଲତା ପ୍ରାୟ ଗୌରବର୍ଣ୍ଣା ବାରାଙ୍ଗନାର ପୂର୍ଣ୍ଣକୁମ୍ଭ ସମ ସ୍ତନ ଦୃଶ୍ୟ ଏଠାରେ ଗଭୀର ଆନ୍ତରିକତାର ସହ ଚିତ୍ରିତ [୭] । ମନେହୁଏ ନଗର ବର୍ଣ୍ଣନାରେ ସ୍ୱାଭାବିକତା ଅପେକ୍ଷା ଶୃଙ୍ଗାର ଚିତ୍ରର ତନ୍ମୟ ପରିକଳ୍ପନା କବି ଚିତ୍ତକୁ ଏକାନ୍ତ ଭାବେ ବଶୀଭୂତ କରିଛି । ସ୍ଥାନ ବିଶେଷରେ ବନିତା ବକ୍ଷୋଜସ୍ଥିତ ନଖ ଚିହ୍ନକୁ ଅଟ୍ଟାଳିକା ଉପରି ଶୋଭିତ ରଙ୍ଗ କେତନ ସହ ତୁଳନା କରିବା ଦ୍ୱାରା ଉପମା ସୃଷ୍ଟିରେ ନଗର ଦୃଶ୍ୟର ଭୂମିକା ମଧ୍ୟ ସ୍ୱୀକୃତ [୮] । 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟର ଚମ୍ପା ନଗରୀ ବର୍ଣ୍ଣନାରେ ନୈଷଧୀୟ ଅତିରଞ୍ଜନର ମନୋଜ୍ଞ ବିଳାସ ଦେଖିବାକୁ ମିଳେ । ସ୍ଥାନେ ସ୍ଥାନେ କବି କଳ୍ପନା ଶୃଙ୍ଗାରଧର୍ମୀ । ଅଳକା ଓ କାଞ୍ଚି ନଗରୀ ଶୋଭାନ୍ୟୁନତା ହେତୁ ତରୁଣୀର ଶରଣାପନ୍ନ ହେବା ଏବଂ କମ୍ପ, ସ୍ତମ୍ଭ, ତନ୍ଦ୍ରା ଆଦି ବିକାର (ସାତ୍ତ୍ୱିକ ବିକାର) ଲାଭ କରିବା ବର୍ଣ୍ଣନା ନିଶ୍ଚିତଭାବେ କାମଭାବନାଯୁକ୍ତ [୯] । ନଗର ବହିଃଦ୍ୱାରର ଶୋଭା ପ୍ରସଙ୍ଗରେ କବି ତାହାକୁ ନୃତ୍ୟକାରିଣୀ କଳୁଣୀ ସହ ତୁଳନା କରିଛନ୍ତି । ଏଠାରେ କଳଶ, ଦ୍ରୋଣସ୍ତମ୍ଭ ଓ ନାରୀପଦ ନୂପୁର ଯଥାକ୍ରମେ କୁଚ, ବାହୁ ଓ ବାଦ୍ୟ ରୂପେ ପରିକଳ୍ପିତ [୧୦]।

କନ୍ୟା ସ୍ତମ୍ଭ ଗୁଡ଼ିକ ରୂପଜୀବା ସଦୃଶ । ଦୂର ଦେଶାଗତ ପଥିକ ଏହାକୁ ଦେଖି କାମପୀଡ଼ାରେ ଅଧୀର ହେବା କିଛି ଆଶ୍ଚର୍ଯ୍ୟ ନୁହେଁ [୧୧] । ପୁଷ୍ପପୁର ନଗର ଅତୁଳ ଐଶ୍ୱର୍ଯ୍ୟ ବିମଣ୍ଡିତ । ସେଠାକାର ଆଦ୍ର୍ବସ୍ତା ନାରୀର ସ୍ତନ ଓ ବିବଂଧ କେଶ ନିକଟରେ କୁନ୍ଦକାରୀର ସମ୍ପୁଟକ ଏବଂ ପୁଳିନ୍ଦର ମୟୂର ପୁଚ୍ଛ ଓ ଗ୍ରମର ସୌନ୍ଦର୍ଯ୍ୟ ପରାଭୂତ [୧୨] । ଏ ସକଳ କ୍ଷେତ୍ରରେ କବି ଦୃଷ୍ଟିର ରସାଳତା ବାସ୍ତବିକ ଉପଭୋଗ୍ୟ ।

ପଦ୍ମନାଭ ଶ୍ରୀଚନ୍ଦନଙ୍କ 'ଶଶିରେଖା' କାବ୍ୟରେ ପଦ୍ମକର ନଗର ବର୍ଣ୍ଣନା ବିବିଧ ଆଳଙ୍କାରିକ ବୈଚିତ୍ର୍ୟ ମଣ୍ଡିତ । କବି କଳ୍ପନାରେ ଏହା ଦ୍ୱାରବତୀ, ଅଳକା, ସ୍ୱର୍ଗ, ପାତାଳ, ମଥୁରା, ବୃନ୍ଦାବନ, ଅଯୋଧ୍ୟା ଆଦି ନଗରୀଠାରୁ କୌଣସି ଗୁଣରେ ଊଣା ନୁହେଁ । ଅବଶ୍ୟ ଏଥିରେ ପ୍ରାକୃତିକତା ଅପେକ୍ଷା ଶବ୍ଦ-କୌଶଳର ଗୋଲକଧନ୍ଦା ପ୍ରାଧାନ୍ୟ ଲାଭ କରିଛି । କିନ୍ତୁ କାଳ ଓ ରୁଚିର ମାନଦଣ୍ଡରେ ଏହାର ମୂଲ୍ୟ ଅନୁଶୀଳନ ସାପେକ୍ଷ । ଏହି ନଗରର ଶ୍ରେଷ୍ଠତ୍ୱ ଘୋଷଣା କରିବାକୁ ଯାଇ କବି ତାହାର ବକ୍ରତା, କୁଟିଳତା, ଚଞ୍ଚଳତା, ଔଦ୍ଧତ୍ୟ, ମନ୍ଦତା ଆଦି ସକଳ ଅବିଗୁଣକୁ ସୁନ୍ଦରୀ ପୁରନାରୀଙ୍କଠାରେ ଠୁଳ କରି ଦେଇଛନ୍ତି [୧୩] । ପକ୍ଷାନ୍ତରେ ନାରୀ ଓ ନଗର ଉଭୟର ସୌନ୍ଦର୍ଯ୍ୟ ତୁଙ୍ଗ ଗୌରବରେ ଗୌରବାନ୍ୱିତ ।

କବିସୂର୍ଯ୍ୟଙ୍କ 'ଚନ୍ଦ୍ରକଳା' କାବ୍ୟର ମହାଗଳଘୋଷ ନଗର ଚିତ୍ରଣରେ ଉପେନ୍ଦ୍ର ଓ ପଦ୍ମନାଭ ପରଂପରାର ସ୍ପଷ୍ଟ ପ୍ରଭାବ ପରିଲକ୍ଷିତ । ପ୍ରାସାଦ, ପରିଖା, ପ୍ରାଚୀର, କେଳି ଜଳାଶୟ, ହସ୍ତୀ, ଅଶ୍ୱାଦିର ଉଲ୍ଲେଖ କଳ୍ପନା ବିଳାସର ଚରମ ଶିଖର ସ୍ପର୍ଶ କରିଛି । ଏହି ନଗରର ଐଶ୍ୱର୍ଯ୍ୟ ଓ ସୌନ୍ଦର୍ଯ୍ୟ ନିକଟରେ ସ୍ୱର୍ଗ, କୁବେରପୁରୀ, ବ୍ରହ୍ମଲୋକ ମଧ୍ୟ ଉପହସିତ । ପ୍ରସଙ୍ଗକ୍ରମେ ଶୃଙ୍ଗାରଧର୍ମୀ ଅତିରଞ୍ଜନର ଚିତ୍ର ପ୍ରଦାନ କରିବାରେ କବିଙ୍କ ଆଗ୍ରହାତିଶଯ୍ୟ ଲକ୍ଷ୍ୟ କରିବାର କଥା । କଳାବତୀଙ୍କର କଟାକ୍ଷରେ କୁଟିଳତା, ରମଣୀର ଉରଜରେ କଠୋରତା, ବାରବନିତାର ନୟନରେ ଚଞ୍ଚଳତା ବ୍ୟତୀତ ଅନ୍ୟତ୍ର ଏପରି ଗୁଣର ଅଭାବ ପରିଦୃଷ୍ଟ [୧୪] । ଆକାଶ ମାର୍ଗରେ ଗମନ କଲାବେଳେ ସ୍ୱଶୟନ-କକ୍ଷ ଭ୍ରମରେ ଦେବଗୁରୁ ବୃହସ୍ପତିଙ୍କର ସଚିବ-ମହିଷୀଙ୍କ

ଶୟନ ମନ୍ଦିରରେ ପ୍ରବେଶ ଓ ପତ୍ନୀ ଭ୍ରମରେ ତାଙ୍କ ସହ ରମଣ ଅତ୍ୟନ୍ତ କୌତୂହଳୋଦ୍ଦୀପକ [୧୫] । ସେହିପରି ନିଶାଭିସାରୀ ଦେବତାଗଣଙ୍କର ନିଜସ୍ୱ ପୁତ୍ତଳିକାଗୁଡ଼ିକୁ ନାରୀ ଭ୍ରମରେ ଚୁମ୍ବନ ଦାନ ଏ ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ [୧୬] । ମଣିମଞ୍ଜୁଳା ନଗର ବର୍ଣ୍ଣନାରେ ମଧ୍ୟ କବି କଳ୍ପନାର ଇନ୍ଦ୍ରଜାଲ ସୃଷ୍ଟି କରିଛନ୍ତି । କେଉଁ ରସ ଲମ୍ପଟ ପୁରୁଷର ପ୍ରେୟସୀ ଭ୍ରମରେ ଚନ୍ଦ୍ର ଚୁମ୍ବନ ଘଟଣା—ଏହାର ଏକ ବିଶିଷ୍ଟ ଉଦାହରଣ [୧୭] । ଅବାସ୍ତବ ହେଲେ ହେଁ ଏ ସକଳ କ୍ଷେତ୍ରରେ କବିର ରସାଳ ରଚନା ରୀତି ଓ ଘଟଣା ଗୁମ୍ଫନ ବିଳାସିତା ପ୍ରଶଂସନୀୟ ।

ଯଦୁମଣିଙ୍କ 'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର'ରେ ପ୍ରଚଳିତ କାବ୍ୟରୀତି ଅନୁସୃତ । ଦ୍ୱାରବତୀ ନଗରରେ ସ୍ୱଚ୍ଛ ହସ୍ତୀମାନଙ୍କ ଅବସ୍ଥିତି ହେତୁ ସୂର୍ଯ୍ୟୋଦୟ ଅପ୍ରକାଶ ହେଉଥିବାରୁ ଅଭିସାରୀ ସ୍ତ୍ରୀ ପୁରୁଷର ସୁରତ ବ୍ୟାପାର ଦିବାଗମନରେ ମଧ୍ୟ ଅବ୍ୟାହତ ରହିଥାଏ [୨୮] । କୁଣ୍ଡୀନ ନଗରର ରୂପ ଗର୍ବିତା ରଜଦନ୍ତ ଅଳସକନ୍ୟାଗୁଡ଼ିକୁ ଦେଖି ସନ୍ନ୍ୟାସୀମାନେ ମଧ୍ୟ ହତଜ୍ଞାନ ହୋଇଯାନ୍ତି [୨୯] । ନଗର ଦୃଶ୍ୟକୁ ଶୃଙ୍ଗାର-ରମଣୀୟତା ପ୍ରଦାନ କରିବାରେ ଏ ସମସ୍ତ ମନୋହର ପରିକଳ୍ପନାର ସାର୍ଥକତା ସ୍ୱୀକୃତ ।

ଓଡ଼ିଆ ରୀତି କାବ୍ୟର ନଗର ବର୍ଣ୍ଣନା ମୁଖ୍ୟତଃ ପ୍ରାଚୀନ ସଂସ୍କୃତ କାବ୍ୟ ସରଣୀ ନିକଟରେ ଋଣୀ । ପ୍ରାଚୁର୍ଯ୍ୟର ଅବାସ୍ତବତା ଓ ବିଳାସ ରସିକତାର ବିପୁଳତା ଏହାର ପ୍ରଧାନ ଅଙ୍ଗ । ତତ୍‌କାଳୀନ ସାହିତ୍ୟିକ ପାଣିପାଗ ଅନୁରୋଧକ୍ରମେ କବିଦୃଷ୍ଟି ସ୍ୱାଭାବିକତା ପ୍ରତି ଆକୃଷ୍ଟ ହୋଇନାହିଁ । ତେଣୁ କାବ୍ୟ ସ୍ରଷ୍ଟା ଯେଉଁ ନଗର/ଦରବାରର ଅଧିବାସୀ; ତାହାର ଚିତ୍ର ପ୍ରଦାନ ନ କରି କେଉଁ କଳ୍ପନାଲୋକର ବର୍ଣ୍ଣନାରେ ଅଧିକ ପଟୁତା ପ୍ରଦର୍ଶନ କରିଛି ।

ଅରଣ୍ୟ—ଓଡ଼ିଆ ରୀତି କାବ୍ୟରେ ଅରଣ୍ୟ ବର୍ଣ୍ଣନାର ପରମ୍ପରା ସକଳ କ୍ଷେତ୍ରରେ ସମୃଦ୍ଧ ନୁହେଁ । କେତେକ ସ୍ଥଳରେ ଏହା ବୃକ୍ଷଲତା, ଫୁଲ ଫଳ, ପଶୁପକ୍ଷୀ ଇତ୍ୟାଦିର ଏକ ସୁଦୀର୍ଘ ବିବରଣରେ ଉପଜାତ [୨୦] । କାବ୍ୟିକ ବ୍ୟଞ୍ଜନାଯୁକ୍ତ ଅରଣ୍ୟକ ସୁଷମାର ପରିସର

ବହୁ ସ୍ଥଳରେ ସୀମିତ । ସେଥିମଧ୍ୟରୁ କେବଳ ଶୃଙ୍ଗାର ଚେତନାର ଅଭିବ୍ୟକ୍ତି ସଂବଳିତ ପ୍ରସଂଗର ଆଲୋଚନା ଏଠାରେ ଉପସ୍ଥାପିତ ।

ଅର୍ଜୁନ ଦାସଙ୍କ 'ରାମବିଭା'ରେ ସଂକ୍ଷିପ୍ତ ଓ କିଞ୍ଚିତ୍ ସ୍ୱାଭାବିକ ରୀତିରେ ଅରଣ୍ୟ ଦୃଶ୍ୟର ବର୍ଣ୍ଣନା ସନ୍ନିବେଶିତ । ଗଙ୍ଗାନଦୀ ଅତିକ୍ରମ କରି ଋଷି ବିଶ୍ୱାମିତ୍ରଙ୍କ ସହ ରାମଚନ୍ଦ୍ର ନିବିଡ଼ ବନଭୂମିରେ ଆସି ଉପସ୍ଥିତ । ପ୍ରାକୃତିକ ସ୍ତବ୍ଧଚିତ୍ରାବଳୀ ଶୋଭିତ ଏଇ ପ୍ରଦେଶ ତାଙ୍କ ଦୃଷ୍ଟିରେ କାମର କେଳି ନଗର ରୂପେ ବିରାଜମାନ [୨୧] । ଏହା ଅତ୍ୟନ୍ତ ସୂଚନାମୂଳକ ହେଲେ ହେଁ କାବ୍ୟ ରାଜ୍ୟରେ ଅରଣ୍ୟ ବର୍ଣ୍ଣନା କୈନ୍ଦ୍ରିକ ଶୃଙ୍ଗାର ଚେତନାର ଆଦି ସଂକେତ ବହନ କରେ ।

ବିଷ୍ଣୁଦାସଙ୍କ 'ପ୍ରେମଲୋଚନା'ରେ ଅରଣ୍ୟ ଦୃଶ୍ୟ ଅତ୍ୟନ୍ତ ସରସ । ଲତା ଓ ବୃକ୍ଷର ବିବିଧ ଅବସ୍ଥାକୁ କବି ପୁଷ୍ପବତୀ, ଆଲିଙ୍ଗନବତୀ, ନବୀନା, ନାଗରୀ, ଗଣିକା, ବିରହିଣୀ, ଗର୍ଭବତୀ, ନବସଂଗମା, ପ୍ରସୂତୀ, ମାନବତୀ, ବାସକ ସଜ୍ଜିକା ଆଦି ନାରୀର ବିବିଧ ରୂପ ସହ ତୁଳନା କରିଛନ୍ତି । ଶୃଙ୍ଗାର କଳାର ସକଳ ରୀତି ଏଥିରେ ପରିସ୍ଫୁଟ [୨୨] । କବି ଭାବନା ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟରେ ଧାବିତ ହୋଇଥିବାରୁ ଅରଣ୍ୟ ସୌନ୍ଦର୍ଯ୍ୟର ଯଥାର୍ଥ ଚିତ୍ରଣରୁ ଏହା ବଞ୍ଚିତ । କିନ୍ତୁ ବର୍ଣ୍ଣନାର ନିଜସ୍ୱ ସୀମା ଭିତରେ ଏହା ପ୍ରଶଂସନୀୟ ସଫଳତାର ଅଧିକାରୀ ।

ଧନଞ୍ଜୟଙ୍କ 'ରଘୁନାଥ ବିଳାସ'ରେ ଅରଣ୍ୟକୁ ନଭ, ରସାତଳ, ସୁରପୁର ଆଦି ରୂପେ କଳ୍ପନା କରା ଯାଇଛି । କେତେକ ସ୍ଥଳରେ ତରୁଲତା ଶ୍ରେଣୀର ବିଭିନ୍ନ ଦୃଶ୍ୟ ସହ ସୁରତି ବିଳାସର ସମ୍ବନ୍ଧ ପ୍ରତିଷ୍ଠିତ [୨୩] ।

ଉପେନ୍ଦ୍ରଙ୍କ 'ବୈଦେହୀଶ ବିଳାସ'ରେ ରାମଚନ୍ଦ୍ରଙ୍କ ଅରଣ୍ୟ-ବାସର ଦୀର୍ଘ ଆଳଙ୍କାରିକ ଚିତ୍ର ପ୍ରଦତ୍ତ । ସର୍ବଯମକରେ ଅହଲ୍ୟା ଓ ଅରଣ୍ୟର ରୂପ ବର୍ଣ୍ଣନା ବିଶେଷ କଳା-କୌଶଳ ସମ୍ମତ [୨୪] । ନାୟକ ନାୟିକାଙ୍କ ପ୍ରେମାଳାପ ଜରିଆରେ ପ୍ରକୃତିର ବିବିଧ ରୂପ-ସଂଭାର ବିଦଗ୍ଧ କାବ୍ୟ ସୁଷମା ଲାଭ କରିଛି । କିନ୍ତୁ ପଦ-ଯୋଜନା, ଶାସ୍ତ୍ରୀୟ ଶୃଙ୍ଖଳା (ଯମକ,

ଅନ୍ତର୍ଲିପି, ବହିର୍ଲିପି, ସିଂହାବଲୋକନ, ଗୋମୂତ୍ରିକା ଇତ୍ୟାଦି) ଅନୁବଂଧନରେ ଅଭିବ୍ୟକ୍ତିର ଧାର ହୃଦୟଗ୍ରାହୀ ହୋଇ ପାରିନାହିଁ । କିନ୍ତୁ ଏଥିରେ ମଧ୍ୟଯୁଗୀୟ କାବ୍ୟାଦର୍ଶର ଆସର୍ଦ୍ଧ୍ୟ ରୂପାୟିତ [୨୪] । ଏସବୁ ସତ୍ତ୍ୱେ କାବ୍ୟରେ ଅରଣ୍ୟ ପ୍ରକୃତି ଓ ଜୀବନ ବିକାଶ ମଧ୍ୟରେ କବି ନିବିଡ଼ ସଂପର୍କ ପ୍ରତିଷ୍ଠା କରିଛନ୍ତି । ବନବାସର ବିସ୍ତୃତ ବର୍ଣ୍ଣନା ପ୍ରବାହରେ ସ୍ଥାନେ ସ୍ଥାନେ ତାଙ୍କ ଶୃଙ୍ଗାର-ଦୃଷ୍ଟିର ପ୍ରତିଫଳନ ଆହୁରି ସୁସ୍ପଷ୍ଟ । ଚିତ୍ରକୂଟ ଅରଣ୍ୟକୁ ଏକ ବନିତା ଏବଂ ଝିଲ୍ଲୀ ଝଙ୍କାରକୁ ବାଳା-ପଦ ଅଳଙ୍କାର ଧ୍ୱନି ରୂପେ ତୁଳନା କରି ସେ ପୂର୍ବରୀତିର ଅନୁବର୍ତ୍ତନ କରିଛନ୍ତି [୨୫] । ପଞ୍ଚବଟୀର ତରୁ ସମୂହରେ ପୁତ୍ରବତୀ, ବ୍ୟଭିଚାରୀ, ନଷ୍ଟଦୂତୀ, ସ୍ୱୟଂଦୂତୀ ନାୟିକାର ଭାବ ଆରୋପଣ ମଧ୍ୟ ଏ ପ୍ରସଂଗରେ ଉଲ୍ଲେଖଯୋଗ୍ୟ [୨୭] । ସୀତା ଅନ୍ୱେଷଣ କାଳରେ କଦମ୍ବ ବୃକ୍ଷକୁ ଦେଖି ବିରହ ବିଧୁର ରାମଚନ୍ଦ୍ରଙ୍କ ପ୍ରିୟତମା ବିବସନ-ଭାବନା ସେହି ଚେତନାର ଅନ୍ୟତମ ନିଦର୍ଶନ [୨୮] । 'ରସଲେଖା' କାବ୍ୟର ରସୋଦୟ ବନ ବର୍ଣ୍ଣନାରେ ଅତ୍ୟନ୍ତ କାମୋଦ୍ଦୀପକ ପରିବେଶର ପରିକଳ୍ପନା କରାଯାଇଛି । ସେ ଭୂମିରେ ଉପଗତ ମହା ଊର୍ଦ୍ଧ୍ୱରେତା ଋଷି କପିସାଂଙ୍କ ଓ ତାଙ୍କ ଶିଷ୍ୟମଣ୍ଡଳୀଙ୍କର କାମ ବିଚେଷ୍ଟା ଯେପରି ରସଘନ ସେହିପରି ବିସ୍ମୟକର [୨୯] । ଅରଣ୍ୟର ପ୍ରାକୃତିକତା ଏଠାରେ ସଂପୂର୍ଣ୍ଣ ବିବର୍ଜିତ । 'ଛାନ୍ଦ ଭୂଷଣ'ରେ ଶ୍ରୀକୃଷ୍ଣଙ୍କ ଗୋବତ୍ସ-ଚାରଣ-ବନଭୂମିର ଶୋଭାକୁ କବି ଚତୁରୀ ନାରୀ ସହ ତୁଳନା କରିଛନ୍ତି [୩୦] । ଏତଦ୍‌ବ୍ୟତୀତ ତରୁଲତା ଶ୍ରେଣୀର ବିବିଧ ଅବସ୍ଥା ଏଠାରେ କାମୀ, କାମିନୀ, ଚିନ୍ତାର୍ଥିନୀ, ଚେଟୀ ଅନୁଗତ ପୁଂସ, ପୁଷ୍ପବତୀ, ବାସକସଜ୍ଜିକାଦି ରୂପେ ଚିତ୍ରିତ । ପିକମାନଙ୍କର କଳରୋଳକୁ ମାର ରାଜାଙ୍କ ଚମୂ-କୋଳାହଳ, ଚନ୍ଦ୍ର ରଜନୀକୁ କାମରନ୍ଧିନୀ ରୂପେ ଅଭିହିତ କରି କବି ସମଗ୍ର ପରିବେଶକୁ ଶୃଙ୍ଗାରମୟ କରି ଗଢ଼ିଛନ୍ତି ।

ଅଭିମନ୍ୟୁଙ୍କ 'ବିଦଗ୍ଧ ଚିନ୍ତାମଣି'ରେ ଅରଣ୍ୟ ସୌନ୍ଦର୍ଯ୍ୟ ପ୍ରେମା ରାଧିକା ରାଧା ରୂପେ ପରିକଳ୍ପିତ [୩୧] । ରାଧାଙ୍କ ପ୍ରତି ଅଙ୍ଗର ଲଳିତ ସୌଷ୍ଠବ ପ୍ରତି ଦୃଷ୍ଟି ରଖି କବି ପ୍ରକୃତି ରାଜ୍ୟରୁ ମନୋହର ଉପମା ଗଛି

ସଂଗ୍ରହ କରିଛନ୍ତି[୩୨]। ଏହାଦ୍ୱାରା ତାଙ୍କର ଦୁଇଟି ଉଦ୍ଦେଶ୍ୟ ସାଧିତ ହୋଇଛି । ପ୍ରଥମତଃ ବୈଷ୍ଣବ ସଂସ୍କୃତିରେ ସୁପ୍ରତିଷ୍ଠିତା ମହାଭାବମୟୀ ନାୟିକାର ରୂପ ଗୌରବକୁ ନାୟକ ସମ୍ମୁଖରେ ଉପସ୍ଥାପିତ କରିବା ଛଳରେ ସ୍ୱୀୟ ଭକ୍ତି ଧର୍ମ ପ୍ରତି ମାନ୍ୟତା ପ୍ରଦର୍ଶନ । ଦ୍ୱିତୀୟତଃ ମଧ୍ୟ-ଯୁଗୀୟ ଶୃଙ୍ଗାର ଚେତନା ପ୍ରତି ସମର୍ଥନ । ଶ୍ରୀକୃଷ୍ଣଙ୍କର ସଖାଗଣଙ୍କ ଦୃଷ୍ଟିରେ ସେହି ଅରଣ୍ୟ କିନ୍ତୁ ସ୍ୱର୍ଗପୁର, ବିଷ୍ଣୁପୁର, କୈଳାସ ନଗର, ପାତାଳପୁରୀ, ରତ୍ନାକର, ଗ୍ରହଲୋକ, କୁବେରପୁରୀ, ବିବାହ ଉତ୍ସବ, କାମଦଶା ଓ ବନ୍ଧ ବିଧାନ ରୂପେ ପ୍ରତିଭାତ । ରୀତି କାବ୍ୟିକ ନଗର ବର୍ଣ୍ଣନାର ଧାରାକୁ କବି ଏ ସ୍ଥଳରେ ଅନୁସରଣ କରିଛନ୍ତି ।

ଅରଣ୍ୟକୁ କେଳି ନଗର, ନାରୀ, ବିବିଧ ନାୟିକା, କାମ ବିଭବ ରୂପେ ଚିତ୍ରଣ କରିବା ଦ୍ୱାରା ରୀତି କାବ୍ୟରେ ଶୃଙ୍ଗାର ଚେତନାର ଦିଗ୍‌ବଳୟ ବିସ୍ତୃତ ହୋଇଛି । କିନ୍ତୁ ପ୍ରସଙ୍ଗ ବର୍ଣ୍ଣନାରେ ପ୍ରାଣ ଚଞ୍ଚଳ ଆରଣ୍ୟକ ରୂପ ସଂପଦ ପ୍ରତି କବିଦୃଷ୍ଟି ଯଥାର୍ଥ ଧ୍ୟାନ ଦେଇପାରିନାହିଁ । ମନେହୁଏ ସ୍ରଷ୍ଟା-ମାନସ ପକ୍ଷରେ ଯୁଗରୁଚିକୁ ଉପେକ୍ଷା କରିବା ଆଦୌ ସମ୍ଭବ ନଥିଲା ।

ପର୍ବତ—ପର୍ବତ ବର୍ଣ୍ଣନାରେ କାଳିଦାସଙ୍କ ଦକ୍ଷତା ଅପୂର୍ବ ଓ ଅସାମାନ୍ୟ । 'ମେଘଦୂତ'ରେ ରାମଗିରି ତଥା 'କୁମାର ସମ୍ଭବ'ରେ ହିମାଳୟର ଦୃଶ୍ୟାବଳୀ ଅତୀବ ଚିତ୍ତାକର୍ଷକ । ପ୍ରସଙ୍ଗକ୍ରମେ ଶୃଙ୍ଗାରିକତାର ରସସ୍ନିଗ୍ଧ ଆରୋପ ମଧ୍ୟ ଏଥିରେ ପରିଦୃଷ୍ଟ । ହିମାଳୟ ସଂପର୍କରେ ଅଧ୍ୟାପକ ଉମାଶଙ୍କର ତିଓ୍ୱାରୀଙ୍କ ମନ୍ତବ୍ୟର କିୟଦଂଶ ଏଠାରେ ଉଲ୍ଲେଖଯୋଗ୍ୟ । "ବିଦ୍ୟାଧର ସୁନ୍ଦରୀମାନଙ୍କର ଅନଙ୍ଗ ଲେଖ, ଅପ୍‌ସରାମାନଙ୍କର ସୌନ୍ଦର୍ଯ୍ୟ, କିନ୍ନରୀମାନଙ୍କର ନିତମ୍ବ ତଥା ସ୍ତନଭାର ଜନିତ ମନ୍ଦଗତି ଇତ୍ୟାଦିର ବର୍ଣ୍ଣନାରେ ତାଙ୍କ ସହଜ ଶୃଙ୍ଗାରପ୍ରିୟତାର ନିଦର୍ଶନ ମିଳେ[୩୩]।" 'ଶିଶୁପାଳବଧ'ରେ ରୈବତକ ପର୍ବତର ବର୍ଣ୍ଣନା ମାଘଙ୍କୁ ବିପୁଳ କବି ଯଶର ଗୌରବରେ ଗୌରବାନ୍ୱିତ କରିଛି ।

ଓଡ଼ିଆ ରୀତି କାବ୍ୟରେ ପର୍ବତ ବର୍ଣ୍ଣନାର ପରମ୍ପରା ଏକାନ୍ତ ଦୁର୍ବଳ । ବିଷ୍ଣୁ ଦାସଙ୍କ 'ପ୍ରେମଲୋଚନା' କାବ୍ୟରେ ଶାପ ହେତୁକ ପ୍ରବାସୀ ନାୟକର

ମହାଧାରଣ ପର୍ବତରେ ଅବସ୍ଥାନ ଉଲ୍ଲିଖିତ [୩୪] । ଦୀର୍ଘ ବିରହ ଭାବନା ଓ ଶାପମୁକ୍ତି ପ୍ରୟାସ ବ୍ୟତୀତ ଏ ସ୍ଥଳରେ ପାର୍ବତ୍ୟ ଦୃଶ୍ୟର କୌଣସି ବିବରଣ ନାହିଁ । ଧନଞ୍ଜୟଙ୍କ 'ଅନଙ୍ଗରେଖା' କାବ୍ୟର ପ୍ରବାସ ପ୍ରସଙ୍ଗରେ ରତ୍ନକୂଟ ପର୍ବତର ନାମୋଲ୍ଲେଖ ଦେଖିବାକୁ ମିଳେ । ନାୟକର ଦ୍ୱିତୀୟଥର ରତ୍ନକୂଟ ଯାତ୍ରା ବର୍ଣ୍ଣନାରେ ବସନ୍ତ ପ୍ରକୃତିର ରମଣୀୟତା ଚିତ୍ରିତ [୩୫] । ଉପେନ୍ଦ୍ରଙ୍କ 'ସୁଭଦ୍ରା ପରିଣୟ'ରେ ରୈବତକ ପର୍ବତର ବର୍ଣ୍ଣନା ଦୀର୍ଘ ଓ କାବ୍ୟଶ୍ରୀ ମଣ୍ଡିତ । ପାର୍ବତ୍ୟ ପ୍ରକୃତିର ସାମଗ୍ରିକ ଶୋଭା ସଂପଦ ସରସ ଆଳଂକାରିକ ରୀତିରେ ଅଭିବ୍ୟକ୍ତ । ସ୍ଥଳ ବିଶେଷରେ ପ୍ରସଙ୍ଗଟି ଶୃଙ୍ଗାର ରସସିକ୍ତ । କବି ଗିରି ଶୃଙ୍ଗକୁ ଅବନୀ ବନିତାର ସ୍ତନ, ମଣି ଗହ୍ୱରକୁ ସ୍ମରଶାସ୍ତ୍ର ରୂପେ ପରିକଳ୍ପନା କରିଛନ୍ତି [୩୬] । ବୃକ୍ଷଲତାଦିର ଅବସ୍ଥା ଭେଦରେ କାମଭାବନାର ଆରୋପ ଅତ୍ୟନ୍ତ ହୃଦୟଗ୍ରାହୀ । ବ୍ରଜନାଥଙ୍କ 'ଅମ୍ବିକା ବିଳାସ'ରେ ହିମାଳୟର ପ୍ରାକୃତିକ ଚିତ୍ର ବୃକ୍ଷଲତା ଶ୍ରେଣୀର ନାମ ସଜ୍ଜାରେ ସୀମିତ । ଗୋଟିଏ ପଦରେ କବି ଏହାକୁ ମୂର୍ତ୍ତିମନ୍ତ ଅନଙ୍ଗରସ ରୂପେ ଅଭିହିତ କରିଛନ୍ତି [୩୭] । କିନ୍ତୁ ରସ ଚେତନା ଉଦ୍ରେକ କରିବାରେ ଏହା ସଂପୂର୍ଣ୍ଣ ଅସମର୍ଥ । ଯଦୁମଣିଙ୍କ ରୈବତକ ବର୍ଣ୍ଣନା ଶବ୍ଦ-କଳା କୌଶଳରେ ଭାରାକ୍ରାନ୍ତ ଏବଂ ନୀରସ [୩୮] ।

ନଦୀ–କାଳିଦାସ 'ରଘୁବଂଶ'ରେ ନଦୀ ଓ ସମୁଦ୍ରର ସଙ୍ଗମକୁ ନାରୀ ଓ ପୁରୁଷର ପରସ୍ପର ଅଧରପାନ ଦୃଶ୍ୟ ସହ ତୁଳନା କରିଛନ୍ତି [୩୯] । ସଂସ୍କୃତ ସାହିତ୍ୟରେ ଏହିପରି ନଦୀ ବର୍ଣ୍ଣନାର ବହୁଳ ରମଣୀୟ ଦୃଷ୍ଟାନ୍ତ ପରିଲକ୍ଷିତ ।

ମଧ୍ୟଯୁଗୀୟ ଓଡ଼ିଆ କାବ୍ୟରେ ନଦୀ ବର୍ଣ୍ଣନାର ଉତ୍କର୍ଷ କ୍ୱଚିତ୍ ଦେଖିବାକୁ ମିଳେ । ଉପେନ୍ଦ୍ରଙ୍କ 'ବୈଦେହୀଶ ବିଳାସ'ରେ ଗଙ୍ଗାର ଦ୍ୱୈର୍ଥବୋଧକ କାବ୍ୟ ଗୌରବ ବିଶେଷ କୃତିତ୍ୱପୂର୍ଣ୍ଣ । କବି ଗୋଟିଏ ଅର୍ଥରେ ଏହାକୁ ଶୃଙ୍ଗାର ରସ ପୂରିତା ରତିଦେବୀ ରୂପେ ପରିକଳ୍ପନା କରିଛନ୍ତି [୪୦] । ଗୋଦାବରୀ ତାଙ୍କ ଦୃଷ୍ଟିରେ ଶୁକ୍ଳାଭିସାରୀ ନାୟିକା [୪୧] ।

ଉଭୟ ସ୍ଥଳରେ ଶୃଙ୍ଗାର ଚେତନାର ଅଭିବ୍ୟକ୍ତି ସୁସ୍ପଷ୍ଟ । ପଦ୍ମନାଭ ଶ୍ରୀଚନ୍ଦନଙ୍କ 'ଶଶିରେଖା' କାବ୍ୟରେ ନଦୀପ୍ରସଙ୍ଗ ଏକାନ୍ତ ବୈଚିତ୍ର୍ୟହୀନ [୫୨] ।

ସରୋବର–ସମୁଦ୍ରଶୋଭା ବିନିନ୍ଦିତ ନୈଷଧୀୟ ସରୋବର ଦୃଶ୍ୟ କବି କଳ୍ପନାର ମନୋଜ୍ଞ ବିଳାସରେ ସମୃଦ୍ଧ । କ୍ରୀଡ଼ାରତ ସୁବର୍ଣ୍ଣ ହଂସର ଚଞ୍ଚୁ ଓ ଚରଣରେ ଯଥାକ୍ରମେ ବାଳା (ଅଳ୍ପକାମା) ଓ ସୁରତକ୍ଷମା ପ୍ରିୟାର (ଦ୍ୱିପତ୍ରିତ ଓ ପଲ୍ଲବିତ) କାମାନୁରାଗ ରୂପକ ବୃକ୍ଷାଙ୍କୁର କଳ୍ପନା ବାସ୍ତବିକ ପ୍ରଶଂସନୀୟ [୫୩] ।

ଉପେନ୍ଦ୍ର ଭଞ୍ଜଙ୍କ 'ଲାବଣ୍ୟବତୀ'ରେ କେଳି ସରୋବରର ବର୍ଣ୍ଣନା ଯେପରି ଲଳିତ ସେହିପରି ରସମଧୁର । ତଟ, ପାବଚ୍ଛ, ଜଳାସ୍ତରଣ, ପକ୍ଷୀ ପନ୍ତି, ଦୀପଦଣ୍ଡି, ପୁଷ୍ପରାଜି (କୁମୁଦ, ପଦ୍ମ)ର ଆଳଂକାରିକ ଚିତ୍ରଣରେ କବିଙ୍କ ଅପୂର୍ବ କୃତିତ୍ୱ ପରିସ୍ଫୁଟ । ତାଙ୍କ ଆଖିରେ–ହଂସାବଳୀ ଶୋଭିତ ସରସୀ କ୍ରିୟାଭିଳାଷିଣୀ ଅବନୀ-ବନିତା ନିମନ୍ତେ ସୁଭନ୍ନୋଚିତ ରଙ୍ଗଧଡ଼ିଯୁକ୍ତ ନୀଳଶାଢ଼ୀ ରୂପେ ପ୍ରତିଭାତ [୫୪] । ନାୟିକାର ଜଳକେଳି ଦୃଶ୍ୟ କବିଙ୍କ ସହଜ ଶୃଙ୍ଗାର ପ୍ରିୟତାର ମନୋହର ଆଲେଖ୍ୟ କହିଲେ ଅତ୍ୟୁକ୍ତି ହେବନାହିଁ । ଲାବଣ୍ୟବତୀର ଗାତ୍ରମାର୍ଜନ [୫୫] କିମ୍ବା ସ୍ନାନପର୍ବ [୫୬] ଦୃଶ୍ୟ ତାଙ୍କ ମୁଗ୍ଧ ରୂପ ଦୃଷ୍ଟି ଓ ବିଚିତ୍ର କଳ୍ପନା ପ୍ରବଣତାର ଅଭିଜ୍ଞାନ ବହନ କରେ । ନାରୀ ଓ ସରୋବର ମଧ୍ୟରେ ଅଭେଦତ୍ୱ ପ୍ରତିଷ୍ଠା ସଂସ୍କୃତ କାବ୍ୟଧାରାଶ୍ରୟୀ ହେଲେ ହେଁ ଏଠାରେ ଭାଷାର ରୁଚିମୟ ବିନ୍ୟାସ ଯୋଗୁଁ ତାହା ଅତ୍ୟନ୍ତ ପ୍ରାଣବନ୍ତ [୫୭] । 'ଚନ୍ଦ୍ରକଳା' କାବ୍ୟରେ କବିସୂର୍ଯ୍ୟ ମଧ୍ୟ ସରୋବରକୁ ନାରୀ ସହ ତୁଳନା କରିଛନ୍ତି । ଏତଦ୍‌ଭିନ୍ନ ଇନ୍ଦ୍ରପୁରୀର ମୁକୁର ଭିତ୍ତିଖଣ୍ଡ ପୃଥିବୀ ପୃଷ୍ଠରେ ନିପତିତ ହୋଇ ତହିଁରେ ଦିବ୍ୟାଙ୍ଗନାମାନଙ୍କର ମୁଖଛବି ବିମ୍ବିତ ହେବା ଦୃଶ୍ୟ ଏଥିରେ ଅଙ୍କିତ । ଭ୍ରମରର ପଦ୍ମ ମଧୁପାନକୁ ପୁରୁଷର ରମଣୀ ମୁଖ ଚୁମ୍ବନ ସହ ତୁଳନା ମଧ୍ୟ ପୂର୍ବରୀତି ଆଧାରିତ । ସମସ୍ତ କ୍ଷେତ୍ରରେ ଶୃଙ୍ଗାର ଭାବନାର ସହଜ ପ୍ରକାଶ ଲକ୍ଷ୍ୟ କରାଯାଇପାରେ [୫୮] ।

ବହୁ କାବ୍ୟରେ ଜଳକେଳି ପ୍ରସଙ୍ଗ ଅନ୍ତର୍ଗତ ସରୋବରର ଉଲ୍ଲେଖ ଦେଖାଯାଏ । ମାତ୍ର ସେ ସବୁରେ ବର୍ଣ୍ଣନାର ବୈଚିତ୍ର୍ୟ ଓ ସରସତା ନିଷ୍ପ୍ରଭ ।

ଜଳକେଳି–ନାୟକ ନାୟିକାଙ୍କ ଗ୍ରୀଷ୍ମକାଳୀନ ଜଳକେଳି ବିଳାସ କବି–ପରଂପରାସିଦ୍ଧ । ରାଜା କୁଶଙ୍କର ରାଣୀମାନଙ୍କ ସହ ସରଯୂଜଳ-କ୍ରୀଡ଼ାର ମନୋଜ୍ଞ ଦୃଶ୍ୟ 'ରଘୁବଂଶ'ରେ ବର୍ଣ୍ଣିତ । କାଳିଦାସଙ୍କ ସୂକ୍ଷ୍ମ ସୌନ୍ଦର୍ଯ୍ୟ ଦୃଷ୍ଟି ଓ ରସାନ୍ୱେଷୀ ଚେତନା ଏଠାରେ ମୂର୍ତ୍ତିମନ୍ତ । କବି ଅତି ନିପୁଣତାର ସହିତ ବାର ବିଳାସିନୀ ଅଙ୍ଗନାମାନଙ୍କର ଅଙ୍ଗ ଶୋଭା ଓ ଆନନ୍ଦୋଲ୍ଲାସର ମଧୁର ଚିତ୍ର ଅଙ୍କନ କରିଛନ୍ତି । ନାରୀ ଓ ନଦୀ ସୌନ୍ଦର୍ଯ୍ୟର ଅଦ୍ୱୟ କଳ୍ପନାରେ ତାଙ୍କ ରୂପ ବିଳାସିତା ଅସାମାନ୍ୟ ଗୌରବମଣ୍ଡିତ [୭୯] ।

ମଧ୍ୟ ଯୁଗୀୟ ଓଡ଼ିଆ କାବ୍ୟଧାରାରେ ଜଳକେଳିର ବହୁଳ ବର୍ଣ୍ଣନା ପରିଦୃଷ୍ଟ । ଅର୍ଜୁନ ଦାସଙ୍କ 'କଳ୍ପଲତା'ରେ ଜଳକେଳି ରତ ନାୟକ ନାୟିକାଙ୍କୁ କାମ ଓ ରତିଙ୍କ ସହ ତୁଳନା କରାଯାଇଛି [୮୦] । ନାୟିକାର ମୁକୁଳିତ କବରୀ ଶୋଭା, ଅଙ୍ଗ କାନ୍ତିର ଉଲ୍ଲେଖ ସଂକ୍ଷିପ୍ତ ହେଲେ ହେଁ ହୃଦୟଗ୍ରାହୀ । କାର୍ତ୍ତିକ ଦାସଙ୍କ 'ଉଷାଭିଳାଷ'ରେ ଶିବ ପାର୍ବତୀଙ୍କ ସଲିଳ-କ୍ରୀଡାର ମନୋଜ୍ଞ ଚିତ୍ର ଅଙ୍କିତ । ନାୟିକା ହୃଦୟରେ କାମୋଦ୍ଦୀପନାକୁ ଘନୀଭୂତ କରିବାପାଇଁ ଏହା ଉଦ୍ଦିଷ୍ଟ [୮୧] । 'ପ୍ରେମଲୋଚନା'ର' ସ୍ରଷ୍ଟା ବିଷ୍ଣୁ ଦାସ ସରୋବର ଓ ପ୍ଲାବିତ ନାୟିକା ସ୍ତନରେ ସାଗର ମନ୍ଥନ ଦୃଶ୍ୟ ପରିକଳ୍ପନା କରିଛନ୍ତି [୮୨] । ସ୍ନାନାନ୍ତର ଅଙ୍ଗଶୋଭାର ବର୍ଣ୍ଣନା ବିସ୍ତୃତ । ସ୍ତନମଣ୍ଡଳର ଉପମାମୟ ସୌନ୍ଦର୍ଯ୍ୟ ନିରୂପଣ ନିମନ୍ତେ ଏ ସ୍ଥଳରେ କବିର ଆଗ୍ରହାତିଶଯ୍ୟ ପରିଲକ୍ଷିତ । ଧନଞ୍ଜୟଙ୍କ 'ଅନଙ୍ଗରେଖା'ରେ ଉପବନ ଓ ସରୋବର ଶୋଭିତ ରତ୍ନକୂଟ ପର୍ବତର ମନୋରମ ଦୃଶ୍ୟ ଅଙ୍କନ କରାଯାଇଅଛି । ସେଠାରେ ସମ୍ମିଳିତ ସୁରପୁର ଯୁବା ଯୁବତୀଙ୍କ ବନବିହାର, ଜଳକେଳି, ନୃତ୍ୟ ଗୀତାଦି ଅପରୂପ ବର୍ଣ୍ଣନା ବିଭବରେ ଦ୍ୟୁତିମନ୍ତ । ଆର୍ଦ୍ର ସ୍ତନ ଓ ଜଘନର ଶୋଭା ସୃଷ୍ଟିରେ ରସ ଓ ରୁଚିର ଉଦାର ସମନ୍ୱୟ ଦେଖାଯାଏ [୮୩] ।

'ରସ କଲ୍ଲୋଳ'ରେ ଗୋପାଙ୍ଗନାମାନଙ୍କ ଗ୍ରୀଷ୍ମ ଜଳକ୍ରୀଡ଼ା ଦୃଶ୍ୟର ବର୍ଣ୍ଣନା ସମୃଦ୍ଧ କାବ୍ୟକଳାଁ ଗୌରବରେ ଗୌରବାନ୍ୱିତ । ଯୁବତୀମାନଙ୍କର ହାସ, ଭଷ ଓ ଗତି ଚିତ୍ରଣରେ ଅଭୂତପୂର୍ବ ଭବ ତନ୍ମୟତା ସୃଷ୍ଟି କରଯାଇଛି । ଉପମା ଚୟନରେ ପାରଂପରିକତା ସତ୍ତ୍ୱେ ବାରି ବିଳାସରେ ଜୀବନରସର ଉଚ୍ଛଳତା ପ୍ରତିଫଳିତ [୬୪] । ଲୋକନାଥଙ୍କ କାବ୍ୟ ନାୟିକା ସର୍ବାଙ୍ଗସୁନ୍ଦରୀର ଜଳକେଳି ଦୃଶ୍ୟ ଆଳଂକାରିକ ସୌନ୍ଦର୍ଯ୍ୟରେ ବିଭୂଷିତ । ସୁନ୍ଦରୀ ସେଖୀ ମାନଙ୍କ ମୁଖ, ନେତ୍ର, ସ୍ତନ, କେଶ ଓ ନାଭିର ଶୋଭ ନିକଟରେ ପଦ୍ମ, ଖଂଜନ, ଚକ୍ରବାକ, ଲହରୀ, ଭଉଁରୀ–ସମସ୍ତେ ନିନ୍ଦିତ ଓ ବିଭ୍ରାନ୍ତ ହେବା ବିଷୟ କବି ଏଠାରେ କଳ୍ପନା କରିଛନ୍ତି [୬୫] ।

ଉପେନ୍ଦ୍ରଙ୍କ 'ଲବଣ୍ୟବତୀ'ରେ ଯମକ, ଅନୁପ୍ରାସ, ବର୍ଣ୍ଣକୌଶଳ ଆଦିର ପ୍ରୟୋଗ ହେତୁ ପ୍ରସଙ୍ଗଟିର ସରସତା ଅନେକାଂଶରେ ବ୍ୟାହତ [୬୬] । କିନ୍ତୁ ତରୁଣୀମାନଙ୍କର ସନ୍ତରଣ, ପରସ୍ପର ମଧ୍ୟରେ ଜଳକ୍ଷେପଣ ତଥା ସେମାନଙ୍କ ଅବଗାହନାନ୍ତର ବେଶ ସଜ୍ଜାଦି ବର୍ଣ୍ଣନାରେ କବିର ରୂପ ପ୍ରୀତି ଓ କଳ୍ପନାପ୍ରବଣତାର ମନୋହର ସମାବେଶ ପରିଦୃଷ୍ଟ । 'ସୁଭଦ୍ରା ପରିଣୟ'ରେ ସୁଭଦ୍ରା ଓ ଦ୍ୱାରକାଯୁବତୀଙ୍କ ଜଳକେଳି ବର୍ଣ୍ଣନା କିଂଚିତ୍ କଷ୍ଟ କଳ୍ପିତ । ଏଥିରେ କ୍ରୀଡ଼ା-ଉଲ୍ଲାସ ଅପେକ୍ଷା ନାୟିକା ସ୍ତନସ୍ଥ ନଖକ୍ଷତ ଆବିଷ୍କାର ଓ ତତ୍‌ସମ୍ପର୍କିତ ବିବିଧ କଳ୍ପନା ଜଳ୍ପନା ପ୍ରାଧାନ୍ୟ ଲଭ କରିଛି [୬୮] । 'ରସକଲ୍ଲୋଳ' କିମ୍ବା 'ଲବଣ୍ୟବତୀ'ର ପ୍ରାଣ ଚଞ୍ଚଳତାରୁ ଏହା ବଂଚିତ ।

'ବିଦଗ୍ଧ ଚିନ୍ତାମଣି'କାର ପ୍ରସଂଗତଃ ଯମୁନାର ନୀଳଜଳକୁ କୃଷ୍ଣଙ୍କ ରୂପ ଶୋଭ ସହ ତୁଳନା କରିବା ପାଇଁ ବ୍ୟାକୁଳ [୬୯] । ବାରି ଓ ନାରୀର ଅଭେଦତ୍ୱ ପରଂପରା ପ୍ରସିଦ୍ଧି ଲଭ କରିଥିଲେ ହେଁ ଅଭିମନ୍ୟୁ ଏଠାରେ ନୂତନ ମାର୍ଗର ପଥିକ । କିନ୍ତୁ ନାରୀ ନିମିତ୍ତ ଉଦ୍ଦିଷ୍ଟ ଉପମାନ ସକଳ ପୁରୁଷ ସୌନ୍ଦର୍ଯ୍ୟରେ ଆରୋପିତ ହୋଇଥିବାରୁ କୃଷ୍ଣଙ୍କଠାରେ ବୀର୍ଯ୍ୟତ୍ୱର ସମ୍ଭାବନା ବାଧା ପାଇବା ସ୍ୱାଭବିକ । ମଧ୍ୟଯୁଗୀୟ ନାରୀଭବନା

ପୌରୁଷଚିତ୍ରକୁ ଗ୍ରାସ କରିଥିବା ଏଥିରୁ ସ୍ପଷ୍ଟ ସୂଚିତ । କେଉଁ ଯୁବତୀ କୁଚରେ ଜନୈକା ସଖୀର ପଦ୍ମ ସଂସ୍ଥାପନକୁ କୃଷ୍ଣଙ୍କ କରସ୍ପର୍ଶ ରୂପେ କଳ୍ପନା କରିବା କବିଙ୍କ ପ୍ରାତିରସିକତାର ଅନନ୍ୟ ପରିଚୟ [୬୦] ।

କବିସୂର୍ଯ୍ୟଙ୍କ 'ଚନ୍ଦ୍ରକଳା' କାବ୍ୟରେ ପ୍ରଦତ୍ତ ଜଳକେଳିର ବିସ୍ତୃତ ଚିତ୍ର ଭଂଜୀୟ ପରଂପରା ଭିତ୍ତିକ । ସନ୍ତରଣର ବିବିଧ ଭଙ୍ଗୀ, ସଖୀ, ପରିହାସ, ବହିର୍ଲିପିକା ଓ ଲୋମ ବିଲୋମ ଚାତୁର୍ଯ୍ୟ, ପ୍ରତି ଅଂଗ ସୌନ୍ଦର୍ଯ୍ୟ ଭାବନା ତଥା ଗୋପନାଙ୍ଗର ଉଲ୍ଲେଖ ଶୃଙ୍ଗାରିକତାର ପ୍ରଲେପରେ ସମୁଜ୍ଜ୍ୱଳ । ଉରୁ, ନିତମ୍ବ ଓ ସ୍ତନର ପର୍ଯ୍ୟାପ୍ତ ଚିତ୍ରଣରେ କବିଙ୍କ ବିପୁଳ ଶ୍ରମ ସ୍ୱୀକୃତ । ସରୋବରରେ ରାଜକନ୍ୟାମାନଙ୍କ ଜଘନ ଦେଶ ଜଳାର୍ଦ୍ର ହେବା ଦୃଶ୍ୟକୁ ଯୁବରାଜଙ୍କ କରସ୍ପର୍ଶ ଜନିତ ପୁଲକିତ ଅବସ୍ଥା ସହ ତୁଳନା କାମଚେତନା ପରିପୁଷ୍ଟ [୬୧] । ସ୍ଥାନ ବିଶେଷରେ କବିଙ୍କ ସୌନ୍ଦର୍ଯ୍ୟ ଦୃଷ୍ଟିର ପରିଚୟ ଉନ୍ନତ । ଜଳମଗ୍ନା ସୁନ୍ଦରୀମାନଙ୍କର ଭାସମାନ କେଶରାଶି ପ୍ରସଂଗରେ ଇନ୍ଦ୍ରନୀଳଛାୟା ଭ୍ରମର, ଯମୁନାନୀର ପ୍ରଦେଶ, ତମାଳ ଛାୟା-ଭୂମିର ପରିକଳ୍ପନା କାବ୍ୟିକ ରମଣୀୟତାର ସାକ୍ଷର ବହନ କରେ [୬୨] ।

ଆଲୋଚନାରୁ ଜଣାଯାଏ ନାୟକ/ନାୟିକା ଅତିରିକ୍ତ ଶିବ ପାର୍ବତୀ ଓ ସୁର ଯୁବାଯୁବତୀଙ୍କ ଜଳକେଳି ବର୍ଣ୍ଣନାରେ ରୀତି କାବ୍ୟର ଶୃଙ୍ଗାର-ଆଦର୍ଶ ପ୍ରତିଫଳିତ । ନଦୀ ଓ ସରୋବର ଦୃଶ୍ୟରେ ('ବିଦଗ୍ଧ ଚିନ୍ତାମଣି' ବ୍ୟତୀତ) ନାରୀ ଭାବନାର ପ୍ରାଚୁର୍ଯ୍ୟ ପରିଲକ୍ଷିତ । 'କଳ୍ପଲତା'ରେ ନାୟକର ଅପହରଣ ନିମନ୍ତେ ଜଳକେଳି ଦୃଶ୍ୟର ଅବତାରଣା ଏକ ବ୍ୟତିକ୍ରମ ରୂପେ ଗ୍ରହଣୀୟ । କିନ୍ତୁ ସର୍ବତ୍ର ବର୍ଣ୍ଣନା ଶୃଙ୍ଗାରସିକ୍ତ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଉପବନ–ନାୟକ ନାୟିକାଙ୍କ ଉପବନ ବିହାର ବର୍ଣ୍ଣନା ମଧ୍ୟ-ଯୁଗୀୟ କାବ୍ୟ ରୀତିର ଅଙ୍ଗ ବିଶେଷ । କେତେବେଳେ ଏହା ବସନ୍ତ ଋତୁ ଚିତ୍ର ସହ ସଂପୃକ୍ତ ତ କେତେବେଳେ ଏହା ସ୍ୱତନ୍ତ୍ର ଭାବେ ଅଙ୍କିତ ।

ଦେବ ଦୁର୍ଲଭଙ୍କ 'ରହସ୍ୟ ମଞ୍ଜରୀ'ରେ ବିରହିଣୀ ରାଧାଙ୍କ ଉପବନ ବିହାର ଦୃଶ୍ୟ କାରୁଣ୍ୟମୂର୍ଚ୍ଛିତ । ତରୁଶ୍ରେଣୀ, ଗଂଧ ପୁଷ୍କରଣୀ, ନିକୁଞ୍ଜ, ଅଶୋକବନ, ମଧୁକର ମାଳା, କୋକିଳକୁଳ, ବିବିଧ କୁସୁମ ଆଦିର ସମାବେଶରେ ଉପବନର ରମଣୀୟତା ଅତି ଚିତ୍ତାକର୍ଷକ । ନାୟିକା ଚରିତ୍ରରେ ପ୍ରିୟ-ଅନୁରାଗର ଗଭୀରତା ଦର୍ଶାଇବା ପାଇଁ ପରିବେଶକୁ ଶୃଙ୍ଗାରମୟ କରାଯାଇଛି [୭୩] । ପ୍ରସଙ୍ଗ ଓ ପ୍ରକାଶ ଭଙ୍ଗୀର ତରଳ ସମ୍ବେଦନଶୀଳତା ପାଠକ ପ୍ରାଣକୁ ନିବିଡ଼ ଭାବରେ ସ୍ପର୍ଶ କରେ । ଗ୍ରନ୍ଦ ଦାସଙ୍କ 'ଗୋପୀ ଚନ୍ଦନ' କାବ୍ୟରେ ଶ୍ରୀକୃଷ୍ଣ ଓ ଗୋପାଙ୍ଗନାମାନଙ୍କ ଉପବନ ବିହାର ବର୍ଣ୍ଣନା ସଂକ୍ଷିପ୍ତ ଓ ସରଳ । ପୁଷ୍ପଭୂଷଣ, ଚୁମ୍ବନ, ଆଲିଙ୍ଗନ ବିଧିଯୁକ୍ତ ଆନନ୍ଦ ଉଲ୍ଲାସର ମନୋରମ ଚିତ୍ର ଏଥିରେ ଅଙ୍କିତ [୭୪] ।

ଶିଶୁ ଶଙ୍କରଙ୍କ କାବ୍ୟ ନାୟିକା ନବ ଯୌବନବତୀ ଉଷାର ସଖୀ ଗହଣରେ ବସନ୍ତ କାନନ ବିହାର ଦୃଶ୍ୟ ଅତ୍ୟନ୍ତ ରସସିକ୍ତ । ଏଠାରେ ପ୍ରକୃତିର ପ୍ରତି ଅଙ୍ଗରେ କାମୋନ୍ମାଦନାର ବିବିଧ ବୈଚିତ୍ର୍ୟ ଆରୋପିତ [୭୫] । କବି ଏବଂବିଧ ଦୃଶ୍ୟର ପୃଷ୍ଠଭୂମିରେ କନ୍ଦର୍ପ-ପୀଡ଼ା ଜର୍ଜ୍ଜରିତା ନାୟିକାର ଶାରୀରିକ ଓ ମାନସିକ ବିକ୍ରିୟା ଚିତ୍ରଣରେ ବିଶେଷ ଦକ୍ଷତା ପ୍ରଦର୍ଶନ କରିଛନ୍ତି ।

ଧନଞ୍ଜୟଙ୍କ 'ଇଚ୍ଛାବତୀ'ରେ ନାୟକର ଏକାନ୍ତ ଉପବନ ବିହାର ବୈଚିତ୍ର୍ୟହୀନ [୭୬] । କିନ୍ତୁ ନାୟକ ନାୟିକାଙ୍କ ଗୋପନ ମିଳନ ସମ୍ପର୍କିତ ପୁଷ୍ପୋଦ୍ୟାନର ବର୍ଣ୍ଣନା ଶୃଙ୍ଗାରଶ୍ରିତ । ତରୁଲତା ସମୂହର ଅବସ୍ଥାଭେଦରେ କାନ୍ତ ଓ କାନ୍ତାର ପ୍ରଣୟ ବିଳାସ ପରିକଳ୍ପନା ମଧ୍ୟଯୁଗୀୟ କାବ୍ୟ-ଧାରାଶ୍ରୟୀ [୭୭] । 'ଅନଙ୍ଗରେଖା'ରେ ଉପବନ ବର୍ଣ୍ଣନା ବେଶ୍ ବିସ୍ତୃତ । ସଖୀ ସମାବୃତା ନାୟିକାର ବସନ୍ତ ବିହାର ଏହାର ଉପଲକ୍ଷ୍ୟ ମାତ୍ର । ପ୍ରକୃତିର ରମଣୀୟ ଦୃଶ୍ୟାବଳୀ ଚିତ୍ରଣରେ କବି ଅଶେଷ ସଫଳତା ହାସଲ କରିଛନ୍ତି । ତାଙ୍କ ଚକ୍ଷୁରେ ପୁଷ୍ପିତ କୁଞ୍ଜ ଓ ଆରାମ ଯଥାକ୍ରମେ ଅନଙ୍ଗକେଳି ମନ୍ଦିର [୭୮] ଓ ରମା [୭୯] ରୂପେ ପ୍ରତିଭାତ । ଫଳ, ପୁଷ୍ପ, ଲତା ପକ୍ଷୀ ପ୍ରଭୃତିରେ ନାୟିକା ପ୍ରତି ଅଙ୍ଗର ସାଦୃଶ୍ୟ ସନ୍ଧାନ କରିବା ରୀତି ସମ୍ମତ

ହେଲେ ହେଁ ଖୁବ୍ ସରସ । କବି ଉପବନ ଦୀର୍ଘିକାକୁ ମଧ୍ୟ ନାୟିକା ରୂପେ ଚିତ୍ରଣ କରିବାକୁ ଭୁଲି ନାହାନ୍ତି [୭୦] । ଏ କ୍ଷେତ୍ରରେ ସେ ଉପେନ୍ଦ୍ରଙ୍କ ପୂର୍ବସୂରି । ଯାହାହେଉ ସମଗ୍ର ଉପବନ ଦୃଶ୍ୟ ଚିତ୍ରଣରେ ନାରୀ ଓ ଶୃଙ୍ଗାରଭବନାହିଁ ପ୍ରଭୁତ୍ୱ ବିସ୍ତାର କରିଛି ।

ଲୋକନାଥଙ୍କ 'ସର୍ବାଙ୍ଗସୁନ୍ଦରୀ'ରେ ଉପବନକୁ ଉତ୍ତମକାମିନୀ, ଅମରନଗର, ପାତାଳ, ଅଯୋଧ୍ୟା, କରୁଣାସଦନ, ମଦନ, ବିପଣି, ବଦ୍ରିକାଶ୍ରମ, ରଜନୀ ରୂପେ ପରିକଳ୍ପନା କରଯାଇଛି [୭୧] । ନଗର ଓ ଅରଣ୍ୟ ବର୍ଣ୍ଣନାର ପରଂପରା ଏ ସ୍ଥଳରେ ଅନୁସୃତ । କିନ୍ତୁ ପତ୍ର ପୁଷ୍ପାଦିର ବିସ୍ତୃତ ବିବରଣ ଦେଲାବେଳେ କବି ନରନାରୀର ଶୃଙ୍ଗାର ଚେଷ୍ଟାରୁ ଉପମାରାଜି ସଂଗ୍ରହ କରିଛନ୍ତି [୭୨] । ପ୍ରକୃତି ଦୃଷ୍ଟି ଏଠାରେ କାମ ଭାବନା ଜର୍ଜରିତ । କବିଙ୍କ 'ଚିତ୍ରକଳା'ରେ ଉପବନକୁ କନ୍ଦର୍ପ ନିକେତନର ଗୌରବ ପ୍ରଦାନ କରଯାଇଛି [୭୩] ।

ଉପେନ୍ଦ୍ରଙ୍କ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ରେ ପ୍ରସଙ୍ଗର ପ୍ରାକୃତିକ ସୁଷମା ଅପେକ୍ଷା ଆଳଂକାରିକ ଗୌରବ ପ୍ରଦର୍ଶନର ପ୍ରୟାସ ଅତ୍ୟଧିକ । ବ୍ରଜଲୀଳା, ବ୍ରହ୍ମାଙ୍କ ଗଣିକା ପ୍ରୀତି, ଇନ୍ଦ୍ରଙ୍କ ଅହଲ୍ୟାଭୋଗ, ମଧୁପୁର, ଚୈତ୍ରରଥ ପ୍ରସବ ଆଦି କ୍ଲିଷ୍ଟ କଳ୍ପନାରେ ଉପବନ ବର୍ଣ୍ଣନା ଭାରାକ୍ରାନ୍ତ [୭୪] । ଏହାର ଅନ୍ତରାଳରେ ଶୃଙ୍ଗାରିକତାର ସ୍ୱର ସୁସ୍ପଷ୍ଟ । କିନ୍ତୁ ଭାଷାର ଆଡ଼ମ୍ବର ଏଠାରେ ରସୋପଲବ୍ଧିର ବାଧକ । 'ଶଶିରେଖା' କାବ୍ୟର ସ୍ରଷ୍ଟା ପଟ୍ଟନାୟକ ଶ୍ରୀଚନ୍ଦନଙ୍କ ଚକ୍ଷୁରେ ଉପବନ ଦୃଶ୍ୟ ଅବଳା, ଲଙ୍କାପୁରୀ, ବିରାଟନଗର, କୁବେରପୁର, ଅଳକା, ମୁନି ଆଶ୍ରମ ରୂପେ ପ୍ରତିଭାତ [୭୫] । ତରୁଲତା ଶ୍ରେଣୀର ଶୋଭା ବର୍ଣ୍ଣନାରେ ମୁଖ୍ୟତଃ ନର ନାରୀର ଶୃଙ୍ଗାର-ସଂବନ୍ଧ ଆରୋପିତ । ଭାଷାର ସରସ ରୀତି ଏଠାରେ ଭାବ ପ୍ରକାଶର ଅନୁକୂଳ । ଯଦୁମଣିଙ୍କ 'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର'ରେ ନାୟକର ବସନ୍ତ ବନବିହାର ଚିତ୍ର ଅଭିଜାତ ଭାଷା ଭଙ୍ଗୀରେ ଅଙ୍କିତ । ଏଠାରେ ମଧ୍ୟ ବନ ବନିତା ରୂପେ କଳ୍ପିତ [୭୬] । ନାନା ଅବୟବ ସମୂହର ଦୀର୍ଘ ଉଲ୍ଲେଖ ଅର୍ଥ ପ୍ରତୀତିରେ ସହାୟତା କରୁଥିଲେ ସୁଦ୍ଧା କାବ୍ୟରସୌନ୍ଦର୍ଯ୍ୟ ବିଧାୟକ ନୁହେଁ ।

ଉପବନକୁ ନାରୀ ରୂପେ କଳ୍ପନା କରିବା ଏବଂ ପ୍ରକୃତି ଦୃଶ୍ୟରେ ସମ୍ଭୋଗ ଲୀଳାର ବିବିଧ ବୈଚିତ୍ର୍ୟ ଆରୋପ କରିବା ଅଧିକାଂଶ କାବ୍ୟର ରୀତିସିଦ୍ଧ କୌଶଳ । ନବ ପୁଷ୍ପବତୀ ନାୟିକାର କାମପୀଡ଼ାକୁ ଉଜ୍ଜୀବିତ କରିବା ଏହାର ଏକମାତ୍ର ଲକ୍ଷ୍ୟ । 'ଇଚ୍ଛାବତୀ' ଓ 'ପ୍ରବଂଧ ପୂର୍ଣ୍ଣଚନ୍ଦ୍ର'ରେ ନାୟକର ବନ ବିହାର ପ୍ରସଂଗ ରସମୟତା ଲାଭ କରି ପାରିନାହିଁ । କେବଳ 'ରହସ୍ୟମଞ୍ଜରୀ'ର ଉପବନ ଦୃଶ୍ୟ ଗତାନୁଗତିକତା ବର୍ଜିତ ଓ ବିରହ କାରୁଣ୍ୟର ଅନୁପମ ସୌନ୍ଦର୍ଯ୍ୟରେ ବିଭସିତ ।'

ସଂଧ୍ୟା—ମଧ୍ୟଯୁଗୀୟ କାବ୍ୟରେ ସନ୍ଧ୍ୟା ବର୍ଣ୍ଣନାର ବିପୁଳ ପରଂପରା ପରିଦୃଷ୍ଟ । ବହୁ ସ୍ଥଳରେ ସାୟଂ ପ୍ରକୃତିର ବାଂମୟ କଳ୍ପନା ଅପୂର୍ବ ରମଣୀୟତା ମଣ୍ଡିତ । ଅଧିକାଂଶ କବି କିନ୍ତୁ ଏ ପ୍ରସଙ୍ଗରେ ଶୃଙ୍ଗାର ଭବ ବିଳାସର ମନୋହର ଚିତ୍ର ଅଙ୍କନ କରିଛନ୍ତି ।

ବିଷ୍ଣୁ ଦାସଙ୍କ 'ପ୍ରେମଲୋଚନା'ରେ ସାୟଂକାଳୀନ ଦିଗ ସମୂହର ଅବସ୍ଥାକୁ କାନ୍ତରହିତା ନାରୀର ମନୋଭବ ସହିତ [୭୭] ମୁଦ୍ରିତ ପଦ୍ମକୁ ପ୍ରାତଃକାଳରେ ସ୍ୱାମୀ ନିକଟସ୍ଥ ପ୍ରୀତି ଅନୁରାଗ ଗୁଣ୍ଠିତା ବିଦାୟିନୀ ସ୍ତ୍ରୀ ସହିତ ତୁଳନା କରଯାଇଛି [୭୮] । ଅନ୍ୟାନ୍ୟ ଦୃଶ୍ୟ ସରଳ ଓ ସ୍ୱାଭାବିକ । ଲୋକନାଥଙ୍କ 'ସର୍ବାଙ୍ଗ ସୁନ୍ଦରୀ'ରେ ସଂଧ୍ୟାର ବିବିଧ ଦୃଶ୍ୟ ସହ ନାରୀ-କୈନ୍ଦ୍ରିକ ସମ୍ଭୋଗ ବିଳାସର ମନୋରମ ପରିକଳ୍ପନା ସଂଯୋଜିତ [୭୯] । ବିରହିଣୀ, ଦୂତୀ, ପଥିକ, ପୁଷ୍ପବତୀ, ଅଭିସାରିକା, ଚତୁରୀ, ଗୃହବତୀ —ଏମାନଙ୍କର କାମଚର୍ଯ୍ୟାଗତ ଯଥାବିଧି ଭୂମିକା ଏ କ୍ଷେତ୍ରରେ ଉଲ୍ଲିଖିତ । କିନ୍ତୁ ବର୍ଣ୍ଣନା ଅତ୍ୟନ୍ତ ରସାଳ । ଦିବାବଶେଷକୁ ବିଗତଯୌବନା ଗଣିକା ରୂପେ ଚିତ୍ରଣ କରିବା କବିଙ୍କ ଶୃଙ୍ଗାରଧର୍ମୀ ଉପମାଔଚିତ୍ୟବୋଧର ପରିଚାୟକ [୮୦] ।

ଚନ୍ଦ୍ରୋଦୟ—ସଂଧ୍ୟା ଓ ଚନ୍ଦ୍ରୋଦୟର ଏକତ୍ର ବର୍ଣ୍ଣନା ଅଧିକାଂଶ କାବ୍ୟରେ ପରିଲକ୍ଷିତ । କାର୍ତ୍ତିକ ଦାସଙ୍କ 'ରୁକ୍ମିଣୀବିଭା'ରେ ଏହି ଦୃଶ୍ୟର ଏକ ସଂକ୍ଷିପ୍ତ ସରଳ ଚିତ୍ର ପ୍ରଦତ୍ତ । ଚନ୍ଦ୍ରୋଦୟକାଳୀନ ଦିଗ-ସିମନ୍ତିନୀର ସହାସ୍ୟ ଦର୍ଶନକୁ କାମତରୁର ନବୀନ ଅଙ୍କୁର ରୂପେ ଏଠାରେ ପରିକଳ୍ପନା

କରଯାଇଛି [୮୨] । ଉପେନ୍ଦ୍ରଙ୍କ 'ସୁଭଦ୍ରା' ପରିଣୟ'ରେ ପ୍ରସଙ୍ଗଟି ଆଲଂକାରିକ କୃତିତ୍ୱ ବିଭୂଷିତ । ଅସ୍ତଗାମୀ ସୂର୍ଯ୍ୟ ଓ ଉଦିତ ଚନ୍ଦ୍ରକୁ କବି ଯଥାକ୍ରମେ ବରୁଣଙ୍କ ମାଣିକ୍ୟଛତ୍ର ଓ ଇନ୍ଦ୍ରଙ୍କ ମୋତିଛତ୍ର, ଦେବାଙ୍ଗନାର ଶଙ୍ଖ ଓ ହିଙ୍ଗୁଳ ପେଣ୍ଡୁ, ସିଂହୀ ଓ କରିଣୀର ନଭ ଅଟବୀରେ ପ୍ରସବ, ଦୁଇ ବଂଧୁଙ୍କର ଚନ୍ଦନଗୁଣ୍ଡି ଓ ଅବିରଖେଳ, ଉତ୍ତର ଦିଗହସ୍ତୀର ଦୁଇ ପାର୍ଶ୍ୱସ୍ଥ ଦୁଇଟି ଘଣ୍ଟି (ମାଘଙ୍କ 'ଶିଶୁପାଳ ବଧ'ର ପ୍ରଭାବ) ସହ ତୁଳନା କରି ସ୍ୱକଳ୍ପନା ବିଳାସର ଚମତ୍କାରିତା ଫୁଟାଇଛନ୍ତି । ଗୋର ପୁଂସ (ଚନ୍ଦ୍ର) ଓ କଳା କାମିନୀ (ରଜନୀ)ର ମିଳନ ଦୃଶ୍ୟରେ ଶୃଙ୍ଗାର ଚେତନା ଅଧିକ ପ୍ରାଣବନ୍ତ [୮୨] । ଏତଦ୍‌ବ୍ୟତୀତ ଚନ୍ଦ୍ର ରଜନୀରେ ସ୍ୱେଚ୍ଛାଗ୍ରୀଣୀ ନାରୀର ଜାର ପୁରୁଷ ପ୍ରୀତି ତଥା ସ୍ୱାଧୀନ ଭର୍ତ୍ତୃକା, ବାସକସଜ୍ଜିକା, ବିପ୍ରଲବ୍ଧାଦି ନାୟିକାଙ୍କ ଭାବ ଭାବନା ଏ କ୍ଷେତ୍ରରେ ଯଥାରୀତି ବର୍ଣ୍ଣିତ । 'ଲାବଣ୍ୟବତୀ' ବର୍ଣ୍ଣିତ ଚନ୍ଦ୍ରୋଦୟ ଦୃଶ୍ୟ କଳ୍ପନାର ଆଦରଣୀୟ ପରିପାଟିରେ ସମୁନ୍ନତ । ଏ ପ୍ରସଂଗରେ କାମଦେବର ଚକ୍ରବାକସୁଖଛେଦୀ ହୀରକ ଚକ୍ରର ପରିକଳ୍ପନା କିମ୍ବା 'ଚିତ୍ରିତ ସ୍ୱୟଂବର' ରୀତି [ଚନ୍ଦ୍ର (ପୁରୁଷ)ର କିରଣ ରୂପକ ମଲ୍ଲୀମାଳ ଦ୍ୱାରା ରାତ୍ରୀ (ବାଳା)କୁ ବରଣ]ର ତର୍କଣା କବି ଦୃଷ୍ଟିକୁ ସୁଦୂର ପ୍ରସାରୀ କରିଛି । ସ୍ୱପ୍ନ ଦର୍ଶନ ପ୍ରସଂଗରେ ନାୟକର କାମାତୁରତା ଚିତ୍ରଣ ଏକାନ୍ତ ସରସ [୮୩] । 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟ-ନାୟିକାର ଚନ୍ଦ୍ରୋଦୟ ଦର୍ଶନ ଚିତ୍ର ବହୁ ପୌରାଣିକ ବିଷୟର ଆକ୍ଷେପ ଓ କ୍ଲିଷ୍ଟ କଳ୍ପନାରେ ଗୁମ୍ଫିତ । ବିଶେଷତଃ ରାମାବତାର (ସୀତା ପ୍ରେମ, ଜଟାୟୁ ପ୍ରୀତି, ଅହଲ୍ୟା ଉଦ୍ଧାର) ଓ କୃଷ୍ଣାବତାର (ବସ୍ତ୍ର ହରଣ, କୁବୁଜାରମଣ) ଭାବନା ଏ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ । ପ୍ରସଂଗକ୍ରମେ ଚନ୍ଦ୍ରକୁ ଉତ୍ତମ ବେଶଯୁକ୍ତା ଯୁବତୀ ରୂପେ ଚିତ୍ରିତ କରିବା ଶୃଙ୍ଗାରଧର୍ମୀ ରୀତି କାବ୍ୟାଦର୍ଶର ଅନ୍ୟତମ ବିଭବ [୮୪] ।

ଅଭିମନ୍ୟୁଙ୍କ 'ବିଦଗ୍ଧ ଚିନ୍ତାମଣି'ରେ ସ୍ୱପ୍ନ ଦର୍ଶନ ପର୍ଯ୍ୟାୟ ଅନ୍ତର୍ଗତ ଚନ୍ଦ୍ରୋଦୟ ବର୍ଣ୍ଣନା ଭଞ୍ଜଙ୍କ 'ଲାବଣ୍ୟବତୀ' ଦ୍ୱାରା ବିଶେଷ ଭାବେ ପ୍ରଭାବିତ । ତଥାପି ସୁଧା ଓ ଅନୁରାଗର ତୁଳନା ଦୃଶ୍ୟ କବିଙ୍କ ରୁଚି ସ୍ୱାତନ୍ତ୍ର୍ୟ, ସୌନ୍ଦର୍ଯ୍ୟପ୍ରୀତି ଓ ପାଣ୍ଡିତ୍ୟର ପରିଚାୟକ [୮୫] । ଗୋପୀକୃଷ୍ଣଙ୍କ

ଉତ୍ତର ଗୋଷ୍ଠ ପ୍ରସଂଗରେ ମଧ୍ୟ ସଂଧ୍ୟା ଓ ଚନ୍ଦ୍ରୋଦୟ ଦୃଶ୍ୟର ଅବତାରଣା କରାଯାଇଛି । ଅଭିସାରିକାଦି ଅଷ୍ଟବିଧ ନାୟିକା, ପଥିକ, ଚସକିନୀ, ପ୍ରବାସୀ, ପ୍ରବାସିନୀ, ଚେଟୀ, ବିଟ, ଦୂତୀଙ୍କର ନାନାବିଧ ରୀତି, ନୀତି ଓ ପ୍ରେମାଳାପ ଚିତ୍ରଣରେ ଏ ସ୍ଥଳ ସମୃଦ୍ଧ [୬] ।

## ରଜନୀ (ଚନ୍ଦ୍ର ରଜନୀ ଓ ଅନ୍ଧାର ରଜନୀ)

ବିଷ୍ଣୁ ଦାସଙ୍କ 'ପ୍ରେମ ଲୋଚନା'ରେ ଚନ୍ଦ୍ର ରଜନୀ ବର୍ଣ୍ଣନାକ୍ରମେ ନରନାରୀଙ୍କ ଶୃଙ୍ଗାର ବିଳାସର ବିସ୍ତୃତ ଚିତ୍ର ପ୍ରଦତ୍ତ । ଏଥିରେ ଚୁମ୍ବନ, ଆଶ୍ଳେଷ, ଚାଟୁ, କେଳି, ମାନ, ଅଭିମାନ, ବିରହର ବିବିଧ ବୈଚିତ୍ର୍ୟ ସରଳ ଓ ରସମୟ ଅଭିବ୍ୟକ୍ତି ଲାଭ କରିଛି । କାମ ଭାବନା ବ୍ୟତୀତ ପ୍ରକୃତିର ଚାରୁଚିତ୍ର ଅଙ୍କନ କରିବାରେ କବି ଅସଫଳ [୭] । ପାର୍ଥ ଶ୍ରୀଚନ୍ଦନଙ୍କ 'କଳାବତୀ'ରେ ଚନ୍ଦ୍ର ମଣ୍ଡଳ ଦର୍ଶନ ହେତୁକ କାମ ପୀଡ଼ିତ ନାୟକର ଦୀର୍ଘ ବିରହ ପ୍ରଳାପ ଉଲ୍ଲିଖିତ [୮] । ଧନଞ୍ଜୟଙ୍କ 'ଅନଙ୍ଗରେଖା'ରେ ନାୟକ ନାୟିକା ନିଶି ମିଳନ ମନ୍ଦିରରୁ ମେଘ ଗ୍ରାସିତ ଚନ୍ଦ୍ରଙ୍କୁ ଦେଖି ବିହ୍ୱଳିତ ହେବା ବର୍ଣ୍ଣିତ । କିନ୍ତୁ ସେହି ରାତ୍ରିରେ ପୁଷ୍ପଦନ୍ତ କର୍ତ୍ତୃକ ନାୟକ ଅପହରଣ ଘଟଣା ଓ ପରିବେଶ ସମନ୍ୱୟର ସାର୍ଥକତା ବହନ କରେ [୯] ।

ଉପେନ୍ଦ୍ରଙ୍କ 'ସୁଭଦ୍ରା ପରିଣୟ'ର ନାୟିକା ରାତ୍ରିରେ ଚନ୍ଦ୍ର ଦେଖି ସଶଂକିତା । ସେ ଏହାକୁ ନାରୀ ବିନାଶକାରୀ ରାବଣର ଅବତାର ବୋଲି ସଖୀମାନଙ୍କ ନିକଟରେ ପ୍ରକାଶ କରିଛି [୧୦] । 'ଲାବଣ୍ୟବତୀ' କାବ୍ୟ ନାୟିକାର କେଳିପୁର ଗମନ ଅବକାଶରେ ଚନ୍ଦ୍ର ରଜନୀର ବର୍ଣ୍ଣନା ବିବିଧ କଳ୍ପନା ପରିପାଟିରେ ସମୁଜ୍ଜ୍ୱଳ । ପ୍ରାକୃତିକ ଦୃଶ୍ୟର ରମଣୀୟତା ଓ ଶୃଙ୍ଗାରିକତା ଉଭୟର ସୁସମାବେଶ ଏ ସ୍ଥଳରେ ପରିଲକ୍ଷିତ । ନାୟିକାର ରତି ଭାବନାକୁ ଉଦ୍‌ବୋଧିତ କରିବା ପାଇଁ ଏହା ଏକାନ୍ତ ଭାବେ ଉଦ୍ଦିଷ୍ଟ [୧୧] । 'ପ୍ରେମ ସୁଧାନିଧି'ରେ ଶାରଦୀୟ ଚନ୍ଦ୍ରଙ୍କୁ କାମଦେବର ଦର୍ପଣ ସହ ତୁଳନା କରାଯାଇଛି [୧୨] । ନାୟକର କାମାତୁରତା ଓ ପ୍ରିୟା ନିକଟକୁ ପତ୍ର ପ୍ରେରଣ ପରିବେଶର ରସାନୁକୂଳତା ସୂଚିତ କରେ । ସଖୀ

ନିକଟରେ ଶ୍ରୀକୃଷ୍ଣଙ୍କର ବିରହ ଦୁଃଖ କଥନ ପ୍ରସଙ୍ଗରେ ଅଭିମନ୍ୟୁ ଚନ୍ଦ୍ର ରଜନୀର ସୂଚନା ପ୍ରଦାନ କରିଛନ୍ତି [୯୩] । ଏଠାରେ ଜ୍ୟୋତ୍ସ୍ନା-ସୌନ୍ଦର୍ଯ୍ୟର ବର୍ଣ୍ଣନା ନାହିଁ । ସ୍ଥାନେ ସ୍ଥାନେ ଚନ୍ଦ୍ରର ଉଲ୍ଲେଖ ସଂଭୋଗ କାମନା ସହ ସମ୍ବନ୍ଧିତ ।

ଓଡ଼ିଆ କାବ୍ୟମାନଙ୍କରେ ଅନ୍ଧକାର ରଜନୀର ଚିତ୍ର ଅପ୍ରଚୁର । ଲୋକନାଥଙ୍କ 'ସର୍ବାଙ୍ଗ ସୁନ୍ଦରୀ'ରେ ଏହାର ଏକ ସଂକ୍ଷିପ୍ତ ସୁନ୍ଦର ବର୍ଣ୍ଣନା ପ୍ରଦତ୍ତ । କବି ଏଠାରେ ରାତ୍ରିକୁ ନୀଳବାସ ପରିହିତା ଅଭିସାରିକା ରୂପେ କଳ୍ପନା କରିଛନ୍ତି [୯୪] । ଅନ୍ୟାନ୍ୟ ଦୃଶ୍ୟ ସହିତ ନିଶିର ପ୍ରଥମ ପ୍ରହରରେ ବଣିକ-ନାରୀମାନଙ୍କ ପ୍ରୀତି ପ୍ରସଂଗ ଅତ୍ୟନ୍ତ ହୃଦୟଗ୍ରାହୀ [୯୫] । ଉପେନ୍ଦ୍ରଙ୍କ 'ସୁଭଦ୍ରା ପରିଣୟ'ରେ ଏଥିପାଇଁ ଗୋଟିଏ ପଦ ମାତ୍ର ବ୍ୟୟିତ । ନାୟିକାର ଅଭିସାରକୁ କାମୋଦ୍ଦୀପିତ କରିବା ହିଁ ଏହାର ଲକ୍ଷ୍ୟ [୯୬] ।

ପ୍ରଭାତ—ସାଧାରଣତଃ ନାୟକ ନାୟିକାଙ୍କ ମଧୁଶଯ୍ୟା ବା ମିଳନ ଶେଷରେ ପ୍ରଭାତ ଦୃଶ୍ୟର ବର୍ଣ୍ଣନା କାବ୍ୟ-ପରଂପରାଗତ । ଏସବୁ କ୍ଷେତ୍ରରେ ଚକ୍ରବାକ, କୁକକୁଟ, କପୋତ, ବିବିଧ ନାୟିକା, ବିଟପ ବିଟପୀମାନଙ୍କର ଆଚରଣ ଉଲ୍ଲିଖିତ । ଅଳ୍ପ କେତେକ ସ୍ଥଳରେ ଏହାର ବ୍ୟତିକ୍ରମ ଦ୍ରଷ୍ଟବ୍ୟ ।

ବିଷ୍ଣୁଦାସଙ୍କ 'ପ୍ରେମ ଲୋଚନା'ରେ ନାୟିକାମାନଙ୍କ ବିବିଧ ଶୃଙ୍ଗାର ଚର୍ଯ୍ୟା ସଂପର୍କିତ ପ୍ରଭାତ ଦୃଶ୍ୟ ଅତୀବ ରମଣୀୟ [୯୭] । ବିଶେଷତଃ ସଂଭୋଗବତୀ ନାରୀମାନଙ୍କ ଜଘନ, ଉରଜ, ଅଧର, କେଶ, କୁସୁମମାଳା, ନଖ ଓ ଦଶନ କ୍ଷତ, ନୀବୀ, ନୟନ, ବସନ ଭୂଷଣ ଆଦିର ଶୋଭା ବର୍ଣ୍ଣନାରେ କବି ଅଶେଷ ସଫଳତା ଅର୍ଜନ କରିଛନ୍ତି । ଧନଞ୍ଜୟଙ୍କ 'ଅନଙ୍ଗରେଖା'ରେ ପୂର୍ବରୀତିହିଁ ଅନୁସୃତ [୯୮] ।

ଦୀନକୃଷ୍ଣଙ୍କ 'ରସକଲ୍ଲୋଳ' ବର୍ଣ୍ଣିତ ପ୍ରଭାତ ଦୃଶ୍ୟର ପ୍ରାଥମିକ ପର୍ଯ୍ୟାୟରେ ପ୍ରକୃତି ଓ ସମାଜିକତାର ଚିତ୍ର ପ୍ରଦତ୍ତ । କୁକ୍କୁଟକୋକିଳ-ଚକ୍ରବାକ ଧ୍ୱନି, ଗଂଧ ସମୀରଣ ପ୍ରବାହ, ଦିଗ ସମୂହର କୁଙ୍କୁମବର୍ଣ୍ଣ

ଧାରଣ, ବ୍ରାହ୍ମଣମାନଙ୍କ ସ୍ନାନ ପ୍ରୟାଣ, ଗୋପାଳମାନଙ୍କ ଗୋଧନ ଦୋହନ, ଶୁକ ସାରିକାଙ୍କ ରାଧାକୃଷ୍ଣ ନାମ ଉଚ୍ଚାରଣ, କଟୁଆଳ ଓ ତସ୍କରଙ୍କ କାର୍ଯ୍ୟାବସାନ ଇତ୍ୟାଦି ଏଠାରେ ଉଲ୍ଲେଖଯୋଗ୍ୟ । ଦ୍ୱିତୀୟ ପର୍ଯ୍ୟାୟରେ ବିବିଧ ନାୟକ ନାୟିକାଙ୍କ ସମ୍ଭୋଗାନ୍ତ ପ୍ରସଙ୍ଗ ଚିତ୍ରିତ [୯୯] । କିନ୍ତୁ ପ୍ରାକୃତିକ ଦୃଶ୍ୟର ବିବରଣ ଦେଲବେଳେ କପୋତ ଧ୍ୱନିକୁ ରତି କୂଜିତ ଧ୍ୱନି ସହ ତୁଳନା କରିବାକୁ କବି କୁଣ୍ଠିତ ହୋଇ ନାହାନ୍ତି [୧୦୦] । ଅନ୍ୟ ଏକ ସ୍ତରର ପ୍ରଭାତ ଦୃଶ୍ୟ ସମ୍ପୂର୍ଣ୍ଣ ଭାବେ ଶୃଙ୍ଗାରିକତାମୁକ୍ତ । ନୀଳାଦ୍ରି ବିହାରୀ ଶ୍ରୀଜଗନ୍ନାଥଙ୍କ ସମୟୋପଯୋଗୀ ସେବାବିଧିର ଯେଉଁ ଅନୁପମ ଚିତ୍ରଣ ଏଠାରେ ପ୍ରଦତ୍ତ ତାହା ସମଗ୍ର ଓଡ଼ିଆ କାବ୍ୟ ରାଜ୍ୟରେ ଦୁର୍ଲଭ [୧୦୧] ।

'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ରେ ନାୟକ ନାୟିକାଙ୍କ ମାଧାମିଳନାନ୍ତର ପ୍ରଭାତ ବର୍ଣ୍ଣନା କବିତ୍ୱ ଓ ରସିକତା ବିମଣ୍ଡିତ । ପ୍ରୌଢ଼ୀ ନାଗରୀର ଲୋହିତାମ୍ବର ପରିଧାନ, ପଦ୍ମିନୀଠାରୁ ଭ୍ରମରର ବିଦାୟ, ଚକ୍ରବାକ ଦମ୍ପତିଙ୍କ ଦିବା ମିଳନ, ଅଭିସାରିକା ନବୀନ ସଂଗମା-ବିପ୍ରଲବ୍‌ଧା ପ୍ରଭୃତିଙ୍କ ପ୍ରୀତି ବ୍ୟାପାର—ସକଳ ପ୍ରସଂଗରେ ସରସ ଶୃଙ୍ଗାର ଭାବନା ପରିଲକ୍ଷିତ [୧୦୨] । 'ଲାବଣ୍ୟବତୀ'ରେ ମଧୁଶଯ୍ୟାନ୍ତର ପ୍ରଭାତ ଦୃଶ୍ୟ ପରମ୍ପରାନୁଗତ[୧୦୩] । ଭଞ୍ଜଙ୍କ ସଂପର୍କରେ ଡଃ କୁଞ୍ଜ ବିହାରୀ ... ନ୍ଦ୍ର ଚରଣ ମିଶ୍ରଙ୍କ ମନ୍ତବ୍ୟ ଯଥାର୍ଥ । "ଅଥଚ ପ୍ରାତଃକାଳୀନ ପ୍ରାକୃତିକ ଶୋଭା, ଅର୍କ ଦେବଙ୍କ ଉଦୟ ବୈଚିତ୍ର୍ୟ, ସୁଶ୍ୟାମଳ ଶସ୍ୟକ୍ଷେତ୍ର, ନାନାବିଧ ପୁଷ୍ପର ସୁରମ୍ୟ ବିକାଶ ଦର୍ଶାଇବାରେ ଭଞ୍ଜ ସତେକି ଉଦାସୀନ ହୋଇ ପଡ଼ିଛନ୍ତି" । [୧୦୪]

ଶୃଙ୍ଗାରିକତା ବର୍ଜିତ ପ୍ରଭାତ ବର୍ଣ୍ଣନାର ଅନ୍ୟ ଏକ ଉଦାହରଣ ଭକ୍ତଚରଣଙ୍କ 'ମଥୁରାମଙ୍ଗଳ'ରେ ପରିଦୃଷ୍ଟ । ପ୍ରକୃତି ଦୃଶ୍ୟ, ଶ୍ରୀକୃଷ୍ଣଙ୍କ (ମଥୁରାରେ) ନିଦ୍ରା ତ୍ୟାଗ ଓ ନିତ୍ୟକର୍ମାଦିର ଉଲ୍ଲେଖ ଏ କ୍ଷେତ୍ରରେ ସରସ ଓ ରୁଚିପୂର୍ଣ୍ଣ [୧୦୫] । ନିକୁଞ୍ଜ କେଳିବିଳାସରତା ଶ୍ରୀରାଧାଙ୍କ ପ୍ରତି ଗୋପାଙ୍ଗନାମାନଙ୍କ ଅଭିଯୋଗ ବାଣୀରେ କବିସୂର୍ଯ୍ୟଙ୍କ 'ଚମ୍ପୂ'ର ପ୍ରଭାତ ଧରାମଣ୍ଡନ କରିଛି । ରୀତିକାବ୍ୟର ବର୍ଣ୍ଣନା ପରଂପରାରୁ ଏହା ମୁକ୍ତ, କିନ୍ତୁ ଶୃଙ୍ଗାରସିକ୍ତ [୧୦୬] । ନାୟକ ନାୟିକାଙ୍କ ନିଶାନ୍ତ ବିଚ୍ଛେଦ ପାଇଁ ଏଥିରେ ଇଂଗିତ ପ୍ରଦତ୍ତ ।

ଦେଶଭଗ–ନାୟିକାର ବିବାହ ତଥା ନାୟକର ଦେଶଜୟ, ମୃଗୟା, ଅସୁର ବିନାଶ, ପ୍ରବାସାଦି ପ୍ରସଙ୍ଗରେ ବିବିଧ ନଗର/ରାଜ୍ୟର ଉଲ୍ଲେଖ କାବ୍ୟ ସମୂହରେ ପରିଦୃଷ୍ଟ । ସେଗୁଡ଼ିକର ଐତିହାସିକତା ଓ ଭୌଗୋଳିକତା ସ୍ୱତନ୍ତ୍ର ଆଲୋଚନାର ପରିସରଭୁକ୍ତ । ଏ ସ୍ଥଳରେ ଦେଶଭଗ ବର୍ଣ୍ଣନା ସହ ଶୃଙ୍ଗାର ଚେତନାର ସଂପର୍କ ସୂଚିତ ।

ଉପେନ୍ଦ୍ରଙ୍କ 'ଲାବଣ୍ୟବତୀ'ରେ ନାୟିକାର ଚିତ୍ରପଟ ଧରି ଯୋଗୀ ଜ୍ଞାନାନନ୍ଦ ବରାନୁସଂଧାନ ନିମିତ୍ତ ବହୁଦେଶ ପର୍ଯ୍ୟଟନ କରିଥିବା ବର୍ଣ୍ଣିତ । ନାୟିକାର ଭିନ୍ନ ଭିନ୍ନ ଅଙ୍ଗ-ସୌନ୍ଦର୍ଯ୍ୟ ପ୍ରତି ବିଭିନ୍ନ ଦେଶର ଅଧିବାସୀଙ୍କ ଗଭୀର ଆସକ୍ତି ଏଠାରେ ଆଳଂକାରିକ ଚିତ୍ରଣର ଗୌରବ ଦାବୀ କରେ । ଦେଶଭଗର ଯଥାର୍ଥ ବୈଶିଷ୍ଟ୍ୟ ନିରୂପଣ ଅପେକ୍ଷା ତତ୍‌ସହ ଶୃଙ୍ଗାର ଧର୍ମୀ ସଂପର୍କ ପ୍ରତିଷ୍ଠା ଉପରେ କବି ବିଶେଷ ଗୁରୁତ୍ୱ ଆରୋପ କରିଛନ୍ତି [୧୦୭] । ତାଙ୍କ 'ପ୍ରେମ ସୁଧାନିଧି'ରେ ମଧ୍ୟ ଏପରି ବର୍ଣ୍ଣନା ପରିଲକ୍ଷିତ । କନ୍ୟାନୁସଂଧାନରେ ନାୟକର ଚିତ୍ରପଟ ଧରି ଗୁରର ବହୁଦେଶ ଭ୍ରମଣ ଏବଂ ପଟ୍ଟ ଦର୍ଶନରେ ଯୁବତୀମାନଙ୍କର ନାନାବିଧ କାମ ବିକାର ଏ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ [୧୦୮] । ରସିକତା ଓ କୃତ୍ରିମତାର ଅପୂର୍ବ ସମନ୍ୱୟରେ ପ୍ରସଂଗ ସକଳ ଗୁରୁତାପ୍ରାପ୍ତ । 'ରସିକ ହାରବଳୀ'ରେ ଇଳାବୃତ୍ତ ଖଣ୍ଡସ୍ଥ ମହୀଧର ପର୍ବତ ଦୃଶ୍ୟ ନାରୀର ସ୍ତନ ଶୋଭା ସଙ୍ଗେ ସଂବଧିତ [୧୦୯] । ଏହା କବିର କଳ୍ପନା ପ୍ରବଣତା ଓ ଶୃଙ୍ଗାରପ୍ରିୟତା ସୂଚିତ କରେ ।

'ବିଦଗ୍ଧ ଚିନ୍ତାମଣି'ରେ ବୃନ୍ଦାବନ ଧାମର ମହତ୍ତ୍ୱ ନିରୂପଣ ପ୍ରସଂଗ ନଗର ବର୍ଣ୍ଣନା ରୀତି ଦ୍ୱାରା କିଞ୍ଚିତ୍ ପ୍ରଭାବିତ । ସେ ଦେଶରେ କୁଟିଳତା, ଚପଳତା, କ୍ଷୀଣତା, ମନ୍ଦତା, ବକ୍ରତା ଓ କରଜପୀଡ଼ା ଯଥାକ୍ରମେ ନାରୀର କୁନ୍ତଳ, ନୟନ, କଟି, ହସ, ଭଙ୍ଗି ଓ ଉରଜ ବ୍ୟତୀତ ଅନ୍ୟତ୍ର ଦୁର୍ଲଭ [୧୧୦] । ଶୃଙ୍ଗାର ରସାଶ୍ରିତ କବି ଭାବନାର ଏହା ଅନ୍ୟତମ ମନୋଜ୍ଞ ପ୍ରକାଶ ।

ଋତୁଚିତ୍ର–ଭାରତୀୟ ସାହିତ୍ୟରେ ସମଗ୍ର ଋତୁଚିତ୍ରର ଏକକ କାବ୍ୟ ରୂପେ 'ଋତୁ ସଂହାର' ଅକ୍ଷୟ ଯଶର ଅଧିକାରୀ । ଗ୍ରୀଷ୍ମ ଋତୁର ବର୍ଣ୍ଣନା ଏଥିରେ ସର୍ବପ୍ରଥମେ ପ୍ରଦତ୍ତ । ଯୌବନର ଅନୁପମ ଶୃଙ୍ଗାର ବିଳାସିତାରେ ଏହାର ପ୍ରତ୍ୟେକ ଛନ୍ଦ ରସାଣିତ । ଶ୍ରୀହର୍ଷ, ମାଘ, ଭାରବିଙ୍କ ରଚନାରେ ମଧ୍ୟ ବିବିଧ ଋତୁର ସମୃଦ୍ଧ ସୁନ୍ଦର ଚିତ୍ର ପରିଦୃଷ୍ଟ । ପୃଥିବୀର ବିଭିନ୍ନ ଭାଷା ସାହିତ୍ୟରେ ତତ୍‌ଦେଶୀୟ ପ୍ରକୃତି-ନିର୍ଭର-ଋତୁ ସମୂହର ଦୃଶ୍ୟରାଜି ଯଥାରୀତି ଅଙ୍କିତ ।

ଓଡ଼ିଆ ରୀତି କାବ୍ୟରେ ବିବିଧ ଋତୁର ବର୍ଣ୍ଣନା ପ୍ରାଚୁର୍ଯ୍ୟ ଦେଖିବାକୁ ମିଳେ । ମାନବୀୟ ପ୍ରେମର ଉଦ୍ଦୀପନ ବିଭାବ ରୂପେ ଏହାର ଭୂମିକା ସର୍ବତ୍ର ସ୍ୱୀକୃତ । ସକଳ କାବ୍ୟରେ ଅବଶ୍ୟ ଷଡ଼ଋତୁର ଉଲ୍ଲେଖ ନାହିଁ । ଯୁଗରୁଚି, ପ୍ରାସଙ୍ଗିକତା ଓ ପରିସରକୁ ଆଖି ଆଗରେ ରଖି କବିଗଣ ସ୍ୱ ସ୍ୱ କାବ୍ୟରେ ଋତୁ/ଋତୁସମୂହର ଅବତାରଣା କରିଯାଇଛନ୍ତି । ସେ ସବୁର ଏକୈକ ବିଗ୍ରହ ନିମ୍ନରେ ପ୍ରଦତ୍ତ ।

ଗ୍ରୀଷ୍ମ–ଦେବ ଦୁର୍ଲଭଙ୍କ 'ରହସ୍ୟ ମଂଜରୀ' ରେ ଗ୍ରୀଷ୍ମ ବର୍ଣ୍ଣନା ସଂକ୍ଷିପ୍ତ ହେଲେ ହେଁ ଅତ୍ୟନ୍ତ ହୃଦୟଗ୍ରାହୀ । ପ୍ରକୃତିର ନିଷ୍ଠୁରତା ସହିତ ବିରହିଣୀ ନାୟିକା ପ୍ରାଣର ପ୍ରୀତି–ଆକୁଳତା ଏଠାରେ ମୂର୍ତ୍ତିମନ୍ତ [୧୧୧] । ଶିଶୁ ଶଙ୍କରଙ୍କ 'ଉଷାଭିଳାଷ'ର ଏହି ପ୍ରସଂଗରେ ନାୟିକାର ବିରହ ସନ୍ତାପ, ଶିବ ପାର୍ବତୀଙ୍କ ଜଳକେଳି, ଚନ୍ଦ୍ର ରଜନୀ ଓ ସ୍ୱପ୍ନ ସଂଭୋଗ ଆଦି ଉଲ୍ଲେଖିତ । ଚନ୍ଦନ ଲେପିତ କାମିନୀ କୁଚ କିମ୍ବା ଗିରି ଶିଖରର ବନାଗ୍ନି– ସକଳ ଦୃଶ୍ୟରେ କାମ ଭାବନାର ପ୍ରାଧାନ୍ୟ ଅନୁଭୂତ [୧୧୨] । କାନ୍ତସଙ୍ଗ ଲାଗି ନାୟିକାର ଯୌବନ ଦଗ୍ଧ ଉଦଗ୍ର ବ୍ୟାକୁଳତା ଏ କ୍ଷେତ୍ରରେ ବିଶେଷ ଆକର୍ଷଣୀୟ ।

ଦୀନକୃଷ୍ଣଙ୍କ 'ରସକଲ୍ଲୋଳ'ରେ ଗ୍ରୀଷ୍ମକାଳୀନ ପ୍ରକୃତି ଓ ସମାଜର ମନୋହର କାବ୍ୟିକ ଚିତ୍ର ଅଙ୍କିତ । ସୂର୍ଯ୍ୟତାପର ପ୍ରଖରତାରେ ପଶୁପକ୍ଷୀ-ମାନଙ୍କର ସ୍ୱଭାବଗତ ଶତ୍ରୁତା ପରିତ୍ୟାଗ ଦୃଶ୍ୟ ବିସ୍ମୟକର ହେଲେ ହେଁ

ପରମ୍ପରସିଦ୍ଧ[113] । 'ଋତୁ ସଂହାର'ର ପ୍ରଭାବ ଏଠାରେ ଲକ୍ଷ୍ୟଣୀୟ[114] । ଉପମା ଚୟନରେ କବିଙ୍କ ବିପୁଳ ଶୃଙ୍ଗାର-ରସିକତା ଦୃଷ୍ଟିଗୋଚର ହୁଏ । ନଦୀ ଜଳର କୃଶତାକୁ କାନ୍ତଘନରସ ବିହୀନା ରମଣୀ, ତୃଣଗଜର ସ୍ଫୁଟନକୁ ସୁରତକାଳୀନ ମନ୍ମନ ଧ୍ୱନି, ଶ୍ରୀହୀନ ବନଲତାକୁ କାନ୍ତହତ କାନ୍ତା ସହ ତୁଳନା କରି ସେ ମଧ୍ୟଯୁଗୀୟ କାମଚେତନାର ଧାରକୁ ପରିପୁଷ୍ଟ କରିଛନ୍ତି[115] ।

ଉପେନ୍ଦ୍ରଙ୍କ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ରେ ଗ୍ରୀଷ୍ମର ପ୍ରଖରତା ତଥା ପଶୁ ପକ୍ଷୀମାନଙ୍କର ସନ୍ତାପିତ ଅବସ୍ଥା ଚିତ୍ରଣ ସ୍ୱାଭାବିକତା ଓ କଳ୍ପନା ସମୃଦ୍ଧ[116] । 'ଲାବଣ୍ୟବତୀ'ରେ ଗ୍ରୀଷ୍ମକୁ ପ୍ରୌଢ଼ା ଯୁବତୀ' ଭ୍ରମର ଗୁଞ୍ଜନକୁ ରସିକର ଗୀତ, ଦାବାଗ୍ନି ଲାଞ୍ଛିତ ତରୁକୁ ବିରହ ପୀଡ଼ିତ ପୁରୁଷ ରୂପେ ପରିକଳ୍ପନା କରି କବି ପ୍ରକୃତି ଚିତ୍ରରେ ଶୃଙ୍ଗାର ଭାବନାର ମଧୁର ସମାବେଶ ଘଟାଇଛନ୍ତି[117] । ସରୋବର ମଣ୍ଡପରେ ମିତ୍ରମାନଙ୍କ ସହ ନାୟକର ପ୍ରୀତି ଆଳାପ ଗଣିକା ମଦନିକାର ରୂପ ଦର୍ଶନରେ ସେମାନଙ୍କର ବିହ୍ୱଳତା ତଥା ତାହାଠାରୁ ନାୟିକାର ରୂପ ଗୁଣାଦି ସଂବାଦ ଶ୍ରବଣ—ଏଇ ଋତୁର ପୃଷ୍ଠଭୂମିରେ ପରିକଳ୍ପିତ । ଅନ୍ୟ ଏକ ସ୍ଥଳରେ ପ୍ରବାସୀ ନାୟକର ଗ୍ରୀଷ୍ମ ବିରହ ଭାବନା ପ୍ରଦତ୍ତ । ପ୍ରକୃତିର ରୂପ ବର୍ଣ୍ଣନା କରିବାକୁ ଯାଇ ପ୍ରତ୍ୟେକ ଦୃଶ୍ୟରେ କବି ଶୃଙ୍ଗାରସିକ୍ତ ବିବିଧ ତୁଳନାଚିତ୍ର ଉପସ୍ଥାପିତ କରିଛନ୍ତି[118] । 'ପ୍ରେମ ସୁଧାନିଧି'ରେ ଗ୍ରୀଷ୍ମ ପ୍ରକୃତିର ବିକ୍ଷୁବ୍ଧ ଚିତ୍ର ନାହିଁ । ପ୍ରବାସୀ ନାୟକର ପ୍ରିୟା-କେଳି ଗୁଣ ସ୍ମରଣ ଏବଂ ନାୟିକାର ଦିବ୍ୟ ଉକ୍ତି ଅବଲମ୍ବନରେ ତାପ-ସାଗର ପାରିହେବା 'କାମନାରେ ବିରହ ଉତ୍ତାପ ଓ ଋତୁ ଉତ୍ତାପର ପ୍ରବଳତା ସୂଚିତ[119] । 'ସୁଭଦ୍ରା ପରିଣୟ'ର ଗ୍ରୀଷ୍ମ ବର୍ଣ୍ଣନା 'ଲାବଣ୍ୟବତୀ' ଅନୁରୂପ[120] । 'ବିଦଗ୍ଧ ଚିନ୍ତାମଣି'ରେ ତାପ ପୀଡ଼ିତ ଘର୍ମାକ୍ତ ଶରୀର, କମଳ, କୁମୁଦିନୀ, ବୃକ୍ଷଶ୍ରେଣୀ, ସୁନାରୀ ତରୁ, ଝିଙ୍କାରୀ ଶବ୍ଦ, କପୋତ ନାଦକୁ ଯଥାକ୍ରମେ ରତାନ୍ତ ନାୟିକାର ଅବସ୍ଥା, ସ୍ୱାଧୀନ ଭର୍ତ୍ତୃକା, ଦ୍ରୋହୀ ନାୟିକା, କାନ୍ତାର୍ଥିନୀ, କାନ୍ତି ବନ୍ତକାଳ,

କିଂକିଣୀ ଧ୍ୱନି ଓ ହୁଂକୃତ୍ ସହ ତୁଳନା କରଯାଇଛି । ସମଗ୍ର ଦୃଶ୍ୟରେ ଶୃଙ୍ଗାର ପ୍ରସଙ୍ଗ ସାର୍ଥକ ରୂପେ ଆରୋପିତ [୧୨୧] । ଚନ୍ଦ୍ରାବଳୀ ସମ୍ଭୋଗ କାମନାକୁ ଗାଢତର କରିବା ପାଇଁ ନାୟକ ଚକ୍ଷୁରେ ପ୍ରକୃତିର ଏବଂବିଧ ରୂପ ପରିକଳ୍ପନା ଏକାନ୍ତ ଭବେ କାବ୍ୟଧାରଣୟୀ ।

ଆଲୋଚିତ ସକଳ କାବ୍ୟରେ ଗ୍ରୀଷ୍ମ ହିଁ ବିରହର କାଳ । ପ୍ରଣୟ ଓ ପ୍ରକୃତି ରଜ୍ୟରେ ନିଷ୍କରୁଣ ହାହାକାର ସୃଷ୍ଟି କରିବା ପାଇଁ ଏହି ଋତୁର ଭୂମିକା କବି ପରମ୍ପରାନୁମୋଦିତ । 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ର ଗ୍ରୀଷ୍ମ ବର୍ଣ୍ଣନାଂଶ ବ୍ୟତୀତ ପ୍ରାୟ ସବୁ ସ୍ଥଳରେ ପ୍ରାକୃତିକତା ଓ ଶୃଙ୍ଗାରିକତାର ସୁସମାବେଶ ଦୃଷ୍ଟି ଗୋଚର ହୁଏ ।

ବର୍ଷା–ଗ୍ରୀଷ୍ମଦଗ୍ଧ ପ୍ରକୃତିରେ ନବ ଜୀବନ ସଞ୍ଚାରୀ ବର୍ଷା ମାନବୀୟ ପ୍ରଣୟ ଭବନାକୁ ଯୁଗ ଯୁଗ ଧରି ଉଦ୍‌ବୋଧିତ କରିଆସିଛି । କାଳିଦାସଙ୍କ 'ମେଘଦୂତ', 'ଋତୁ ସଂହାର' ତଥା ଅନ୍ୟାନ୍ୟ କାବ୍ୟରେ ଏହାର ରସମୟ ମନୋଜ୍ଞ ଦୃଶ୍ୟ ଚିତ୍ରିତ । ଭରତୀୟ କାବ୍ୟଧାରା ଓ କାବ୍ୟମାନସ ଉପରେ 'ମେଘଦୂତ'ର କାଳଜୟୀ ପ୍ରଭବ ବିଶେଷ ରୂପେ ଉପଲବ୍ଧ ।

ଓଡ଼ିଆ ରୀତି କାବ୍ୟରେ ବର୍ଷାର ମନୋରମ ରୂପ ଆମେ ପ୍ରଥମେ ଦେଖୁ 'ରହସ୍ୟମଞ୍ଜରୀ'ରେ । ବର୍ଣ୍ଣନା ସଂକ୍ଷିପ୍ତ ହେଲେ ହେଁ ସ୍ୱାଭବିକତା ଓ ରସମୟତାରେ ଏହା ଅଦ୍ୱିତୀୟ । ବିରହିଣୀ ନାୟିକାର ପ୍ରିୟ ଭବନା ଏଠାରେ ଅତ୍ୟନ୍ତ ମର୍ମସ୍ପର୍ଶୀ [୧୨୨] । ଶିଶୁ ଶଙ୍କରଙ୍କ 'ଉଷାଭିଳାଷ'ରେ ନାୟକ ନାୟିକାଙ୍କ ବର୍ଷା ଉପଭୋଗ ଓ ପ୍ରୀତି ସଂଭଷଣର ଚିତ୍ର ସରସ । ପ୍ରକୃତି ଓ ସଂଭୋଗ ମଧ୍ୟରେ ଗଭୀର ଅନୁରାଗାତ୍ମକ ସମ୍ବନ୍ଧ ପ୍ରତିଷ୍ଠା କରିବାରେ କବି ସଫଳକାମ [୧୨୩] । ପାର୍ଥ ଶ୍ରୀଚନ୍ଦନଙ୍କ 'କଳାବତୀ' ଓ ଧନଞ୍ଜୟଙ୍କ 'ଅନଙ୍ଗରେଖା'ରେ ନାୟକର ବର୍ଷା-ବିରହ ଭବନା ପ୍ରିୟା-କେଳି-ସ୍ମୃତି-ବିଜଡ଼ିତ [୧୨୪] । ବିଷ୍ଣୁଦାସଙ୍କ ବର୍ଷା ବର୍ଣ୍ଣନାରେ ପ୍ରକୃତି ଓ ନରନାରୀଙ୍କ କାମବିଳାସର ଅଳଂକୃତ ଦୃଶ୍ୟ ରୂପାୟିତ । ନାୟିକାର ବିରହ ପ୍ରସଙ୍ଗରେ 'ମେଘଦୂତ'ର ଛାୟା ସୁସ୍ପଷ୍ଟ [୧୨୫] ।

'ରସକଲ୍ଲୋଳ'ରେ ବର୍ଷା ପ୍ରକୃତି ଜୀବନ୍ତ । ନଦୀ, ଗିରି, ବନ, କେଦାର, କାନ୍ତାର ଆଦିର ବିବିଧ ଦୃଶ୍ୟ ବାସ୍ତବତାର କୁହୁକ ସ୍ପର୍ଶରେ ରୁଚିବନ୍ତ । ଦୀନକୃଷ୍ଣଙ୍କ ଦୃଷ୍ଟିରେ ଏହି ଋତୁ ସଂଭୋଗ ଓ ବିଭୋଗର କାଳ । କୃଷ୍ଣ ଗୋପାଙ୍ଗନାଙ୍କ ପ୍ରୀତି ଉଲ୍ଲାସ, ପଥିକ ଓ ରସବତୀ ନାୟିକାଙ୍କ ସୁରତିଭୋଗ, ପ୍ରବାସୀ ଜନର ପ୍ରିୟା ମିଳନ ବର୍ଣ୍ଣନାରେ କାମ ବିଳାସର ପ୍ରାଚୁର୍ଯ୍ୟ ପରିଲକ୍ଷିତ [126] । ନିବିଡ଼ ବର୍ଷାକାଳ ବିଯୋଗୀମାନଙ୍କ ନିମନ୍ତେ କାମଦେବର ନିର୍ମମ ଶରବୃଷ୍ଟି ଓ କାମ ଜାଙ୍ଗଳୀ ମନୋଉତ୍ତେଜିତ କୃଷ୍ଣ ସର୍ପିଣୀର ବିଷ ଫୁତ୍କାର ରୂପେ ଚିତ୍ରିତ [127] । ସମଗ୍ର ଦୃଶ୍ୟରେ ଆଳଂକାରିକ କବିତ୍ୱ ଓ ରସମୟତା ଅସାମାନ୍ୟ ସୁଷମା ମଣ୍ଡିତ । ଉପେନ୍ଦ୍ରଙ୍କ 'ବୈଦେହୀଶ ବିଳାସ' ଓ 'ପ୍ରେମ ସୁଧାନିଧି'ରେ ନାୟକର ପ୍ରିୟା ନିକଟକୁ ସନ୍ଦେଶ ପ୍ରେରଣ 'ମେଘଦୂତ'ର ସ୍ମୃତି ଜାଗ୍ରତ କରେ । ରାମଚନ୍ଦ୍ରଙ୍କ ବିରହ ଭାବନାରେ ଅନୁରାଗର ଗଭୀରତା ପ୍ରକାଶିତ ହୋଇଥିବା ସ୍ଥଳେ କୋଶଳ ରାଜକୁମାରଙ୍କ ପ୍ରିୟାନୁଚିନ୍ତାରେ କାମ ପ୍ରବଣତା ବିଶେଷ ଭାବେ ପ୍ରତିଫଳିତ [128] । 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ରେ ବର୍ଷା, ଶରତ, ଗ୍ରୀଷ୍ମ କାଳର ଏକତ୍ର ବର୍ଣ୍ଣନା ବର୍ଣ୍ଣ-କୌଶଳ ଭିତ୍ତିକ ଓ ପାଣ୍ଡିତ୍ୟ ପୀଡ଼ିତ [129] । 'ସୁଭଦ୍ରା ପରିଣୟ'ରେ ବର୍ଷାର ପ୍ରାକୃତିକ ଦୃଶ୍ୟ ବିସ୍ତୃତ ଓ ସ୍ୱାଭାବିକ । କ୍ଲିଷ୍ଟ ବର୍ଣ୍ଣନା ରୀତି ଯୋଗୁଁ ଏହା ନୀରସ । ଅର୍ଜୁନ ଓ ସୁଭଦ୍ରାଙ୍କ ପରସ୍ପର ପ୍ରୀତି ସଂଭାଷଣ ପ୍ରସଂଗରେ ଦର୍ଦ୍ଦୁରର ଧୈବତରାଗକୁ ସୁରତ ରାଗ ରୂପେ କଳ୍ପନା କରଯାଇଛି [130] । 'ଲାବଣ୍ୟବତୀ'ରେ ବର୍ଷା ବାଧିତ ନାୟିକାର ବିରହ ଚିତ୍ର କୋମଳ ସାଂଗୀତିକତାରେ ମୂର୍ଚ୍ଛିତ । ଆକାଶରେ ନବ ମେଘମାଳା ଓ ବକଳିକା ସମୂହର ଶୋଭା ସଂଦର୍ଶନ ହେତୁକ କାମ-ପୀଡ଼ିତା ରାଜକୁମାରୀଙ୍କ ଉପଚାର ନିମନ୍ତେ ସଖୀମାନଙ୍କର ଅନ୍ତରଙ୍ଗ ପ୍ରୟାସ ଏଠାରେ ରସୋତ୍ତୀର୍ଣ୍ଣ [131] । 'ରସଲେଖା'ରେ ମେଘ ଓ ନାୟକ ମଧ୍ୟରେ ଅଭେଦତ୍ୱ ବର୍ଣ୍ଣିତ [132] । 'ରସିକ ହାରାବଳୀ'ରେ ନାୟକର ବର୍ଷା ବିରହ ଭାବନା ସଂଭୋଗ-ସୁଖ-ସ୍ମୃତି ଭିତ୍ତିକ । କିନ୍ତୁ ନାୟିକାର ପ୍ରିୟ ଚିନ୍ତାରେ ଅଭିମାନ, ଅନୁରାଗ ଏବଂ ଶୁଭମନାସ ଅନ୍ତର୍ଗର୍ଭିତ [133] । ଇନ୍ଦ୍ରଙ୍କ କୋପ ବୃଷ୍ଟିର ଭୟାବହତା ଚିତ୍ରଣରେ

'ଛାନ୍ଦ ଭୂଷଣ'ର କବି ବିଶେଷ ସଫଳତା ଅର୍ଜନ କରିଛନ୍ତି । ଏପରି ଦୁର୍ଦ୍ଦିନରେ ପ୍ରିୟ ଓ ପ୍ରିୟାର ସୁରତି ବ୍ୟାକୁଳତା, ୟକନ୍ୟାର ପୂଜା ଅନୁଷ୍ଠାନ ବିଳମ୍ବ ହେତୁ କାହାର ଅନୁତାପ, କେଉଁ ବିଦଗ୍ଧର ଅଦୃର୍ଷ୍ଟାକ୍ଷଣ ନାୟିକା ପାଇଁ ବିରହ ସନ୍ତାପ ଆଦି ଅସ୍ୱାଭାବିକ ମନେହେଲେ ମଧ୍ୟ କାବ୍ୟରେ ଏସବୁ ଦୃଶ୍ୟ ସଂଯୋଜନା ଶୃଙ୍ଗାର ଆଦର୍ଶ ପୁଷ୍ଟ [୧୩୪] । ବ୍ରଜନାଥଙ୍କ 'ଅମ୍ବିକା ବିଳାସ'ରେ ପାର୍ବତୀଙ୍କ ସ୍ୱପ୍ନ ଦୃଶ୍ୟ ଅନ୍ତର୍ଗତ ବର୍ଷା ଚିତ୍ର ସରସତା ବିହୀନ । କବି ଏଠାରେ ପ୍ରକୃତିର ଘନଘଟାକୁ ଅତନୁରଜାର ବିଜୟ ଅଭିଯାନ ରୂପେ ବର୍ଣ୍ଣନା କରିଛନ୍ତି [୧୩୫] । ଜଗନ୍ନାଥ ନାରାୟଣଙ୍କ 'ପ୍ରଭାବତୀ ପରିଣୟ'ରେ ବର୍ଷା ଓ ନାରୀ ଅଙ୍ଗ ସୌନ୍ଦର୍ଯ୍ୟର ସାଦୃଶ୍ୟ ପରିକଳ୍ପିତ [୧୩୬] ।

ସଂଭୋଗ ଓ ବିପ୍ରଲମ୍ଭ ଉଭୟର ପୃଷ୍ଠଭୂମି ରୂପେ ବର୍ଷା ଚିତ୍ରର ଅବତାରଣା କାବ୍ୟ ରୀତିରେ ଗୃହୀତ । ମେଘାୟିତ ପ୍ରକୃତିରେ କାମଦେବର ଜୟଯାତ୍ରା, ନାୟକତ୍ୱ, ନାୟିକାତ୍ୱ, ପ୍ରଣୟ ଦୃଶ୍ୟାଦିର ଆରୋପ ରୀତି କବିଙ୍କ ଶୃଙ୍ଗାରଧର୍ମୀ କାବ୍ୟମାନସର ପରିଚୟ ବହନ କରେ । ମାତ୍ର 'ମେଘଦୂତ' କିମ୍ବା 'ଋତୁସଂହାର'ର ଆଙ୍ଗିକ ଓ ଆତ୍ମିକ ସୌନ୍ଦର୍ଯ୍ୟ ଓଡ଼ିଆ କାବ୍ୟ ରାଜ୍ୟରେ ବିରଳ ।

ଶରତ—କାଳିଦାସଙ୍କ 'ଋତୁସଂହାର'ରେ ଶରତ ଋତୁ ରୂପରମ୍ୟା ନବ ବଧୂ ରୂପେ ପରିକଳ୍ପିତ [୧୩୭] । ମନ୍ଦ ଗତିଶୀଳା ନଦୀ, କମଳ ଶୋଭିତ ପୁଷ୍କରିଣୀ, ପୁଷ୍ପାବନତ ତରୁଲତା, ଶଂଖଶୁଭ୍ର ଆକାଶ, ବିମଳ ଚନ୍ଦ୍ରମା, ଜଳହୀନ ମେଘମାଳା, ଶସ୍ୟଭରା କ୍ଷେତ—ପ୍ରକୃତିର ସକଳ ଦୃଶ୍ୟ ତାଙ୍କ ଲେଖନୀରେ ଅମୃତତ୍ୱ ଲାଭ କରିଅଛି ।

ଓଡ଼ିଆ ରୀତି କାବ୍ୟରେ ଶାରଦୀୟ ପ୍ରକୃତିର ରୂପ ରଚନା ବିପୁଳ ନୁହେଁ । ବହୁ ସ୍ଥଳରେ ଏହା ସଂକ୍ଷିପ୍ତ ଓ ସୂଚନାତ୍ମକ । ଦେବ ଦୁର୍ଲଭଙ୍କ 'ରହସ୍ୟ ମଂଜରୀ'ର ଶରତ ବର୍ଣ୍ଣନା ଏକ ପଦରେ ସୀମିତ [୧୩୮] । ଗ୍ରୀଷ୍ମ ଓ ବର୍ଷା ଚିତ୍ରର ଭାବ ଘନତା ଏଥିରେ ନାହିଁ । ଶିଶୁ ଶଙ୍କରଙ୍କ 'ଉଷାଭିଳାଷ'ରେ ନଦୀ ଜଳର ନିର୍ମଳତାକୁ ମାନିନୀର ମାନ ମୁଂଚିତ ହୃଦୟ

ସଂଗେ ତୁଳନା କରଯାଇଛି । ନାୟକର ପ୍ରେମାଳାପ ପ୍ରସଂଗକ୍ରମେ ପ୍ରକୃତିର ବିବିଧ ଦୃଶ୍ୟରେ ନାୟିକା ଅଙ୍ଗ ସୌନ୍ଦର୍ଯ୍ୟର ଆରୋପ କରି କବି ରୀତି ରସିକତା ପ୍ରକାଶ କରିଛନ୍ତି [139] । ନରସିଂହ ସେଣଙ୍କ 'ପରିମଳା'ରେ ନାୟକର ଶରଦ ବିରହ-ଭବନା ଦୀର୍ଘ ଓ ରସସିକ୍ତ । ପ୍ରକୃତି ଚିତ୍ରଣରେ କାନ୍ତହୀନା ନାୟିକାର ବେଶ୍ୟାଦଶା ବିରହିଣୀର ତନୁବର୍ଣ୍ଣ, ବାରନାରୀର ନୀବୀ କୋମଳତା, କୁଳବଧୂର ନୀବୀ ସରସତା, ଘନ ଜଘନୀର ଜଘନ କାନ୍ତି, ନବ ଯୌବନୀର ସ୍ତନ ଶୋଭା, କାନ୍ତ ସୋହାଗିନୀ କାମିନୀର ରସରୀତି ଆଦି ଚତୁରତାର ସହିତ ଗୁଂଫିତ [140] । ଧନଞ୍ଜୟଙ୍କ 'ଅନଙ୍ଗରେଖା' ବର୍ଣ୍ଣିତ ଶାରଦୀୟ ଶୋଭାରେ ନାରୀ ତଥା ତା'ର ଅଧର, ସ୍ତନ, ନିତମ୍ବର ରୂପ ପରିକଳ୍ପିତ [141] ।

'ରସକଲ୍ଲୋଳ'ର ଶରତ ଚିତ୍ର ସ୍ୱାଭାବିକ ଓ ସୁଷମାସ୍ନିଗ୍ଧ । ଏଠାରେ ଶୃଙ୍ଗାରିକତାର ଆରୋପ ଅତ୍ୟନ୍ତ ମାର୍ଜିତ । ପାରଂପରିକ ରୀତିରେ କାଶ ତଣ୍ଡୀ, ବନ୍ଧୁଲି, ମୟୂରୀକୁ ଯଥାକ୍ରମେ କାମଦେବର ଶ୍ୱେତଛତ୍ର, ରମଣୀର ରମଣୀୟ ଅଧର, ସ୍ୱାମୀ ପରିତ୍ୟକ୍ତା ନାୟିକା ରୂପେ ଏଠାରେ କଳ୍ପନା କରଯାଇଛି [142] । ଉପେନ୍ଦ୍ରଙ୍କ [143] 'ବୈଦେହୀଶ ବିଳାସ'ରେ ଶରତ ଦୃଶ୍ୟ ଆଳଂକାରିକ କିନ୍ତୁ ବୈଚିତ୍ର୍ୟହୀନ । 'ଲାବଣ୍ୟବତୀ'ର ଏକ ସ୍ଥଳରେ ଏହି ଋତୁର ସୂଚନା ଓ ଅନ୍ୟ ସ୍ଥଳରେ ପ୍ରାକୃତିକ ଶୋଭାର ସଂକ୍ଷିପ୍ତ ଚିତ୍ର ପ୍ରଦତ୍ତ । 'ପ୍ରେମ ସୁଧାନିଧି'ରେ ଏହାର ନାମୋଲ୍ଲେଖ ମାତ୍ର ଦେଖାଯାଏ । ବ୍ରଜନାଥଙ୍କ 'ଅମ୍ବିକା ବିଳାସ' ଓ 'ଶ୍ୟାମ ରସୋତ୍ସବ'ର ଶରଦ ବର୍ଣ୍ଣନା ଗଦ୍ୟାତ୍ମକ ଓ ନୀରସ [144] । ଜଗନ୍ନାଥ ନାରାୟଣଙ୍କ 'ପ୍ରଭାବତୀ ପରିଣୟ'ର ଏହି ଚିତ୍ରରେ କୌଣସି ଉଲ୍ଲେଖଯୋଗ୍ୟ ବୈଶିଷ୍ଟ୍ୟ ଦେଖାଯାଏ ନାହିଁ [145] ।

ଉପରୋକ୍ତ ଅଧ୍ୟୟନରୁ ଜଣାଯାଏ ଯେ ଶରତ ବର୍ଣ୍ଣନାରେ କବିଗଣ ବିଶେଷ କାର୍ପଣ୍ୟ ପ୍ରଦର୍ଶନ କରିଛନ୍ତି । କିନ୍ତୁ 'ଉଷାଭିଳାଷ,' 'ପରିମଳା' 'ଅନଙ୍ଗରେଖା' ଓ 'ରସକଲ୍ଲୋଳ'ରେ ଏହି ଚିତ୍ରର ପରିସର ସୀମିତ ହେଲେ ହେଁ ସଫଳତା ଅନନ୍ୟ ସାଧାରଣ ।

ହେମନ୍ତ—ହେମନ୍ତର ହିମ ଶୀତଳତା କବି ଦୃଷ୍ଟିକୁ ବିଶେଷ ଆକୃଷ୍ଟ କରେ ନାହିଁ । କାଳିଦାସ ମଧ୍ୟ 'ଋତୁସଂହାର'ରେ ଏହି ଋତୁର ପ୍ରାକୃତିକତା ଅପେକ୍ଷା ରତି ବିଳାସର ଅଚମତ୍କାରୀ ବିସ୍ତୃତ ଚିତ୍ର ଅଙ୍କନ କରିଛନ୍ତି[146] ।

ଓଡ଼ିଆ ରୀତି କାବ୍ୟଧାରାର ଅଳ୍ପ କେତୋଟି ସ୍ଥଳରେ ହେମନ୍ତର ଚିତ୍ର ପ୍ରଦତ୍ତ । 'ରହସ୍ୟ ମଂଜରୀ'ରେ ଏହାର ପ୍ରାକୃତିକ ରମଣୀୟତା ସରସ ଶୈଳୀରେ ବର୍ଣ୍ଣିତ । ଏ ସ୍ଥଳରେ ବିରହିଣୀ ନାୟିକାର କାନ୍ତାନୁଚିନ୍ତା ଅତ୍ୟନ୍ତ ମାର୍ମିକ [147] । 'ପରିମଳା'ରେ ଋତୁ ବିଭବ ଅପେକ୍ଷା ପ୍ରୀତି ବିଭବର ଆଧିକ୍ୟ ପରିଲକ୍ଷିତ [148] । ପ୍ରସଂଗତଃ ଗନ୍ଧର୍ବ ସହ କପଟ ସଂଭୋଗରେ ଲିପ୍ତ ଥାଇ ନାୟିକାର ପ୍ରିୟ ଭାବନା ସବୁଠାରୁ ବୈଚିତ୍ର୍ୟମୟ । ସେହି କାଳରେ ନାୟକର ନାୟିକାନୁଚିନ୍ତା ମଧ୍ୟ ଦୁଃସହ ବିରହାର୍ଦ୍ର । 'ଅନଙ୍ଗରେଖା'ରେ ନାୟିକାର ହିମ-ବିରହ-ଭାବନା କରୁଣ ଓ ପ୍ରିୟ-ଗୁଣ-ସ୍ମରଣାନୁରଂଜିତ । ପ୍ରକୃତି ଦୃଶ୍ୟର ସ୍ୱାଭାବିକତା ଏଠାରେ ପରିଦୃଷ୍ଟ [149] ।

'ରସ କଲ୍ଲୋଳ'ର ହିମ ଋତୁ ବର୍ଣ୍ଣନାରେ ମଣିଷ ଓ ପ୍ରକୃତିର ଚିତ୍ର ବାସ୍ତବଧର୍ମୀ ଓ ରସାଳ । ନରନାରୀଙ୍କ ବିବିଧ କାମ ବିଳାସ ତଥା କୃଷ୍ଣ ଗୋପାଙ୍ଗନାଙ୍କର ପ୍ରୀତି ପରିହାସ ଓ ଦେହାନୁରାଗ ସଂବଂଧିତ ଶୃଙ୍ଗାର ଚର୍ଯ୍ୟାର ଦୀର୍ଘ ଇସ୍ତାହାରରେ ଏହି ଅଧ୍ୟାୟ ସୁଶୋଭିତ [150] । 'ଲାବଣ୍ୟବତୀ'ରେ ହେମନ୍ତର ସଂକ୍ଷିପ୍ତ ଓ ରୁଚିଶୀଳ ଚିତ୍ର ଉପସ୍ଥାପିତ [151] । ଏଠାରେ ନାୟକର ବିରହାନୁଚିନ୍ତା ପ୍ରିୟା-କେଳି-ସ୍ମୃତି-ବିପୁଳତା ଆଧାରିତ । 'ପ୍ରେମ ସୁଧାନିଧି' ଓ 'ରସିକ ହାରବଳୀ'ରେ ଏହି ଋତୁର ନାମୋଲ୍ଲେଖ ମାତ୍ର ଦେଖାଯାଏ [152] । ଉଭୟ ସ୍ଥଳରେ ଋତୁ ପର୍ଯ୍ୟାୟର ଅନୁରୋଧ କ୍ରମେ ନାୟକ ବିରହଭାବନା ଚିତ୍ରିତ । 'ଅମ୍ବିକା ବିଳାସ'ର ହିମଋତୁ ପ୍ରସଂଗ ଶବ୍ଦ କ୍ଲିଷ୍ଟତା ପୀଡ଼ିତ ଓ ସରସତା ବିବର୍ଜ୍ଜିତ [153] ।

ଓଡ଼ିଆ ରୀତି କବିର ହେମନ୍ତ ବର୍ଣ୍ଣନାରେ ସଂଭୋଗ ଓ ବିପ୍ରଲମ୍ଭର ଚିତ୍ର ଅଙ୍କିତ । ପ୍ରାକୃତିକ ସୌନ୍ଦର୍ଯ୍ୟ ରୂପାୟନରେ କବିର ଆଗ୍ରହ ସର୍ବତ୍ର

ସୀମିତ । ବହୁ କାବ୍ୟରେ ଏହି ଋତୁର ବୈଶିଷ୍ଟ୍ୟହୀନ ସୂଚନା ମଧ୍ୟ ପ୍ରଦତ୍ତ । ନାୟକ ନାୟିକାଙ୍କ ବିରହ ଭର୍ଣନାରେ ଶୃଙ୍ଗାରିକତାର ମୁକ୍ତ ବିଚରଣ ଦେଖିବାକୁ ମିଳୁଥିଲେ ହେଁ ପ୍ରକୃତି ଚିତ୍ରରେ ତାହାର ଆରେପ ସଂକୁଚିତ ।

ଶିଶିର–ଓଡ଼ିଆ ରୀତି କାବ୍ୟ ପରଂପରରେ ଶିଶିରର ବର୍ଣ୍ଣନା ସ୍ୱଳ୍ପ । ଋତୁ ପର୍ଯ୍ୟାୟର ଅନୁରୋଧକ୍ରମେ କେତେକ ସ୍ଥଳରେ ଏହା ପ୍ରଦତ୍ତ । 'ପରିମଳା'ରେ ଶିଶିର ପ୍ରକୃତିର ଦୃଶ୍ୟ କିଂଚିତ୍ ସ୍ୱାଭାବିକ । କୁହୁଡ଼ି ପୂରିତ ଦଶଦିଗ, ପଦ୍ମବନର ବିନାଶ, ଶୀତର ପ୍ରକୋପ, ଅରଣ୍ୟର ଶ୍ରୀହୀନତା, ପକ୍ୱ ଶସ୍ୟରାଶିର ଶୋଭା ସଂକ୍ଷିପ୍ତ ରୀତିରେ ଏଥିରେ ଉପସ୍ଥାପିତ । ନାୟିକା ପାଇଁ ବିରହୀ ନାୟକର ଆକୁଳତା ଏ କ୍ଷେତ୍ରରେ ବିଶେଷ ଉଲ୍ଲେଖଯୋଗ୍ୟ [୧୫୪] । ପ୍ରସଂଗକ୍ରମେ 'ରସକଲ୍ଲୋଳ'ରେ କୁହୁଡ଼ିର ସୂଚନା ମାତ୍ର ପ୍ରଦତ୍ତ । କିନ୍ତୁ କୃଷ୍ଣଙ୍କର ଗୋପାଙ୍ଗନାମାନଙ୍କ ସହ ପ୍ରୀତି ଲୀଳା ଏଠାରେ ଅବାରିତ [୧୫୫] । 'ଅନଙ୍ଗରେଖା' ଓ 'ପ୍ରେମସୁଧାନିଧି'ର ନାୟିକା ବିରହ - ଭର୍ଣନାରେ ଶିଶିରର ନାମୋଲ୍ଲେଖ ମାତ୍ର ଦେଖାଯାଏ [୧୫୬] । 'ଅମ୍ବିକା ବିଳାସ'ରେ ଏହାର ଦୀର୍ଘ ବର୍ଣ୍ଣନା କଳା-ଗୌରବ ହୀନ । ନର ନାରୀଙ୍କ ବିବିଧ ଶୃଙ୍ଗାର ଚେଷ୍ଟା ଏ ସ୍ଥଳରେ ବିବୃତ ହୋଇଥିଲେ ହେଁ ତାହା ପ୍ରୀତିପ୍ରଦ ହୋଇ ପାରିନାହିଁ [୧୫୭] ସୁତରାଂ ଶିଶିରର ସଫଳ ଚିତ୍ର ସର୍ବତ୍ର ମ୍ଳାନ ।

ବସନ୍ତ–କାଳିଦାସଙ୍କ 'ଋତୁ ସଂହାର'ରେ ବସନ୍ତ ପ୍ରକୃତିର ମନୋହର ଓ ମଦନୋଦ୍ଦୀପକ ଚିତ୍ର ଅଙ୍କିତ । ଧରାଧାମରେ ପ୍ରଫୁଲ୍ଲ ଚୂତାଙ୍କୁର ସାୟକଧାରୀ ଋତୁରାଜ ଯୋଦ୍ଧାବେଶରେ ଅବତୀର୍ଣ୍ଣ ହୋଇଥିଲେ ହେଁ ସୁରତ ପ୍ରସଂଗରତ ନାୟକ ନାୟିକାଙ୍କ ହୃଦୟବିଦ୍ଧ କରିବା ତା'ର ଏକମାତ୍ର ଲକ୍ଷ୍ୟ [୧୫୮] । ଅନେକ ସଂସ୍କୃତ କବି ବସନ୍ତାଗମନକୁ ବିବାହ ଦୃଶ୍ୟ ସହ ତୁଳନା କରିଛନ୍ତି । ବନସ୍ଥଳୀ ଓ ବସନ୍ତର ବିବାହ ଅବସରରେ କାମଅଗ୍ନି ସାକ୍ଷୀ ହେବା ଏବଂ କୋକିଳ-ବ୍ରାହ୍ମଣ ମନ୍ତ୍ରପାଠ କରିବା ଆଦି ବର୍ଣ୍ଣନା ଅତ୍ୟନ୍ତ ମନୋରମ [୧୫୯] । ବିଦ୍ୟାପତିଙ୍କ ଦୃଷ୍ଟିରେ–ଏହା କାନନରେ

ଶୃଙ୍ଗାର ରସର ମଧୁମୟ ପ୍ରବାହ ସ୍ୱରୂପ[୨୭୦] । ଭାରତୀୟ ସାହିତ୍ୟରେ ଏହି ଜାତୀୟ ଶୃଙ୍ଗାର ଚେତନାନୁରଞ୍ଜିତ ବସନ୍ତ ବର୍ଣ୍ଣନାର ପ୍ରାଚୁର୍ଯ୍ୟ ପରିଲକ୍ଷିତ ।

ଓଡ଼ିଆ ରୀତି କାବ୍ୟରେ ଏହାର ପୃଷ୍ଟ ପରଂପରା ବର୍ତ୍ତମାନ । ଶିଶୁ ଶଙ୍କରଙ୍କ 'ଉଷାଭିଳାଷ' ବର୍ଣ୍ଣିତ ବସନ୍ତ ପ୍ରକୃତିରେ ଶୃଙ୍ଗାର ଚେଷ୍ଟାର ରମଣୀୟ ରୂପ ଅଙ୍କନ କରଯାଇଛି । ପାଟଳୀ ଫୁଲ, କେତକୀ, ମଧୁପ ଗୁଞ୍ଜନ ଯଥାକ୍ରମେ କାମ ଅର୍ଦ୍ଧଚନ୍ଦ୍ରବାଣ, କାମକୁନ୍ତ ଓ ମଦନ ବିଜୟ ଶଂଖନାଦ ରୂପେ ଏଠାରେ ପରିକଳ୍ପିତ[୨୭୧] । ବିଷ୍ଣୁଦାସଙ୍କ 'ପ୍ରେମଲୋଚନା'ରେ ଋତୁରାଜର ରୂପ ଚିତ୍ରଣ ବିସ୍ତୃତ । ପ୍ରକୃତିର ମନୋରମ ଦୃଶ୍ୟାବଳୀ ସହ ବିବିଧ ନାୟକ ନାୟିକାଙ୍କ ପ୍ରୀତି ବିଳାସର ରସାଢ୍ୟ ମଧୁର ଚିତ୍ର ଏହି କାବ୍ୟରେ ରୂପାୟିତ[୨୭୨] । ଅନ୍ୟ ଏକ ଦୃଶ୍ୟରେ ବସନ୍ତୋତ୍ସବ ଉନ୍ମତ୍ତା ପ୍ରମଦାମାନଙ୍କର ଫଗୁଖେଳ ଏବଂ ରଜପୁତ୍ର ସୁଧାକରର ନବାନୁରାଗ ବର୍ଣ୍ଣନା ପ୍ରୀତି ରସସିକ୍ତ[୨୭୩] । ଧନଞ୍ଜୟଙ୍କ 'ଅନଙ୍ଗରେଖା'ରେ ବସନ୍ତ ପ୍ରକୃତିର ରୂପ ସଂଭାର ସରଳ ଭାଷା ଓ ଅନାଡ଼ମ୍ବର କଳ୍ପନା ସମୃଦ୍ଧ । ଋତୁ ଆଗମନକୁ ଅନଙ୍ଗବିଜୟ ଏବଂ ପୁଷ୍ପିତ କୁଞ୍ଜ କୁଟୀରକୁ ଅନଙ୍ଗ କେଳି ମନ୍ଦିର ରୂପେ କବି କାବ୍ୟସ୍ୱୀକୃତି ଜଣାଇଛନ୍ତି[୨୭୪] ।

'ରସିକଲ୍ଲୋଳ'ର ବସନ୍ତ ଚିତ୍ର ଲଳିତ ପଦ ବିନ୍ୟାସ ଓ ନିବିଡ଼ କାମ ଭାବନା ସମନ୍ୱିତ । କବି କୃଷ୍ଣରାମଙ୍କ ଏକ ସଂସ୍କୃତ ଶ୍ଳୋକର ଛାୟାରେ ଦୀନକୃଷ୍ଣ ଏହା ରଚନା କରିଥିବା କଥା ଅଧ୍ୟାପକ ଡ଼ଃ କାହ୍ନୁଚରଣ ମିଶ୍ର ସୂଚାଇଛନ୍ତି[୨୭୫] । ଏଠାରେ କନ୍ଦର୍ପ, ବସନ୍ତ, କେତକୀ, କେଶର କୁସୁମ, କିଶଳୟ ପନ୍ତି, ମଧୁପ ଯଥାକ୍ରମେ ରଜା, ସଖା, କୁନ୍ତ, ପାଟ କରବାଳ, କାମ-ନୃପତି ଶ୍ୱେତଛତ୍ର, ପତାକା, ଶଂଖୁଆ ରୂପେ ଅଭିହିତ ।

ଉପେନ୍ଦ୍ରଙ୍କ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ର ବସନ୍ତ ପ୍ରକୃତିରେ ଉତ୍ସବ ମୁଖର ଚର୍ଚ୍ଚରୀ ବିହାର-ଦୃଶ୍ୟ ଆରୋପିତ[୨୭୬] । କିନ୍ତୁ 'ଲାବଣ୍ୟବତୀ'ରେ ନାୟିକାର ଉପବନ ବିହାର ପ୍ରସଙ୍ଗକ୍ରମେ ବସନ୍ତ ବର୍ଣ୍ଣନା ଏବଂ ପ୍ରମଦାଗଣଙ୍କର

ଫଗୁଖେଳ ଉନ୍ମାଦନା ଅଧିକ ସରସ ଓ ଅନୁରାଗ ଝଙ୍କରିତ [167] । 'ବୈଦେହୀଶ ବିଳାସ'ରେ ଲତା ସମୂହ–ନବ ପୁଷ୍ପବତୀ, ବାସନ୍ତୀ-ମଲ୍ଲୀ-ନିଆଲି-ଛରିଅନା ଆଦି–ଇଚ୍ଛାବତୀ, କେତକୀ–ସତୀ, କିଂଶୁକ–ବାର୍ଯ୍ୟାନାରୀ, ଚୂତ–ବେଶ୍ୟାନାରୀ ରୂପେ ପରିକଳ୍ପିତ [168] । କବିଙ୍କ ରସିକତା ଓ କଳ୍ପନା ପ୍ରବଣତାରେ ଏ ସ୍ଥଳଟି ଏକାନ୍ତ କମନୀୟ । 'ବିଦଗ୍ଧ ଚିନ୍ତାମଣି'ରେ ବସନ୍ତର ଆଗମନ ଦୃଶ୍ୟ କାମଦେବଙ୍କ ବିଜୟ–ଅଭିଯାନ ରୂପେ ଚିତ୍ରିତ [169] । କାବ୍ୟରୀତି ଓ ଶାସ୍ତ୍ରୀୟତା (କାମ ଦଶଦଶା)ର ଉଲ୍ଲେଖ ଯୋଗୁଁ ଏହା ନୀରସ । ବ୍ରଜନାଥଙ୍କ 'ଅମ୍ବିକା ବିଳାସ'ରେ ବସନ୍ତ ପ୍ରକୃତି ତଥା ନାରୀ ପୁରୁଷଙ୍କ ପ୍ରୀତିଭେଦ ଓ ଉକ୍ତି ପ୍ରତ୍ୟୁକ୍ତି କାମୋଲ୍ଲାସକ ହୋଇଥିଲେ ହେଁ ଭାଷା ରୀତି ସ୍ଥଳ ବିଶେଷରେ ରସାସ୍ୱାଦନର ବାଧକ [170] । କବିସୂର୍ଯ୍ୟଙ୍କ 'ଚନ୍ଦ୍ରକଳା'ରେ ନାୟିକାର ବସନ୍ତ ବନ ବିହାର ଦୃଶ୍ୟ 'ଲାବଣ୍ୟବତୀ' ଅନୁରୂପ । ଅନ୍ୟ ଏକ ସ୍ଥଳରେ ଏହି ଋତୁର ବିଶଦ ଚିତ୍ର ଅଙ୍କିତ । କିନ୍ତୁ ତାହା ଗତାନୁଗତିକ ଓ ବୈଚିତ୍ର୍ୟହୀନ[171] ।

ନାୟକ ନାୟିକାଙ୍କ ଋତୁ ପର୍ଯ୍ୟାୟଗତ ବିରହ ଭାବନା ପ୍ରସଙ୍ଗରେ ବସନ୍ତର ସୂଚନା ମଧ୍ୟ ବହୁସ୍ଥଳରେ ପରିଦୃଷ୍ଟ । କିନ୍ତୁ ସକଳ ବର୍ଣ୍ଣନାରେ ପ୍ରକୃତିର ବୈଚିତ୍ର୍ୟ ଅପେକ୍ଷା ସମ୍ଭୋଗ ସ୍ମୃତି ଓ ବିରହପୀଡ଼ାର ରୂପ ସୁସ୍ପଷ୍ଟ । ପରମ୍ପରାଗତ ହୋଇଥିଲେ ମଧ୍ୟ ସଙ୍ଗୀତିକତା, ଶୃଙ୍ଗାରିକତା ଓ କାଳ୍ପନିକତାର ମଧୁର ସମନ୍ୱୟ ହେତୁ ଓଡ଼ିଆ କାବ୍ୟର ବହୁ ସ୍ଥଳରେ ଏହା କାଳାତୀତ ସୌନ୍ଦର୍ଯ୍ୟ ବିଭୂଷିତ ।

ପ୍ରକୃତ–ବନ, ଗିରି, ନଦୀ, ଋତୁ ଚିତ୍ରାଦି ଅତିରିକ୍ତ କେତେକ କାବ୍ୟରେ ମାନବୀୟ ଚେତନା ସହ ପ୍ରକୃତିର ଘନିଷ୍ଠ ସମ୍ବନ୍ଧ ସ୍ଥାପିତ । ଏସବୁ ସ୍ଥଳରେ ତା'ର ଜଡ଼ ରୂପ ଜୀବନ ଚଞ୍ଚଳତାରେ ସମୃଦ୍ଧ । ଏହି ଜାତୀୟ ଦୃଶ୍ୟର ଏକ ସୁନ୍ଦର ଉଦାହରଣ କାଳିଦାସଙ୍କ 'ରଘୁବଂଶ'ରେ ଦେଖାଯାଏ–ତାହା ହେଉଛି ନିର୍ବାସିତା ସୀତାଙ୍କ ଦୁଃଖରେ ଅଭିଭୂତା ବନସ୍ଥଳୀର ଚିତ୍ର [172]।

ଆମ ରୀତି କାବ୍ୟଧାରରେ ଏ ପ୍ରକାର ଚିତ୍ରର ସଫଳତା ସୀମିତ । ଅର୍ଜୁନ ଦାସଙ୍କ 'କଳ୍ପଲତା'ରେ ଚିତ୍ରିତ ପ୍ରକୃତିର ସମ୍ବେଦନଶୀଳ ରୂପ ବାସ୍ତବିକ କରୁଣାଦ୍ର[173] । ମିଳନରସ ପ୍ରାକ୍-କାଳୀନ ଶ୍ରୀକୃଷ୍ଣଙ୍କ ମଧୁର ବଂଶୀ-ଆଳାପ-ପୁଲକିତ ପ୍ରକୃତିର ରମଣୀୟ ଚିତ୍ର ରହସ୍ୟ ମଞ୍ଜରୀ'ରେ ଅଙ୍କିତ । ସପ୍ତସାଗରର ଲହରୀମାଳା ସ୍ଥକିତ ହେବା, ଶୁଷ୍କ ତରୁରେ ନବ ପଲ୍ଲବ ଅଙ୍କୁରିତ ହେବା, ପାଷାଣ ଦ୍ରବୀଭୂତ ହେବା, ମତ୍ସ୍ୟ ସମୂହ ଗଭୀର ଜଳରୁ କୂଳ ଉପରକୁ ଲମ୍ଫ ପ୍ରଦାନ କରିବା, ପଶୁକୁଳ ଗ୍ରାସ ମୁଖରେ ସ୍ଥିର ହୋଇ ରହିବା ଆଦି ଅତ୍ୟନ୍ତ ରୁଚି ସଂପନ୍ନ ପରିକଳ୍ପନା[174] 'ପ୍ରେମ ପଞ୍ଚାମୃତ' ବର୍ଣ୍ଣିତ କୃଷ୍ଣ ଗୋପାଙ୍ଗନା ବିବାହୋତ୍ସବରେ ପ୍ରକୃତିର ଅଂଶ ଗ୍ରହଣ କାବ୍ୟିକ ରମଣୀୟତାରେ ଉଜ୍ଜ୍ୱଳ[175] । ନଭ ମଣ୍ଡଳ, ପକ୍ୱ ଶ୍ରୀଫଳ, ଶୁକାଦି ପକ୍ଷୀଗଣଙ୍କ ବଚନ, କୋକିଳ ଧ୍ୱନି, ଭୃଙ୍ଗ ଶବ୍ଦ, ମେଘନାଦ କୁନ୍ଦ କୁମୁଦ, ପକ୍ୱ ଡାଳିମ୍ବ, ପଞ୍ଚଫଳ, ଦୂରସ୍ଥିତ ହରିଣୀ, ଖଗମୃଗ କୁତୂହଳ ଇତ୍ୟାଦି ଯଥାକ୍ରମେ ଚନ୍ଦ୍ରାତପ, ସୁବର୍ଣ୍ଣକୁମ୍ଭ, ବେଦମନ୍ତ୍ର ଉଚ୍ଚାରଣ, ଭଟଙ୍କ ମଙ୍ଗଳପାଠ, ମଙ୍ଗଳ ଶଙ୍ଖ ଧ୍ୱନି, ବିଭବାଦ୍ୟ, ଶଳା,ଶାଳୀ ଓ ଭଉଜଙ୍କ ହାସ୍ୟ, କନ୍ୟାଦାତଙ୍କ ରତ୍ନଦାନ, ଯୌତୁକ, ସାଇପଡ଼ିଶା ତରୁଣୀ, କୁଟୁମ୍ବ ଭୋଜନ ଚହଳ ରୂପେ ଏଥିରେ କଳ୍ପିତ । ରାସ ସମାବେଶରେ ଶ୍ରୀକୃଷ୍ଣଙ୍କ ମୃତ ସଂଜୀବନୀ ରାଗ ଆଳାପିତ ବଂଶୀନାଦ ଓ ତତ୍‌ଜନିତ ପ୍ରକୃତିରେ ଅନିର୍ବଚନୀୟ ପୁଲକର ସଂଚରଣ—'ରହସ୍ୟମଂଜରୀ'ର ସମଧର୍ମୀ[176] । ଏ ସକଳ କ୍ଷେତ୍ରରେ ବିରହ ଓ ମିଳନ ସଂବଂଧିତ ପ୍ରକୃତିର ଅନନ୍ୟ ରୂପ ସଫଳତାର ସହ ଅଙ୍କିତ ।

**ଶେଷକଥା**—ମଧ୍ୟଯୁଗୀୟ ନାରୀ ଭବନା ଓ ଶୃଙ୍ଗାର ବିଳାସ ସାମନ୍ତୀୟ ଜୀବନାଦର୍ଶକୁ ଗଭୀର ଭବରେ ଆଛନ୍ନ କରି ରଖିଥିଲା । ତେଣୁ ସାହିତ୍ୟ ସୃଷ୍ଟିରେ ତାହାର ପ୍ରତିଫଳନ ଏକାନ୍ତ ସ୍ୱାଭବିକ । ଏତତ୍‌-ଭିନ୍ନ ପ୍ରାଚୀନ ସାହିତ୍ୟ ଓ ପରଂପରା ପ୍ରତି ଆନୁଗତ୍ୟ ଥିଲା କବି ମଣ୍ଡଳୀର ଆଦର୍ଶ । ସୁତରାଂ ନଦୀ, ବନ, ଗିରି, ନଗର ଆଦି ବର୍ଣ୍ଣନାରେ ଶୃଙ୍ଗାର ଚେତନାର ନିଛକ ଅଭିବ୍ୟକ୍ତି ପ୍ରକାଶ ପାଇବା ଯଥାର୍ଥ । ଦରବାରୀ କାବ୍ୟ ସାଧନାର ଏତାଦୃଶ ପରିଣତି ଆଦୌ ବିସ୍ମୟକର ନୁହେଁ ।

❋

## ପାଦଟୀକା-

୧। କାବ୍ୟାଦର୍ଶ : ୧,୧୬-୧୭

୨। ସାହିତ୍ୟ ଦର୍ପଣ : ୬ଷ୍ଠ-ପୃ ୫୮୫

୩। ଦୟିତଂ ପ୍ରତି ଯତ୍ର ସନ୍ତତଂ ରତିହାସାଇବରେଜିରେ ଭୁବଃ
ସ୍ଫୁଟିକୋପଳ ବିଗ୍ରହା ଗୃହାଃ ଶଶଭୃଦ୍‌ଭିତ୍ତି ନିରଙ୍କଭିଭୟଃ ।
ନୈଷଧଃ ୨/୭୪

୪। ବାତାୟନ ନୟନ କଳସ କୁଚମତ
ବସନ ପତାକା ତହିଁ ଶିରରେ ରଂଜିତ ।
ପ୍ରେମ ଲୋଚନା : ୧୫/୧୯ (ଇତ୍ୟାଦି)

୫। ଯେଉଁ ନଗରେ ଉରଜ ଲଭିଲେ ନାହିଁ କରଜ ପୀଡ଼ା ଲଭିଲେ
ଉରଜ କରଜ ପୀଡ଼ା ।
ପରଭୃତ ସମ କରି କଳ ଯେଉଁ ଦଣ୍ଡଧାରୀ ସେ ପାଉଛି
ପରଭୃତ ସକାଶୁ ପୀଡ଼ା ।
ଯହିଁ ଛନ୍ତି ବିଯୋଗୀ ଚକ୍ର । ଏହା କାହିଁକି ପାଞ୍ଚିବେ ବିଯୋଗୀ ଚକ୍ର ।
ସର୍ବାଙ୍ଗ ସୁନ୍ଦରୀ : ୫/୬

୬। ବୈଦେହୀଶ ବିଳାସ : ୩୪,୨୯-୩୭

୭। ତତ୍ରୈବ : ୩୪/୩୭

୮। ବକ୍ଷୋଜେ । ବସି ନଖ ଚିହ୍ନ ଗ୍ରହିଁ ଯେ ।
ବଡ଼ଭାରେ ରଙ୍ଗ ସୁଚୀର କେତୁକି ରୁଚି ଗ୍ରନ୍ଥିକ୍ୟ ନ ବହେ ଯେ ।
ବୈଦେହୀଶ ବିଳାସ : ୩୪,୩୧

୯। ତନ୍ତୁ ତରୁଣୀରେ ଶରଣ ଭଜି । କମ୍ପ, ସ୍ତମ୍ଭ, ତ୍ରପା ତେବେ ନ ତେଜି ।
କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୨/୩

୧୦। କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୨,୧୫

୧୧। ତତ୍ରୈବ : ୨/୧୭–୧୮

୧୨। ତତ୍ତ୍ୱେବ : ୪/୨୧–୨୨

୧୩। ତକ୍ର ସେ ପୁରେ ସୁନ୍ଦରୀମାନଙ୍କର ଅଳକା ଭୂବଲ୍ଲୀ କଟାକ୍ଷ ।
କୁଟିଳ ଉନ୍ନତ ଚଞ୍ଚଳ ତାହାଙ୍କ ଚିକୁର ପୟୋଧର ଅକ୍ଷ ।
ଅତ୍ୟନ୍ତ, କୃଶତର କଟୀ ଉଦର ।
ମନ୍ଦଗତି ହାସେ ପ୍ରକାଶ ହୋଇଛି କମ୍ପୁ କେବଳ ତହିଁ ଦର ।

ଶଶିରେଖା : ୩/୧୮

୧୪। ଚନ୍ଦ୍ରକଳା : ୩/୨୧-୨୨

୧୫। ଯହିଁ ପୁରେ ଶୋଇଥିଲ ସଚିବ ଯୁବତୀ
ମାର ବିକାର ବିଧୁର ହୋଇ ବାଚସ୍ପତି ।
ନିଜ ଅନ୍ତଃପୁର ଭ୍ରମେ ପଶିଲେ ସେ ପୁରେ
ଦେଖିଲେ ଶୋଇଛି ବାଳା ପଲଙ୍କ ଉପରେ ।
ନିଜ ସରସିଜ ନେତ୍ରା ଭ୍ରମେ ରତି କଲୁ
ନିଦ୍ରାଭଙ୍ଗେ ପଗ୍ଭରିଲୁ ସେ ହେମ ରମ୍ଭୋରୁ ।

ଚନ୍ଦ୍ରକଳା : ୩ ୨୯-୩୦

୧୬। ଯହିଁ ନିଳୟ ଧାରଣା ପାଞ୍ଚାଳିକାଗଣେ
ଅନିମିଷାଦି ଅନେକ ଲବଣ୍ୟ ଲକ୍ଷଣେ ।
ପ୍ରତି ନିଶା ଅଭିସାର ରସବଶ ସ୍ମରେ
• 'ଭିଡ଼ି ବାମା ଭ୍ରମରେ ଚୁମ୍ବନ୍ତି ଚିବୁକରେ ।

ଚନ୍ଦ୍ରକଳା : ୩,୩୮

୧୭। ଯହିଁ କେଉଁ ରସ ଲଂପଟ ପୁରୁଷ ଗବାକ୍ଷ ପାଶେ ବସିଥିଲା
ଅବିଦୂର ଶଶି ବିମ୍ବକୁ ପ୍ରେୟସୀ ବଦନ ଭ୍ରମେ ଚୁମ୍ବି ଦେଲୁ । ×××

ଚନ୍ଦ୍ରକଳା : ୫/୨୦

୧୮। ପ୍ରବଂଧ ପୂର୍ଣ୍ଣଚନ୍ଦ୍ର : ୧/୧୯

୧୯। × × ଗଜବନ୍ତେ ଗଜଦନ୍ତ ଅଳସୀ
କନ୍ୟା ଲେକନେ ଅଜ୍ଞାନ ସନ୍ନ୍ୟାସୀ । × ×

ପ୍ରବଂଧ ପୂର୍ଣ୍ଣଚନ୍ଦ୍ର : ୨/୮

୨୦। ଶଶିସେଣା : ୬,୫-୧୧, ଶଶିରେଖା : ୧୭/୧୦-୨୩ (ଇତ୍ୟାଦି)

୨୧। ରମ ଚତ୍ୱରତି ଭୋ ମୁନି ! ଯେହୁ କେବଣ ବନ
କାମର କି କେଳି ନଗର, କରେ ଆନନ୍ଦ ମନ ।

ରମବିଭ : ୩/୧୮

୨୨। ପ୍ରେମଲେଚନା : ୬/୧୭-୨୨

୨୩। ନାଗେଶ୍ୱରରେ ଶୋଭିତ ହୋଇଛି ପୁଣ
ଗଣିକାଗଣରେ କରି ଦିଶେ ଶୋଭନ ।
ପୁର୍ଣ୍ଣାଙ୍ଗ ଶୋଭନ୍ତେ କଉର ରତି ଭିଳାସ
ବିଚିତ୍ର ରୁଚିରେ କରେ ଅତି ବିଶେଷ ।

ରଘୁନାଥ ବିଳାସ : ୩/୨୧-୨୨

୨୪। ବାସରେ ଆଛନ୍ନ ଶୋଭ ତୁଙ୍ଗ ପୟୋଧରେ
ବାସରେ ଆଛନ୍ନ ଶୋଭ ତୁଙ୍ଗ ପୟୋଧରେ ।

ବୈଦେହୀଶ ବିଳାସ : ୭/୩୬ (ଇତ୍ୟାଦି)

୨୫। ତତ୍ରୈବ : ୧୯ଶ

୨୬। ତତ୍ରୈବ : ୧୯/୩

୨୭। ତତ୍ରୈବ : ୨୨/୬୮-୭୮

୨୮। ବିବସନ କରି ନଖ ଗ୍ରଜନ୍ତେ କିଂଚିତ
ବିବସନ୍ତ ହେବ କି ଏ ରୂପେ ରୋମାଞ୍ଚିତ ।

ବୈଦେହୀଶ ବିଳାସ : ୨୭/୨

୨୯। ରସଲେଖା-୧ମ

୩୦। ଚତୁରୀ ନାରୀ ପ୍ରାୟେ ପ୍ରାତେପୁଣ
ଚମ୍ପା ବରନୀ ଖଂଜନ ଇକ୍ଷଣ
ଚିକୁର ତମାଳ କୁନ୍ଦ ଦଶନ
ଚିବୁକ ନାରଂଗ ଶ୍ରୀଫଳ ସ୍ତନ
ଚୁଚୁକ କ୍ରମୁକ ଗୁଚ୍ଛ ଯେ
ଚିଲ୍ଲୀ ଭୃଙ୍ଗ ଶ୍ରେଣୀ ଅଶୋକ ଅଙ୍ଗୁଳି
ବାଣୀ ପିକରମ୍ଭା ଊରୁ ଯେ । ଛାନ୍ଦଭୂଷଣ : ୬/୬

୩୧। କହ କହ ପ୍ରାଣ 'ମିତ
ବନେ ଯିବ କି ଜୀବିତ
ପ୍ରେମାଗଧିକା ମୋ ବ'ଧୁ ରାଧିକା ପରାଏ ପ୍ରତୀତ ।
ବିଦଗ୍ଧ ଚିନ୍ତାମଣି : ୬୬/୮

୩୨। ତତ୍ରୈବ : ୬୬/୯-୧୩

୩୩। ମହାକବି କାଳିଦାସ (ହିନ୍ଦୀ)-ପୃ ୩୩୬

୩୪। ମହୀଧାରଣ ପର୍ବତେ ନରନାଥ ଯାଇ
ନିରନ୍ତରେ ସୁନ୍ଦରୀ କି ଚିନ୍ତା କରୁଥାଇ ଯେ ।
ପ୍ରେମ ଲୋଚନା : ୧୮/୧

୩୫। ଅନଙ୍ଗରେଖା : ୨୩/୨୫-୨୮

୩୬। ସତ ଅବନୀ ବନିତାର ସ୍ତନ ଶୋଭା ପାଉଛି
ସୁତୁଙ୍ଗ କଠିନ ଦୁର୍ଲଭ ତିନିଗୁଣ ବହିଛି ।
× × × ସୁଭଦ୍ରା ପରିଣୟ : ୫/୩
ସୁରଶାସ୍ତ୍ର ହିଁ ମୂର୍ତ୍ତିମନ୍ତ ମଣି ଗହ୍ୱର ତହିଁ
ଶୂନ୍ୟ ବିବେକ ଶବରୀକି ବିପରୀତ କରଇ ।
ସୁଭଦ୍ରା ପରିଣୟ : ୫/୮

୩୭। ଅନଂଗ ରସ ଅଛି ବିଶେଷ ମୂର୍ତ୍ତିବନ୍ତ ହୋଇ ଯହିଁ
ଅଙ୍ଗନା-ଇଙ୍ଗ ପୁରୁଷ-ଧୈର୍ଯ୍ୟ ଗ୍ରହୁଁ ଗ୍ରହୁଁ ହୋଏ ଦହି ।
ଅମ୍ବିକା ବିଳାସ : ୬/୧୦

୩୮। ପ୍ରବ'ଧ ପୂର୍ଣ୍ଣଚନ୍ଦ୍ର : ୧/୧୩–୧୪

୩୯। ମୁଖାର୍ପଣେଷୁ ପ୍ରକୃତି ପ୍ରଗଲ୍ଭାଃ ସ୍ୱୟଂ ତରଙ୍ଗାଧର ଦାନ ଦକ୍ଷଃ
ଅନନ୍ୟ ସାମାନ୍ୟ କଳତ୍ର ବୃତ୍ତିଃ ପିବତ୍ୟସୌ ପାୟୟତେ ଚ ସିନ୍ଧୁଃ ।
ରଘୁବଂଶ : ୧୩/୯

୪୦। ବିହେ ମକର କେତନ ଉଛନ୍ନ ରତି ସମାନ
ପୂରିତ ହୋଇଛି ଶେଷେ ଅଶେଷ ରସେ ।
ବୈଦେହୀଶ ବିଳାସ : ୯/୧

୪୧। ବିଲୋକି ନଦୀ ଗୋଦାବରୀ
ବାମା କି ଶୁକ୍ଳା ଅଭିସାରୀ ।
ବୈଦେହୀଶ ବିଳାସ : ୨୨/୫୩

୪୨। ଶଶିରେଖା : ୧୭/୨୨-୨୩

୪୩। ପ୍ରିୟାସୁ ବାଳାସୁ ରତିକ୍ଷମାସୁ ଚ ଦ୍ୱିପର୍ତ୍ତିତଂ ପଲ୍ଲବିତଞ୍ଚ ବିଭ୍ରତମ୍
ସ୍ମରର୍ଜ୍ଜିତଂ ଗର୍ଗ ମହୀରୁହାଙ୍କୁରଂ ମିଷେଣ ଚଞ୍ଚୁାଶ୍ୱରଣ ଦ୍ୱୟସ୍ୟ ଚ ।
ନୈଷଧ : ୧/୧୧

୪୪। କି ନୀଳ ଶାଢ଼ୀ ଚଙ୍ଗଧଡ଼ି ହଂସାବଳୀ ହୋଇଛି
ଅବନୀ ବନିତା ବିସ୍ତାରେ କିବା କିଣିବା ଛନ୍ତି ।
ଲାବଣ୍ୟବତୀ : ୬/୩

୪୫। କବି ବିସ୍ମରିଲା ବିଚିତ୍ର ହେଲା ତୁମ୍ଭୀ ବୁଡ଼ିଲା
ନବୁଡ଼ି ଶଇଳ ସଲିଳ ଉପରରେ ରହିଲା ।
ଲାବଣ୍ୟବତୀ : ୬/୧୧

୪୬। ଉତ୍ତାନ ପ୍ଲବନେ ଉରଜମାନେ କି ମନୋହର
ନଳ ଦୀକ୍ଷା ପାଇ ନାଭୀକି ଭେଳା କଲେ ଭୂଧର ।
ଲାବଣ୍ୟବତୀ : ୬/୩୧

୪୭। ନାରୀ ବାରି ବାରି ନୋହିଲେ ତହିଁ ଘଡ଼ିଏ ଯାଏ ।
× × × ଲାବଣ୍ୟବତୀ : ୬/୩୪-୩୬

୪୮। ଚନ୍ଦ୍ରକଳା : ୧୧/୧୧-୧୩ (ନାଭୀ), ୧୧/୧୪ (ମୁକୁର ଭିତ୍ତି),
୧୧/୧୫ (ଚୁମ୍ବନ)

୪୯। ଆବର୍ତ୍ତଶୋଭ ନତ ନାଭି କାନ୍ତେର୍ଭଙ୍ଗୋ ଭ୍ରୁବା ଦ୍ୱନ୍ଦ୍ୱଚରଃ ସ୍ତନାନାମ୍
ଜାତାନି ରୂପାବୟବୋପମାନାନ୍ୟ ଦୂରବର୍ତ୍ତିନୀ ବିଳାସିନୀନାମ୍ ।
ରଘୁବଂଶ : ୧୬/୬୩

୫୦। ରତି ସଙ୍ଗେ କାମ କି ଖେଳେ ।
କଳ୍ପଲତା : ୧୧/୯

୫୧। ଦେଖିଣ ଚକିତ ଉଷା ବିଗ୍ଧରି ମନେ
ଧିକ ଧିକ ଯଉବନ କାନ୍ତ ବିହୁନେ ।
ଉଷାଭିଳାଷ : ୪,୨୬

୫୨। ଜଳ ଜଳନିଧି ମତ କୁଚ ଗିରିବର
କଉଷେୟ ରଜ୍ଜୁକି ମନ୍ଥଇ ପାରବାର ।
ପ୍ରେମ ଲୋଚନା : ୪/୯

୫୩। ଅନଙ୍ଗରେଖା : ୨୪/୪୨-୫୪

୫୪। ରସକଲ୍ଲୋଳ : ୧୫/୧୨-୨୨

୫୫। ସର୍ବାଙ୍ଗ ସୁନ୍ଦରୀ : ୭/୩୫-୪୦

୫୬। ଅହିମକର ତାପ ନାଶେ ଶୋଭ ସାରସ ଚକ୍ରେ ।
କିମ୍ବା
ମଲ୍ଲୀକା ପୁଞ୍ଜିଲ ଜେମାକୁ ଗ୍ଧରିବର୍ଣ୍ଣେ ଏସନ ।
ଲାବଣ୍ୟବତୀ : ୬/୨୩, ୬/୨୫ (ଇତ୍ୟାଦି)

୫୭। ବିନ୍ଦୁ ବିନ୍ଦୁ ଜଳ ରହିଛି ଗ୍ଧରୁ କୁଟିଳ ବାଳେ
ତୁଷାର ବୃଷ୍ଟି କି ହୋଇଛି ନବ ତମାଳ ଦଳେ ।
ଲାବଣ୍ୟବତୀ : ୬/୪୨ (ଇତ୍ୟାଦି)

୫୮। ସଁଶୈବରେ ପଶି ସେ ତାକୁ ଧରନ୍ତି କୁଚେ ନଖ କ୍ଷତ ଦେଖିଲେ
ସ୍ୱୟଂମ୍ଭୂ ଶମ୍ଭୁଙ୍କୁ ଚନ୍ଦ୍ର ଶେଖରତ୍ୱ କେ ଦେଲା ଏତେ ବିଗ୍ଧରିଲେ
ସଙ୍ଗୀତ, ସୁଗନ୍ଧ କେତକୀ ଫୁଲକୁ
ସଂଯୋଗ କେମନ୍ତ ଭ୍ରମର ଯେ କଲା ଜଣାତ ନ ଯାଇ ଆମ୍ଭଙ୍କୁ ।
ସୁଭଦ୍ରା ପରିଣୟ : ୧୪/୧୧

୫୯। ବିଦଗ୍ଧ ଚିନ୍ତାମଣି : ୧୮/୩

୬୦। ନେଇ ପଦ୍ମ କେ କାହା କୁଚେ ଦେଲା
ନର୍ମ ନର୍ମ ଭବେ ତନ୍ମୟ ହେବାରୁ କୃଷ୍ଣକର ପ୍ରତେ ହେଲା ।...
ବିଦଗ୍ଧ ଚିନ୍ତାମଣି : ୧୮/୫

୬୧। କେମାର ବିପୁଳ ଜଘନକୁ ଜଳ ଯହୁଁ କଲା ଆଲିଙ୍ଗନ
ଯୁବଗଙ୍କ ପାଣି ଲଗି ପରି ମଣି ପୁଲକନ୍ତେ ଅପଘନ ଯେ ।

ଚନ୍ଦ୍ରକଳା : ୧୧/୨୫

୬୨। ଏକାବେଳେ ଜଳେ ବୁଡ଼ିଲେ ସକଳେ ଭସିଲା ଉର୍ଦ୍ଧ୍ୱେ କେବଳ ।
ଇନ୍ଦ୍ରନୀଳ ଛାୟା ଭ୍ରମର ନିଚୟ ପ୍ରଳମ୍ବ କୁନ୍ତଳ କୁଳ ଯେ,
ସବୁଁ ଏକ ପ୍ରଦେଶ । ଧଇଲା କି ସୁରସୁତା ବେଶ ।
ଅବା ତମାଳ ଛାୟା ପ୍ରଦେଶ ଯେ ।

ଚନ୍ଦ୍ରକଳା : ୧୧/୩୫

୬୩। କାମର ତରୁ ପାଦାନ୍ତି କୁସୁମ ଶର ଭରତୀ
ଧରିଣ ବ୍ରହ୍ମାଣ୍ଡ ପୂରି, ଅଛି ଆବୋରି ଯେ ।

ରହସ୍ୟ ମଞ୍ଜରୀ : ୧୩/୧୬

୬୪। ଯେମନ୍ତ ଉପବନରେ କୃଷ୍ଣ ଗୋପିକା
ବିହରନ୍ତି କନ୍ଦର୍ପକୁ କରିଣ ସଖା ।

ଗୋପୀ ଚନ୍ଦନ : ୪/୫୮ (ଇତ୍ୟାଦି)

୬୫। ଉଷାଭିଳାଷ—୩ୟ (ପାଟଳୀ—କାମ ଅର୍ଦ୍ଧଚନ୍ଦ୍ରବାଣ, କେତକୀ—
କାମକୁନ୍ତ, ନାଗେଶ୍ୱର କଢ଼ି—କାମ ହାବୋଡ଼,
ମଧୁପ ଗୁଞ୍ଜନ—ମଦନ ବିଜୟ ଶଙ୍ଖନାଦ ଇତ୍ୟାଦି)

୬୬। ଇଚ୍ଛାବତୀ : ୨/୮

୬୭। ତତ୍ରୈବ : ୩/୧୦-୧୨

୬୮। ପୁଷ୍ପିତ କୁଞ୍ଜ କୁଟୀର । ଅନଙ୍ଗ କେଳି ମନ୍ଦିର ।
ଯହିଁ ଅନ୍ତର ତିମିର । ସୁରକର ଅଗୋଚର ।

ଅନଙ୍ଗରେଖା : ୪/୩୨

୬୯। ଆଗମ ଗମା ସମାନ । ମତ୍ତ ଖଞ୍ଜନ ନୟନ ।
ତମାଳ ଗୁଚ୍ଛ ଚିକୁର । ନବ ପ୍ରବାଳ ଅଧର ।
ଅନଙ୍ଗରେଖା : ୪/୩୩

୭୦। ବି କାଶେ ବନ ବନିତା । ନାନା କୁସୁମେ ମଣ୍ଡିତା ।
× × ×
ରବି କାମ ତାପ ନାଶୀ । ମାନସ ରସ ଉଲ୍ଲାସୀ ।
ଅନଙ୍ଗରେଖା : ୪/୫୬-୫୮

୭୧। ସର୍ବାଙ୍ଗ ସୁନ୍ଦରୀ : ୭/୪-୭

୭୨। ତତ୍ରୈବ : ୭/୮-୨୯

୭୩। ନବ ପଲ୍ଲବିତ ଗୁଚ୍ଛ କୁସୁମିତ ତରୁଲତା ବୁଲି ଦେଖନ୍ତି
ମକର କେତନ ନିଜ ନିକେତନ ବୋଲି ମନେ ପ୍ରତେ କରନ୍ତି ।
ଚିତ୍ରକଳା : ୪/୯

୭୪। କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୧୦/୭-୧୭

୭୫। କେ ବୋଲେ ଆଗମ ଅତି ଅଭିରମ ହୋଇଛି ଅବଳା ପ୍ରକାରେ ।
ଶଶିରେଖା : ୧୨/୧୪-୧୬

୭୬। × × ବନମାଳୀ ମନେ ବନିତା
ଲକ୍ଷଣରେ ଦକ୍ଷିଣ ହୋଇ ଚିନ୍ତା
ପ୍ରିୟଙ୍କ ବଟ ବିଟପି କରେ କର ନିକ୍ଷେପିଲେ କ୍ଷପାଭର୍ତ୍ତା ସେ ହେବାରୁ
ପ୍ରବଂଧ ପୂର୍ଣ୍ଣଚନ୍ଦ୍ର : ୪/୫

୭୭। ନାହା ବିନୁ ଯେସନ ନାରୀର ମନସ୍ତାପ
ଦିବା ବିନୁ ଦିଶକୁଳ ସନ୍ତାପ କଳାପ ।
ପ୍ରେମ ଲୋଚନା : ୯/୨

୭୮। ପ୍ରେମ ଲୋଚନା : ୯/୫-୬

୭୯। ସର୍ବାଙ୍ଗ ସୁନ୍ଦରୀ : ୨/୬୧-୮୩

୮୦। ଅତି ସଂଚ ଦିବସ ଦିଶିଲ ହତଶିରୀ
ଯଉବନ ବିହୀନେ ଯେମନ୍ତ ବାର ନାରୀ ।
ସର୍ବାଙ୍ଗ ସୁନ୍ଦରୀ : ୨/୭୮

୮୧। ଦିଗ ସୀମନ୍ତିନୀ ହାସ୍ୟ ଦଶନ ଦିଶେ
କାମ ତରୁବର ନବ ଅଙ୍କୁର କି ସେ ?

ରୁକ୍ମିଣୀ ବିଭ : ୬/୨୯-୩୦

୮୨। ସମ୍ଭୂଭବ ମନେ ରତି କରିବାକୁ ପ୍ରକାଶ ଗୃନ୍ଦିନୀ ଯାମିନୀ
ସେନେହ ବଶେ କି ଭିଡ଼ା ଭିଡ଼ି ହେଲେ ଗୋରପୁଂସ କଳା କାମିନୀ
ସେଚକ ଅଙ୍ଗେ ସଂଲିତ କିବା ଦାମିନୀ
ସେ ଶୋଭକୁ ଗୃହିଁ ରେଷ ଛାଡ଼ି ପଉରୁଷ କାନ୍ତେ କଲେ କାମିନୀ ।

ସୁଭଦ୍ରା ପରିଣୟ : ୧୦/୧୪

୮୩। ଲବଣ୍ୟବତୀ : ୧୧ଶ

୮୪। ଜଗତୀ ଯୁବତୀ ରୂପ ଧରି ରଚି ସୁଜ୍ୟୋତି ବେଶକୁ ।

କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୨୬/୧୫

୮୫। ବିଗ୍ଭରିକି ପଦ୍ମଯୋନି ସୁଧା ଅନୁଗଗ ଘେନି ବିଶ୍ୱ ତୁଳନାରେ
ତୁଳି କଲନା କରେ ।...ବିଦଗ୍ଧ ଚିନ୍ତାମଣି : ୩୦/୨

୮୬। ବିଦଗ୍ଧ ଚିନ୍ତାମଣି : ୬୮/୧୬-୩୦

୮୭। ଆନକଥା ନ ଦିଶଇ କେଳି କଥା ବିନା
କାମଦେବ ଶରେ ସଙ୍ଗ କରଇ ଚେତନା ।

ପ୍ରେମ ଲୋଚନା : ୯/୯

୮୮। କଳାବତୀ : ୪ର୍ଥ

୮୯। ଅନଙ୍ଗ ରେଖା-୧୪ଶ

୯୦। ସାୟଂ କାଳ ଉଭାରେ ଚନ୍ଦ୍ର ଦେଖି ନଭରେ ସୁମୁଖୀ ସଶଂକ ହୋଇଲା
ସମର୍ଭକାଳ ଯାଇ ପୁଣି କନ୍ତେକ ହୋଇ ଗବଣ ଜନମ ହୋଇଲାରେ ।

× × × ସୁଭଦ୍ରା ପରିଣୟ : ୮/୨୬

୯୧। ନିଶାରେ ପ୍ରକଟ ବୋଲି ପ୍ରସାର ହୋଇଛି
ରତିକାଳ ବୋଲି କି ହୃଦରେ ଦେଖାଉଛି ଯେ ।

ଲବଣ୍ୟବତୀ : ୩୨/୨୦

୯୨। ନିର୍ମଳ ଚନ୍ଦ୍ର ମଣ୍ଡଳ ଶରଦେ ବିରଜି
ଦିଶେ ଯଥା ଦର୍ପକ ଦର୍ପଣ ଥିଲେ ମାଜି ।..

ପ୍ରେମ ସୁଧାନିଧି : ୧୪/୧

୯୩। ଧୀରେ ଘେନ ଧୀରେ ଗୋବିନ୍ଦ ଅଧୀରେ ଚନ୍ଦ୍ର କିରଣରେ ବସି
ରଧା ଅପ୍ରାପ୍ତରେ କହନ୍ତି ମିତରେ ଗଲିଟି ମୁଁ ଖରେ ଭସି ।
ଆହେ ମିତ ।।

ବିଦଗ୍ଧ ଚିନ୍ତାମଣି : ୭୦/୧

୯୪। ନିବିଡ଼ ଅନ୍ଧାର ଘୋର କହି କି ତା' ପାରି
ନୀଳ ବାସ ପିନ୍ଧିଲ କି ନିଶି ଅଭିସାରୀ ।

ସର୍ବାଙ୍ଗ ସୁନ୍ଦରୀ : ୨/୮

୯୫। ଏ ଘୋର ଅଂଧାର ନିଶି ପ୍ରଥମ ପ୍ରହରେ ।
ବ୍ୟାପାର ଭେଦରେ ପରିବେଶ ହୋଇ ପୁରେ ।
ଯୁବତୀ ସଙ୍ଗରେ ବାରେ ରତି ସାରି ଗଲେ ।
ନଜାଣିଲେ ବାଣିଜେ ଦୁଆରେ ବସିଥିଲେ ।

ସର୍ବାଙ୍ଗ ସୁନ୍ଦରୀ : ୨/୯୪-୯୫

୯୬। ସେ ସମୟେ ଆସି ପ୍ରବେଶ ହୋଇଲା ରଜନୀ ସଂଗ୍ରରୀ ପ୍ରକାରେ । ସୁନ୍ଦଚିତ ହୋଇ ନୀଳ ଅମ୍ବରେ । ସଙ୍କେତ ସ୍ଥାନ ଆଗମନ ନିର୍ଜ୍ଜନ ପଥେ କରଇ ସତ୍ୱର ସେ । ସମୟେ । ସ୍ମର ଉଦ୍ଦୀପକ ହେଲ ସଂଚରି । ସୃଷ୍ଟି କଲ କୁଶଳତା ମାଧୁରୀ । ଶୁଣାଇଲ ପିକ ବାଣୀ ବ୍ୟାଜେ ବେଗେ ହୁଅ ଏବେ ଅଭିସାରୀ ସେ ।

ସୁଭଦ୍ରା ପରିଣୟ : ୯/୧୧

୯୭। ପ୍ରେମ ଲେଚନା : ୧୪/୨୦-୩୪

୯୮। ଅନଙ୍ଗରେଖା : ୧୨/୩୪-୪୨

୯୯। ରସ କଲ୍ଲୋଳ : ୧୪/୧୭-୩୭

୧୦୦। କଳ କୂଜିତ କଲେ କପୋତ ରତି କୂଜିତ-ପ୍ରାୟେ ।

ରସ କଲ୍ଲୋଳ : ୧୪/୧୯

୧୦୧। କମ୍ପୁ କଟକରେ ନୀଳାଦ୍ରି ନଗରେ ପାହାନ୍ତି ଶଙ୍ଖ ବାଜିଲା
କମ୍ପୁ ଚକ୍ରଧର ଦେବରାଜଙ୍କର ନିଦ୍ରା ତୁରିତେ ଭାଜିଲା ।
ରସ କଲ୍ଲୋଳ : ୨୪/୧୪ (ଇତ୍ୟାଦି)

୧୦୨। କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୧୬/୧-୬

୧୦୩। ଲାବଣ୍ୟବତୀ : ୩୩/୩୫-୪୧

୧୦୪। ଆଲୋଚନାମାଳା : ପୃ ୧୨୪

୧୦୫। ମଥୁରା ମଙ୍ଗଳ : ୧୯/୧-୧୫

୧୦୬। କିଶୋର ଚନ୍ଦ୍ରାନନ ଚମ୍ପୂ : 'ର'ଗୀତ

୧୦୭। କୃନ୍ତଳେ କୃନ୍ତଳେ ବର୍ଣ୍ଣେ ସାରିଲେ ଦିନ
ମତ୍ସ୍ୟଜନ ମତ୍ସ୍ୟପରି ନିମିଷହୀନ ।
ନିଷେଧେ ନିଷେଧି ଆନ ଲୋକନ କଲେ
ମାଳବରେ ମାଳା କରି ତାହା ଜପିଲେ ।
ମଘରେ ମଘବା ପଦ ପାଇଲା ପରି
ବିଦେହେ ବିଦେହ ଶରେ ହୋଇଲେ ଘାରି ।
ଲାବଣ୍ୟବତୀ : ୮/୨୧-୨୩(ଇତ୍ୟାଦି)

୧୦୮। ମାଳବରେ ମାଳବରେ ନାରୀ ବରିଲେ
ଅଙ୍ଗ ଅଙ୍ଗନା ଚିତ୍ତ ଆୟତ୍ତ ନୋହିଲେ ।
ଉତ୍କଳ ଉତ୍କଳ ରମା ବିରହେ ହେଲେ
ବିଦେହେ ବିଦେହେ ଯେତେ ଯୋଷା ତରିଲେ ।
ପ୍ରେମ ସୁଧାନିଧି : ୧/୧୩ (ଇତ୍ୟାଦି)

୧୦୯। ଅତି ମନୋହର ଭୂମି ଚେତନମୟ । ମଧ୍ୟେ ହେମ ମହୀଧର କି କମନୀୟ ।
ଅବନୀ ଅଙ୍ଗନା ଏକ ସ୍ତନ ତରଯେ । ବିପୁଳ ଭବନ୍ତ କରି ସେ ଶୋଭପାଏ ।
ମାରତ ଶୃଙ୍ଗ କୁରଙ୍ଗ ସ୍ୱର୍ଣ୍ଣଦୀ ହାର । ଧାତୁ ଧାର ଧାରଣ ହି ସ୍ମରେଙ୍କ ପର
ରସିକ ହାରାବଳୀ : ୬/୮

୧୧୦। କୁନ୍ତଳେ ଅଛି କୁଟିଳ ନୟନେ ଅଛି ଚପଳ
କ୍ଷୀଣ ଗୁଣ କେବଳ ମଧ୍ୟରେ ବସତି । ଇତ୍ୟାଦି
ବିଦଗ୍ଧ ଚିନ୍ତାମଣି : ୯୧/୨୦-୨୧

୧୧୧। ଏ ମହା ଗ୍ରୀଷମ ଋତୁ ବୈଶାଖର ଶେଷ
ବହିଲ ଝଂଜା ପବନ କୃଶାନୁ ବତାସ ।
ପାଚିଲ ଆମ୍ବ ପଣସ ତାତିଲେ ସଲିଳ
ଜଳିଲ ଶରୀର ମୋ ଟଳିଲ କଳେବର ।
ମୁଁ ଗୋ ମଲି ମଲି ମଲି
କାନ୍ତ ମୋ ଉପେକ୍ଷି ଗଲେ କେଉଁ ଦୋଷ କଲି ।
ରହସ୍ୟ ମଞ୍ଜରୀ : ୧୨/୧

୧୧୨। ଚନ୍ଦନ ଭୂଷିତ ଦେଖି ଯୁବତୀ କୁଚେ
ନିଗମ ଦେଖିଣ ତହିଁ ମଦନ ଲୁଚେ ।
× × ×
ବିପିନ ଅନଳ ଗିରି ଶିଖରେ ଦିଶେ ।
ବିଯୋଗୀ ହୃଦୟ ଦହେ କାମ ହୁତାଶେ ।
ଉଷାଭିଳାଷ : ୪/୧୩ ଓ ୧୬

୧୧୩। କରିବାକୁ ପ୍ରାଣରକ୍ଷା ନିଜ ପ୍ରାଣ ପରକୁ ଦେଇ ପ୍ରାୟ ହୋଇ
କୋକମୃଗ ଯାଇ ଭୟକୁ ପକାଇ ସିଂହ ଛାଇରେ ହେଲେ ଛାଇ ।
କୋବିଦେ, କୁଣ୍ଡଳୀ କୁଳ ଏହିରୂପେ
କଳାପି କଳାପ ତଳରେ ରହିଲେ ପାଇ ବିପତ୍ତି କି ଆତପେ ।
ରସ କଲ୍ଲୋଳ : ୧୫/୬

୧୧୪। ଗଜ ଗବୟ ମୃଗେନ୍ଦ୍ରା ବହ୍ନି ସନ୍ତପ୍ତ ଦେହା ସୁଦୃଢ଼ ଇବ ସମେତା
ଦ୍ୱନ୍ଦ୍ୱ ଭବଂ ବିହାୟ
ହୁତବହ ପରି ଖେଦାଦାଶୁ ନିଗତ୍ୟ କକ୍ଷାଦ୍ବିପୁଳ ପୁଳିନଂ ଦେଶାଂ
ନିମ୍ନଗାଂ ସଂବିଶନ୍ତି ।
ଋତୁ ସଂହାର : ୧/୨୭

୧୧୫। ରସକଲ୍ଲୋଳ : ୧୪/୨, ୧୪/୩, ୧୫/୬.

୧୧୬। କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୧୮/୧-୧୮

୧୧୭। ହୋଇଲ ପ୍ରବେଶ ଗ୍ରୀଷମ ସମୟ ସୁଷମା ପ୍ରୌଢ଼ା ଯୁବତୀ କି ।

× × ×

ରସିକ ଭ୍ରମର ଗଣ୍ଡୁକୁ ନିରତ ପାଟଳି ଶ୍ରବଣ ନିବେଶି ।

× × ×

ନଟ ବିଟପକୁ ବିରହ ଦାବାଗ୍ନି ସଂଯୋଗରେ ଦହି ପକାଇ ।

ଲବଣ୍ୟବତୀ : ୯/୧-୨

୧୧୮। ସରିତ ହୋଇଲେ ଭରତୀ ପଗଯେ ଘନରସ ବିହୀନରେ
ରସିକ ରସାଧବ ପ୍ରାୟ ସରସୀ ମହିଷୀ ଆଲିଙ୍ଗନରେ
ମୁଗେ ପ୍ରକଟ ରସନା କଲେ ବିପରୀତ ରତା ପ୍ରାୟ ହୋଇ
ପଦ୍ମାଳେୀ ହାନେ ରତାନ୍ତ ନାୟିକା ସମାନ ତନ୍ତୁ ଏ ବହି ।

ଲାବଣ୍ୟବତୀ : ୪୦/୨ (ଇତ୍ୟାଦି)

୧୧୯। ଦିବ୍ୟ ତନ୍ତୁ ଅବଲମ୍ବନ ପାଇଲେ
ଏ ତାପ ସାଗରୁ ତରି ମୁଁ ପାରେ ଉପାୟ ନାହିଁ ନୋହିଲେ ହେ ।

ପ୍ରେମ ସୁଧାନିଧି : ୧୨/୨୦

୧୨୦। ସୁବତୀ ଭରତୀ ପଗଯେ ଦିଶିଲେ ଦୀନ ହୋଇ ଘନରସରେ
ଶୃଙ୍ଗାର ଆଦି ରସନା ପ୍ରକାଶିଲେ ବିପରୀତ ନାରୀ ପ୍ରକାରେ ।...

ସୁଭଦ୍ରା ପରିଣୟ : ୧୪/୪

୧୨୧। ବିଦଗ୍ଧ ଚିନ୍ତାମଣି : ୧୬/୧-୫

୧୨୨। ବିଜୁଳି ଚମକେ ଗୋ ଝମକି ଉଠେ ହିୟା
କେସନେ ବଞ୍ଚିବି ମୋର କୋଳେ ନାହିଁ ନାହା ।

ରହସ୍ୟ ମଂଜରୀ : ୧୨/୫

୧୨୩। ଦେଖ କୁସୁମିତ କଦମ୍ବ ଶୋଭ
ଚୁମ୍ବନ କାଳେ ତୋର ଗଣ୍ଡ ଆଭ ।...

ଉଷାଭିଳାଷ : ୧୦/୫

୧୨୪। କଳାବତୀ : ୫ମ, ଅନଙ୍ଗରେଖା : ୧୮ଶ

୧୨୫। ଭୋ ଭୋ ଘନ ଗରଜନ ନକର ତହିଁ
ନିଷ୍ଠୁର ମୋ ପ୍ରାଣବନ୍ଧୁ ବସଇ ଯହିଁ ।
ପ୍ରେମ ଲୋଚନା : ୧୯/୬୭ (ଇତ୍ୟାଦି)

୧୨୬। କମଳ ନୟନ ହରି । ବରଷା ଅବଲୋକନ କରି
ଅନେକ ରୂପେ ଗୋପ ସୁନ୍ଦରୀମାନଙ୍କୁ ହରି ଯେ ।
× × ରସ କଲ୍ଲୋଳ : ୧୬/୯

କରଇ ଚିନ୍ତା ତରଣୀ ପାଇଁ । କେଉଁ ତରୁଣୀ ପଶ୍ଚରେ ଯାଇ
କେମନ୍ତ ହୋଇ ଯିବ ପୂରିଛି ଏ ଘନରବେ ଯେ ।
× × ରସ କଲ୍ଲୋଳ : ୧୬/୧୨

କେଉଁ ପ୍ରବାସୀ ପ୍ରବାସୁ ଆସି । କୋଳେ ବସାଇ ପ୍ରାଣ ପ୍ରେୟସୀ,
କୋମଳ ବଚନ କହଇ ହସି ନବ ବୟସୀରେ ।
ରସ କଲ୍ଲୋଳ : ୧୬/୧୬

୧୨୭। ରସ କଲ୍ଲୋଳ : ୧୬/୬-୭

୧୨୮। ବୈଦେହୀଶ ବିଳାସ : ୨୯ଶ, ପ୍ରେମ ସୁଧାନିଧି : ୧୩ଶ

୧୨୯। କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୨୫ଶ

୧୩୦। ସ୍ୱର ଧଇବତ । ସୁରତ ରଗେ ଭେକ ଗାଏ ଗୀତ ।
ସୁଭଦ୍ରା ପରିଣୟ : ୧୭/୨୦

୧୩୧। ଦେଖି ନବ କାଳିକା ବକାଳିକା ମାଳିକା ଆଳୀ କାଳିକା କାନ୍ତସୁରି -
ଲବଣ୍ୟବତୀ : ୨୨/୧ (ଇତ୍ୟାଦି)

୧୩୨। ତୋହ କୋଳେ ଝଟକେ ଦାମିନୀ
ମୋହ କୋଳେ ବିରଜେ କାମିନୀ
ତୁ ଘନ ରସ ଘେନି ବଡ଼ ବୋଲଉ
ମୁହିଁ ବଡ଼ ଘନରସ ଘେନିରେ । ଜଳଦ ।
ରସଲେଖା : ୧୬/୮

୧୩୩। ରସିକ ହାରବଳୀ : ୧୩ଶ (ନାୟିକାର ଭବନା),
୧୪ଶ (ନାୟକର ଭବନା)

୧୩୪। ଛାନ୍ଦଭୂଷଣ : ୧୮ଶ

୧୩୫। ଅତନୁ ଗଜାଳି ବିଜୟ କରେ କି ଅଜେୟ ଶତ୍ରୁକୁ ଜୟକରି ।
ଅର୍ଥିକା ବିଳାସ : ୧୨/୭

୧୩୬। ପ୍ରଭାବତୀ ପରିଣୟ : ୧୦/୫-୧୨

୧୩୭। କାଶାଂ ଶୁକ୍ଳା ବିକଚ ପଦ୍ମ ମନୋଜ୍ଞବକ୍ତ୍ରାସୋନ୍ମାଦହଂସରବନୂପୁର-
ନାଦରମ୍ୟା
ଅପକ୍ବଶାଳୀ ରୁଚିରାନତ ଗାତ୍ର ଯଷ୍ଟିଃ ପ୍ରାପ୍ତା ଶରନ୍ନବ ବଧୂରିବ
ରୂପରମ୍ୟା
ଋତୁ ସଂହାର : ୩/୧

୧୩୮। ରହସ୍ୟ ମଂଜରୀ : ୧୨/୮

୧୩୯। ଉଷାଭିଳାଷ : ୧୦/୮-୧୪

୧୪୦। ପରିମଳା : ୧୬/୧୧-୧୮

୧୪୧। ଅନଙ୍ଗରେଖା : ୧୯/୧-୧୦

୧୪୨। ରସ କଲ୍ଲୋଳ :୧୭/୪-୫

୧୪୩। ବୈଦେହୀଶ ବିଳାସ : ୨୦/୧-୫, ଲାବଣ୍ୟବତୀ : ୨୨/୨୨, ୪୨/୧-୧୧
ପ୍ରେମ ସୁଧାନିଧି : ୧୪/୧

୧୪୪। ଅର୍ଥିକା ବିଳାସ : ୩୧/୧-୯, ଶ୍ୟାମ ରସୋତ୍ସବ : ୨/୧-୭

୧୪୫। ପ୍ରଭାବତୀ ପରିଣୟ : ୧୨ଶ

୧୪୬। ମହାକବି କାଳିଦାସ (ହିନ୍ଦୀ)—ପୃ ୧୫୩

୧୪୭। ତୁଟିଗଲେ ନଦୀ ସର୍ବ ଫିଟିଗଲେ ବାଟ
ଦିନ ଆସି ପାହିଗଲା କାନ୍ତ ନାହିଁ ଭେଟ ।
ରହସ୍ୟ ମଞ୍ଜରୀ : ୧୨/୧୧

୧୪୮। ପରିମଳା : ୧୭ଶ

୧୪୯। ଅନଙ୍ଗ ରେଖା : ୧୯/୧୩-୩୨

୧୫୦। ରସ କଲ୍ଲୋଳ : ୧୧ଶ

୧୫୧। ଲାବଣ୍ୟବତୀ : ୪୩/୧-୫

୧୫୨। ପ୍ରେମ ସୁଧାନିଧି : ୯ମ, ରସିକ ହାରାବଳୀ : ୧୧ଶ

୧୫୩। ଅର୍ଥିକା ବିଳାସ : ୩୨ଶ

୧୫୪। ପରିମଳା : ୧୮/୧-୨୨

୧୫୫। କ୍ରମେ ଶିଶିର ଋତୁ ଏହି ରୂପେ । କୁହୁଡ଼ିରେ ସେ ବୋଲୁଥାନ୍ତି ଗୋପେ ।
କେଉଁ ଗୋପୀଙ୍କି କୃଷ୍ଣକୁ ନିଅନ୍ତି । କାହା ମନ୍ଦିରେ ଗତ୍ରରେ ଶୁଅନ୍ତି ।
ରସ କଲ୍ଲୋଳ : ୧୧/୮୮-୮୯

୧୫୬। (କ) ଅତ୍ୟନ୍ତ କଷ୍ଟରେ ଶିଶିର ନେଇ । ବଲ୍ଲଭ ଆଶାରେ ଜୀବ ରଖିଲି
ଅନଙ୍ଗରେଖା : ୧୯/୩୨

(ଖ) ଗମା ଶିଶିରେ ଘୋର ନିଶିରେ ଦୁଃଖ ରଶିରେ ଭସି ।
ପ୍ରେମ ସୁଧାନିଧି : ୧୦/୧

୧୫୭। ଅମ୍ବିକା ବିଳାସ : ୩-୩୩

୧୫୮। ପ୍ରଫୁଲ୍ଲ ଚୂତାଙ୍କୁର ତୀକ୍ଷ୍ଣଶାୟକୋ ଦ୍ୱିରେଫମାଳା ବିଳସଦ୍ଧନୁର୍ଗୁଣଃ
ମନାଂସି ଭେତ୍ତୁଂ ସୁରତପ୍ରସଂଗିନାଂ ବସନ୍ତଯୋଦ୍ଧା ସମୁପାଗତଃ ପ୍ରିୟେ ।
ଋତୁ ସଂହାର : ୬/୧

୧୫୯। ଜଗୌ ବିବାହବସରେ ବନସ୍ଥଳୀ
ବସନ୍ତୟୋଃ କାମହୁତାଶ ସାକ୍ଷାଦଃ
ପ୍ରିକ ଦ୍ୱିଜଃ ପ୍ରୀତମନା ମନୋରମଂ
ମୁହୁର୍ମୁହୁର୍ମଙ୍ଗଳ ମନ୍ତ୍ରମାଦରାତ୍ । (ଭକ୍ତିକୁ)
ଆଲୋଚନାମାଳା : ପୃ ୧୪୨

୧୬୦। ନବରସ କାନନ ଧାୟ ।
ବିଦ୍ୟାପତି ପଦ୍ୟାବଳୀ : ପୃ ୭୨

୧୬୧। ଉଷାଭିଳାଷ : ୩/୧୩ ୧୪

୧୬୨। ପ୍ରେମ ଲୋଚନା : ୭ମ, ୮ମ

୧୬୩। ପ୍ରେମ ଲୋଚନା : ୧୦ମ

୧୬୪। ଅନଙ୍ଗରେଖା : ୪/୧, ୪/୩୨

୧୬୪। ରସ କଲ୍ଲୋଳ : ୧୨ଶ/ଆଲୋଚନା ମାଳା : ପୃ ୧୩୮

୧୬୬। ମିତ୍ର ଅନଙ୍ଗକୁ ପ୍ରବଳ କରଇ ଆଚରି ଚର୍ଚ୍ଚରୀ ବିହାର ।...
କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୬/୧

୧୬୭। ଲାବଣ୍ୟବତୀ : ୫ମ

୧୬୮। ବୈଦେହୀଶ ବିଳାସ : ୩୪/୧-୩

୧୬୯। ବିଦଗ୍ଧ ଚିନ୍ତାମଣି :୪୫/୧-୧୫

୧୭୦। ଅମ୍ବିକା ବିଳାସ : ୩୪ଶ

୧୭୧। ଚନ୍ଦ୍ରକଳା : ୧୦ମ, ୧୮ଶ

୧୭୨। ନୃତ୍ୟଂ ମୟୂରାଃ କୁସୁମାନି ବୃକ୍ଷାଦର୍ଭାନୁପାତ୍ତାନ୍ ବିଜହୁର୍ହରିଣ୍ୟଃ
ତସ୍ୟା ପ୍ରପନ୍ନେ ସମଦୁଃଖଭାବମ୍ ଅତ୍ୟନ୍ତ ମାସୀଦ୍‌ରଦିତଂ ବନେଽପି ।
× × × ରଘୁବଂଶ : ୧୪/୬୧

୧୭୩। କଳପ ଲତାର ମଉନ ଦେଖି ମଉନ ହେଲେ ଶୁଆ ଶାରୀ
ଛାଡ଼ିଲେ ସୁସ୍ୱରେ କୋକିଳ କୂଳ ମଧୁକରେ ନଚୁମ୍ବନ୍ତି ଫୁଲ ।××
କଳ୍ପଲତା : ୧୨/୧-୨

୧୭୪। ରହସ୍ୟ ମଞ୍ଜରୀ : ୧୫/୨-୩

୧୭୫। ପ୍ରେମ ପଞ୍ଚାମୃତ : ୯/୧୭୫-୧୯୮

୧୭୬। ତତ୍ତ୍ୱୈବ : ୯/୨୩୦-୨୦୦

—※—

# ଷଷ୍ଠ ଅଧ୍ୟାୟ

## ସୌନ୍ଦର୍ଯ୍ୟ ନିରୂପଣ

# ସୌନ୍ଦର୍ଯ୍ୟ ନିରୂପଣ

ଶୃଙ୍ଗାର ଚର୍ଯ୍ୟାରେ ନାରୀ ଓ ପୁରୁଷ ସୌନ୍ଦର୍ଯ୍ୟର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏହା ରୂପ, ଗୁଣ, ଭୂଷଣ ଆଧାରିତ । ବୈଦିକ କାଳରୁ ସାହିତ୍ୟରେ ଏହି ମାନବୀୟ ସୌନ୍ଦର୍ଯ୍ୟ ସାଧନା ଅବ୍ୟାହତ । ଋଗ୍‌ବେଦରେ ଉର୍ବଶୀଙ୍କୁ ବିଦ୍ୟୁତର ଦୀପ୍ତି ରୂପେ ପରିକଳ୍ପନା କରଯାଇଛି [୧] । ରାମାୟଣ ଓ ମହାଭାରତରେ ମାନବୀୟ ସୌନ୍ଦର୍ଯ୍ୟର କାବ୍ୟିକ ବିନ୍ୟାସ ନିହିତ । କାଳିଦାସଙ୍କ ଲେଖନୀରେ କିନ୍ତୁ ଏହା ଚିରକାଳୀନ ଲଳିତ ରସସ୍ନିଗ୍ଧ ମହିମାରେ ଉଦ୍ଭାସିତ । ବିଶେଷତଃ ନାରୀର ନବଯୌବନ ତଥା ସ୍ତନ, ଜଘନ ଓ ନିତମ୍ବର ଶୋଭା ବର୍ଣ୍ଣନାରେ କବିଙ୍କ ଅବାରିତ ଆଗ୍ରହ ଓ କୃତିତ୍ୱ ଅନତିକ୍ରମ୍ୟ । ନୟନର ଚପଳତା, ଗତିର ମନ୍ଥରତା, ପୟୋଧରର ନମ୍ରତା ଆଦି ଅବୟବ ବିଳାସ ମଧ୍ୟ ତାଙ୍କର କାବ୍ୟ ଦୃଷ୍ଟିରେ ପୁଷ୍ପିତ [୨] । ପରବର୍ତ୍ତୀ କାଳର କବି ଶ୍ରୀହର୍ଷ, ମାଘ, ଭାରବି, ହାଳ ଓ ଅମରୁଙ୍କ କବିତାରେ ଏହି ସୌନ୍ଦର୍ଯ୍ୟ ବହୁବର୍ଣ୍ଣରଂଜିତ ।

ସଂସ୍କୃତ କାବ୍ୟାଦର୍ଶ ପରିପୁଷ୍ଟ ଓଡ଼ିଆ ରୀତି କାବ୍ୟରେ ମାନବୀୟ ସୌନ୍ଦର୍ଯ୍ୟ ମୁଖ୍ୟତଃ ନାରୀ ସୌନ୍ଦର୍ଯ୍ୟ ବର୍ଣ୍ଣନାର ପ୍ରାଚୁର୍ଯ୍ୟ ପରିଲକ୍ଷିତ । ସେଥିପାଇଁ ସେ ଯୁଗର କବି ଅକୃପଣ ଭାବେ କଳ୍ପନାର ଗନ୍ତାଘର ଖୋଲି ଦେଇଛି । ଲୌକିକ ଓ ଅଲୌକିକ, ପୌରାଣିକ ଓ କାଳ୍ପନିକ— ସକଳ ଜଗତରୁ ଗଣି ଗଣି ଉପମା ସଂଗ୍ରହ କରି ସେ ନାରୀ ଓ ପୁରୁଷ ଅଂଗରାଗର ପରିକଳ୍ପନା କରିଛି ।

## ନାୟିକା ସୌନ୍ଦର୍ଯ୍ୟ-

ନାୟିକାର ଯୌବନ ବର୍ଣ୍ଣନା ଲାଗି କବିର ଅପରିସୀମ ପ୍ରୟାସ ଓ ଅଭିଳାଷ ପ୍ରାୟ ସକଳ କାବ୍ୟରେ ପରିଦୃଷ୍ଟ । ଦମୟନ୍ତୀଙ୍କ ରୂପର ଆକଳନ କଲାବେଳେ ଉପମା ସମୂହର ଅପମାନ କଥା ଶ୍ରୀହର୍ଷ ଉଲ୍ଲେଖ କରିଛନ୍ତି [୩] । ଉପେନ୍ଦ୍ର କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ଯୌବନ ରୂପରାଗ ଅଙ୍କନ କରିବାକୁ ଯାଇ ଉପମା ସୃଷ୍ଟି ଉଜାଡ଼ି ଦେବାକୁ ଆଗଭର [୪] । ତାଙ୍କ 'କଳା କଉତୁକ'ରେ ନବ ପୁଷ୍ପବତୀ ନାୟିକାର ଶୋଭା ଦେଖି ଉପମାବୃନ୍ଦଙ୍କ ମଧ୍ୟରେ ଚମକ ସୃଷ୍ଟି ହୋଇଥିବା ବର୍ଣ୍ଣିତ [୫] । 'ଲାବଣ୍ୟବତୀ'ରେ କିନ୍ତୁ ନାୟିକା ଅଳଂକାରର ଅଳଂକାର ରୂପେ କୀର୍ତ୍ତିତ [୬] । କବି ଏଠାରେ ଭାବ, ହାବ, ହେଳା ଆଦି ସ୍ୱଭାବଜ ଅଳଂକାର ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଛନ୍ତି । ଅର୍ଥାତ୍ ରୀତି କାବ୍ୟର ନାୟିକା ନିଜସ୍ୱ ସୌନ୍ଦର୍ଯ୍ୟରେ ଗୌରବାନ୍ୱିତ । ତା' ନିକଟରେ ଉପମା ସମୂହର ନ୍ୟୂନତା ହିଁ ବିଦ୍ୟମାନ । ତଥାପି କାବ୍ୟ ସାଧନାରେ ଏହାର ଆବଶ୍ୟକତାକୁ ଉପେକ୍ଷା କରାଯାଇ ନପାରେ । ତେଣୁ କବି ଲୋକନାଥ ନାୟିକାର ଅଙ୍ଗ ଓ ପ୍ରତିଅଙ୍ଗ ବର୍ଣ୍ଣନା ପ୍ରସଂଗରେ ଏହାକୁ ଦୂଷଣ ଓ ଭୂଷଣ ରୂପେ ସ୍ୱୀକୃତି ପ୍ରଦାନ କରିଅଛନ୍ତି [୭] ।

### (କ) ରୂପ ସୌନ୍ଦର୍ଯ୍ୟ-

ରୂପ ଦେହାଶ୍ରିତ । ଦେହର ପ୍ରତି ଅବୟବରେ ଉପମାର ଗୌରବ ଖଂଜି ଦେଇ ରୀତି କବି ନାୟିକା ସୃଷ୍ଟିକୁ ବିଶ୍ୱର ସର୍ବଶ୍ରେଷ୍ଠ ସୌନ୍ଦର୍ଯ୍ୟ-ମର୍ଯ୍ୟାଦା ପ୍ରଦାନ କରିବାକୁ ସତତ ଚେଷ୍ଟିତ । ଲୋକନାଥଙ୍କ ଉକ୍ତି ଏଠାରେ ସ୍ମରଣୀୟ । ଅଂଜନ ମଳିନ ହେଲେ ମଧ୍ୟ ନୟନ ଶୋଭାକୁ ତାହା ବହୁଗୁଣିତ କରେ । ସେହିପରି ନାୟିକା କବି ବଚନ ରଂଜିତ ହୋଇ ସକଳ ଜନ ମନୋହାରୀ ହୋଇଥାଏ [୮] ।

ବୟଃସନ୍ଧି –କୈଶୋର ଓ ଯୌବନର ସନ୍ଧିକାଳ ବୟଃସନ୍ଧି ରୂପେ ସ୍ୱୀକୃତ । ନାରୀ ଦେହର ରୂପପ୍ରଭା ଏହି ସମୟରୁ ବିକଶିତ ହେବାକୁ ଆରମ୍ଭ କରେ । ନିତ୍ୟ ପ୍ରତି ଶାରୀରିକ ପରିବର୍ତ୍ତନକୁ ଲକ୍ଷ୍ୟକରି ନାୟିକା ବିସ୍ମୟ ଓ ଅଧୀରତାରେ ମୁଗ୍ଧ ହୁଏ । କ୍ରମେ କ୍ରମେ ଲଜ୍ଜା ଓ ସଂକୋଚରେ ତା'ର ଦେହ ମନ ଭରାକ୍ରାନ୍ତ ହୋଇଉଠେ । ଏହାହିଁ ନାୟିକାର ଅଜ୍ଞାତ ଯୌବନାବସ୍ଥା ।

•

ବିଷ୍ଣୁଦାସଙ୍କ 'ପ୍ରେମ ଲୋଚନା'ରେ ବୟଃସନ୍ଧିକାଳୀନ ନବୋନ୍ମେଷିତ ନାୟିକା-ଶୋଭାର ମନୋଜ୍ଞ ଚିତ୍ର ଅଙ୍କିତ [୯] । ନୟନ, ଗଣ୍ଡ, ବକ୍ଷ, କଟି, ଉରୁ, ରୋମାବଳୀ, ତ୍ରିବଳୀ ଆଦି ସୌନ୍ଦର୍ଯ୍ୟବତୀ ନାରୀର ସ୍ୱାଭାବିକ ରୂପ ଗୌରବ ଲାଭ କରି ଧନ୍ୟ ହୋଇଛନ୍ତି । ନାୟିକା ସହଚରୀମାନଙ୍କ ସ୍ନେହ ତୁଟାଇ ସୁରତ ପ୍ରସଂଗ ଶ୍ରବଣ ଓ ପୁରୁଷ ଦର୍ଶନ ଅଭିଳାଷ ପୋଷଣ କରିଅଛି । କବି ତା'ର ପ୍ରତିଅଂଗ ବର୍ଣ୍ଣନା ପ୍ରସଂଗରେ ପରଂପରା ପ୍ରସିଦ୍ଧ ଉପମା-ରାଜିର ପରାଜୟ କଥା ଉଲ୍ଲେଖ କରିଛନ୍ତି [୧୦] । କାର୍ତ୍ତିକ ଦାସଙ୍କ 'ରୁକ୍ମିଣୀବିଭା'ରେ ବୟଃସନ୍ଧି ଦୃଶ୍ୟ ଅତ୍ୟନ୍ତ ନିରାଡ଼ମ୍ବର । ବାରମ୍ବାର ବସନ ପରିଧାନ, ଦର୍ପଣ ନିରୀକ୍ଷଣ, ରତିକେଳି କଥା ଶ୍ରବଣ, ସଖୀ ଗହଣରେ ଆଳାପ ଭାଷଣ, ସ୍ୱଳ୍ପ ପ୍ରକାଶମାନ ବକ୍ଷୋଜର ଆବରଣୀକରଣ ପ୍ରତି ନାୟିକାର ବିଶେଷ ଶ୍ରଦ୍ଧା ଏଠାରେ ପ୍ରକାଶିତ [୧୧] । ଧନଞ୍ଜୟଙ୍କ 'ଅନଙ୍ଗରେଖା'ରେ ବୟଃସନ୍ଧିର ସୂଚନା ଥିଲେ ହେଁ ଯୌବନ ବର୍ଣ୍ଣନାର ପ୍ରାଧାନ୍ୟ ପରିଲକ୍ଷିତ । କେବଳ ସ୍ତନୋନ୍ନତିର ତ୍ରିବିଧ ଅବସ୍ଥା ଦର୍ଶାଇ କବି ନାୟିକାର ବୟଃବୃଦ୍ଧି ବିଷୟ ସ୍ପଷ୍ଟ କରିଦେଇଛନ୍ତି [୧୨] ।

ଉପେନ୍ଦ୍ରଭଞ୍ଜ 'ବୈଦେହୀଶ ବିଳାସ'ରେ ସୀତାଙ୍କ ବୟଃସନ୍ଧିର ସଂକ୍ଷିପ୍ତ ରୂପ ଉପସ୍ଥାପିତ କରି ଯୌବନ ବର୍ଣ୍ଣନାରେ ମୁଖର ହୋଇ ଉଠିଛନ୍ତି । ନାୟିକାର ଅଳଂକାର ଭୂଷଣ ପ୍ରତି ଆଗ୍ରହ, ବସନ୍ତରାଗରେ ସଙ୍ଗୀତାଳାପ, ନାନା ଛନ୍ଦରେ ନୀବୀ ବନ୍ଧନ, ଚିତ୍ରବଂଧ ଦର୍ଶନରେ ଉତ୍କଣ୍ଠା, ସ୍ତନ ଓ ରୋମାବଳୀର ଅଙ୍କୁରଣ ଆଦି ବିଶେଷ କୃତିତ୍ୱର ସହ ଅଙ୍କିତ । କଳ୍ପଦ୍ରୁମରେ ମଧୁମକ୍ଷୀ ସମୂହ (ରୋମାବଳୀ)ର ମଧୁକୋଷ

ସୃଷ୍ଟି ପରିକଳ୍ପନା ଏଠାରେ ଅତୀବ ରମଣୀୟ [୨୩]। 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ରେ ବାଲ୍ୟ, ପୌଗଣ୍ଡ, ଯୌବନର ଏକତ୍ର ବର୍ଣ୍ଣନା ପାଣ୍ଡିତ୍ୟ ଓ ଓ କାବ୍ୟ-କୌଶଳ ଚମତ୍କାରିତାର ପରିଚାୟକ [୨୪] । ତାଙ୍କ ନିଜ ଉକ୍ତି ଅନୁସାରେ କେବଳ ଶବ୍ଦ ଓ ଅଳଙ୍କାର ଶାସ୍ତ୍ରରେ ବିଚକ୍ଷଣ ବ୍ୟକ୍ତି ହିଁ ଏଥିରୁ ରସ ଆହରଣ କରିବାକୁ ସମର୍ଥ । ବୟଃସନ୍ଧିର ନିଜସ୍ୱ ମହିମା ଏଠାରେ ପରିସ୍ଫୁଟ । 'ଲବଣ୍ୟବତୀ'ରେ ଏହି ପ୍ରସଂଗ କିଂଚିତ୍ ସ୍ୱାଭାବିକ ଓ ରସିକତାଯୁକ୍ତ । ନାୟିକାର ପ୍ରଥମ ଶାଢ଼ୀ ପରିଧାନ ନବାଙ୍କୁରିତ ସ୍ତନ ଶୋଭା ବର୍ଣ୍ଣନା ଏ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ [୨୫] । 'ସୁଭଦ୍ରା ପରିଣୟ'ରେ ଯୌବନ ଓ ବୟଃସନ୍ଧି ମଧ୍ୟରେ କୌଣସି ପାର୍ଥକ୍ୟ ରେଖା ଟଣାଯାଇନାହିଁ । ନାୟିକାର ପ୍ରାକ୍-ପୁଷ୍ପୋଦ୍‌ଗମ ଦେହ ଶୋଭାରେ କବି ସଂଧିକାଳ ଆରୋପ କରିଛନ୍ତି [୨୬] ।

ବହୁ କାବ୍ୟରେ ବୟଃସନ୍ଧିର ବର୍ଣ୍ଣନା ନାହିଁ । କେତେକ ସ୍ଥଳରେ ପ୍ରସଂଗ କ୍ରମେ ନାୟିକାର ବୟସ ମଧ୍ୟ ଉଲ୍ଲିଖିତ । ଏହା କେଉଁଠି ନବମ, କେଉଁଠି ଦଶମ, କେଉଁଠି ଦଶମର ଶେଷ [୨୭] । କବି ଲୋକନାଥ 'ଚିତ୍ରକଳା'ରେ ଯୌବନ ବର୍ଣ୍ଣନାର ଆଗ୍ରହାତିଶଯ୍ୟରୁ ବୟଃସଂଧି ପ୍ରତି କୁଣ୍ଠିତ ଭାବ ପ୍ରକାଶ କରିଛନ୍ତି [୨୮] ।

**ପୁଷ୍ପୋଦ୍‌ଗମ**–ନାୟିକାର ପୁଷ୍ପୋଦ୍‌ଗମ ପ୍ରସଂଗ ଅଧିକାଂଶ ରୀତି କାବ୍ୟରେ ଉଲ୍ଲିଖିତ । କେତେକ ସ୍ଥଳରେ ଏହା ପରିପୂର୍ଣ୍ଣ ଯୌବନ ଶୋଭାର ତୋରଣଦ୍ୱାର ରୂପେ ପରିକଳ୍ପିତ (ଯଥା–'ସର୍ବାଙ୍ଗ ସୁନ୍ଦରୀ', 'ପ୍ରେମ-ସୁଧାନିଧି') । ଅନ୍ୟ କେତେକ ସ୍ଥଳରେ ନବ ଯୌବନ ବର୍ଣ୍ଣନା ପରିଶେଷରେ ଏହାର ସୂଚନା ପ୍ରଦତ୍ତ (ଯଥା–'ଅନଙ୍ଗରେଖା') । ମୋଟ ଉପରେ ପୁଷ୍ପୋଦ୍‌ଗମକୁ ନାରୀ ଦେହ ସିଂହାସନରେ ଯୌବନର ଅଭିଷେକ ଉତ୍ସବ କହିବା ଯଥାର୍ଥ ।

କବି ବିଷ୍ଣୁଦାସ ନବ ପୁଷ୍ପବତୀ ପ୍ରେମ ଲୋଚନାର ନାନାବିଧ ଆଚରଣ ଓ କାମ ବିକାରର ଏକ ସହଜ ସୁନ୍ଦର ଚିତ୍ର ଅଙ୍କନ କରିଛନ୍ତି ।

ନାୟିକାର କାମ ସାହିତ୍ୟପାଠ, ବସ୍ତ୍ର ଭୂଷଣ ବିଳାସ, ସଖୀ ଜନଙ୍କ ସହ କଥାରଙ୍ଗ ଆଦି ଚରିତ୍ରିକ ସ୍ୱାଭାବିକତାରେ ମନୋରମ । ଶାରୀରିକ ଓ ମାନସିକ ପୁଲକାନୁଭବର ବର୍ଣ୍ଣନା ଅତ୍ୟନ୍ତ ସରସ [୧୯] । ଧନଞ୍ଜୟଙ୍କ 'ଅନଙ୍ଗରେଖା'ରେ ନାୟିକାର ପୁଷ୍ପବିକାଶ ହେତୁକ ଅଙ୍ଗ ବିକାର ଓ ମାନସିକ ବିରସତା ସୂଚିତ [୨୦] । ଏ ପ୍ରସଙ୍ଗରେ ସାମାଜିକ ଉତ୍ସବ ବିଧାନର ଏକ ବିସ୍ତୃତ ଚିତ୍ର ପ୍ରଦତ୍ତ । ଲୋକନାଥଙ୍କ 'ସର୍ବାଙ୍ଗ ସୁନ୍ଦରୀ'ରେ ନାୟିକାର ଏହି ଅବସ୍ଥାକୁ ପୁଷ୍ପବତୀ କାଞ୍ଚନବ୍ରତତୀ ରୂପେ ପରିକଳ୍ପନା କରଯାଇଛି [୨୧] । ଏଠାରେ ତା'ର ଆଚରଣ ରୀତି ଯଥୋଚିତ ।

ରଘୁନାଥ ହରିଚନ୍ଦନଙ୍କ 'ଲୀଳାବତୀ'ରେ ନାୟିକାର ପୁଷ୍ପୋଦ୍‌ଗମ ବର୍ଣ୍ଣନା ଦୀର୍ଘ ଓ ଉପମାବହୁଳ [୨୨] । ଏ ପ୍ରସଙ୍ଗରେ ସୂର୍ଯ୍ୟୋଦୟ, ସଂଧ୍ୟାମେଘ, ସଂଧ୍ୟାକାଳୀନ ନବୋଦିତ ପୂର୍ଣ୍ଣଚନ୍ଦ୍ର, ରକ୍ତ ମନ୍ଦାର, ହେମ ପଦ୍ମ, କନକାଚଳ କନ୍ଦର ଆଦିର ଉଲ୍ଲେଖ କବିଙ୍କ ମନୋରମ କଳ୍ପନା ବିଳାସର ସୂଚକ । ଗୋପନାଙ୍ଗର ଅନାବୃତ ଚିତ୍ର ପ୍ରଦାନ କରିବାରେ ତାଙ୍କର ସାମାନ୍ୟତମ ଦ୍ୱିଧା ନାହିଁ । ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଭାଷାରେ-"'ଲୀଳାବତୀ'ର ପୁଷ୍ପବିଳାସ, ଯୌବନପ୍ରାପ୍ତି ବର୍ଣ୍ଣନା ଘୋର ଅଶ୍ଳୀଳ ଓ ଉଦ୍‌ବେଗଜନକ । ରଘୁନାଥ ହରିଚନ୍ଦନ ସ୍ୱଗୁରୁ ବିପ୍ର ଦାସଙ୍କ ଗ୍ରନ୍ଥକତ୍ୱରେ ନୈଷଧକୁ ଅବଲମ୍ବନ କରିଅଛନ୍ତି [୨୩] ।" କବି ଉପେନ୍ଦ୍ରଙ୍କ 'ଲାବଣ୍ୟବତୀ' ଉପରେ ଏହାର ପ୍ରଭାବ ଅପରିସୀମ । କିନ୍ତୁ 'ଲୀଳାବତୀ' ତୁଳନାରେ 'ଲାବଣ୍ୟବତୀ'ର ବର୍ଣ୍ଣନା ଅଶ୍ଳୀଳତର ଓ ଅରୁଚିକର [୨୪] । ହରିଚନ୍ଦନଙ୍କ ଉପମା ବିନ୍ୟାସରେ ଯେଉଁ ସୌନ୍ଦର୍ଯ୍ୟ-ରୁଚିର ଅଭିବ୍ୟକ୍ତି ପରିଲକ୍ଷିତ ତାହା ଉପେନ୍ଦ୍ରଙ୍କଠାରେ ଦୁର୍ଲଭ । 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' ଓ 'ପ୍ରେମ ସୁଧାନିଧି'ରେ ନାୟକର ପୁଷ୍ପୋଦ୍‌ଗମ ମଦନର ରଙ୍ଗକେତନ ରୂପେ ଅଭିହିତ [୨୫] । ଏ ପ୍ରସଙ୍ଗରେ 'ସୁଭଦ୍ରା ପରିଣୟ'ର ବର୍ଣ୍ଣନା ସ୍ୱଚ୍ଛ ଓ ମାର୍ଜିତ [୨୬] ।

କବିସୂର୍ଯ୍ୟଙ୍କ 'ଚନ୍ଦ୍ରକଳା'ରେ ନାୟିକାର ପୁଷ୍ପଭେଦ ବର୍ଣ୍ଣନା ଦୀର୍ଘ ଓ ଗତାନୁଗତିକ । ସମୟାନୁରୋଧରେ କବି ସ୍ଥୂଳତାକୁ ସ୍ୱୀକାର କରିନେଇଛନ୍ତି ।

ରଘୁନାଥ ଓ ଉପେନ୍ଦ୍ରଙ୍କ ଧାରା ଅନୁସରଣ ପୂର୍ବକ ସେ ଶ୍ଳୀଳତା ଓ ଅଶ୍ଳୀଳତା ବିଗ୍ଭର ପ୍ରତି ଦୃଷ୍ଟିପାତ କରି ନାହାନ୍ତି । ତେଣୁ କାମ ମନ୍ଦିରର ପୁନଃ ଉଲ୍ଲେଖରେ ସେ ନିର୍ବିକାର [୨୭] । କିନ୍ତୁ ଏ ପ୍ରସଙ୍ଗରେ ହେମଲତା ପଲ୍ଲବମୟ ହେବା କିମ୍ବା ସ୍ତନଲତା କୁସୁମିତ ହେବା ଭଳି ଉକ୍ତି ସୂକ୍ଷ୍ମ ଓ ସାଂକେତିକ ଭାବ ପ୍ରକାଶ କରିବା ନିମନ୍ତେ ଏକାନ୍ତ ଉପଯୁକ୍ତ [୨୮] ।

ମୁଖ—ନାୟିକାର ମୁଖ ଶୋଭା ବର୍ଣ୍ଣନାରେ କବିମାନଙ୍କର ଅଶେଷ ପ୍ରଚେଷ୍ଟା ସର୍ବତ୍ର ପରିଲକ୍ଷିତ । କାଳିଦାସ ଉମାଙ୍କ ମୁଖ ମଣ୍ଡଳରେ ଚନ୍ଦ୍ର ଓ ପଦ୍ମର ସମ୍ମିଳିତ ଶୋଭା ପରିକଳ୍ପନା କରିଛନ୍ତି [୨୯] । ଭାସଙ୍କ ଦୃଷ୍ଟିରେ ବିଶ୍ୱର ସକଳ ସୁନ୍ଦରତା ନାରୀର ମୁଖ ମଣ୍ଡଳରେ ଏକତ୍ରିତ [୩୦] । ଏ କ୍ଷେତ୍ରରେ ଶ୍ରୀହର୍ଷଙ୍କ ପରିକଳ୍ପନା ଅତ୍ୟନ୍ତ ଚମତ୍କାର । ତାହା ହେଉଛି— ସୌନ୍ଦର୍ଯ୍ୟ ପ୍ରତିଯୋଗିତାରେ ଦମୟନ୍ତୀଙ୍କ ମୁଖଠାରୁ ପରାଜିତ ହୋଇ ପଦ୍ମ ଅଦ୍ୟାବଧି ଜଳରେ ହିଁ ନିଜର ନିବାସ ରଚନା କରିଛି [୩୧] । ଜନୈକ ଇଂରେଜ କବି ନାରୀ ମୁଖ ମଣ୍ଡଳରେ ସ୍ୱର୍ଗୋଦ୍ୟାନର ସୌନ୍ଦର୍ଯ୍ୟ ସଂଧାନ କରିଛନ୍ତି [୩୨] । ବିଦ୍ୟାପତିଙ୍କ ମତରେ ଶ୍ରୀରାଧାଙ୍କ ମୁଖକୁ ଭୟ କରି ଚନ୍ଦ୍ର ଆଜି ଆକାଶଚାରୀ [୩୩] । ଏହିପରି ଭାବରେ ପୃଥିବୀର କବିମଣ୍ଡଳୀ ନାୟିକାର ମୁଖ ଶୋଭା ନିକଟରେ ଅଜସ୍ର ଉପମାରାଶି ଅଜାଡ଼ି ଦେଇଛନ୍ତି । ଯେହେତୁ ନାରୀର ମୁଖ ହିଁ ସକଳ ଆକର୍ଷଣର ଉତ୍ସ ଓ ସକଳ ସୌନ୍ଦର୍ଯ୍ୟର ଆଧାର ।

ଓଡ଼ିଆ ରୀତି କବି ନାୟିକା ମୁଖଶୋଭା ବର୍ଣ୍ଣନା ପ୍ରସଂଗରେ ଭାରତୀୟ କାବ୍ୟ ପରଂପରାରୁ ଉପମା ସକଳ ସଂଗ୍ରହ କରିବାକୁ କୁଣ୍ଠାବୋଧ କରିନାହିଁ । ଚନ୍ଦ୍ର ହିଁ ହୋଇଛି ତା'ର ସବୁଠାରୁ ପ୍ରିୟ ଓ ଆଦରଣୀୟ । ବିଭିନ୍ନ ସ୍ଥଳରେ କିନ୍ତୁ ତାହାର ପ୍ରୟୋଗଗତ ପାର୍ଥକ୍ୟ ଦେଖାଯାଏ; ଯଥା—କୁମାର ପୂର୍ଣ୍ଣମୀ ଶଶଧର [୩୪], ଅକଳଙ୍କ ଶରଦ ଚନ୍ଦ୍ର [୩୫], କଳଙ୍କହୀନ ଚନ୍ଦ୍ରମା [୩୬], ଶରଦ ଚନ୍ଦ୍ରମା [୩୭], ଶଶଧର [୩୮], ଇତ୍ୟାଦି । ନାରୀ ମୁଖର ଉପମା

ପ୍ରସଙ୍ଗରେ ଅନ୍ୟ କେତୋଟି ବସ୍ତୁ ହେଲା—କମଳ [୪୯], ସୁଗନ୍ଧ କନକ କମଳ [୫୦], ମୁକୁର [୫୧], ମଦନ ଦର୍ପଣ [୫୨], ମନ୍ମଥରଥ [୫୩] ପ୍ରଭୃତି । ଅନେକ ସ୍ଥଳରେ ଏସବୁର କାବ୍ୟିକ ଉପଯୋଗ ଅତ୍ୟନ୍ତ ମନୋହର । 'ଉଷାଭିଳାଷ'ରେ ବର୍ଣ୍ଣିତ ଅଛି ଯେ ଉଷାର ମୁଖଶୋଭା ଦେଖି ସୌନ୍ଦର୍ଯ୍ୟର ଅଧିଷ୍ଠାତ୍ରୀ ଦେବୀ ସ୍ୱୟଂ ଲକ୍ଷ୍ମୀ ମଧ୍ୟ ଆତଙ୍କିତ [୫୪] । 'ଶଶିସେଣା' କାବ୍ୟ-ନାୟିକାର ମୁଖମଣ୍ଡଳ (ମୁଖ ଓ ନୟନ)ରେ ଚନ୍ଦ୍ର ଓ ଚକୋର ତଥା ପଦ୍ମ ଓ ଭ୍ରମର ଭାବ ଆରୋପିତ ହୋଇ ଥିବାରୁ ପ୍ରସଙ୍ଗଟି ଅଧିକ ରୁଚିଶୀଳ ମନେହୁଏ ଏବଂ କବିଙ୍କ ସୂକ୍ଷ୍ମ ଦୃଷ୍ଟିର ପରିଚୟ ପ୍ରଦାନ କରେ ।

ଉପେନ୍ଦ୍ରଙ୍କ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ରେ କାବ୍ୟ-ନାୟିକାର ମୁଖ ବର୍ଣ୍ଣନା ନୈଷଧୀୟ ପ୍ରଭବ ସ୍ପଷ୍ଟ । କବି ଦୃଷ୍ଟିରେ-'ନାୟିକାର ମୁଖ ଛବିକୁ ଧ୍ୟାନ କରି ସମଗ୍ର ଦିନ ଅତିବାହିତ ହେବାରୁ ପଦ୍ମ ସଂକୋଚରେ ନିଜକୁ ମୁଦ୍ରିତ କରିଦେଲା । ସେହିଦିନଠାରୁ ପ୍ରତ୍ୟହ ତାହା ନିକଟରେ ଏହ ରୀତି ପ୍ରକାଶ ପାଇ ଆସୁଛି [୫୫] । ଏହିପରି ଭାବରେ ସମଗ୍ର ରୀତି କାବ୍ୟ ଅଧ୍ୟୟନରୁ ଜଣାଯାଏ ଯେ ନାୟିକାର ମୁଖଶ୍ରୀ ନିକଟରେ ଉପମା ସମୂହ କେଉଁଠାରେ ନିନ୍ଦିତ ହୋଇଥିବା ସ୍ଥଳେ କେଉଁଠାରେ ଯଥାବିଧି ସମ୍ମାନିତ ।

ନୟନ—ସମଗ୍ର ମୁଖମଣ୍ଡଳରେ ଚକ୍ଷୁର ଶୋଭା ପୁଣି ସର୍ବାଧିକ । କାଳିଦାସ ପାର୍ବତୀଙ୍କ ନୟନ ଯୁଗଳରେ ନୀଳୋତ୍ପଳର ସୌନ୍ଦର୍ଯ୍ୟ ଲକ୍ଷ୍ୟ କରିଛନ୍ତି [୫୬] । ଦମୟନ୍ତୀଙ୍କ ଚକ୍ଷୁଦ୍ୱୟ ଶ୍ରୀହର୍ଷଙ୍କ ଦୃଷ୍ଟିରେ କାମଦେବର ଦୁଇଟି ପୁଷ୍ପବାଣ [୫୭] । ତିନିଗୋଟି ବାଣରେ ତ୍ରିଭୁବନ ଜୟ କରିସାରି ସେ ଅବଶିଷ୍ଟ ଦୁଇଟିକୁ ନାୟିକାର ନେତ୍ରପ୍ରାନ୍ତରେ ଅଭିଷିକ୍ତ କରି ଯାଇଛନ୍ତି । କାବ୍ୟ-ନାୟିକା ରାଧାଙ୍କ ନୟନ ଶୋଭା ନିକଟରେ ନଳିନୀ, ଚକୋର, ଶଫରୀ, ମଧୁକର, ମୃଗୀ, ଖଞ୍ଜନ ସମସ୍ତେ ପରାଜିତ ବୋଲି ବିଦ୍ୟାପତି କହନ୍ତି [୫୮] ।

ଆମର କବିଗଣ ମଧ୍ୟ ଏ ପ୍ରସଙ୍ଗରେ ସୁପ୍ରଚଳିତ ଉପମାର ବ୍ୟବହାର କରିଯାଇଛନ୍ତି । 'ରୁକ୍ମିଣୀ ବିଭା'ରେ ନାୟିକାର ନୟନ ଶୋଭା

ଅଭିନବ ବିକଚ କମଳ, ମତ୍ତ ଖଞ୍ଜନ, ମୀନ, ବାଳ ହରିଣକୁ ପରାଜିତ କରିଛି [୫୯]। ସେହିପରି ଲୋକନାଥଙ୍କ 'ଚିତ୍ରକଳା'ରେ ଖଞ୍ଜନ, ମୃଗ, ପଦ୍ମ, ମୀନ, ମକରଧ୍ୱଜର ଉପମା-ନ୍ୟୂନତା ଉଲ୍ଲିଖିତ [୬୦]। ଉପେନ୍ଦ୍ରଙ୍କ 'ରସଲେଖା'ରେ ଏହାର ପରିକଳ୍ପନା କାବ୍ୟିକ-ମାଧୁର୍ଯ୍ୟ-ପରିପୁଷ୍ଟ। ସେଗୁଡ଼ିକ ହେଲା—କାଳିନ୍ଦୀ ଜଳରେ ନବ ବିକଚ ପଦ୍ମ ଦଳ, ସୁଧା ସିନ୍ଧୁର ତରଙ୍ଗ ଗରଳ ଲହରୀ, ଗଙ୍ଗା କଲ୍ଲୋଳରେ ବାତ ବିଚଳିତ ନୀଳୋତ୍ପଳ, ସୁଧା ମନ୍ଦିରରେ ନୃତ୍ୟରତ କେଳି ଖଞ୍ଜରୀଟ, ପଦ୍ମ ଉପବିଷ୍ଟ ଚଞ୍ଚଳ ଭ୍ରମର, କନ୍ଦର୍ପର ବିଶିଖ ଶିକ୍ଷା [୬୧]। 'ପ୍ରେମ ସୁଧାନିଧି'ରେ ନେତ୍ର ବର୍ଣ୍ଣନା ପାଇଁ ଗୋଟିଏ ଦୀର୍ଘ ଛାନ୍ଦ ବ୍ୟୟିତ। କବିଙ୍କ ସୌନ୍ଦର୍ଯ୍ୟପ୍ରୀତି ଓ କଳ୍ପନା ବିଳାସର ଅଭିରାମ ଅଭିସାର ଏଠାରେ ଲକ୍ଷ୍ୟଣୀୟ। ନୟନର ବର୍ଣ୍ଣମୟତା [୬୨] (ଶ୍ୱେତ, ରକ୍ତ, ନୀଳ), ଚଞ୍ଚଳତା, କୋମଳତା, ମଧୁରତା, ଭୀରୁତା ଆଦି ସକଳ ଗୁଣ ନାନା ରୂପ ଚିତ୍ର ଜରିଆରେ ମହିମାନ୍ୱିତ। ବର୍ଣ୍ଣନାରେ ଯେଉଁସବୁ ଗୁରୁଚିତ୍ର ଅଙ୍କନ କରାଯାଇଛି, ସେଗୁଡ଼ିକ ହେଲା—ସ୍ୱଚ୍ଛ କଳଙ୍କଯୁକ୍ତ ଚନ୍ଦ୍ର, ଚନ୍ଦ୍ର ଶରଣାପନ୍ନ ଅନ୍ଧକାର, କମଳଦଳରେ ଢଳ ଢଳ ଯମୁନାଜଳ, ଅମୃତ ଓ ତରଳ ବିଷ, ଧୈର୍ଯ୍ୟ-ନାଶକାରୀ ମନ୍ମଥଶର, ପଦ୍ମ (ମୁଖ) ଉପବିଷ୍ଟ ଖଞ୍ଜନ, ରମଣୀୟ ପୁଷ୍କରିଣୀ, ନବପଲ୍ଲବ (ଅଧର)କୁ ଭକ୍ଷଣ କରିବା ନିମିତ୍ତ ଗୋଟିଏ ଆଡ଼କୁ ମୁଖକରି ବନ୍ଧା ହୋଇଥିବା ଦୁଇଟି ମୃଗ, ମତ୍ସ୍ୟ (କେବଳ ଶୟନକାଳୀନ ଚକ୍ଷୁ ସହ ତୁଳନୀୟ), ଚନ୍ଦ୍ରମୟ (ମୁଖମଣ୍ଡଳ) ପ୍ରଦେଶରେ ଅମାବାସ୍ୟା, ପଦ୍ମ ଚୁମ୍ବିତ ଭ୍ରମର, ଜଗଜ୍ଜୟୀ ଅସ୍ତ୍ର, ତ୍ରିଗୁଣାଧାର (ସତ୍ତ୍ୱ, ରଜ, ତମ), ରାହୁ (କେଶ) ବିନାଶ ନିମିତ୍ତ ଭଲ୍ଲ (ନେତ୍ରାଂଜନ), ସୁବର୍ଣ୍ଣରଥ (ମୁଖ)ର କୃଷ୍ଣ ଅଶ୍ୱ, ଗରୁଡ଼ (ନାସିକା) ଭୟତ୍ରସ୍ତ କାଳୀୟସର୍ପ, ନର୍ତ୍ତକ, ଧୈର୍ଯ୍ୟନାଶକାରୀ କଳଯନ୍ତ୍ର ଇତ୍ୟାଦି [୬୩]। କବି ଏତିକିରେ ମଧ୍ୟ ସନ୍ତୁଷ୍ଟ ନୁହଁନ୍ତି। ସୁନ୍ଦରୀ ପ୍ରେମ ସୁଧାନିଧିର ନେତ୍ର ଶୋଭା ସଂଦର୍ଶନରେ ଗଣେଶ ମୂକ ପାଲଟିଯିବା, ଇନ୍ଦ୍ର ଓ ଶେଷଦେବ ଯଥାକ୍ରମେ ସହସ୍ରନେତ୍ର ଓ ସହସ୍ରମୁଖ ହେବା ବିଷୟ ସେ ଉଲ୍ଲେଖ କରିଛନ୍ତି। ଏଥିରୁ ତାଙ୍କ ଅତୃପ୍ତ ବର୍ଣ୍ଣନା-ତୃଷାର ପରିଚୟ ମିଳେ। 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ର

ନାୟିକା ନେତ୍ରରେ ମହାଭାରତ [୫୪], ରଙ୍ଗସଭା [୫୫] ଓ ଅର୍ଜ୍ଜୁନଙ୍କ ବୀରତ୍ୱ [୫୬] ଦୃଶ୍ୟ ଆରୋପିତ । 'ନୈଷଧ'ର ନାୟିକା ଦମୟନ୍ତୀଙ୍କ ଅଙ୍ଗ ଉତ୍ତ୍ରାରେ ମହାଭାରତର ପରିକଳ୍ପନା ହୁଏତ କବିଙ୍କୁ ପ୍ରଭାବିତ କରିଛି [୫୭] । ଏହି ଜାତୀୟ ବର୍ଣ୍ଣନାରେ ରସୋତ୍କର୍ଷ ପ୍ରତି ଯଥେଷ୍ଟ ଧ୍ୟାନ ଦିଆଯାଇନାହିଁ । କିନ୍ତୁ ଏଥିରେ ରହିଛି 'ନୈଷଧ'ର ପ୍ରତିସ୍ପର୍ଦ୍ଧା । 'ଲାବଣ୍ୟବତୀ'ରେ ନିଦ୍ରିତା ନାୟିକାର ଚକ୍ଷୁଶୋଭା ବର୍ଣ୍ଣିତ । ଦର୍ପଣ ଉପରେ ଓଲଟାଇ ରଖା ଯାଇଥିବା ନୀଳ କଇଁର ପାଖୁଡ଼ା, ଅଞ୍ଜନ ଅଠାକାଠିରେ ଜଡ଼ିତ ନିଶ୍ଚଳ ଖଞ୍ଜନ ଓ ମୀନର ଉପମା ଏଠାରେ ପ୍ରୟୋଗ କରାଯାଇଛି [୫୮] । ଶ୍ରୀରାଧାଙ୍କ ମୁଦ୍ରିତ ନୟନର ରୂପ ଚିତ୍ରଣରେ ଅଭିମନ୍ୟୁ 'ଲାବଣ୍ୟବତୀ' ଦ୍ୱାରା ପ୍ରଭାବିତ । ଇନ୍ଦୀବର ଓ ମୀନ ଭିନ୍ନ ସେ ଯେଉଁ ପଦ୍ମକୋଷ ଓ ଛୁରୀମୁନର ପରିକଳ୍ପନା କରିଛନ୍ତି ତାହା ପ୍ରୀତି-ଚେତନା ସମର୍ଥିତ ନୁହେଁ [୫୯] । ଏତଦ୍‌ଭିନ୍ନ ବିଭିନ୍ନ କାବ୍ୟରେ ନାୟିକା ଚକ୍ଷୁଶୋଭା ନାନା ଭାବରେ ଉପମିତ, ଯଥା—ଲୀଳା ଐରାବତ [୬୦], ତ୍ରିବେଣୀ [୬୧], କଜ୍ଜ୍ୱଳପାତି [୬୨], ଶଫରୀ [୬୩] ଗଣାବଣା ଏଣୀ [୬୪], ତ୍ରିବିଧ ବଶୀକରଣ (ମଣି,ମନ୍ତ୍ର,ମହୌଷଧି) [୬୫], ସାୟକ [୬୬], କାମ ତୂଣୀର [୬୭] ଇତ୍ୟାଦି । ବହୁସ୍ଥଳରେ ନୟନ ଶୋଭା ପ୍ରସଂଗ ଶବ୍ଦ ଓ ଅଳଂକାର ପ୍ରଗଳ୍ଭତାରେ ଭାରାକ୍ରାନ୍ତ । ରୀତି କାବ୍ୟାଦର୍ଶର ଆସ୍ପର୍ଦ୍ଧା ଏଥିରେ ପ୍ରତିଫଳିତ ହୋଇଥିବାରୁ କବିର ସୌନ୍ଦର୍ଯ୍ୟଦୃଷ୍ଟି ଯଥାର୍ଥ ଗୌରବ ଲାଭ କରିପାରି ନାହିଁ ।

ଭ୍ରୂ—ଭ୍ରୂର ଅବସ୍ଥିତି ନୟନ ଶୋଭାର ପରିପୂରକ । କାଳିଦାସ ଭ୍ରୂବିଳାସରେ ଲଘୁ ଉର୍ମିରାଜିର ଶୋଭା ପରିକଳ୍ପନା କରିଛନ୍ତି [୬୮] । ଶ୍ରୀହର୍ଷଙ୍କ ଦୃଷ୍ଟିରେ—ଏହା ହେଉଛି ରତି ଓ କନ୍ଦର୍ପଙ୍କ ବିଶ୍ୱ ବିଜୟ ନିମିତ୍ତ ଉଦ୍ଦିଷ୍ଟ ଧନୁ [୬୯] । ବିଦ୍ୟାପତି କହନ୍ତି—ଧନୁ, ଭ୍ରମର, ଭୁଜଙ୍ଗିନୀ ଶ୍ରୀରାଧାଙ୍କ ଭ୍ରୂ ଶୋଭା ନିକଟରେ ପରାଜିତ [୭୦] ।

ଓଡ଼ିଆ ରୀତି କାବ୍ୟ-ନାୟିକାର ଭ୍ରୂ ବର୍ଣ୍ଣନା ପ୍ରସଂଗରେ ଧନୁର ବହୁଳ ବ୍ୟବହାର ପରିଲକ୍ଷିତ । ଏହାର ପ୍ରୟୋଗ ଭେଦରେ ଅବଶ୍ୟ

ସ୍ୱାତନ୍ତ୍ୟ ଦେଖାଯାଏ; ଯଥା– ଧନୁ [71], କୁସୁମଧନୁ [72], କାମକମାଣ [73], ମାରି ମର୍କତ ଧନୁ [74] ଇତ୍ୟାଦି । ନୟନ ବାଣ (ବା କାମ ବାଣ)ର ବ୍ୟବହାର ପାଇଁ ଏହିପରି ବିବିଧ ଧନୁର ପରିକଳ୍ପନା । 'ଉଷାଭିଳାଷ'ରେ ନାୟିକାର ଭ୍ରୂ (କପାଳ ରୂପକ) କନ୍ଦର୍ପ-ଧନୁର ଗୁଣ ରୂପେ କଳ୍ପିତ [75] । ଏହାକୁ 'କଳ୍ପଲତା'ରେ ମଧୁପପନ୍ତି [76], 'ସୁଭଦ୍ରା-ପରିଣୟ'ରେ ଚିତ୍ରଲେଖା (ସ୍ୱର୍ଗକନ୍ୟା) [77], 'ରସିକହାରାବଳୀ'ରେ ଯୋଗୀ ଧୈର୍ଯ୍ୟ-ତରୁ ନାଶକ ପରଶୁ [78] ବୋଲି କୁହାଯାଇଛି ।

କଟାକ୍ଷ–ନାରୀର ନୟନ କଟାକ୍ଷରେ ପୁରୁଷ ପ୍ରାଣ ପ୍ରେମ ଜର୍ଜରିତ ହେବା କେବଳ କାବ୍ୟାନୁମୋଦିତ ନୁହେଁ, ଜୀବନାନୁମୋଦିତ ମଧ୍ୟ । ଏଥିରେ ହୃଦୟର ନୀରବ ଅବ୍ୟକ୍ତ ମଧୁର ଭଷା ପ୍ରକାଶ ପାଇଥାଏ । ଅଭିମନ୍ୟୁଙ୍କ ଭଷାରେ–'ପୋଥିଏ କଥା ନୟନେ କହଇ' [79] । କାବ୍ୟ ସାହିତ୍ୟରେ ପ୍ରୀତି ନିରପେକ୍ଷ କଟାକ୍ଷ ଶୋଭର ବର୍ଣ୍ଣନା ମଧ୍ୟ ପରିଦୃଷ୍ଟ । ନାରୀ କଟାକ୍ଷର ଲଳିତ ସୁନ୍ଦର ଚିତ୍ର ଅଙ୍କନ କରିବାରେ କାଳିଦାସଙ୍କ ଦକ୍ଷତା ଅତୁଳନୀୟ । 'ମେଘଦୂତ'ରେ ଉଜ୍ଜୟିନୀ ପୁରନାରୀ ଓ ମହାକାଳ ମନ୍ଦିରର ନୃତ୍ୟକ୍ଲାନ୍ତା ଗଣିକାମାନଙ୍କ କଟାକ୍ଷ ବିଳାସର ରୂପାୟନ ଅତୀବ ଚିତ୍ତାକର୍ଷକ ।

ଓଡ଼ିଆ ରୀତି କବି ନାୟିକାର କଟାକ୍ଷ ଶୋଭ ବର୍ଣ୍ଣନାରେ କାଳିଦାସୀୟ ଖ୍ୟାତି ଲଭ କରିପାରିନାହିଁ । ତଥାପି ନିଜ ଶକ୍ତିର ପରିସୀମା ମଧ୍ୟରେ ତା'ର କଳ୍ପନା ବିଭବ ଉଲ୍ଲେଖଯୋଗ୍ୟ । ପ୍ରିୟାର ନେତ୍ର କଟାକ୍ଷରେ କୁବଳୟ ଦଳ ବିଞ୍ଚି ହୋଇଯିବା [80] କିମ୍ବା ଅମୃତ ବୃଷ୍ଟି ହେବା [81] ଭବନା କବି ମାନସର ଲଳିତ ରସାନୁରାଗତା ପ୍ରକାଶ କରେ । କେଉଁଠାରେ ଏହା ମଧ୍ୟ ଧର୍ମ, ଅର୍ଥ, କାମ, ମୋକ୍ଷାଦି ଚତୁର୍ବର୍ଗର ଆଶ୍ରୟ ସ୍ଥଳ ରୂପେ ଅଭିହିତ [82] । କିନ୍ତୁ ପୁରୁଷର ଚିତ୍ତ ଜୟ କରିବା ପାଇଁ ନାୟିକାର ନେତ୍ର କଟାକ୍ଷକୁ ବହୁ କ୍ଷେତ୍ରରେ ଏକ ଅସ୍ତ୍ର ରୂପେ କଳ୍ପନା କରାଯାଇଛି; ଯଥା–ଅଙ୍କୁଶ [83], କୁନ୍ତ [84], ସାୟକ [85], ବିଶିଖ [86],

ବନଶୀ [୮୮], ବାଣ [୮୯] ଇତ୍ୟାଦି । ଦମୟନ୍ତୀ କଟାକ୍ଷ-ଶର ବୃଷ୍ଟିରେ ସଂସାରକୁ ମୋହିତ କରୁଥିବା କଥା ଶ୍ରୀହର୍ଷ ମଧ୍ୟ ଉଲ୍ଲେଖ କରିଛନ୍ତି [୯୦] ।

ଅଳକ-ଶ୍ରୀରାଧାଙ୍କ ଅଳକ ଶୋଭାର ଏକ ମନୋଜ୍ଞ ମଧୁର ଚିତ୍ର ବିଦ୍ୟାପତିଙ୍କ କବିତାରେ ଅଙ୍କିତ । ମୁଖମଣ୍ଡଳ ବେଷ୍ଟିତ ଅଳକାବଳିକୁ ସେଠାରେ ଚନ୍ଦ୍ରଗ୍ରାସ ପ୍ରଲୋଭିତ ରାହୁ ରୂପେ ପରିକଳ୍ପନା କରାଯାଇଛି [୯୧] । ଏ ପ୍ରସଂଗରେ ଭ୍ରମର ଓ ଶୈବାଳ ଉପମା ମଧ୍ୟ ତାଙ୍କ କାବ୍ୟର ବହୁ ସ୍ଥଳରେ ପରିଲକ୍ଷିତ ।

ଓଡ଼ିଆ ରୀତି କାବ୍ୟରେ ଅଳକ ଶୋଭା ନିରୂପଣ ବିଷୟକ ବହୁବିଧ ଉପମାର ଉଲ୍ଲେଖ ଦେଖିବାକୁ ମିଳେ । 'ସୁଭଦ୍ରା ପରିଣୟ'ରେ ଏହା ରାହୁ, ଇନ୍ଦ୍ରନୀଳମଣିମାଳା, ମୃଗମଦ କସ୍ତୁରୀରେ କନ୍ଦର୍ପଲିଖିତ ମୋହନ ମନ୍ତ୍ର, ତମାଳ ଅଙ୍କୁର ସହ ତୁଳିତ [୯୨] । 'ଉଷାଭିଳାଷ'ର କବି ଅଳକକୁ ମଦନ ମୁକୁର ମୁଖାରେ ଗୁରୁ ମର୍କତ ରେଖା ରୂପେ କଳ୍ପନା କରିଛି [୯୩] । ମୁଖ ଚନ୍ଦ୍ରକୁ ରାହୁ ଆକ୍ରମଣରୁ ପ୍ରତିହତ କରିବା ପାଇଁ ଏହା ନୀଳରତ୍ନ ପାଚେରୀ ବୋଲି 'ପ୍ରେମଲୋଚନା'ରେ କଥିତ [୯୪] । ଏତଦ୍‌ଭିନ୍ନ ଏ ପ୍ରସଙ୍ଗରେ ବାଳ ଅଳି, ଶିଶୁଭୃଙ୍ଗପନ୍ତି, ଭ୍ରମର ଆଦିର ଉଲ୍ଲେଖ ବିଭିନ୍ନ କାବ୍ୟରେ ପରିଦୃଷ୍ଟ [୯୫] ।

ଅଧର-ସୌନ୍ଦର୍ଯ୍ୟମୟୀ ନାରୀର ଅନ୍ୟତମ ଆକର୍ଷଣ ହେଉଛି ତା'ର ରକ୍ତିମ ଅଧର । କବି କଳ୍ପନାରେ ଏହା ଅମୃତସ୍ରାବୀ । ବସ୍ତୁତଃ ଅଧରର କୋମଳତା, ରମଣୀୟତା ଓ ରସସ୍ନିଗ୍ଧତା ଅନୁପମ । ଏହାର ଶୋଭା ନିରୂପଣ ଲାଗି କାବ୍ୟ ଜଗତ ଚିର ଚଞ୍ଚଳ । କାଳିଦାସ ଶକୁନ୍ତଳାଙ୍କ ଅଧରରେ ନବ ପଲ୍ଲବ ରାଗର ଆରୋପ କରି ଅଛନ୍ତି [୯୬] ।

ବିମ୍ବ, ପ୍ରବାଳ, ପଲ୍ଲବ, ବନ୍ଧୁକ, ଅରୁଣ ଆଦି ନାୟିକା ଅଧରର ସୁପରିଚିତ ଉପମାନ । 'ସର୍ବାଙ୍ଗ ସୁନ୍ଦରୀ'ରେ ଏ ସମସ୍ତ ଏକତ୍ର ପୁଞ୍ଜୀଭୂତ [୯୭] । ପ୍ରାୟ ସକଳ କାବ୍ୟରେ ଏହି ଜାତୀୟ ଉପମାର

ବାହୁଲ୍ୟ ପରିଦୃଷ୍ଟ । କେତେକ ସ୍ଥଳରେ ଏଗୁଡ଼ିକ ମଧ୍ୟ ନିହାର ବସ୍ତୁ । ଏତଦ୍‌ବ୍ୟତୀତ ସିନ୍ଦୂର [୯୮], ରକ୍ତମନ୍ଦାର [୯୯], କିଂଶୁକ [୧୦୦], ସୁରଙ୍ଗଫଳ [୧୦୧], ବିଦ୍ରୁମରେଖାର [୧୦୨] ଉଲ୍ଲେଖ ବିଭିନ୍ନ ସ୍ଥଳରେ ଲକ୍ଷ୍ୟ କରଯାଏ ।

ଦନ୍ତ—ଶ୍ରୀହର୍ଷ ଦମୟନ୍ତୀଙ୍କ ଦନ୍ତାଂଶ ଭ ବର୍ଣ୍ଣନା କରିବକୁ ଯାଇ କଳ୍ପନାର ବିଚିତ୍ର ରାଜ୍ୟରେ ଉପନୀତ । ତାଙ୍କ ଦୃଷ୍ଟିରେ—ନାୟିକାର ଦନ୍ତ ସମୂହ ପ୍ରାତଃକାଳୀନ ଉପାସନାରତ ଦ୍ୱିଜବୃନ୍ଦ [୧୦୩] । ବିଦ୍ୟାପତିଙ୍କ ଉପମାରାଜି କିନ୍ତୁ ପରଂପର ସିଦ୍ଧ । ଶ୍ରୀରାଧାଙ୍କ ଦନ୍ତ ସୌନ୍ଦର୍ଯ୍ୟ ମୁକ୍ତା କୁନ୍ଦପୁଷ୍ପ ଓ ଦାଳିମ୍ବ ବୀଜକୁ ପରାଜିତ କରିଥିବା ବିଷୟ ତାଙ୍କ କବିତାରେ ଉଲ୍ଲିଖିତ [୧୦୪] ।

ପ୍ରସଙ୍ଗତଃ ମୁକ୍ତା ଓ ଦାଳିମ୍ବର ସର୍ବାଧିକ ପ୍ରୟୋଗ ଓଡ଼ିଆ ରୀତି କାବ୍ୟରେ ଦେଖାଯାଏ । କବି ଲୋକନାଥ କାବ୍ୟ-ନାୟିକାର ଦନ୍ତ ଶୋଭା ବର୍ଣ୍ଣନା କରିବାକୁ ଯାଇ 'ସର୍ବାଙ୍ଗ ସୁନ୍ଦରୀ'ରେ ମୁକ୍ତା, ହୀରକ, ଡ଼ାଳିମ୍ବ ଏବଂ 'ଚିତ୍ରକଳା'ରେ ମୁକ୍ତା, ଡ଼ାଳିମ୍ବ, କୁନ୍ଦ, ହେମ ଅରବିନ୍ଦ ଆଦିର ଉପମା ନ୍ୟୂନତା ଦର୍ଶାଇଛନ୍ତି [୧୦୫] । 'କଳ୍ପଲତା'ରେ ନାୟିକାର ଦନ୍ତ ସୌନ୍ଦର୍ଯ୍ୟ ସହ କୌମୁଦୀର ତୁଳନା କରାଯାଇଛି [୧୦୬] । ବିଭିନ୍ନ କାବ୍ୟରେ ଏଥିପାଇଁ ଏକ ବା ଏକାଧିକ ଉପମା ବ୍ୟବହୃତ ହୋଇଥିଲେ ହେଁ ସର୍ବତ୍ର ପରଂପରାର ପ୍ରାଧାନ୍ୟ ପରିଲକ୍ଷିତ ।

ହସ—ନାୟିକାର ହସ ମୁଖ୍ୟତଃ ସ୍ମିତ ହସର ବର୍ଣ୍ଣନା ଅଧିକାଂଶ କାବ୍ୟରେ ବିଶେଷ କଳା ଗୌରବ ମଣ୍ଡିତ । କାଳିଦାସ ପାର୍ବତୀଙ୍କ ମୃଦୁହାସ୍ୟର ଏକ ମନୋରମ ଚିତ୍ର ପ୍ରଦାନ କରିଛନ୍ତି । ତାଙ୍କ ମତରେ ନାୟିକାର ଅଧର ଭାଗରେ ସୁଶୋଭିତ ହାସ୍ୟ ସହ ନବପଲ୍ଲବ ଉପରେ ସଂସ୍ଥାପିତ ପୁଷ୍ପ ଅଥବା ପ୍ରବାଳ ଉପରିସ୍ଥ ସ୍ୱଚ୍ଛ ମୁକ୍ତା ଫଳର ବିଚ୍ଛୁରିତ ଆଭା କିଞ୍ଚିତ୍ ତୁଳନୀୟ [୧୦୭] । ଶ୍ରୀହର୍ଷ କହନ୍ତି-ଦମୟନ୍ତୀଙ୍କ ସ୍ମିତ ହାସ୍ୟର ଏକ ହଜାର ଭାଗରୁ ଗୋଟିଏ ଭାଗ ଲାଭ କଲେ ଚନ୍ଦ୍ର ନିଜର ଜନ୍ମ ସାର୍ଥକ ମନେ କରିବ [୧୦୮] ।

ଉପେନ୍ଦ୍ରଭଞ୍ଜ 'ଲାବଣ୍ୟବତୀ'ରେ ଅଧର ଓ ହସର ଏକତ୍ର ବର୍ଣ୍ଣନା କରିଛନ୍ତି । ପରସ୍ପରର ସୌନ୍ଦର୍ଯ୍ୟ ନିରୂପଣରେ କବି ସଂଦିଗ୍ଧ । ତଥାପି ସେ କହନ୍ତି—ଏହି ଶୋଭା ବାଳ ଅରୁଣର ସୁଧାସ୍ନାନ ସହ ତୁଳନୀୟ [108] । ନାୟିକାର ହସ ଦେଖି ଚନ୍ଦ୍ର ଶିବଙ୍କ ସେବାରେ ମନ ବଳାଇଥିବା ବିଷୟ 'ଉଷାଭିଳାସ' ଓ 'ସର୍ବାଙ୍ଗ ସୁନ୍ଦରୀ'ରେ ଉଲ୍ଲିଖିତ [109] । ଚନ୍ଦ୍ର, ଜ୍ୟୋତ୍ସ୍ନା ଓ ଅମୃତ—ଏ କ୍ଷେତ୍ରରେ ଅତି ସୁପରିଚିତ ଓ ବହୁଳ ବ୍ୟବହୃତ ଉପମା ।

ନାସା—'ନୈଷଧ'ରେ ଦମୟନ୍ତୀଙ୍କ ନାସା ତିଳ ପୁଷ୍ପ ନିର୍ମିତ ତୂଣୀର ରୂପେ ପରିକଳ୍ପିତ । ନିଃଶ୍ୱାସ ବାୟୁ ସୁଗନ୍ଧଯୁକ୍ତ ହୋଇଥିବାରୁ ଏହା ଅନୁମିତ ହୁଏ ଯେ କନ୍ଦର୍ପ ତିନିଗୋଟି ବାଣରେ ତ୍ରିଭୁବନ ଜୟ କରିବା ଉତାରୁ ଅବଶିଷ୍ଟ ଦୁଇଗୋଟି କୁସୁମବାଣକୁ ଏଠାରେ ସଂସ୍ଥାପିତ କରିଅଛନ୍ତି [110] । ଶ୍ରୀରାଧାଙ୍କ ନାସା ସଂବଧରେ ବିଦ୍ୟାପତି କହନ୍ତି—ତାହା ନିକଟରେ ତିଳଫୁଲ, ଗରୁଡ଼ ଓ ଚଞ୍ଚୁର ଶୋଭା ପରାଜିତ [111] ।

'ଉଷାଭିଳାସ'ରେ ସେହିପରି ନାୟିକାର ନାସାକୁ ତିଳଫୁଲ ଓ ତୂଣୀର ସହ ତୁଳନା କରାଯାଇଛି [112] । 'ସର୍ବାଙ୍ଗ ସୁନ୍ଦରୀ'ରେ ଶୁକ, ତିଳଫୁଲ, ଗରୁଡ଼ ଏବଂ 'ଚିତ୍ରକଳା'ରେ ହେମ ତିଳଫୁଲ, ତୂଣୀରର ଉପମା ନ୍ୟୂନତା ଏ ପ୍ରସଂଗରେ ଉଲ୍ଲିଖିତ [113] । 'ଶଶିସେଣା'ରେ ଏହାକୁ ମଳୟ ସମୀର ମନ୍ଦିର ଓ ବସନ୍ତ ବିଳାସକାମୀ କିଂଶୁକ ରୂପେ ବର୍ଣ୍ଣନା କରାଯାଇଛି [114] । ବିଭିନ୍ନ କାବ୍ୟରେ ତିଳଫୁଲ ଉପମାର ପ୍ରୟୋଗପ୍ରାଚୁର୍ଯ୍ୟ ବିଶେଷ ଭାବେ ପରିଲକ୍ଷିତ ।

କର୍ଣ୍ଣ—'ନୈଷଧରେ' ନାୟିକା କର୍ଣ୍ଣର ଦୀର୍ଘ ବର୍ଣ୍ଣନା ପ୍ରଦତ୍ତ । କବି ଏହାକୁ ରତି ଓ କାମଦେବଙ୍କ ନୈବେଦ୍ୟ ପିଷ୍ଟକ, ଶାସ୍ତ୍ର ସୁଧା ପ୍ରବାହର ପ୍ରଣାଳୀ, ଅଷ୍ଟାଦଶ ବିଦ୍ୟାର ଆଧାର, କାମଦେବଙ୍କ ପାଶ (ଫାସ) ଏବଂ ଧନୁର ଅଗ୍ରଭାଗ ରୂପେ କ୍ଲିଷ୍ଟ-ପରିକଳ୍ପନା କରିଛନ୍ତି [115] । ବୈଷ୍ଣବ ପଦ୍ୟାବଳୀରେ କର୍ଣ୍ଣକୁ ଆଦୌ ସମ୍ମାନ ଦିଆ ଯାଇନାହିଁ [116] ।

ବିଦ୍ୟାପତି ଥରେ ମାତ୍ର ଏହାର ଉଲ୍ଲେଖ କରିଛନ୍ତି–'ଗିଧିନୀ ଶ୍ରବଣ ବିସେଖି' [117] ।

ଉପେନ୍ଦ୍ରଙ୍କ 'ସୁଭଦ୍ରା ପରିଣୟ'ରେ ନାୟିକାର କର୍ଣ୍ଣ, ପାଶ, ପାଟଳିଫୁଲ, ଆମ୍ବ ଫଳର ଅର୍ଦ୍ଧାଂଶ ରୂପେ ବର୍ଣ୍ଣିତ [118] । 'ଉଷାଭିଳାଷ' ଓ 'ରସକଲ୍ଲୋଳ'ରେ ଏହାକୁ ଯଥାକ୍ରମେ ତ୍ରିଭୁବନ ଜୟ ପାଶ ଓ କାମ ଜୟ ପାଶ ବୋଲି କୁହାଯାଇଛି [119] । ଲୋକନାଥଙ୍କ 'ଚିତ୍ରକଳା'ରେ ଏହା ଅନଙ୍ଗ ଖଟ ଦୋଳି, ବିଯୋଗୀ ଜନ ବଂଧନ ଜୟ ପାଶ ରୂପେ ଉଲ୍ଲିଖିତ [120] । ଅଧିକାଂଶ କାବ୍ୟରେ ପାଟଳିଫୁଲ ଓ ପାଶ ଉପମାର ପ୍ରଚଳନ-ଆଧିକ୍ୟ ପରିଦୃଷ୍ଟ ।

କପୋଳ–'ନୈଷଧ'ରେ ନାୟିକାର କପୋଳ କୃଷ୍ଣ ପକ୍ଷର ଅଷ୍ଟମୀ ଚନ୍ଦ୍ର ରୂପେ ପରିକଳ୍ପିତ [121] । ଓଡ଼ିଆ କାବ୍ୟରେ ଏହା ମୁଖ ମଣ୍ଡଳର ସାମଗ୍ରିକ ଶୋଭା ଅନ୍ତର୍ଗତ । ସ୍ୱତନ୍ତ୍ର ଭାବେ କପୋଳ ଦେଶର ଉଲ୍ଲେଖ ସ୍ୱଳ୍ପ । ଏହାକୁ କେଉଁଠାରେ କନ୍ଦର୍ପର ଧନୁ [122] ଓ କେଉଁଠାରେ ଅର୍ଦ୍ଧଶଶି [123] ରୂପେ ଅଭିହିତ କରାଯାଇଛି ।

ଗଣ୍ଡ–ନାୟିକାର ଗଣ୍ଡ ଶୋଭା ସହିତ ଦର୍ପଣର ଶୋଭା ପରଂପରା ସିଦ୍ଧ । କିନ୍ତୁ ତା'ର ପ୍ରୟୋଗ-ପାର୍ଥକ୍ୟ ବିଭିନ୍ନ କାବ୍ୟର ବିଶେଷତ୍ୱ; ଯଥା–ଦର୍ପଣ [124] , କେଳି ମୁକୁର [125] , ଅମୃତ ନିର୍ମିତ ଆଦରଶ [126] । ବ୍ରଜନାଥଙ୍କ 'କେଳି କଳାନିଧି'ରେ ନାୟିକାର ଗଣ୍ଡଦ୍ୱୟ ମୁଖ-ମନ୍ମଥ ରଥର ଚକ୍ର ରୂପେ କଳ୍ପିତ [127] ।

ଚିବୁକ–ସକଳ କାବ୍ୟରେ ଚିବୁକର ବର୍ଣ୍ଣନା ପ୍ରାଧାନ୍ୟ ଲାଭ କରିନାହିଁ । 'ଲାବଣ୍ୟବତୀ' ଓ 'ଚିତ୍ରକଳା'ରେ ଏହାକୁ ଚତୁର୍ଥୀ ଚନ୍ଦ୍ର ସହ ତୁଳନା କରାଯାଇଛି [128] । କିନ୍ତୁ 'ସୁଭଦ୍ରା ପରିଣୟ'ରେ ଏହା ପଞ୍ଚମୀ ଚନ୍ଦ୍ର ରୂପେ ଗୃହୀତ [129] ।

କେଶ—କେଶ ଶୋଭା ବର୍ଣ୍ଣନାରେ କବିଗଣ ସ୍ୱଭାବତଃ ଶତମୁଖ । ଏ ପ୍ରସଙ୍ଗରେ ଉପମା ସମୂହ କେଉଁଠି ତୁଳନା ଗୌରବରେ ଗୌରବାନ୍ୱିତ ତ କେଉଁଠି ପରାଜୟ ଗ୍ଳାନିରେ ଲଜ୍ଜିତ । ଚମରୀପୁଚ୍ଛଠାରୁ ପାର୍ବତୀଙ୍କ କେଶରାଜିର ଶୋଭାଧିକ୍ୟ କାଳିଦାସ 'କୁମାର ସମ୍ଭବ'ରେ ବର୍ଣ୍ଣନା କରିଛନ୍ତି [131] । ଦମୟନ୍ତୀଙ୍କ କେଶ ସୌନ୍ଦର୍ଯ୍ୟ ନିକଟରେ ଶ୍ରୀହର୍ଷଙ୍କ କବିତ୍ୱର ପରମ ଶ୍ରଦ୍ଧାଞ୍ଜଳି ନିବେଦିତ । ଚମରୀର ପଶ୍ଚାତ୍ ଦେଶରେ ପୁଚ୍ଛଧାରଣକୁ କବି କାବ୍ୟିକ ମହିମା ପ୍ରଦାନ କରିଯାଇଛନ୍ତି [132] । ଏତଦ୍‌ବ୍ୟତୀତ ମୟୂର ପୁଚ୍ଛର ସୌନ୍ଦର୍ଯ୍ୟ-ନ୍ୟୂନତା, ଅନ୍ଧକାରର ପଶ୍ଚାଦ୍ ପସରଣ, ବ୍ରହ୍ମାଙ୍କଠାରୁ ମୟୂରର ଅର୍ଦ୍ଧଚନ୍ଦ୍ରଲାଭ ଆଦି ନାୟିକା-କେଶ ସଂବଧୀୟ କଳ୍ପନା ବିଳାସିତାର ଗୋଟିଏ ଗୋଟିଏ ବିଶିଷ୍ଟ ଉଦାହରଣ[133] । ବିଦ୍ୟାପତି ଶ୍ରୀରାଧାଙ୍କ କେଶର ବର୍ଣ୍ଣନା ଦେବାକୁ ଯାଇ କହନ୍ତି—ଜଳଧର, ତିମିର, ଭ୍ରମର ଏହାର ଶୋଭା ନିକଟରେ ପରାଜିତ [13] ।

ଓଡ଼ିଆ ରୀତି କାବ୍ୟରେ ନାୟିକାର କେଶ ବର୍ଣ୍ଣନା ଲାଗି କବିର ଆନ୍ତରିକ ଆଗ୍ରହ ଅପରିସୀମ । ଉପେନ୍ଦ୍ର ଭଂଜ ଏଥିମାଇଁ ଶ୍ରୀହର୍ଷଙ୍କ ନିକଟରେ ବହୁଳ ପରିମାଣରେ ଋଣୀ । 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ', 'ସୁଭଦ୍ରା ପରିଣୟ' ଓ 'ଲାବଣ୍ୟବତୀ'ରେ ନାୟିକାର କେଶ ବର୍ଣ୍ଣନା ନୈଷଧୀୟ ଭାବ/କଳ୍ପନା ପରିପୁଷ୍ଟ [135] । କାବ୍ୟ ସମୂହରେ କେଶର ତ୍ରିବିଧ ରୂପ ଦେଖିବାକୁ ମିଳେ; ଯଥା—ମୁକ୍ତ, ବିନ୍ୟସ୍ତ ଓ ଆର୍ଦ୍ର ।

ମୁକ୍ତ—ମୁକ୍ତ କେଶର ଶୋଭା ଉପେନ୍ଦ୍ରଙ୍କ 'ସୁଭଦ୍ରା ପରିଣୟ'ରେ ସଜଳ ଜଳଧର, କଜ୍ଜଳ, ଭ୍ରମର, ତମାଳ, କାଳିନ୍ଦୀ ଜଳ, ଭ୍ରମର, ବରହୀପୁଚ୍ଛ ଓ ନୀଳମଣି ସହ ତୁଳିତ [136] । ଏହାକୁ 'ଉଷାଭିଳାଷ'-କାର କାମରଥ ଧ୍ୱଜର ନୀଳ ପତାକା, 'ରସକଲ୍ଲୋଳ'କାର ଶୈବାଳ ରୂପେ ବର୍ଣ୍ଣନା କରିଛନ୍ତି [137] । 'ଚିତ୍ରକଳା'ରେ 'ସୁଭଦ୍ରା ପରିଣୟ' ସୂଚିତ ଉପମାବଳି ସହ ବହୁତ୍ର ଉଲ୍ଲେଖ ଦେଖାଯାଏ [138] । ପ୍ରାୟ ସକଳ କାବ୍ୟରେ ଉପରୋକ୍ତ ଏକ ବା ଏକାଧିକ ଉପମାର ପ୍ରୟୋଗ ପରିଲକ୍ଷିତ ।

ବିନ୍ୟସ୍ତ—ବିନ୍ୟସ୍ତ କେଶ ବା ବେଣୀ ଶୋଭାକୁ ବିଭିନ୍ନ ପରିବେଶରେ ଶେଷଶିଶୁ[139], ମଣିହଜାଫଣୀ[140], ମନ୍ତ୍ରଧୂଳି ବଶୀଭୂତ ସ୍ଥଗିତ ନାଗ[141] ତଥା କାମକର ଗୁପ୍ତି, କୃଷ୍ଣ ସର୍ପିଣୀ, ଭ୍ରମର ଶ୍ରେଣୀ[142] ରୂପେ ଅଭିହିତ କରାଯାଇଛି । କେତେକ ସ୍ଥଳରେ ନାୟିକା କବରୀ ଶୋଭାର ଚିତ୍ର ପ୍ରଦତ୍ତ । ଏହାକୁ 'ଉଷାଭିଳାଷ'ରେ ଯୁବା-ଜନ-ମନ-ବନ୍ଦୀ-ମନ୍ଦିର, ଶଶାଙ୍କ ନିକଟରେ ସ୍ନେହାନୁଗତ ଶର୍ବରୀ ଏବଂ 'କଳ୍ପଲତା'ରେ କଳା ମନସିଜର ଦ୍ରୋଣମାଳା ବୋଲି କୁହାଯାଇଛି[143] । 'ବୈଦେହୀଶ ବିଳାସ'ରେ ନାୟିକାର ଜୂଡ଼ା 'ମନ-ମୀନ-ବନ୍ଧୀ ମର୍କତ-କୁବେଣୀ ରୂପେ ପ୍ରଶଂସିତ[144] । ବିନ୍ୟସ୍ତ କେଶ ଶୋଭାର ବିସ୍ତୃତ ବର୍ଣ୍ଣନା ଅନେକ କାବ୍ୟରେ ଦୀର୍ଘ ଓ ସରସ ।

ଆର୍ଦ୍ର—କେତେକ କାବ୍ୟରେ ଅର୍ଦ୍ର କେଶର ଶୋଭା ବର୍ଣ୍ଣନା ଅତ୍ୟନ୍ତ ମନୋରମ । ସାଧାରଣତଃ ନାୟିକାର ଜଳକେଳି ପ୍ରସଙ୍ଗରେ ଏହାର ଉଲ୍ଲେଖ ଦେଖିବାକୁ ମିଳେ । 'ପ୍ରେମ ଲୋଚନା'ରେ ବିନ୍ଦୁ ବିନ୍ଦୁ ଜଳଯୁକ୍ତ କେଶରାଶି ମୋତିଗ୍ରନ୍ଥିତ ନୀଳ ଚାମର ରୂପେ ପରିକଳ୍ପିତ[145] । 'ଲାବଣ୍ୟବତୀ'ରେ ଏହାକୁ ତମାଳ ଦଳରେ ତୁଷାର ବୃଷ୍ଟି ସହ ତୁଳନା କରାଯାଇଛି[146] । 'ଚନ୍ଦ୍ରକଳା'ରେ ନାୟିକା ସହ ସକଳ ସଖୀଙ୍କ ଭସମାନ କେଶରାଶିର ଚିତ୍ର ପ୍ରଦତ୍ତ । କବିଙ୍କ ଦୃଷ୍ଟିରେ ଏହି ଦୃଶ୍ୟ ଇନ୍ଦ୍ରନୀଳ ଚାମର, ଯମୁନାର ନୀଳକାନ୍ତି ଓ ତମାଳ ଛାୟା ସହ ତୁଳନୀୟ[147] ।

ସ୍ତନ—ନବ ଯୌବନବତୀ ନାୟିକାର ସ୍ତନ ଶୋଭା ପ୍ରାୟ ସକଳ କାବ୍ୟରେ ସଂକ୍ଷିପ୍ତ/ବିସ୍ତୃତ ଭାବେ ବର୍ଣ୍ଣିତ । କେତେକ ସ୍ଥଳରେ ଏହାର ନବୋଦ୍‌ଗମଠାରୁ ପର୍ଯ୍ୟାୟ କ୍ରମିକ ବିକାଶର ଚିତ୍ର ପ୍ରଦତ୍ତ । କବି କଳ୍ପନା ଏ କ୍ଷେତ୍ରରେ ସୀମାହୀନ ଦିଗ୍‌ବଳୟବ୍ୟାପୀ । ସ୍ତନ ସୌନ୍ଦର୍ଯ୍ୟର ବିପୁଳ ମହିମା ନିକଟରେ କାବ୍ୟ ସ୍ରଷ୍ଟାର ରୂପମୁଗ୍ଧ ଦୃଷ୍ଟି ଚିରକାଳ ଚକିତ ଓ ସ୍ତମ୍ଭିତ ।

ଏ ପ୍ରସଙ୍ଗରେ ପ୍ରାଚୀନ ଭାରତୀୟ କାବ୍ୟ ଭାବନା ଆମର ଏକାନ୍ତ ସ୍ମରଣୀୟ । ସମାଲୋଚକ ଶଙ୍କରୀ ପ୍ରସାଦ ବସୁଙ୍କ ମତରେ–"ଉନ୍ମୁକ୍ତ ବକ୍ଷ ବର୍ଣ୍ଣନା ନିମିତ୍ତ ପ୍ରାଚୀନ ଭାରତବର୍ଷର କୌଣସି କୁଣ୍ଠା ନଥିଲା । କୁଣ୍ଠା ନଥିବାର କାରଣ, ହୁଏତ ଭାରତର ପରିଛଦ ପଦ୍ଧତି । ନାରୀମାନଙ୍କର ଉର୍ଦ୍ଧ୍ୱାଙ୍ଗ ଆବରଣ ବ୍ୟାପାରରେ ଅତି ପ୍ରାଚୀନ ଭାରତବର୍ଷରେ ବାଧ୍ୟ ବାଧକତା ଥିଲା ବୋଲି ମନେ ହୁଏନା । ପୁରାତନ ଭାସ୍କର୍ଯ୍ୟରେ ତା'ର ପ୍ରମାଣ ରହିଛି । ପରବର୍ତ୍ତୀକାଳରେ ଉର୍ଦ୍ଧ୍ୱାଙ୍ଗ ଆବରଣ ପଦ୍ଧତି ପ୍ରଚଳିତ ହୋଇଥିଲେ ହେଁ ପୂର୍ବ ସଂସ୍କାର ନାରୀର ବକ୍ଷ ଦର୍ଶନରେ କବି ଓ ଶିଳ୍ପୀଗଣଙ୍କୁ ଅସଙ୍କୁଚିତ କରି ରଖିଥିଲା । ଭାରତର ଐତିହ୍ୟପ୍ରୀତି ଉନ୍ମୁକ୍ତ ବକ୍ଷ ଦର୍ଶନ ସ୍ମୃତିକୁ କାବ୍ୟରେ ଦୀର୍ଘଦିନ ଧରି ରଖିଥିଲା । ଦେହ ବନ୍ଦନାରେ ବକ୍ଷ ପ୍ରାଧାନ୍ୟର ପରମ ପ୍ରମାଣ କାଳିଦାସଙ୍କ (?) ସରସ୍ୱତୀ ସ୍ତୋତ୍ର, ଯେଉଁଠାରେ ଦେବୀ ଦେହର ଏକମାତ୍ର ଉଲ୍ଲେଖ ଯୋଗ୍ୟ ଉଲ୍ଲେଖ ରହିଛି -ଯେ ଦେବୀଙ୍କର ଅନେକ ଗୁଣରୁ ଗୋଟିଏ ଗୁଣ–'ସେ କୁଚଯୁଗ ଶୋଭିତା' [147] ।

ନାୟିକା–ସ୍ତନ ବର୍ଣ୍ଣନାରେ କାଳିଦାସଙ୍କ ରୂପ ଦୃଷ୍ଟି ସୂକ୍ଷ୍ମ ପର୍ଯ୍ୟବେକ୍ଷଣ ଧର୍ମ ଆଧାରିତ । ସ୍ତନର ଗୁରୁତା, ନମ୍ରତା, କୋମଳତା, କଠିନତା, ଉଚ୍ଚତା ଆଦି ଗୁଣ ତାଙ୍କ ରଚନାରେ ଯେପରି ଭାବେ ପରିସ୍ଫୁଟିତ ତାହା ଅନ୍ୟତ୍ର ଦୁର୍ଲଭ [148] । ପାର୍ବତୀଙ୍କ ଉନ୍ନତ ସ୍ତନଯୁଗଳ ବର୍ଣ୍ଣନାରେ ତାହାର ସ୍ୱାଭାବିକ ପାଣ୍ଡୁ ବର୍ଣ୍ଣ ତଥା କୃଷ୍ଣ ବୃନ୍ତର ଉଲ୍ଲେଖ କରିବାକୁ ମଧ୍ୟ ସେ ଅକୁଣ୍ଠିତ ଚିତ୍ତ [149] । ଶ୍ରୀହର୍ଷଙ୍କ କାବ୍ୟାତିରଂଜିତ କଳ୍ପନା ବିଳାସିତା ବାସ୍ତବିକ ବିସ୍ମୟକର । ଦମୟନ୍ତୀଙ୍କ ଉନ୍ନତ ସ୍ତନଦ୍ୱୟ ତାଙ୍କ ଦୃଷ୍ଟିରେ ମଦନ ଓ ଯୌବନର ସନ୍ତରଣ କୁମ୍ଭ ରୂପେ ପରିକଳ୍ପିତ [150] । ଏତଦ୍‌ବ୍ୟତୀତ ନୈଷଧକାର ନାୟିକାର ସ୍ତନ ସହ ଅନ୍ତରୀପ, ତାଳ, ଘଟ, ଚକ୍ରବାକ ଯୁଗ୍ମ, ଗଜକୁମ୍ଭ, ଶ୍ରୀଫଳ, ଅତଟ ଆଦିର କାବ୍ୟିକ କଳ୍ପନା-ସମୃଦ୍ଧ ତୁଳନା ଉପସ୍ଥାପିତ କରିଛନ୍ତି [151] । କିନ୍ତୁ ଏଥିରେ ରୂପର ଐଶ୍ୱର୍ଯ୍ୟ ଅପେକ୍ଷା ନୀରସ କାବ୍ୟ-କୌଶଳର ସର୍ବିତ ଅହଂକାର ହିଁ ପରିଲକ୍ଷିତ ।

ସଂସ୍କୃତ ସାହିତ୍ୟ ଗଢ଼୍ୟରେ ଲକ୍ଷ୍ମଣ ଅଗ୍ରେର୍ଯ୍ୟଙ୍କ 'ଚଣ୍ଡୀ-କୁଚ-ପଞ୍ଚାଶିକ' ସ୍ତନ ସୌନ୍ଦର୍ଯ୍ୟ ବର୍ଣ୍ଣନା ଶୀର୍ଷ ସୀମା ସ୍ପର୍ଶ କରିଛି [153] । ବିଦ୍ୟାପତିଙ୍କ ବର୍ଣ୍ଣନା ଏ କ୍ଷେତ୍ରରେ ସଂକ୍ଷିପ୍ତ ଓ ଉପମା ବହୁଳ । ଶ୍ରୀରାଧାଙ୍କ ବକ୍ଷଶୋଭା ନିରୂପଣ କରିବାକୁ ଯାଇ ସେ ବେଲ, ତାଳ ଯୁଗଳ, ସୁବର୍ଣ୍ଣ କଳସ, ଗିରି, କଟରି (ଗିନା ବା ବାଟି) ଆଦିର ସାଦୃଶ୍ୟ-ନ୍ୟୂନତା [154] ତଥା କମଳ କୋରକ, ଘଟ, ଦାଡ଼ିମ୍ବ, ଶ୍ରୀଫଳ, ଶମ୍ଭୁ ଆଦିର ଉତ୍କର୍ଷହୀନତା [155] ସୂଚାଇଛନ୍ତି ।

ଓଡ଼ିଆ ରୀତି କାବ୍ୟର ନାୟିକା-ସ୍ତନ ବର୍ଣ୍ଣନାରେ ସଂସ୍କୃତ କାବ୍ୟ ଧାରାର ପ୍ରଭାବ ତଥା ଗତାନୁଗତିକ ଉପମା ସମୂହର ପ୍ରୟୋଗ ବିଶେଷ ଭାବେ ପରିଲକ୍ଷିତ । ସୁଭଦ୍ରାଙ୍କ ସ୍ତନ ଦ୍ୱୟକୁ ଉଦର-ଲାବଣ୍ୟସରସୀରେ ସ୍ଖଳିତ ପଦ ମଦନର ସନ୍ତରଣ-କୁମ୍ଭ ରୂପେ ପରିକଳ୍ପନା ଉପେନ୍ଦ୍ରଙ୍କ ନୈଷଧ ପ୍ରୀତିର ସ୍ପଷ୍ଟ ପରିଚାୟକ [156] । ଏତଦ୍‌ବ୍ୟତୀତ ରଥାଙ୍ଗ, ମର୍ଦ୍ଦଳ, ନାରିକେଳ, ତାଳ, ଜମ୍ବୀର, ମାତୁଳଙ୍ଗ, ଶ୍ରୀଫଳ, ଶମ୍ଭୁ, ସଂପୁଟ ଆଦିର ଅପ୍ରଶଂସା ଏ ପ୍ରସଙ୍ଗରେ ଉଲ୍ଲିଖିତ ।

କେଉଁ ଗୋପାଙ୍ଗନା ପ୍ରତି ଶ୍ରୀକୃଷ୍ଣଙ୍କ ଚାଟୂକ୍ତି କ୍ରମେ 'ରସକଲ୍ଲୋଳ'କାର ସ୍ତନମଣ୍ଡଳର କ୍ରମ ବିକଶିତ ସୌନ୍ଦର୍ଯ୍ୟକୁ କୁବଳ (ବରକୋଳି), କଦମ୍ବ କଳି, ସୁନା କନ୍ଦୁକ, ଶ୍ରୀଫଳ, ମାତୁଳଙ୍ଗ, ହସ୍ତୀକୁମ୍ଭ, ଚକ୍ରବାକ, ତାଳ, ସୁନାଫରୁଆ, ଲାଉତୁମ୍ବୀ ପ୍ରଭୃତି ଉପମାରେ ଭୂଷିତ କରିଛନ୍ତି [157] । 'ବିଦଗ୍ଧ ଚିନ୍ତାମଣି'ରେ ନାୟକର ଶ୍ରୀରାଧା ସ୍ତନଭାବନା ଏକ ସ୍ୱତନ୍ତ୍ର ଅଧ୍ୟାୟ । ପାରଂପରିକ ଉପମା ସଂଯୋଜନାର ସଫଳତା ସତ୍ତ୍ୱେ ଅବନାଶୃଙ୍ଖଳାରେ ରଚିତ ହୋଇଥିବାରୁ ବିଷୟ ବର୍ଣ୍ଣନା ରସ ମଧୁର ହୋଇ ପାରିନାହିଁ [158] । କେତେକ କାବ୍ୟରେ ସ୍ତନ ଶୋଭାର ବର୍ଣ୍ଣନା ବହୁଳ ଉପମା ଆଧାରିତ । ଉପେନ୍ଦ୍ରଙ୍କ 'ରସଲେଖା'ରେ ମାତୁଳଙ୍ଗ, ଶ୍ରୀଫଳ, କମଳ, ନାରିକେଳ, କଳ୍ପପାଦପ ଫଳ, ହେମ ଭୂମି-ଜାତ-ଶମ୍ଭୁ, କୃଷ୍ଣଙ୍କ ବାଲ-ଲୀଳା-କନ୍ଦୁକ, ରତି ରଞ୍ଜନ ସମ୍ପୁଟକ, ଲାବଣ୍ୟସର ଚକ୍ରବାକ,

ନବ ସରସିଜ କୋରକ, ପୀୟୂଷ କୋଷ, ଯୌବନ-କରି-କୁମ୍ଭ, ମନସିଜ-ଶିର-ଟୋପର, ମଲ୍ଲ ସାଧନ ଘର, ପ୍ରେମରସ ଢ଼ଙ୍କା ଓଇଟ କନକ କଟୋରା, ସରସ୍ୱତୀ ବୀଣା-ତୁମ୍ବୀ, ପ୍ରାସାଦ, ଜଗତୀ ଆଦିର ଉଲ୍ଲେଖ ଏକାନ୍ତ ସରସ ଓ ସାବଲୀଳ [159]। ଲୋକନାଥଙ୍କ 'ସର୍ବାଙ୍ଗସୁନ୍ଦରୀ'ରେ ମଧ୍ୟ ଏହିପରି ମନୋହର ଉପମାରାଜି ପରିଲକ୍ଷିତ; ଯଥା-ସୁବର୍ଣ୍ଣ କଳସ, ହେମ କମଳ, କନ୍ଦର୍ପ କେଳି-କନ୍ଦୁକ, ରତି ଗୁପ୍ତ ସମ୍ପୁଟକ, କାମ କଳ୍ପଲତାର ଫଳଯୁଗଳ ମଳୟାଚଳ, ସୁବର୍ଣ୍ଣମେରୁ, କୁମ୍ଭୀ କୁମ୍ଭ, ତାଳ ଓ ଶ୍ରୀଫଳ ଇତ୍ୟାଦି [160]। ବିଭିନ୍ନ କାବ୍ୟରେ ଉପରୋକ୍ତ ଉପମାବଳି ଭିନ୍ନ ସ୍ତନ ସଂବର୍ଧିତ ଆଉ କେତୋଟି ବିଶିଷ୍ଟ କଳ୍ପନା ଆମର ଦୃଷ୍ଟିଗୋଚର ହୁଏ । ସେଗୁଡ଼ିକ ମଧ୍ୟରୁ ହିମ ମଳୟ ଗିରିରେ ଷଡ଼ଋତୁ ସହ ଅନଙ୍ଗନିବାସ [161], ମଦନ ଭଣ୍ଡାର [162], ବାମନ ରୂପରେ କେଶବଙ୍କ କୁଚ କୁମ୍ଭ ଧାରଣ [163], ଯୁବାଜନ ମୋହ ଔଷଧି ସୁରକ୍ଷିତ ନୀଳମଣି ମୁଦ୍ରଯୁକ୍ତ ରଜତ ସଂପୁଟ [164], ଷଡ଼ଗ୍ରହ [165](କ), ଉଦର ସରକୂଳ ପ୍ରାସାଦ (ଖ), ଯୌବନ-ସିନ୍ଧୁ ମଂଥନ ମେରୁ (ଗ), ମନସିଜର ବେନି କୁଟି (ଘ), ଯାମଳ ଭୂଧର [166], କାଶ୍ମୀର [167](କ), ଶିବଲୋକ (ଖ), ଚୁମ୍ବକ [168](କ), ପଞ୍ଜୁରୀ (ଖ), ଅମର କଟକ [169] ଆଦି ଉଲ୍ଲେଖଯୋଗ୍ୟ । ସ୍ଥାନ ବିଶେଷରେ ସ୍ତନ ବୃନ୍ତର ରୂପ ପରିକଳ୍ପନା କବି ଦୃଷ୍ଟିରୁ ବର୍ଜିତ ହୋଇନାହିଁ । ଏହାକୁ ନାରିକେଳ-ଜାତ-ଗୁଆ [170], ବଳି ବାଟୁଳି [171], ପଦ୍ମ କୋରକ ଉପରିସ୍ଥ ଭ୍ରମର [172] ସହ ତୁଳନା କରାଯାଇଛି ।

ଅନେକ ସ୍ଥଳରେ ନାୟିକା-ସ୍ତନର ଉଚ୍ଚତା, କୋମଳତା, କଠିନତା ଆଦି ଗୁଣାବଳି ଉଲ୍ଲିଖିତ; ଯଥା–'ଉଚ୍ଚ ସଂଚ କଠିନ କୋମଳ ଘନ ସ୍ତନ [173], 'ଉଚ୍ଚ ସଂଚ ଘଂଚ କୁଚ ଲାବଣ୍ୟସୀମା' [174], 'ସନ୍ଧି ହୀନ ଅତି ପୀନ ତୁଙ୍ଗ ବର୍ତ୍ତୁଳ କଠିନ', [175] 'ଅମାନ କଠିନ ପୀନ ଘନ ସ୍ତନ', [176] 'ବିପୁଳ ସଘନ ପାଣ୍ଡୁ ଉଚ୍ଚ କୁଚ ବେନି' [177] । ଇତ୍ୟାଦି

ପୃଷ୍ଠଦେଶ–ନାୟିକାର ପୃଷ୍ଠଦେଶ ଶୋଭା ବର୍ଣ୍ଣନାରେ କବିର ଆଗ୍ରହ ସୀମିତ । ଅଳ୍ପ କେତୋଟି କାବ୍ୟରେ ଏହାର ଉଲ୍ଲେଖ ଦେଖାଯାଏ । ନୈଷଧରେ ଶ୍ରୀହର୍ଷ ଦମୟନ୍ତୀଙ୍କ ପୃଷ୍ଠକୁ ସୁବର୍ଣ୍ଣ ପଟ୍ଟିକା ରୂପେ ଅଭିହିତ କରିଛନ୍ତି [178] । ଏହାହିଁ ବୋଧହୁଏ ଏକମାତ୍ର ଉପମା । ବିଷ୍ଣୁଦାସଙ୍କ 'ପ୍ରେମ ଲୋଚନା'ରେ ନାୟିକା ପୃଷ୍ଠ ଶୋଭା ନୈଷଧୀୟ କଳ୍ପନା-ସମ୍ମତ[179] । ବହୁ ସ୍ଥଳରେ ରୀତି କବି ଏଥିପାଇଁ କୌଣସି ଉପମା ଯୋଗାଇ ନପାରି ନୀରବତା ଅବଲମ୍ବନ କରିଛି । କେତେକ କ୍ଷେତ୍ରରେ କେବଳ ପୃଷ୍ଠଦ୍ୟୁତିହିଁ ବର୍ଣ୍ଣିତ; ଯଥା–'ସୁରମ୍ୟ ତା ପୃଷ୍ଠଭାଗ ପରଭା କୃତି ସଂଯୋଗ' [180], 'କନ୍ଦର୍ପ ଦେବତାର କି କନକର ପ୍ରଭା' [181] ଇତ୍ୟାଦି ।

ଗ୍ରୀବା–କାବ୍ୟ ଜଗତରେ ଗ୍ରୀବା ବା କଣ୍ଠ ଦେଶ ପାଇଁ ବହୁଳ ବ୍ୟବହୃତ ଉପମା ହେଉଛି ଶଙ୍ଖ । ପ୍ରାୟ ସକଳ କାବ୍ୟରେ ଏହାର ନିନ୍ଦା ବା ତୁଳନା ଛଳରେ ପ୍ରସଂଗ ନିରୂପିତ[182] । 'ସୁଭଦ୍ରା ପରିଣୟ'ରେ ଶଂଖ ସହ କପୋତର ଉଲ୍ଲେଖ ମଧ୍ୟ ଦେଖିବାକୁ ମିଳେ [183] ।

କର–ନାୟିକା-କର ଶୋଭା ବର୍ଣ୍ଣନାରେ ମୃଣାଳର ପ୍ରାଧାନ୍ୟ ସର୍ବତ୍ର ପରିଲକ୍ଷିତ [184] । ସ୍ଥାନ ବିଶେଷରେ କନକ ମୃଣାଳ [185], କଳ୍ପଲତା ଶାଖା [186], ଯୌବନ-କରି କର [187], ଲତା [188], ଲହରୀର [189] ଉଲ୍ଲେଖ ଦେଖାଯାଏ । ବାହୁର କୋମଳତା ବିଷୟରେ ଶିରୀଷର ଆରୋପ ପ୍ରାୟତଃ ଦୃଷ୍ଟିଗୋଚର ହୋଇଥାଏ । ବିଦ୍ୟାପତିଙ୍କ କବିତାରେ ନାୟିକାର ବାହୁକୁ ମୃଣାଳ, ପାଶ, ବଲ୍ଲରୀ ଶୋଭାନିନ୍ଦି ବୋଲି କୁହାଯାଇଛି [190]।

କରତଳ–କରତଳ ବା ପାଣି ଶୋଭାର ଉପମାନ ହେଉଛି କୋକନଦ [191] , କିଶଳୟ [192] , କେନ୍ଦୁ ପଲ୍ଲବ [193] ଇତ୍ୟାଦି । ବିଭିନ୍ନ ସ୍ଥଳରେ ଏହାର ବର୍ଣ୍ଣନାଗତ ଗୁରୁତା ପ୍ରତିପାଦିତ ।

କଣ୍ଠ—କଣ୍ଠରୁ ସୌନ୍ଦର୍ଯ୍ୟ ବର୍ଣ୍ଣନାରେ ଚମ୍ପକ କଳିକାର ବହୁଳ ପ୍ରୟୋଗ ପରିଦୃଷ୍ଟ [194] । 'ପ୍ରେମଲୋଚନା'ରେ ପ୍ରବାଳ କଢି ଓ 'ସର୍ବାଙ୍ଗସୁନ୍ଦରୀ'ରେ ଅଶୋକ କୁସୁମର ଉଲ୍ଲେଖ ଦେଖିବାକୁ ମିଳେ [195] । 'ସୁଭଦ୍ରା ପରିଣୟ'ରେ ନାୟିକାର ନଖ ସହିତ ଅଙ୍ଗୁଳି ସମୂହ କନ୍ଦର୍ପର ପଞ୍ଚ ମୋହନ ଶର ରୂପେ ପରିକଳ୍ପିତ [196] ।

ନାଭି—'ନିଷଧ'ରେ ଦମୟନ୍ତୀଙ୍କ ନାଭିକୁ ଗଭୀର କୂପ ଓ ହସ୍ତୀ ଉତ୍ପାଟିତ ବନ୍ଧନ 'ଖୁଣ୍ଟର ଗର୍ତ୍ତ ସହ ତୁଳନା କରାଯାଇଛି [197] । ନାଭି ଓ ରୋମାବଳିର ମିଳିତ ବର୍ଣ୍ଣନା ଏ କ୍ଷେତ୍ରରେ ଅତୀବ ମନୋହର । କାଳିଦାସ ପାର୍ବତୀଙ୍କ ଯୌବନ ଶୋଭା ପ୍ରସଂଗରେ ନତ ନାଭି ରନ୍ଧ୍ର'ର ଉଲ୍ଲେଖ କରିଛନ୍ତି [198] । ବିଦ୍ୟାପତିଙ୍କ ମତରେ ରାଧାଙ୍କ ନାଭି ଶୋଭା ନିକଟରେ ସରୋବର, ପଦ୍ମ ଦଳର ଗୌରବ ମ୍ଳାନ [199] ।

ଓଡ଼ିଆ ରୀତି କାବ୍ୟରେ ନାୟିକାର ନାଭିକୁ ସରୋବର [200], 'O'କାର,[201] ଭଉଁରୀ,[202] ସରସ୍ୱତୀକୂପ [203], କୁଶମୁଦ୍ରା[204], ପଲ୍ୱଳ[205], ଅମୃତକୂପ [206], ବିରଜାହ୍ରଦ [207], ଶୃଗ୍ୱଦି [208] ସହ ତୁଳନା କରାଯାଇଛି । ପ୍ରାୟ ସମସ୍ତ କାବ୍ୟରେ ନାଭି ସୌନ୍ଦର୍ଯ୍ୟ ପ୍ରତି କବିର ଗଭୀର ଆକର୍ଷଣ ପରିଲକ୍ଷିତ ଏବଂ ସ୍ଥଳ ବିଶେଷରେ ଏହା କାବ୍ୟିକ ସରସତାରେ ମୂର୍ତ୍ତିମନ୍ତ । ନାୟିକାର ନାଭିକୁ କାମଦେବ ଓ ରତିଙ୍କ ସ୍ନାନ ସରୋବର ରୂପେ ଅଭିହିତ କରିବା 'ରକ୍ମିଣୀ ବିଭା'ର ଏକ ମନୋହର ପରିକଳ୍ପନା । ଭଉଁରୀର ପ୍ରୟୋଗ କିନ୍ତୁ ସର୍ବାଧିକ ।

ରୋମାବଳୀ—ରୋମାବଳିର ଶୋଭା ବର୍ଣ୍ଣନାରେ କବିର ବିପୁଳ ଆଗ୍ରହ ସର୍ବତ୍ର ପରିଦୃଷ୍ଟ । କାଳିଦାସ ପାର୍ବତୀଙ୍କ ନବ ରୋମରାଜି ସୌନ୍ଦର୍ଯ୍ୟରେ ନୀଳକାନ୍ତ ମଣିର ସ୍ନିଗ୍ଧ ସୁଷମା ଆରୋପ କରିଛନ୍ତି [209]। ଦମୟନ୍ତୀଙ୍କ ରୋମାବଳି ପ୍ରସଂଗରେ ମେଚକ ସୂତ୍ର, ସ୍ତନ-କୁମ୍ଭ ରଜ୍ଜୁ, ହସ୍ତୀର ଛିନ୍ନ ଶୃଙ୍ଖଳ ଆଦିର ଚିତ୍ର କଳ୍ପନା ନୈଷଧୀୟ ବାଣୀ ବିଳାସିତାର ସାକ୍ଷ୍ୟ ବହନ କରେ [210]। ବିଦ୍ୟାପତିଙ୍କ ଦୃଷ୍ଟିରେ ଏହା ହେଉଛି ଲତାଗୁଚ୍ଛ, ଶୈବାଳ ଓ କଜ୍ଜଳ [211]।

ଓଡ଼ିଆ ରୀତି କବିଗଣ ନାୟିକାର ରୋମାବଳି ସୌନ୍ଦର୍ଯ୍ୟ ବର୍ଣ୍ଣନାରେ ବହୁବିଧ ମନୋହର ପରିକଳ୍ପନାର ଆଶ୍ରୟ ଗ୍ରହଣ କରିଛନ୍ତି; ଯଥା— ଅନଙ୍ଗ ଦହନରେ ସୁଧାରସ - ସିଂଚନ - ଜାତ - ଧୂମଲତା [212], ତଟିନୀଧାର [213], କଳ୍ପଲତା [214], କୁଚ କରିର ଥୋରହସ୍ତ [215], ସୂଚୀ [216], ହୃଦୟ ବିଭଗ ସୂତା [217], ମଦନ-ମିତ୍ର ଅହିର ଲଞ୍ଜ [218], ମନ୍ଦିରର ନୀଳ ପତାକା [219], ନାଭି ସର ତେଯିଜି ଉଠୁଥିବା ଭୃଙ୍ଗ [220], ପିପୀଲିକା ଶ୍ରେଣୀ[221], କାମ-ଶବର ପାଶ [222], କଳାଜାତି ନାଗ[223], ନୀଳଦଣ୍ଡ [224], କୃଷ୍ଣବେଣୀ ନଦୀ [22], କଳା ଅହି [226], କନ୍ଦର୍ପର କୃଷ୍ଣ ବର୍ଣ୍ଣାବଳି [227], କାମ ପ୍ରେମ ପୁସ୍ତକ କାଳି ବର୍ଣ୍ଣାବଳି[228], ପ୍ରଥମ ରସ ବର୍ଣ୍ଣାବଳି [229], ତୃଣାଙ୍କୁର[230], ମଦନ ନଦୀ ଭେଳା[231], ସରଘାପନ୍ତି[232], କୁଚ ହାତୀର ଶିକୁଳ[233], କାଳୀ କୁଣ୍ଡଳୀ[234], ଇନ୍ଦ୍ରନୀଳ ନିଃଶ୍ରେଣୀ[235], ଇତ୍ୟାଦି । ରୋମାବଳି ଶୋଭ ବର୍ଣ୍ଣନାରେ ଅଭିମନ୍ୟୁଙ୍କ 'କୁଚ କରୀର ଶିକୁଳି' ପରିକଳ୍ପନା 'ନୈଷଧ' ପ୍ରଭାବିତ ବୋଲି ମନେହୁଏ । 'ବିଦଗ୍ଧ ଚିନ୍ତାମଣି'ର ନାୟିକା ଶ୍ରୀରାଧାଙ୍କ ସ୍ତନ ପେଟିକାରୁ କାଳୀ କୁଣ୍ଡଳୀର ଆବିର୍ଭାବ ଦୃଶ୍ୟ 'ଲବଣ୍ୟବତୀ'ର ନଟୀ ଶୋଭା ପ୍ରସଂଗରୁ ଗୃହୀତ [236]। କେତେକ ସ୍ଥଳରେ ନବାଙ୍କୁରିତ ରୋମାବଳିର ଉଲ୍ଲେଖ ଅଛି । ତାହା ପିପୀଲିକା ଶ୍ରେଣୀ, କଳାଅହି, ପ୍ରଥମ ରସ ବର୍ଣ୍ଣାବଳି ରୂପେ ଅଭିହିତ । କିନ୍ତୁ ରୋମାବଳି ଓ ନବାଙ୍କୁରିତ ରୋମାବଳି ମଧ୍ୟରେ ବିଶେଷ ପାର୍ଥକ୍ୟ ଦେଖାଯାଏ ନାହିଁ । ଅନଙ୍ଗ ଦହନରୁ ଜାତ ଧୂମ ଲତା, ମଦନ ନଦୀ ଭେଳା, ମଦନ ମିତ୍ର ଅହିର ଲଞ୍ଜ, କନ୍ଦର୍ପର କୃଷ୍ଣ ବର୍ଣ୍ଣାବଳି ଆଦି କବି କଳ୍ପନାରେ ଶୃଙ୍ଗାର ଚେତନାର ସ୍ପଷ୍ଟ ଅଭିବ୍ୟକ୍ତି ପରିସ୍ଫୁଟିତ । ରୋମାବଳିର ଏକକ ବର୍ଣ୍ଣନା ଅପେକ୍ଷା ନାଭି, ରୋମାବଳି ଓ ସ୍ତନର ସମ୍ମିଳିତ ବର୍ଣ୍ଣନା ଅଧିକ ମନୋରମ ଓ ହୃଦୟଗ୍ରାହୀ ।

କଟି—ଡ଼ମ୍ବରୁ ଓ ସିଂହ ନାୟିକା-କଟି ସୌନ୍ଦର୍ଯ୍ୟର ଉପମା ରୂପେ ଓଡ଼ିଆ ରୀତି କାବ୍ୟରେ ବହୁଳ ଉଲ୍ଲିଖିତ । ଏ ଦୁଇଟିର ନିନ୍ଦା ବା ସାଦୃଶ୍ୟ କେବଳ ବର୍ଣ୍ଣନାଗତ ବୈଚିତ୍ର୍ୟ ଉପରେ ନିର୍ଭରଶୀଳ [237]। ବହୁ ସ୍ଥଳରେ କୃଶ କଟିର ଗୁରୁ ସ୍ତନଭାର ବହନ ଚିତ୍ର ଏକାନ୍ତ ରମଣୀୟ ।

ଉଦର–ଉଦର ଶୋଭର ବର୍ଣ୍ଣନା ସୀମିତ । କବି ଦୃଷ୍ଟିରେ ଏହା ସରସୀ[238], ମାନସରୋବର[239], କମଳଦଳ [240], ସ୍ୱର୍ଣ୍ଣକମଳ ଦଳ[241], ବିଷ୍ଣୁପଦ [242] ପ କଳ୍ପିତ । ପ୍ରସଂଗତଃ ଲାବଣ୍ୟ ନୀର ପୂରିତ ଉଦର ସରସୀରେ ମଦନର ପଦ ସ୍ଖଳନ ଭାବନା ନୈଷଧ ପ୍ରଭାବିତ ଉପେନ୍ଦ୍ରଙ୍କ ସୃଷ୍ଟି ଗୌରବର ଏକ ବିଶିଷ୍ଟ ଦିଗ ।

ତ୍ରିବଳୀ–ପାର୍ବତୀଙ୍କ ତ୍ରିବଳି ଶୋଭା ବର୍ଣ୍ଣନାରେ କାଳିଦାସ ଅଶେଷ ସଫଳତାର ଅଧିକାରୀ । ତାଙ୍କ ଚକ୍ଷୁରେ ଏହା ଯେପରି ନବ ଯୌବନ ଆରୋହଣ ନିମିତ୍ତ କାମଦେବର ସୋପାନ ଶ୍ରେଣୀ[243] ।

ଅଧିକାଂଶ ଓଡ଼ିଆ କାବ୍ୟରେ ତ୍ରିବଳିକୁ ତ୍ରିବେଣୀରୂପେ କଳ୍ପନା କରାଯାଇଛି [244] । ଏହାକୁ 'ଶଶିସେଣା'ରେ କଟି କେଶରୀ ବଂଧା ରଜ୍ଜୁ[245], 'ଉଷାଭିଳାଷ'ରେ ଯୁବାଜନ ବଂଧନ ରଜ୍ଜୁ[246], 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ରେ ବଳୀସଦନ[247] (ବା ପାତାଳପୁର) ଓ 'ସୁଭଦ୍ରା ପରିଣୟ'ରେ ତ୍ରିଲୋକ ମୋହନକାରୀ ତିନୋଟି ରେଖାର[248] ଗୌରବ ପ୍ରଦତ୍ତ ।

ନିତମ୍ବ–କାଳିଦାସଙ୍କ କାବ୍ୟରେ ଗୁରୁ ଶ୍ରେଣୀଭରର ବହୁଳ ଉଲ୍ଲେଖ ଦେଖାଯାଏ[249] । 'ନୈଷଧ'ରେ ବର୍ଣ୍ଣିତ ଅଛି ଯେ ଶ୍ରୀକୃଷ୍ଣ ସୁଦର୍ଶନ ଚକ୍ରରେ ବିଶ୍ୱଜୟ କରିଥିବା ଦେଖି କାମଦେବ ମଧ୍ୟ ଦୁର୍ଲଭ ଦର୍ଶନଯୋଗ୍ୟ ଦମୟନ୍ତୀଙ୍କ ନିତମ୍ବ ଚକ୍ରରେ ସଂସାର ଜୟ କରିବାର ଅଭିଳାଷ ପୋଷଣ କରିଅଛନ୍ତି[250] ।

ନାୟିକା ନିତମ୍ବର ବର୍ଣ୍ଣନା ପ୍ରସଂଗରେ ମଦନ ସିଂହାସନ[251], ତୁମ୍ବୀ[252], କରୀକୁମ୍ଭ[253], ରଣ ବିଜିତ କନ୍ଦର୍ପର ବିଶ୍ରାମ ପ୍ରାଙ୍ଗଣ[254], ମନ୍ମଥ ରଥ ଚକ୍ର[255], ପୃଥ୍ୱୀ ଚକ୍ରବର୍ତ୍ତୀ[256] ଆଦିର ପରିକଳ୍ପନା, ଓଡ଼ିଆ ରୀତି କାବ୍ୟରେ ପରିଦୃଷ୍ଟ । କାଳିଦାସଙ୍କ ନିତମ୍ବ-ବର୍ଣ୍ଣନାରେ ସ୍ୱାଭାବିକତା ଓ

ସୌନ୍ଦର୍ଯ୍ୟଦୃଷ୍ଟିର ଯେଉଁ ସମନ୍ୱୟ ପରିଲକ୍ଷିତ ହୁଏ, ଓଡ଼ିଆ କାବ୍ୟରେ ତାହା ଦୁର୍ଲଭ । କିନ୍ତୁ ଶୃଙ୍ଗାରିକତାର ମାତ୍ରାଧିକ୍ୟ ଏ କ୍ଷେତ୍ରରେ ସହଜ ଅନୁମେୟ ।

ଊରୁ–'କୁମାର ସମ୍ଭବ'ରେ ପାର୍ବତୀଙ୍କ ଊରୁଦ୍ୱୟର ରସସ୍ନିଗ୍ଧ ମନୋଜ୍ଞ ପରିକଳ୍ପନା ଏକାନ୍ତ ଉଲ୍ଲେଖଯୋଗ୍ୟ । ସମଗ୍ର ଶରୀର ପାଇଁ ବିଧାତା ଯେଉଁ ପରିମାଣରେ ଲାବଣ୍ୟ ସଂଗ୍ରହ କରିଥିଲେ ତାହା କେବଳ ନାୟିକାର ବୃତ୍ତାକାର ଓ ଅନତିଦୀର୍ଘ ଊରୁ ନିର୍ମାଣରେ ବ୍ୟୟିତ ହେଲା । ସୁତରାଂ ଅବଶିଷ୍ଟ ଅଙ୍ଗପାଇଁ ତାଙ୍କୁ ଅଧିକ ଶ୍ରମ ସ୍ୱୀକାର ପୂର୍ବକ ଲାବଣ୍ୟ ଉତ୍ପାଦନ କରିବାକୁ ପଡ଼ିଥିଲା[257] । 'ନୈଷଧ'ର ନାୟିକା–ଊରୁରେ ରମ୍ଭା, ହସ୍ତୀଶୁଣ୍ଡ, ମହାଭାରତର ଗୌରବ ଆରୋପିତ[258] । ଶେଷୋକ୍ତ ପରିକଳ୍ପନା ଶବ୍ଦାଡ଼ମ୍ବର ଭିତ୍ତିକ ।

ଉପେନ୍ଦ୍ରଙ୍କ 'ରସଲେଖା'ରେ ନାୟିକା-ଊରୁ ଶୋଭାର ଉପମାମୟ ବିସ୍ତୃତ ବର୍ଣ୍ଣନା ପ୍ରଦତ୍ତ । ତାଙ୍କ ଦୃଷ୍ଟିରେ ଏହା ହେଉଛି–ଓଲଟ କନକ କଦଳୀ, ଯୁବାଚିତ୍ତ ବନ୍ଧା ଅର୍ଗଳି, ହରିତାଳ ନଦୀ ପୁଳିନ, ସ୍ୱର୍ଗ ଆରୋହଣ ସୋପାନ । ହିମକର କର, ମଦନ ସାଧନ କୁନ୍ଦୁରୁ, ବିରହ ସାଗର ତରଣୀ, କୁଙ୍କୁମ ଲେପିତ ଦନ୍ତୀ ଦନ୍ତ ସ୍ତମ୍ଭ, ବିଶ୍ୱକେତୁ ସିଂହାସନ [259] । ଅଧିକାଂଶ କାବ୍ୟରେ ରମ୍ଭାର ବିବିଧ ପ୍ରୟୋଗ ପରିଲକ୍ଷିତ; ଯଥା–ରମ୍ଭା, ଓଲଟରମ୍ଭା, ଓଲଟ କନକ ରମ୍ଭା ଇତ୍ୟାଦି [260] । ଏତଦ୍‌ବ୍ୟତୀତ ମତ୍ତ ବାରଣ [261], ସୁବର୍ଣ୍ଣବେଦୀ [262], ଯୁବାଜନ ଯୂପ [263], କନକ କରଭ [264], ମୃଗାଙ୍କ ମଣ୍ଡପ [265], କନ୍ଦର୍ପ ଦୋଳି ଦ୍ରୋଣଖମ୍ବ [266], କରୀକର[267], ଅତନୁ ବୋହିତ[268], ମନ୍ଦର ଗିରି [269]ଇତ୍ୟାଦିର ଉଲ୍ଲେଖ ବିଭିନ୍ନ ସ୍ଥଳରେ ଦେଖି-ବାକୁ ମିଳେ । କେତେକ କାବ୍ୟରେ ଜଘନ ଓ ଜାନୁର ସୌନ୍ଦର୍ଯ୍ୟ ପୃଥକ୍ ଦର୍ଶାଇବାର ଚେଷ୍ଟା କରଯାଇଛି[270] । କିନ୍ତୁ ନାୟିକା-ଊରୁର ସ୍ଥୂଳତା, କୋମଳତା ଓ ରୂପ ସ୍ନିଗ୍ଧତାର ସାମଗ୍ରିକ ଐଶ୍ୱର୍ଯ୍ୟ କେଉଁଠାରେ ପ୍ରତିଷ୍ଠିତ ହୋଇଥିବାର ମନେହୁଏ ନାହିଁ । ବରଂ ଗତାନୁଗତିକତା ଓ କେତେକ ସ୍ଥଳରେ ଉଗ୍ର ଶୃଙ୍ଗାରିକତା ଏହାର ଭିତ୍ତି ରୂପେ ଗୃହୀତ ।

ଚରଣ-ଦମୟନ୍ତୀଙ୍କ ଚରଣ ଦ୍ୱୟରେ ନବ ପଲ୍ଲବ ଓ ସିନ୍ଦୂର ପରାଗ ରାଗର ମ୍ଳାନ ଗୌରବ ନୈଷଧକାର ଘୋଷଣା କରିଛନ୍ତି [271] । କବି କଳ୍ପନାର ରମଣୀୟତା ଏଠାରେ ତରଙ୍ଗାୟିତ ।

ଓଡ଼ିଆ କାବ୍ୟ-ନାୟିକାର ଚରଣ ଶୋଭା ବର୍ଣ୍ଣନାରେ ସ୍ଥଳ କମଳ [272], କିଶଳୟ [273], ରକ୍ତପଦ୍ମ [274], ତରୁଣ ଅରୁଣ [275], ତାମରସ [276] ଆଦିର ପରିକଳ୍ପନା ଦୃଷ୍ଟି ଗୋଚର ହୁଏ । ନାୟିକା ପ୍ରେମ-ଲୋଚନାର ଚରଣ ସଂଗ ଲାଭ କରିବା ପାଇଁ ମଦନ ହିମାଳୟକୁ ଯାଇ ଭସ୍ମ ହେବା ବିଷୟ କବି ବିଷ୍ଣୁ ଦାସ ଉଲ୍ଲେଖ କରିଛନ୍ତି [277] । ନବ ପୁଷ୍ପବତୀ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ପଦ ପାତରେ ବସୁଧା ସ୍ଥଳ କମଳବତୀ ହେବା ଏବଂ ଚୁମ୍ବନାଭିଳାଷୀ ଭ୍ରମରକୁଳ ଏକତ୍ରିତ ହେବା ବର୍ଣ୍ଣନା ଅଧିକ ମନୋରମ [278] । ନାୟିକା ଚରଣ ସୌନ୍ଦର୍ଯ୍ୟର ଅନନ୍ୟ ମହିମା ଏଥିରେ ଉଦ୍‌ଘୋଷିତ ।

ଅନ୍ୟ କେତେକ ସ୍ଥଳରେ ଚରଣାଙ୍ଗୁଳିକୁ ଅଶୋକ କଳିକା ସହ ତୁଳନା କରାଯାଇଛି [279] ଓ ଚରଣନଖରେ ଦିବ୍ୟ ମଣିଗଣ [280], ଦର୍ପଣ [281], ଚନ୍ଦ୍ରକଳା [282], ଆଦିର ଶୋଭା ଆରୋପିତ ହୋଇଅଛି ।

ସ୍ମରପୁର-ନାୟିକାର ସ୍ମରପୁର ବା ଗୋପନାଙ୍ଗ ବର୍ଣ୍ଣନା ନୀତି ସମର୍ଥିତ ନହେଲେ ହେଁ କାବ୍ୟ ପରଂପରାରେ ନିଗୃହୀତ ହୋଇନାହିଁ । ଶ୍ରୀହର୍ଷ ତାଙ୍କର ନୈଷଧରେ ଏଥିପାଇଁ ମାର୍ଗ ପ୍ରସ୍ତୁତ କରିଯାଇଛନ୍ତି । ଦମୟନ୍ତୀଙ୍କ କୌଣସି ଅଙ୍ଗଠାରୁ ପରାଜୟ ଭୟରେ ଅଶ୍ୱତ୍‌ଥ ପତ୍ର ପ୍ରକଂପିତ ହେବା ବିଷୟ ସେଥିରେ ଉଲ୍ଲିଖିତ [283] ।

'ପ୍ରେମଲୋଚନା'ରେ ଏହି ଅଙ୍ଗ ଊର୍ଦ୍ଧ୍ୱମୁଖ ହେମପାତ୍ର, ଜଘନ ମନ୍ଦରଗିରି କନ୍ଦରା ରୂପେ ପରିକଳ୍ପିତ [284] । ରଘୁନାଥ ହରିଚନ୍ଦନ ତାଙ୍କର 'ଲୀଳାବତୀ'ରେ ନାୟିକାର ପୁଷ୍ପୋଦ୍‌ଗମ ବର୍ଣ୍ଣନାକ୍ରମେ ସ୍ମରପୁରର

ଚିତ୍ର ପ୍ରଦାନ କରିବାକୁ ଯାଇ ବହୁଳ ଉପମା ପ୍ରୟୋଗ କରିଛନ୍ତି; ଯଥା– ତମ୍ବାପାତ୍ରୀ, କନକାଚଳ କନ୍ଦର, ହେମପଦ୍ମ, କନ୍ଦର୍ପ, କନକ ମୁକୁର, ନାଗବଲ୍ଲୀଦଳ, ବୃକ୍ଷଗଜ ପଲ୍ଲବ, କାମହେମସିନ୍ଧୁ ଇତ୍ୟାଦି[285]। ଉପେନ୍ଦ୍ରଙ୍କ 'ଲବଣ୍ୟବତୀ'ର ପୁଷ୍ପୋଦ୍‌ଗମ ବର୍ଣ୍ଣନା 'ଲୀଳାବତୀ'କୁ ଅନୁସରଣ କରିଛି । କବି ଏ ପ୍ରସଙ୍ଗରେ କାମ ବଣିକର ହେମପଦକ, ପାତ୍ରୀ, ଦିବ୍ୟ କମ୍ବୁର ଉଲ୍ଲେଖ କରିଛନ୍ତି[286] । 'ସୁବର୍ଣ୍ଣରେଖା'ରେ ସେହିପରି ତମ୍ବୁଳ ଓ ନୀପପୁଷ୍ପର ଉପମା ପ୍ରଦତ୍ତ[287] । ବ୍ରଜନାଥଙ୍କ 'କେଳି କଳାନିଧି'ରେ ଏହା ହୋମକୁଣ୍ଡ ଓ ମାର ବଣିଆର କୁହି ରୂପେ ବର୍ଣ୍ଣିତ[288]। କବିସୂର୍ଯ୍ୟଙ୍କ 'ଚନ୍ଦ୍ରକଳା'ରେ ଏଥି ନିମିତ୍ତ ସୁବର୍ଣ୍ଣପାତ୍ର, ହେମ ପ୍ରାଙ୍ଗଣ, ହେମ ତ୍ରିକୋଣ ଯନ୍ତ୍ର,ପରିଣତତର ପକ୍ୱ ତାମ୍ବୁଳ ଓ ଚଳଦଳର ପରିକଳ୍ପନା କରାଯାଇଛି[289] । ବହୁ କାବ୍ୟରେ ଏହି ଅଂଗର ନିଗଢ଼ମୟ ବର୍ଣ୍ଣନା (ମାର ମନ୍ଦିର, କାମ ସଦନ ଇତ୍ୟାଦି) ମଧ୍ୟ ପରିଲକ୍ଷିତ । କିନ୍ତୁ ମାନି ନେବାକୁ ହେବ ଯେ ଓଡ଼ିଆ କବି ରୂପ ଓ ଦେହ ଲୋଲୁପ ଦୃଷ୍ଟି ନାୟିକା ଗୋପନ ଅଙ୍ଗର ଶୋଭା କଳନା କରିବାକୁ ଯାଇ ପ୍ରଗଲ୍‌ଭତା ଅଶ୍ଳୀଳତା ଓ ସଂକୋଚହୀନତା ନିକଟରେ ଆତ୍ମ ସମର୍ପଣ କରିଅଛି ।

ଦେହକାନ୍ତି–ନାୟିକା ଶୁଭଦ୍ରାର ଦେହ କାନ୍ତି ପ୍ରସଙ୍ଗରେ ସୁବର୍ଣ୍ଣ ଚମ୍ପା, ଶମ୍ପା, କେତକୀ, ହଳଦୀ, ଷଣ, ଗୌରୀ, ହରିତାଳ ଆଦି ଉପମା ସମୂହ ଉଲ୍ଲିଖିତ[290] । ଏଥି ମଧ୍ୟରୁ ଏକ ବା ଏକାଧିକ ଉପମାର ପ୍ରୟୋଗ ପ୍ରାୟ ସକଳ କାବ୍ୟରେ ପରିଦୃଷ୍ଟ ।

## (ଖ) ଗୁଣ ସୌନ୍ଦର୍ଯ୍ୟ

ନାୟିକାର ଗୁଣ ସୌନ୍ଦର୍ଯ୍ୟକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ; ଯଥା–ଅଯତ୍ନଜ ଓ ସଯତ୍ନଜ ।

ଅଯତ୍ନଜ–ନାୟିକାର ସ୍ୱର, ବଚନ, ଗତି ଆଦି ପ୍ରକୃତିଗତ ତଥା ଆତ୍ମୀୟତା ଓ ପ୍ରୀତିମୟତା ଆଦି ଚରିତ୍ରଗତ ବୈଶିଷ୍ଟ୍ୟ ଅଯତ୍ନଜ ଗୁଣର ଅନ୍ତର୍ଗତ । ଓଡ଼ିଆ କାବ୍ୟ-ନାୟିକାଠାରେ ଏ ସକଳ ବୈଶିଷ୍ଟ୍ୟ ପାରମ୍ପରିକ

ରୀତିରେ ଆରୋପିତ । ସ୍ୱର ଓ ବଚନ ସହ କୋକିଳ ବାଣୀର ତୁଳନା ସର୍ବତ୍ର ପରିଲକ୍ଷିତ[291] । ସ୍ଥଳ ବିଶେଷରେ ବୀଣା ଓ ପଦ୍ମାଶାରୀର ଉଲ୍ଲେଖ ମଧ୍ୟ ଦେଖିବାକୁ ମିଳେ[292]। ଗତି ମନ୍ଥରତାରେ ଗଜ ଓ ହଂସର ଗୌରବ ସକଳ ନାୟିକାର ଏକାନ୍ତ ପ୍ରାପ୍ୟ । ନିଃଶ୍ୱାସରେ ସୁରଭି ପବନ, ପଦ୍ମଗନ୍ଧ, ଚନ୍ଦନବନ–ମନ୍ଦ ବାତ[293] ଏବଂ ମୁଖରେ ନବ ମଲ୍ଲିକାର ସୁଗନ୍ଧ, କର୍ପୂର ସୁବାସର[294] ସୌଭାଗ୍ୟ ଘେନି ସେମାନଙ୍କ ମଧ୍ୟରୁ ଅନେକ ଆମ ନିକଟରେ ସୁପରିଚିତ । କାବ୍ୟ–ନାୟିକାମାନଙ୍କ ସର୍ବବିଧ ଗୁଣାବଳୀର ପରିଚୟ ଦେବା ଏଠାରେ ସମ୍ଭବ ନୁହେଁ । ଉଦାହରଣ ସ୍ୱରୂପ କେଇ ଜଣଙ୍କୁ ମାତ୍ର ଏଠାରେ ଉଲ୍ଲେଖ କରଯାଇପାରେ; ଯଥା–ଅର୍ଜୁନ ଦାସଙ୍କ କାବ୍ୟନାୟିକା କଳ୍ପଲତା ଜଗତ ମୋହିନୀ, ସର୍ବସୁଲକ୍ଷଣୀ ଓ ସକଳ ଗୁଣନିଧି [295] । ଉପେନ୍ଦ୍ରଙ୍କ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ର ନାୟିକା ହାବ, ଭବ ଓ ଲୀଳା ବିଳାସମୟୀ [296] । ଅଭିମନ୍ୟୁଙ୍କ 'ବିଦଗ୍ଧ ଚିନ୍ତାମଣି'ର ଶ୍ରୀରାଧା ସ୍ୱଜନ ବତ୍ସଳା, ଗମ୍ଭୀର ଓ ମୃଦୁଭାଷିଣୀ [297] । ଲୋକନାଥଙ୍କ 'ଚିତ୍ରକଳା'ର ନାୟିକା କାମ କ୍ରୀଡ଼ା ଚଞ୍ଚଳା, ସୁଲକ୍ଷଣା, ରସବତୀ ଓ ସୁନିର୍ମଳା [298] । ଏହିପରି ଭବରେ ବିଚାର କଲେ ଜଣାଯାଏ ଯେ ରୀତି-ଯୁଗର ପ୍ରତ୍ୟେକ କବି ନିଜ ନିଜର ଶକ୍ତି ଓ ସାମର୍ଥ୍ୟର ସୀମା ମଧ୍ୟରେ ତା'ର କାବ୍ୟ-ନାୟିକାକୁ ସର୍ବଗୁଣାଳଂକୃତା କରିବାକୁ ଆପ୍ରାଣ ଉଦ୍ୟମ କରିଯାଇଛନ୍ତି ।

ସଯତ୍ନଜ–ନାୟିକାର ନୃତ୍ୟ, ନାଟକ, ସଂଗୀତ, ସାହିତ୍ୟ ତଥା କାମଶାସ୍ତ୍ରାଦିରେ କୁଶଳତା ସଯତ୍ନଜ ଗୁଣର ଅନ୍ତର୍ଭୁକ୍ତ । ଓଡ଼ିଆ କାବ୍ୟର ପ୍ରାୟ ସକଳ ନାୟିକା ଚରିତ୍ରରେ ଏହି ସବୁ ଗୁଣର ଉଲ୍ଲେଖ ଦେଖାଯାଏ[299]। ଅଧିକାଂଶ ସ୍ଥଳରେ ସକଳ ବିଦ୍ୟା ସେମାନଙ୍କର ଅନାୟାସ ବା ସ୍ୱଳ୍ପାୟାସଲବ୍ଧ । ନାୟିକାର ରତି ଶାସ୍ତ୍ରପାଠ ଉପରେ କବିଗଣ ବିଶେଷ ଗୁରୁତ୍ୱ ଆରୋପ କରିଥିବାର ମନେହୁଏ[300] । ନବ ଯୌବନବତୀର ରତି ଲାଳସା ଓ ସଂଭୋଗବତୀର କନ୍ଦର୍ପ-କଳା କୁଶଳତା ସମଗ୍ର ରୀତି କାବ୍ୟର ଏକ ଉଲ୍ଲେଖଯୋଗ୍ୟ ବିଭବ [301] । ନାୟିକାର ବଚନ ଚାତୁରୀ, ପଶା-ଖେଳରେ ପାରଦର୍ଶିତାଦି ବହୁ ସ୍ଥଳରେ ସୂଚିତ । କିନ୍ତୁ ପ୍ରତାପ ରାୟଙ୍କ

କାବ୍ୟ-ନାୟିକା ଶଶିସେଣାର ଅଶ୍ୱାରୋହଣ ପଟୁତା, ସତ୍ୟରକ୍ଷା, ଶିକାର କୌଶଳ ଆଦି ଗୁଣାବଳୀ ରୀତି କାବ୍ୟ ପରଂପରାରେ ଏକ ଆଶ୍ଚର୍ଯ୍ୟ ବ୍ୟତିକ୍ରମ ।

## (ଗ) ଭୂଷଣ ସୌନ୍ଦର୍ଯ୍ୟ

ଭାରତୀୟ ସୌନ୍ଦର୍ଯ୍ୟ ଭାବନାରେ ନିରଳଂକୃତ ରୂପର ଗୌରବ ଉଦ୍‌ଘୋଷିତ । କାଳିଦାସ ଦୁଷ୍ୟନ୍ତଙ୍କ ମୁଖରେ ବଲ୍‌କଳିନୀ ତନ୍ୱୀ ଶକୁନ୍ତଳାଙ୍କ ରୂପରାଶିର ପରିଚୟ ଦେବାକୁ ଯାଇ କହିଛନ୍ତି–'କିମିବ ହି ମଧୁରଣାଂ ମଣ୍ଡନଂନାକୃତୀନାମ୍' 302 । କିନ୍ତୁ ଭୂଷଣ କେବେହେଲେ ପରିତ୍ୟାଜ୍ୟ ନୁହେଁ । ତେଣୁ 'କୁମାରସମ୍ଭବ'ରେ ନାୟିକା ଓ ଭୂଷଣ ମଧ୍ୟରେ ପରସ୍ପର ଭୂଷଣ–ଭୂଷ୍ୟ ଭାବର ପରିକଳ୍ପନା କରାଯାଇଛି 303 । ଉପେନ୍ଦ୍ର ଭଂଜ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ରେ ସେଥିପାଇଁ କହିଛନ୍ତି–'ତଥାପି ଭୂଷଣ ନୁହେଁ ଦୂଷଣ' 304 ।

ନାୟିକାର ଭୂଷଣ ସୌନ୍ଦର୍ଯ୍ୟକୁ ତିନି ଭାଗରେ ବିଭକ୍ତ କରାଯାଇପାରେ; ଯଥା–ପ୍ରସାଧନ ସୌନ୍ଦର୍ଯ୍ୟ, ପରିଧାନ ସୌନ୍ଦର୍ଯ୍ୟ, ଅଳଂକାର ସୌନ୍ଦର୍ଯ୍ୟ ।

ପ୍ରସାଧନ–ନାୟିକାର ପ୍ରସାଧନ ଚିତ୍ର ବହୁ କାବ୍ୟରେ ପ୍ରଦତ୍ତ । କେଶ ବିନ୍ୟାସ ଅର୍ଥାତ୍ ବେଣୀ ବା ଜୂଡ଼ା ରଚନା ସହ ସୀମନ୍ତରେ ସିନ୍ଦୂରଗାର, ନୟନରେ କଜ୍ଜ୍ୱଳ, ଲଲାଟରେ ମୃଗମଦ ତିଳକ,ଗଣ୍ଡରେ ମକରୀ, ଚିବୁକରେ ଭ୍ରମରୀ, ସ୍ତନରେ କସ୍ତୁରୀ ଚିତ୍ର, ପାଦରେ ଅଳତା ଆଦି ପରିପାଟି ବିଧାନ କାବ୍ୟରୀତି ସମର୍ଥିତ । ଲାବଣ୍ୟବତୀର ଜୂଡ଼ା ବନ୍ଧନ ଦୃଶ୍ୟରେ ଉପେନ୍ଦ୍ରଙ୍କ ଶୃଙ୍ଗାର ସାପେକ୍ଷ ରୂପଦୃଷ୍ଟି ଅତ୍ୟନ୍ତ ମନୋରମ 305 ।

ପରିଧାନ–ନାୟିକାର ବେଶ ପରିଚର୍ଯ୍ୟା ପ୍ରସଙ୍ଗରେ ଶାଢ଼ୀ, କାଞ୍ଚୁଲି ଓ ଉତ୍ତରୀର ଉଲ୍ଲେଖ ଦେଖିବାକୁ ମିଳେ । ଦୂର୍ବାଦଳ-ନୀଳଚେଲ ଓ ସ୍ୱର୍ଣ୍ଣ ଜରୀଯୁକ୍ତ ନୀଳଚେଳି ପରିହିତା ସୀତାଙ୍କର ସ୍ୱୟଂବର-ବେଶ ବିଧାନ; ଅର୍ଜ୍ଜୁନଙ୍କୁ ଅର୍ଘ୍ୟଦାନ କାଳୀନ ସିନ୍ଦୂରୀ ଶାଢ଼ୀ, ନୀଳ ଚୋଳ ଓ ସୁବର୍ଣ୍ଣ-ଜରୀଯୁକ୍ତ ଉତ୍ତରୀ ପରିହିତା ସୁଭଦ୍ରାଙ୍କ ଶୋଭା; ଫୁଲ ଧଡ଼ିଯୁକ୍ତ ନୀଳଶାଢ଼ୀ

ଓ ଗ୍ରେଲ ପରିହିତା ନବ ଯୌବନବତୀ ଲବଣ୍ୟବତୀର ଭୂଷଣ ଗୌରବ ଏବଂ 'ବିଦଗ୍ଧ ଚିନ୍ତାମଣି'ର ସ୍ୱପ୍ନ ଦୃଶ୍ୟ ଅନ୍ତର୍ଗତ ଉତ୍କଳ ବେଶ ବସନ ଓ ନୀଳଗ୍ରେଲ ପରିହିତା ଶ୍ରୀରାଧାଙ୍କ ସୌନ୍ଦର୍ଯ୍ୟ ବର୍ଣ୍ଣନାରେ କବିଗଣ ଯଥେଷ୍ଟ କୃତିତ୍ୱ ପ୍ରଦର୍ଶନ କରିଯାଇଛନ୍ତି[306] । ଉତ୍କଳୀୟ ସଂସ୍କୃତିର ମର୍ଯ୍ୟାଦା ଓ ବୟନ ଶିଳ୍ପର ପରାକାଷ୍ଠା ଏସବୁ କ୍ଷେତ୍ରରେ ସୁସ୍ପଷ୍ଟ ରୂପେ ପ୍ରତିଫଳିତ । ନାୟିକା କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ପଶ୍ଚିମା ବେଶ, ଚନ୍ଦ୍ରକଳା, ଶ୍ରୀରାଧା ଓ ଲବଣ୍ୟବତୀର ତୈଲିଙ୍ଗ ବେଶ ମଧ୍ୟଯୁଗୀୟ ପରିଧାନ ବିଳାସର ସୂଚନା ବହନ କରେ[307] ।

ଅଳଂକାର–ଓଡ଼ିଆ ରୀତି କାବ୍ୟରେ ନାୟିକାର ସୌନ୍ଦର୍ଯ୍ୟ ବିଧାୟିନୀ ଯେଉଁ ସମସ୍ତ ଅଳଂକାର ମଣ୍ଡନର ବିଧି ବିଧାନ ଦେଖାଯାଏ, ସେଗୁଡ଼ିକ ମଧ୍ୟରୁ ଏଇ କେତେଗୋଟି ବହୁଳ ଭାବେ ଉଲ୍ଲିଖିତ; ଯଥା– ନାସାମୋତି, ମାଣିକ୍ୟଗୁଣା, ମାଣିକ୍ୟ ମଥାମଣି, ହୀର ପିହାଣିଆ, ମୋତି ସୀମନ୍ତି, ରତ୍ନ ମୁଦ୍ରିକା, ଝିଲିମିଲି ମାଳି, କିଆପତ୍ରି ମୋତିଜାଲି, ଝରକାଠି, ଚନ୍ଦ୍ରଝୁମା, ପ୍ରବାଳମାଳା, ସୁବର୍ଣ୍ଣହାର, ହୀରବତଂସ, ଉତଂସ, ତାଟଙ୍କ, ବାହୁଟି, କଟକ (କଙ୍କଣ), ତାଡ଼କ, ମର୍କତ ଚୂଡ଼ି, ନବରତ୍ନ ଚୂଡ଼ି, ମୋତି ଗ୍ରପ ସରି, ହଂସକ, ଝୁଣ୍ଟିଆ, ମଞ୍ଜୀର, କିଂକିଣି, ନୂପୁର ଇତ୍ୟାଦି [308] । ଅଳଂକାର ମଣ୍ଡିତ ନାୟିକାର ଶୋଭା କିପରି ଶୃଙ୍ଗାର ଭାବନାକୁ ଉଦ୍ଦୀପିତ କରିପାରେ ତା'ର ସୂଚନା ବହୁ ସ୍ଥଳରେ ପ୍ରଦତ୍ତ[309] ।

## (କ) ସାମଗ୍ରିକ

କାଳିଦାସ ପାର୍ବତୀଙ୍କ ସୌନ୍ଦର୍ଯ୍ୟର ସାମଗ୍ରିକ ମୂଲ୍ୟାଙ୍କନ କରିବାକୁ ଯାଇ କହିଛନ୍ତି– 'ପର୍ଯ୍ୟାପ୍ତ ପୁଷ୍ପସ୍ତବକାବନମ୍ରା ସଂଗ୍ରିଣୀ ପଲ୍ଲବିନୀ ଲତେବ'[310] । ଏଥିରେ ନବ ଯୌବନାଙ୍ଗୀ ନାରୀର କୋମଳତା, ନମ୍ରତା ଓ ସ୍ନିଗ୍ଧତା ଅପୂର୍ବ କବିତ୍ୱମୟ ଭଙ୍ଗୀରେ ପ୍ରକାଶିତ । 'ଶୃଙ୍ଗାର ତିଳକ'ରେ କୁହାଯାଇଛି–ନାରୀ ହେଉଛି ବିଧି ନିର୍ମିତ ଏକ ରମ୍ୟ ସରୋବର[311] । 'ନୈଷଧ'ରେ ଦମୟନ୍ତୀ କନ୍ଦର୍ପ ଦେବତାଙ୍କ ପୂଜା ନିମନ୍ତେ ଏକ ସୁମନମାଳା

ରୂପେ ପରିକଳ୍ପିତ । ତାଙ୍କର ମୁଖ, ହସ୍ତ, ପାଦ ଓ ନେତ୍ର କମଳପୁଷ୍ପତୁଲ୍ୟ ଏବଂ ଅପର ଅଙ୍ଗ ସମୂହ ଚମ୍ପକ ପୁଷ୍ପତୁଲ୍ୟ[312] । ଅନ୍ୟତ୍ର ତାଙ୍କୁ କୁହାଯାଇଛି– ମନ୍ମଥରଥ[313] ।

ସଂସ୍କୃତ ସାହିତ୍ୟର ନାରୀ ସୌନ୍ଦର୍ଯ୍ୟ ନିରୂପଣ ପରଂପରା ଦ୍ୱାରା ଓଡ଼ିଆ ରୀତି କାବ୍ୟ ବହୁଳ ଭାବେ ପ୍ରଭାବିତ । ଉପେନ୍ଦ୍ରଭଞ୍ଜ ଗୋଟିଏ ସ୍ଥଳରେ ନାୟିକା ଲାବଣ୍ୟବତୀଙ୍କୁ ଅପୂର୍ବ ପୁଷ୍ପଲତା ରୂପେ ପରିକଳ୍ପନା କରିଛନ୍ତି । ଏହି ଲତା ଷୋଡ଼ଶବିଧ ଫୁଲ ଧାରଣ କରି ଶୋଭମୟୀ [314] । 'ସୁଭଦ୍ରା ପରିଣୟ'ରେ ନାୟିକାକୁ ସପ୍ତଜାତି ଫୁଲ, ଫଳ, ବିହଙ୍ଗମଣ୍ଡିତା ମହୀଜାତ ହେମ ମଞ୍ଜରୀ ବୋଲି କୁହାଯାଇଛି[315] । 'ଲାବଣ୍ୟବତୀ' ଓ 'ରସକଲ୍ଲୋଳ'ରେ ନାରୀ ଓ ସରୋବରର ଅଭେଦ ପରିକଳ୍ପନା ସଂସ୍କୃତାନୁସାରୀ[316] । ଏହିପରି ଭାବେ ନାୟିକା ସୌନ୍ଦର୍ଯ୍ୟ ରୂପାୟନରେ କବିର ପ୍ରଗାଢ଼ ଶ୍ରମ ଓ ଅଶେଷ ମମତା ସର୍ବତ୍ର ସ୍ୱାକ୍ଷରିତ । ଅନେକ କ୍ଷେତ୍ରରେ କଳ୍ପନାର ବାସ୍ତବ ଓ ଅବାସ୍ତବ ଉତ୍କର୍ଷ ଓ ଅପକର୍ଷ ଦିଗ ପ୍ରତି କୌଣସି ଦୃଷ୍ଟି ଦିଆଯାଇନାହିଁ । କେବଳ ମଧ୍ୟଯୁଗୀୟ ଶୃଙ୍ଗାରସକ୍ତି ଓ ଉପମା-ଆଡ଼ମ୍ବରର ଅଭିନବ ବିନ୍ୟାସ ଏଥିରେ ପରିସ୍ଫୁଟ । ଏଠାରେ ସକଳ କବିଙ୍କ ନାୟିକା-ପରିକଳ୍ପନା ବୈଚିତ୍ର୍ୟର ଉଲ୍ଲେଖ ସମ୍ଭବପର ହେଉ ନଥିବାରୁ ସେସବୁର ସଂକ୍ଷିପ୍ତ ସୂଚନାମାତ୍ର ପ୍ରଦତ୍ତ; ଯଥା– ତୀର୍ଥ [317] , ଶିବ ଓ ବିଷ୍ଣୁ [318], ସୁଦର୍ଶନ [319] , କୁସୁମବ୍ରତତୀ [320], ଋତୁ ସକଳ [321] , କୁରୁକ୍ଷେତ୍ର [322], ଅମରପୁର [323] , ଚିତ୍ରରଥ [324] , ନାଗଲୋକ [325] , ଶୁକ୍ଳରଜନୀ [326] , ରମାଉମା [327] , ଜାନକୀ ଓ ଶଚୀ [328] , ରୋହିଣୀ, ଛାୟାଦେବୀ ଓ ସାବିତ୍ରୀ [329], ମହେଶ ମହିଷୀ [330], ଲତା ଓ ପର୍ବତ[331], ଦେବାଦେବୀ [332] , ଅଷ୍ଟ ଐଶ୍ୱର୍ଯ୍ୟ [333] , କାମ-ସମୁଦ୍ର ନୌକା [334], ହରିଲୀଳା [335], ଲାବଣ୍ୟସିନ୍ଧୁ[336], ହେମ କରିଣୀ [037] , ନର୍ତ୍ତକୀ [338], କନକଲତା [339], ମଦନରଥ [340], ସୁବର୍ଣ୍ଣରଥ [341], କାମଦିଗ୍‌ବିଜୟ ରଥ [342], ସୂର୍ଯ୍ୟରଥ [343], ବିଷ୍ଣୁରଥ [344], ଶିବରଥ[345], ସଜୀବ ସୁବର୍ଣ୍ଣ ପିତୁଳା [346], ପଦ୍ମଫୁଲ [347] , ଗଙ୍ଗା [348], ଲାବଣ୍ୟ ସରସୀ [349],

ସଂସାର ଚକ୍ରବର୍ତ୍ତୀ [350] , କାଣ୍ଡଗୃହ [351] , ନରେନ୍ଦ୍ର[352], ରନ୍ନମୟ[353], ସ୍ତମ୍ଭନ-ମୋହନ-ବଶ୍ୟ-ଉଚ୍ଚାଟନର ମୂର୍ତ୍ତିମନ୍ତ ବିଗ୍ରହ[354], ମୂର୍ତ୍ତିମନ୍ତ ପ୍ରୀତି[355], ଦେଶଭଗ [356] , ବସନ୍ତ ପୁଷ୍ପୋଦ୍ୟାନ [357] , ରନ୍ନାକର [3-8] ଇତ୍ୟାଦି । ଶୃଙ୍ଗାର ସଂବଂଧୀୟ ଉପମାଗୁଡ଼ିକରୁ ତତ୍କାଳୀନ ନାରୀ କେନ୍ଦ୍ରିକ ଭାବନାର ସ୍ୱରୂପ ସହଜରେ ଅନୁମେୟ ।

ନାୟିକା ସୌନ୍ଦର୍ଯ୍ୟ ନିରୂପଣର ଅନ୍ୟ ଏକ ଦିଗ ହେଉଛି ଅଧିକାଂଶ ସ୍ଥଳରେ ରୀତି କବିର ସ୍ୱର ସାମ୍ୟ । ପ୍ରଥମତଃ ନାରୀ ରୂପର କାଳାତୀତ ସୃଷ୍ଟି (ନାହିଁ ନଥିଲ ନୋହିବ)[359] । ଦ୍ୱିତୀୟତଃ କାବ୍ୟ-ନାୟିକାର 'ଚରଣ ଘଷା ପଥର' ରୂପେ ଉପମିତ ହେବା ପାଇଁ ସକଳ ଶ୍ରେଷ୍ଠ ସୁନ୍ଦରୀଙ୍କ ଅଯୋଗ୍ୟତା[360] । ତୃତୀୟତଃ 'ଗଣ୍ଠି ଶିରା' ବିବର୍ଜିତ' ନାୟିକା ଅଙ୍ଗ ଶୋଭାର ପରିକଳ୍ପନା [361] ।

## ଶେଷକଥା

ନାୟିକାର ଅଙ୍ଗ ଓ ପ୍ରତିଅଙ୍ଗ ବର୍ଣ୍ଣନାରେ କବିର ବିପୁଳ ଆଗ୍ରହ ଓ ଆନ୍ତରିକତା ଓଡ଼ିଆ ରୀତି କାବ୍ୟରେ ସର୍ବତ୍ର ପରିଲକ୍ଷିତ । ନାରୀ ଅଙ୍ଗରେ ଫୁଲ, ଫଳ, ପକ୍ଷୀ, ନଦୀ, ସାଗର, ପର୍ବତ, ମନ୍ଦିର, ନଗର, ତୀର୍ଥ ଆଦି ସଂସାରର ସକଳ ବୈଚିତ୍ର୍ୟ ସଂଧାନ କରିବା ଯେପରି ତା'ର ଏକମାତ୍ର ପରମ ପବିତ୍ର କର୍ତ୍ତବ୍ୟ । ଶବ୍ଦ କାରିଗରୀ ଓ ଅଳଂକାର କୌଶଳ ପ୍ରତି ସେ ଅଧିକ ଧ୍ୟାନଶୀଳ ହୋଇଥିବାରୁ ନାରୀ-ରୂପ ଗୌରବର ସ୍ୱାଭାବିକତା ବହୁ କ୍ଷେତ୍ରରେ ବ୍ୟାହତ ହେବା ବିଚିତ୍ର ନୁହେଁ ।

## ନାୟକ ସୌନ୍ଦର୍ଯ୍ୟ

ନାୟକ ସୌନ୍ଦର୍ଯ୍ୟ ନିରୂପଣ ପ୍ରସଂଗରେ ରୀତି କବି ସୀମିତ କୃତିତ୍ୱର ଅଧିକାରୀ । ସକଳ କାବ୍ୟରେ ଏହା ଯଥୋଚିତ ସ୍ଥାନ ଲାଭ କରିପାରି ନାହିଁ । ଯେଉଁ କେତେକ ସ୍ଥଳରେ ଏହାର ଅବତାରଣା କରଯାଇଛି ତାହା ପ୍ରାୟଶଃ ନାୟିକା-ବର୍ଣ୍ଣନା ବିଳାସ ସମଧର୍ମୀ । ପୌରୁଷର ଦୀପ୍ତିରେ ଅଳ୍ପ କେତୋଟି ସ୍ଥଳ ମାତ୍ର ଗୌରବାନ୍ୱିତ ।

## (କ) ରୂପ ସୌନ୍ଦର୍ଯ୍ୟ

ଓଡ଼ିଆ ରୀତି କାବ୍ୟରେ ପୁରୁଷ-ରୂପ ସୌନ୍ଦର୍ଯ୍ୟ ପରିକଳ୍ପନା ଏକ ଅନିର୍ଦ୍ଦିଷ୍ଟ ବ୍ୟାପାର । ଉପମା ପ୍ରୟୋଗ କ୍ଷେତ୍ରରେ କବିଗଣ ସାଧାରଣତଃ ପରଂପରାକୁ ସ୍ୱୀକୃତି ଜଣାଇଛନ୍ତି [362] । କେବଳ ବକ୍ଷ ଦେଶର ବର୍ଣ୍ଣନା ବେଳେ ପୌରୁଷର କିଞ୍ଚିତ୍ ସୂଚନା ପ୍ରଦତ୍ତ [363] । ଅନେକ ସ୍ଥଳରେ ରୀତି କବି ନାୟକ–ଅଙ୍ଗ ଶୋଭା ନିରୂପଣ କରିବାକୁ ଯାଇ ଶୃଙ୍ଗାରମୟ ପରିକଳ୍ପନାର ଆଶ୍ରୟ ଗ୍ରହଣ କରିଅଛି [364] ।

## (ଖ) ଗୁଣ ସୌନ୍ଦର୍ଯ୍ୟ

ଅଳଙ୍କାର ଶାସ୍ତ୍ରରେ କାବ୍ୟ ନାୟକର ଗୁଣାବଳୀ ନିର୍ଦ୍ଦିଷ୍ଟଭାବେ ଉଲ୍ଲିଖିତ । 'ସାହିତ୍ୟ ଦର୍ପଣ'ରେ ବର୍ଣ୍ଣିତ ଅଛି ଯେ ସେ ଜଣେ ଦେବ ପୁରୁଷ ଅଥବା ଧୀରୋଦାତ୍ତଗୁଣଯୁକ୍ତ କୁଳୀନ କ୍ଷତ୍ରିୟ ଅଥବା ସଦ୍‌ବଂଶଜ ରାଜା ହେବା ବାଞ୍ଛନୀୟ [365] ।

ଓଡ଼ିଆ କବିଗଣ ଉକ୍ତ ନିର୍ଦ୍ଦେଶ ପ୍ରତି ଶାସ୍ତ୍ରୀୟ ସମ୍ମାନ ପ୍ରଦର୍ଶନ କରିଥିଲେ ହେଁ ସେମାନଙ୍କ କାବ୍ୟ ନାୟକ ମୁଖ୍ୟତଃ ମଧ୍ୟ ଯୁଗୀୟ ପୌରୁଷ-ଧର୍ମରେ ଦୀକ୍ଷିତ । 'ରସ କଲ୍ଲୋଳ'ରେ ଶ୍ରୀକୃଷ୍ଣ କନ୍ଦର୍ପ-କଳା-ବିଶାରଦ ରୂପେ ଚିତ୍ରିତ [366] । 'ବିଦଗ୍ଧ ଚିନ୍ତାମଣି'ର ନାୟକ ଗର୍ବ ରହିତ, ଧୀର, ଧୀବନ୍ତ, ଶାନ୍ତ, ଗୋରୁ-ବିପ୍ର-ପ୍ରିୟ, ଧର୍ମୀ, ସତ୍ୟବନ୍ତ ଆଦି ସକଳ ପୁରୁଷୋଚିତ ଭୂଷଣରେ ଅଳଂକୃତ [367] । ଉପେନ୍ଦ୍ରଙ୍କ 'ଲାବଣ୍ୟବତୀ'ର ନାୟକ ଚନ୍ଦ୍ରଭାନୁ ତଥା 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ର ନାୟକ ପୁଷ୍ପକେତୁ ଉଭୟେ ବେଦ, ବେଦାନ୍ତ, ବ୍ୟାକରଣ, ଜ୍ୟୋତିଷ, ସଂଗୀତ, ଧନୁର୍ବିଦ୍ୟା, ଅଶ୍ୱାରୋହଣ ଆଦି ସକଳ ବିଦ୍ୟାରେ ସମର୍ଥ [368] । ସମସ୍ତ କାବ୍ୟିକ ଯୋଗ୍ୟତା ସତ୍ତ୍ୱେ ଶୌର୍ଯ୍ୟ ଓ ବୀର୍ଯ୍ୟର ଐଶ୍ୱର୍ଯ୍ୟମୟ ଦିଗଟି ଚରିତ୍ର ସମୂହରେ ଉପେକ୍ଷିତ । ଶୃଙ୍ଗାର ଚର୍ଯ୍ୟାହିଁ ସେମାନଙ୍କ ସ୍ୱପ୍ନ ଓ ସାଧନାର ମୂଳମନ୍ତ୍ର ରୂପେ ଗୃହୀତ ହୋଇଥିବାରୁ ଜୀବନର ସ୍ୱାଭାବିକ ବିକାଶ ସକଳ କ୍ଷେତ୍ରରେ ଖଣ୍ଡିତ ।

## (ଗ) ଭୂଷଣ ସୌନ୍ଦର୍ଯ୍ୟ

ନାୟକଗତ ଭୂଷଣ ସୌନ୍ଦର୍ଯ୍ୟର ବିପୁଳ ଚର୍ଚ୍ଚା ଓଡ଼ିଆ ରୀତି କାବ୍ୟରେ ପରିଦୃଷ୍ଟ ହୁଏ ନାହିଁ । 'ରମ ବିଭ'ରେ କୋଟି ବସନ, ବସନ୍ତ ପତନୀ ନେତ, ଛୁରୀ, ବୀରନେତ, କନକ କଦମ୍ବମାଳ ଭୂଷିତ ନାୟକର ଜଗମୋହନ ବେଶ ପ୍ରସଙ୍ଗ ଉଲ୍ଲିଖିତ [369] । 'ରସ କଲ୍ଲୋଳ'ରେ ଶ୍ରୀକୃଷ୍ଣଙ୍କ ମୟୂରଚୂଳ ମୁକୁଟ, କସ୍ତୁରୀ ତିଳକ, ଗୁଞ୍ଜରମାଳ,ମକର କୁଣ୍ଡଳ, ନାସାମୋତି, ପୀତ ବସନ, କିଂକିଣି, କନ୍ଧ ଉତରୀ, ବନମାଳା ଆଦିର ମନୋହର ବର୍ଣ୍ଣନା ପ୍ରଦତ୍ତ [370] । ବହୁ କାବ୍ୟରେ ଏହି ବିଷୟଟି ସଂପୂର୍ଣ୍ଣ ଉପେକ୍ଷିତ କିମ୍ବା ଅତ୍ୟନ୍ତ ସଂକ୍ଷିପ୍ତ ।

## (ଘ) ସାମଗ୍ରିକ

ସାମଗ୍ରିକ ସୌନ୍ଦର୍ଯ୍ୟ ପରିକଳ୍ପନାରେ ସାଧାରଣତଃ ନାୟକ ସହ କାମଦେବର ତୁଳନା ବହୁ ସ୍ଥାନରେ ଦେଖିବାକୁ ମିଳେ । କେତେକ କ୍ଷେତ୍ରରେ କାମଦେବର ନ୍ୟୂନତା ମଧ୍ୟ ଏ ପ୍ରସଂଗରେ ଉଲ୍ଲିଖିତ । 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ର ନାୟକ ଚନ୍ଦ୍ରଭାନୁଠାରେ ଦଶାବତାରର ଆରୋପ ଶବ୍ଦ-ବିଳାସ ଆଧାରିତ[371] । ସ୍ଥାନ ବିଶେଷରେ ଏପରି ବୈଚିତ୍ର୍ୟ ପରିଦୃଷ୍ଟ ହେଲେ ହେଁ ଏ କ୍ଷେତ୍ରରେ ନାୟିକା-ଚିତ୍ରଣର ପ୍ରଗଳ୍ଭ ପରଂପରା ପରିତ୍ୟକ୍ତ ।

## ଶେଷକଥା

ପୌରାଣିକ ଆଖ୍ୟାନ ବ୍ୟତୀତ ରୀତି କାବ୍ୟର ନାୟକଗଣ ପ୍ରାୟତଃ ରାଜପୁତ୍ର । ଏତଦ୍‌ଭିନ୍ନ ମନ୍ତ୍ରୀପୁତ୍ର (ଶଶିସେଣା), ଗ୍ରାମ୍ୟ ଯୁବକ (ଲାବଣ୍ୟବତୀ), ସାଧବପୁତ୍ର (ଅନୁରାଗବତୀ) ମଧ୍ୟ କାବ୍ୟ-ନାୟକର ଭୂମିକାରେ ଅବତୀର୍ଣ୍ଣ । ଆଳଂକାରିକ ନିର୍ଦ୍ଦେଶର ବ୍ୟତିକ୍ରମ ସତ୍ତ୍ୱେ କାବ୍ୟ ପରଂପରାକୁ ଏମାନେ ଯେ ଜୀବନେତନ୍ୟରେ ପୁଷ୍ଟ କରିଅଛନ୍ତି; ଏହା ନିଃସନ୍ଦେହ ।

## ଅନ୍ୟାନ୍ୟ-

ନାୟିକା ଭିନ୍ନ ନାରୀ-ସୌନ୍ଦର୍ଯ୍ୟର ଚିତ୍ର ରୀତି କାବ୍ୟରେ ଇତସ୍ତତଃ ବିଛୁରିତ । ମାଲୁଣୀ, ଗଣିକା, ନଟୀ, ଅସୁରୀ (ସୂର୍ପଣଖା), ରାକ୍ଷସୀ (ପୂତନା), ପୁରନାରୀ ପ୍ରଭୃତିଙ୍କ ରୂପ ଶୋଭା ବର୍ଣ୍ଣନା ସ୍ଥାନ ବିଶେଷରେ ରୁଚି ସମ୍ମତ ଓ ହୃଦୟଗ୍ରାହୀ [372] । କିନ୍ତୁ ନାୟିକା ଓ ଇତର ନାରୀମଧ୍ୟରେ ଥିବା ପାର୍ଥକ୍ୟ ପ୍ରତି କବିଗଣ ସମୁଚିତ ଦୃଷ୍ଟି ଦେଇପାରି-ନାହାନ୍ତି । ଫଳତଃ ଯୌବନ ସାଗରର ତରଙ୍ଗମାଳା ପରି ସମସ୍ତେ ଚଞ୍ଚଳ । ଅନ୍ୟ ପକ୍ଷରେ ନାୟକ ଭିନ୍ନ ପୁରୁଷ ସୌନ୍ଦର୍ଯ୍ୟ ପ୍ରତି କବିମାନଙ୍କର ଅନାଗ୍ରହ ସର୍ବତ୍ର ପରିଲକ୍ଷିତ ।



-ପାଦଟୀକା-

୧। ବିଦ୍ୟୁନ୍ନ ଯା ପତନ୍ତୀ ...

ଋଗ୍‌ବେଦ ୧୦/୯୫/୧୦

୨। ଗୋଟିଏ ଉଦାହରଣ—

ତନ୍ୱୀ ଶ୍ୟାମା ଶିଖରୀ ଦଶନା ପକ୍ୱ ବିମ୍ବାଧରୋଷ୍ଠୀ
ମଧ୍ୟେ କ୍ଷାମା ଚକିତ-ହରିଣୀ-ପ୍ରେକ୍ଷଣା ନିମ୍ନନାଭିଃ
ଶ୍ରୋଣୀଭାରାଦଳସଗମନା ସ୍ତୋକନମ୍ରା ସ୍ତନାଭ୍ୟାଂ
ଯା ତତ୍ର ସ୍ୟାଦ୍ୟୁବତି ବିଷୟେ ସୃଷ୍ଟିରାଦ୍ୟେବ ଧାତୁଃ ।

ମେଘଦୂତ-ଉତ୍ତର '୧୯

୩। ସତ୍ୟେବ ସାମ୍ୟେ ସଦୃଶାଦଶେଷାତ୍ ଗୁଣାନ୍ତରେଣୋଚ୍ଚକୁଚେ ଯଦଙ୍ଗୈଃ
ଅସ୍ୟାସ୍ତୁତଃ ସ୍ୟାତୁଳନାପି ନାମ ବସ୍ତ୍ୱନ୍ତମୀଷା ମୁପମାବମାନଃ ।।

ନୈଷଧ-୭/୧୪

୪। ଭଲ ଯୌବନ ସୃଷ୍ଟି ସଜାଡ଼ିଲା । ଆଗ ଉପମା ସୃଷ୍ଟି ଉଜାଡ଼ିଲା ।।

କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ-୩/୨୦

୫। କବି ବଚନେ ରଚନେ ପଡ଼ିଗଲା ଉପମାବୃନ୍ଦଙ୍କ ଚହଲ ।

କଳା କଉତୁକ-୩/୨

୬। ଅଳଂକାରକୁ ଅଳଂକାର । ନିଶ୍ଚୟ ଯେହି ରମାବର ।
ଉବାଦି ଯେତେ ଅଳଂକାର । ସେମାନେ ତା'ର ଅଳଂକାର ।

ଲାବଣ୍ୟବତୀ-୧୬/୬

୭। ଉପମା ଯେ ଅନାଦର ଅତ୍ୟାଦର ପାତ୍ର
ଉପମେୟ ପାଇଁ ଲେଡ଼ା କରି ଏତେ ମାତ୍ର ।
କେଉଁଠାରେ ଦୂଷଣ ଭୂଷଣ କାହିଁ ହୁଏ
କାବ୍ୟର ସ୍ୱଭାବ ଏହା ନକର ସଂଶୟେ ।

ଚିତ୍ରକଳା : ୨/୩-୪

୮। ମଳିନ ଅଂଜନ ଯେସନେ । ରଂଜିଲେ ନାରୀ ନୟନେ ।
ନ ହରଇ କାହା ମନ । ସେ ରୂପେ ମୋର ବଚନ ।
ସେ ଚରିତେ ହୋଇ ମେଳ । ହେବ ଉଜ୍ଜଳ ଏ ।

ସର୍ବାଙ୍ଗ ସୁନ୍ଦରୀ : ୩/୩

୯। ପ୍ରେମ ଲୋଚନା-୨/୧-୧୩

୧୦। ନୀଳ କୁଟିଳ କୁନ୍ତଳ କବରୀ ଲକ୍ଷ୍ୟ
ଦେଖି ଅଧୋମୁଖୀ ହୁଏ ଚମରୀ ପୁଚ୍ଛ ।

ପ୍ରେମ ଲୋଚନା-୨/୪ (ଇତ୍ୟାଦି)

୧୧। ପୁଣ ପୁଣ ବେଶ ବାସ ଫେଡ଼ିଣ ପିନ୍ଧି
ଶରଧା କରିଣ ଶତ ବସନ ପିନ୍ଧି ।

ରୁକ୍ମିଣୀ ବିଭା : ୩/୭ (ଇତ୍ୟାଦି)

୧୨। ଅଙ୍କୁରିତ କୁଚ ଯୁଗ ହୋଇଲା ପ୍ରଦେଶ ।
× × ×
ଦିନୁ ଦିନୁ ବେନି କୁଚ ଉଚଭାବ ଗ୍ରହି ।
× × ×
ଉରଜଯୁଗ ବଢିଣ ଦିଶିଲା ସୁନ୍ଦର ।

ଅନଙ୍ଗରେଖା-୩/୧, ୧୪,୧୬

୧୩। ବିକଳନା କରି ସଞ୍ଚିତି ମଧୁ କନ୍ଦ ଦ୍ରୁମରେ
ବିକଚ ଫଳ ଅଙ୍କୁର ଉଚ୍ଚେ ବୃଦ୍ଧି କ୍ରମରେ ।

ବୈଦେହୀଶ ବିଳାସ-୩/୩୮

୧୪। କୋଟିବ୍ରହ୍ମାଣ୍ଡ ସୁନ୍ଦରୀ-୩ୟ

୧୫। ପାତ୍ର ଭର ନିତମ୍ବ ଜଘନ ଉରୁ ସତ
ଶାଢୀ ପାଇ ଏମାନେ ହୋଇଲେ କୃତ୍ୟକୃତ୍ୟ ।
କୁଚ ଅଙ୍କୁରିବାରେ ବସନ ଉଚ ଦିଶେ
ହୃଦୟ ବେଦୀରେ ଅଭିଷେକ କୁମ୍ଭ କି ସେ ।

ଲାବଣ୍ୟବତୀ-୨/୭୦-୭୧

୧୬। ସୁବର୍ଣ୍ଣପାଚକ ବୟଃସନ୍ଧିକାଳ ବିଧିବଶେ ହେଉ ମେଳ
ସୁତନୁ ହେମତନୁକୁ ଦିନୁ ଦିନୁ ବିଶେଷେ କଲା ଉଜ୍ଜ୍ୱଳ ।

ସୁଭଦ୍ରା ପରିଣୟ-୨/୧୩

୧୭। ପ୍ରେମ ଲୋଚନା : ୨/୧ (ଦଶମ ଶେଷ), ଅନଙ୍ଗରେଖା :
୨/୬୭ (ଦଶମ,)
ବୈଦେହୀଶ ବିଳାସ : ୩/୩୬ (ନବମ), ବିଦଗ୍ଧ ଚିନ୍ତାମଣି :
୪/୧୦ (ଦଶମ)

ସୁଭଦ୍ରା ପରିଣୟ : ୧/୪୫ (ନବମ)

୧୮। ଶଇଶବ ସଂଧିକାଳ ଯେତେ ବିଧାନ
କହିବାକୁ ବାଧିଲା ତା' ରୂପ ଯୌବନ ।

ଚିତ୍ରକଳା : ୧/୪

୧୯। ସପ୍ରେମ ବଢ଼ଇ ଯେବେ ସାହିତ୍ୟର ରସେ
ପୁଲକ କୁଶଳ ତନୁ ପ୍ରବଳ ଉଲ୍ଲାସେ ।
ପୁଲକଇ ଉଚ ସଞ୍ଚ ଘନ କୁଚ ତା'ର
ହୁଅଇ ସଧୀର ମନ କି କିସ ପ୍ରକାର ।

ପ୍ରେମ ଲୋଚନା : ୩/୪-୫

୨୦। ଅନଙ୍ଗରେଖା : ୩/୩୧-୩୪

୨୧। ଅତିଶୟ ଶୋଭ ତନୁ ହୋଇଲା ଯୁବତୀ
ପୁଷ୍ପବତୀ ହୋଇଲା କି କାଞ୍ଚନ ବ୍ରତତୀ ।
ସର୍ବାଙ୍ଗ ସୁନ୍ଦରୀ : ୨,୩୩

୨୨। ଅଭିନବ ରବି ସ୍ଫୁରିତ ଜ୍ୟୋତିତ
ଗୁରି ମନ୍ଦାର ନୂତନ ପୁଷ୍ପିତ ।
ଉଦୟାଦ୍ରି ଶିଖରରୁ ନିଗତ
ପୁଷ୍ପସ୍ତବକ ରବିକର ଦ୍ୟୋତ ।
ଶୁଭ ସାତକୁମ୍ଭ ପାତ୍ରୀ ଅନଙ୍ଗ
ଅନୁରାଗରେ କରିଛି କି ରଂଗ ।
ଯୁବା ଜୀବ ବିଧି କି ରଣରଣ
ଆଜ କରୁଛି ରୁଧିର ତର୍ପଣ ।
ଲୀଳାବତୀ : ୩/୨୮ ୩୧ (ଇତ୍ୟାଦ)

୨୩। ଲବଣ୍ୟବତୀ (ପ୍ରାଚୀ) : ମୁଖବଂଧ/ପୃ ୧୨୩

୨୪। ଯଥା—
ବାଳଭାନୁ ଜାନୁ ଗିରି ଗୁହାରେ । ସ୍ଥିତ ତା' ଭାନୁ କି ଆଗ ବାହାରେ
ଅଧୋ ମୁଖରୁ ଶୋଣିତ ବମନ । କଚ୍ଛପ କି କରଇ ମନେ ଘେନ ।
ଲବଣ୍ୟବତୀ : ୩/୩୦

୨୫। ମୀନକେତନ ନିଜ ନିକେତନେ । ରଙ୍ଗ କେତନ ବାଂଧିଲା ଯତନେ ।
କୋଟିବ୍ରହ୍ମାଣ୍ଡ ସୁନ୍ଦରୀ : ୩/୨୫
କିମ୍ବା
× × ରଙ୍ଗ କେତନ । ନି କେତନେ କଲା ବଂଧନ ।
ପ୍ରେମ ସୁଧାନିଧି : ୪/୧

୨୬। ସରିବାର ନୋହେ କଥନ କୁସୁମ ସମୟ ଉତ୍ସବ ତା'ର
ସାତଦିନ ଦଂଦୀ ମନ୍ଦିରେ ରହିଲା ଘେନି ·ସେ କୁଳ ବେଭାର ।
ସୁଭଦ୍ରା ପରିଣୟ : ୨/୨୪

୨୭। ଚନ୍ଦ୍ରକଳା : ୮/୨୭-୩୭

୨୮। ହେମଲତା ପଲ୍ଲବମୟ ହେଲା
ପରି ଦିଶିଲା ସେ ବର ମହିଳା ।
× × ×
ନିଜ କର ଗେଟିତ ସ୍ବନାଲତା
ସତେ ହୋଇଲା ମଣି କୁସୁମିତା ।
ଚନ୍ଦ୍ରକଳା : ୮/୪୦,୬୨

୨୯। ଚନ୍ଦ୍ରଂଗତା ପଦ୍ମ ଗୁଣାନ୍ନଭୁଂକ୍ତେ ପଦ୍ମାଶ୍ରିତା ଶ୍ଚନ୍ଦ୍ରମସୀମଭିଖ୍ୟାମ୍
ଉମା ମୁଖଂ ତୁ ପ୍ରତିପଦ୍ୟ ଲୋଲା ଦ୍ବିସଂଶ୍ରୟୀ ପ୍ରୀତି ମବାପ ଲକ୍ଷ୍ମୀଃ ।
କୁମାରସମ୍ଭବ : ୧/୪୩

୩୦। ତଦପି ସଜ୍ଜନଂ ଶ୍ଚନ୍ଦ୍ର ସ୍ତାଣାଂ ମୁଖେଷୁ ବିଭାବ୍ୟତେ ।
ସୂକ୍ତି ମୁକ୍ତାବଳୀ (୧୯୩୮)-ପୃ ୧୮୨

୩୧। ସୁଷମା ବିଷୟେ ପରୀକ୍ଷଣେ ନିଖିଳଂ ପଦ୍ମମଭାଜି ତନ୍ମୁଖାତ୍
ଅଧୁନାପି ନ ଭଙ୍ଗ ଲକ୍ଷଣଂ ସଲିଳୋନ୍ମଜ୍ଜନ ମୁଜ୍ଝତି ସ୍ଫୁଟମ୍ ।
ନୈଷଧ : ୨/୨୭

୩୨। There is a garden in her face
where roses and white lilies bloom
ଇଂରାଜୀ ସାହିତ୍ୟେର ଇତିବୃତ୍ତ ଓ ମୂଲ୍ୟାୟନ—ପୃ ୧୧୫

୩୩। ମୁଖ ଭୟ ଚାନ୍ଦ ଆକାସେ ।
ବିଦ୍ୟାପତି ପଦ୍ୟାବଳୀ-ପୃ ୩

୩୪। କଳ୍ପଲତା : ୩/୫

୩୫। ଉଷାଭିଳାଷ : ୨/୩

୩୬। ରୁକ୍ମିଣୀ ବିଭା : ୩/୨୪

୩୭। ଶଶିସେଣା : ୨/୪

୩୮। ଚିତ୍ରକଳା : ୨।୧୨

୩୯। ତତ୍ରୈବ : ୨/୧୨

୪୦। ଉଷାଭିଳାଷ : ୯/୮

୪୧। ରସଲେଖା : ୫/୪

୪୨। ଚିତ୍ରକଳା : ୨/୧୨

୪୩। କେଳି କଳାନିଧି : ୨/୫-୬

୪୪। ଶରଦ ସମ୍ପୂର୍ଣ୍ଣ ଅକଳଙ୍କ ହରିଣାଙ୍କ
ଉପନ ଲବଣ୍ୟ ଦେଖି ଗ୍ରହିଁଣ ଆତଙ୍କ । ଉଷାଭିଳାଷ : ୨/୩

୪୫। ଶରଦ ଚନ୍ଦ୍ରମା ଆନନ ବେନି ଚକୋର କି ସେ ?
ଫୁଲ୍ଲାରବିନ୍ଦ ସୁଗନ୍ଧେ କି ଅଳି ଲଳସେ ବସେ ?

ଶଶିସେଣା : ୨/୪

୪୬। ମୁଖ ଛବି ଧ୍ୟାନରେ ଲୀନ । ସଂକୋଚେ ନଳିନ ମଳିନ
ଦିନୀନ୍ତେ ଜନିଲ ସେ ଭୀତି । ନିତି ନିତି ଭଜେ ସେ ରୀତି ।

କୋଟିବ୍ରହ୍ମାଣ୍ଡ ସୁନ୍ଦରୀ : ୫/୧୦

୪୭। ପ୍ରବାତ ନୀଳୋତ୍ପଳ ନିର୍ବିଶେଷମ୍
ଅଧୀର ବିପ୍ରେକ୍ଷିତ ମାୟତାକ୍ଷ୍ୟା । କୁମାର ସଂଭବ : ୧/୪୬

୪୮। ଇକ୍ଷୁତ୍ରୟେଣୈବ ଜଗତ୍ରୟସ୍ୟ

ବିନିର୍ଜୟାତ୍ ପୁଷ୍ପମୟାଶୁଗପନ

ଶେଷା ଦ୍ୱିବାଣୀ ସ୍ୱଫଳୀକୃତେୟଂ

ପ୍ରିୟା ଦୃଗମ୍ଭୋଜ ପଦେଽଭିଷିଚ୍ୟ

ନୈଷଧ : ୭/୨୭

୪୯। ନଳିନୀ ଚକୋର ସଫରୀ ସଦ୍ଧ ମଧୁକର
ମୃଗୀ ଖଂଜନ ଜିନି ଆଖି ।
ବିଦ୍ୟାପତି ପଦ୍ୟାବଳୀ : ପୃ ୬୮

୫୦। ରୁକ୍ମିଣୀ ବିଭ : ୩/୨୬

୫୧। ଚିତ୍ରକଳା : ୨/୧୯

୫୨। ରସଲେଖା : ୫/୫୮

୫୩। ତୁଳନିୟ—ନୈଷଧ : ୭/୨୯ (ଶ୍ରୀହର୍ଷ ଦୁଇଟି ବର୍ଣ୍ଣର ଉଲ୍ଲେଖ
କରିଛନ୍ତି; ଯଥା—ଶ୍ୱେତ ଓ ଇନ୍ଦ୍ରନୀଳ)

୫୪। ପ୍ରେମ ସୁଧାନିଧି : ୨ୟ

୫୫। ନେତ୍ରେ ସୁଚ୍ଛନ୍ଦ ହେବା କହୁଛି । କୃଷ୍ଣ ଅର୍ଜୁନ ରଂଗ କରଯାଇଛି ।
ଗୁଣ ଅଞ୍ଜନ କପାଳ କମାଣ । ବାଣ ପ୍ରୟୋଗ କଟାକ୍ଷ ପ୍ରମାଣ ।
କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୩/୧୮

୫୬। ସେ ନେତ୍ରେ ସଂଗ କୃଷ୍ଣରାମ ବେନି । ରଙ୍ଗସଭ ଅନ୍ତେ ପ୍ରକଟ ଘେନି
କୁବଳୟ ଦର୍ପ ପକାଇ ନାଶି । କାଣ୍ଡ ଗୁଳିକାଣ୍ଡ ପରୟ ଦିଶି ସେ ।...
କୋଟିବ୍ରହ୍ମାଣ୍ଡ ସୁନ୍ଦରୀ : ୬ ୮

୫୭। ଅର୍ଜୁନ ପଦବୀ ତହିଁ ପ୍ରସିଦ୍ଧ । କାଣ୍ଡ ଗୁଳି କାଣ୍ଡ ତାଙ୍କ ଆୟୁଧ
କି କପାଳ ଧନୁ ଏ ଦୁଇଗୁଣ । କଜ୍ଜଳ ଭ୍ରୂଇତା ହୋଇ ପ୍ରମାଣ ସେ ।.
କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୬/୯

୫୮। ଅସ୍ୟାଂ ମୁନିନାମପି ମୋହମୂହେ ଭୃଗୁର୍ମହାନଯତ୍ କୁଚଶୈଳଶୀଳୀ
ନାନାରଦାହ୍ଲାଦି ମୁଖଂ ଶ୍ରିତୋରୁର୍ବ୍ୟାସୋ ମହାଭରତ ସର୍ଗଯୋଗ୍ୟଃ ।
ନୈଷଧ : ୭/୯୫

୫୯। ଲବଣ୍ୟବତୀ : ୧୧/୧୩

୬୦। ସୁଦାନେତ୍ର କି ଶୋଭ ଦିଶେ । ପକ୍ଷ୍ମଲୋଷେ ଛଟାମୁନ ଇଂଜି ଆଭସେ
ବିଦଗ୍ଧ ଚିନ୍ତାମଣି : ୩୦/୨୯

୬୧। ଚନ୍ଦ୍ରକଳା : ୧୨/୧୧

୬୨। କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୭/୭

୬୩। ଭଦ୍ରା ପରିଣୟ : ୬/୨୫

୬୪। ରସକଲ୍ଲୋଳ : ୧୦/୫

୬୫। ଲାବଣ୍ୟବତୀ : ୧୧/୨୭

୬୬। ସୁଭଦ୍ରା ପରିଣୟ : ୩/୧୪

୬୭। ରାମବିଭା : ୧୦/୨୫

୬୮। ସୁଭଦ୍ରା ପରିଣୟ : ୩/୧୫

୬୯। ଉତ୍‌ପଶ୍ୟାମି ପ୍ରତନୁଷୁ ନଦୀ ବୀଚିଷୁ ଭ୍ରୂବିଳାସାନ୍ ।

ମେଘଦୂତ : ଉତ୍ତର/୪୧

୭୦। ଧନୁଷୀ ରତି ପଞ୍ଚବାଣୟୋରଦିତେ ବିଶ୍ୱଜୟାୟ ତଦ୍‌ଭ୍ରୂବୌ ।

ନୈଷଧ : ୨/୨୮

୭୧। ଭଙ୍ଗୁରଲତା ଧନୁ, ଭ୍ରମର, ଭୁଜଙ୍ଗିନୀ ଜିନି ଆଧ ବିଧୁବର ଭାଲେ ।

ବିଦ୍ୟାପତି ପଦ୍ୟାବଳୀ : ପୃ ୬୮

୭୨। ଲାବଣ୍ୟବତୀ : ୪/୨୦ (କମାଣ), ବିଦଗ୍ଧ ଚିନ୍ତାମଣି ୪/୨୨(କୋମୁ୍ କ)

୭୩। ରୁକ୍ମିଣୀ ବିଭା : ୩/୨୬

୭୪। ଶଶିସେଣା : ୨/୫

୭୫। ଚିତ୍ରକଳା : ୨/୧୭

୭୬। ପୁନରପି ହରତପ ଭଂଗିତ ଅନଂଗ
ଭ୍ରୂଲତା 'ଗୁଣ ସାଜିଲା କପାଳ ସାରଂଗ' ।

ଉଷାଭିଳାଷ : ୨/୧୩

୭୭। ସୁଗଂଧ ମଧୁର ଲୁବୁଧେଣ ଭୃଙ୍ଗଲତା ମଧୁପପନ୍ତି ।

କନ୍ଦଳତା : ୩/୫

୭୮। ସିହାଣୀ ଗୃହାଁଣି ମନୋରମା ଭୁରୁ ଚିତ୍ରଲେଖା ପ୍ରାୟ ଦିଶେ ।

ସୁଭଦ୍ରା ପରିଣୟ : ୨/୩

୭୯। ଭୁରୁ ଯେତେବେଳେ ନାଚେ । ଦେଖି ମୁଁ ଏମନ୍ତ ପାଞ୍ଚେ
ଯୋଗୀ ଧୈର୍ଯ୍ୟତରୁ ଛେଦିବା ପାଇଁକି ସୁତୀକ୍ଷ୍ଣ ପରଶୁ ଆଞ୍ଚେ ।

ରସିକ ହାରବଳୀ : ୯/୮

୮୦। ବିଦଗ୍ଧ ଚିନ୍ତାମଣି : ୪୨ ୩୮

୮୧। ପୀୟୂଷ ରସଙ୍କ କୁବଳୟ ଦଳ ବିନ୍ଧିଲୁ ଅପାଙ୍ଗଘାତେ ।

ଊଷାଭିଳାଷ : ୯/୫

୮୨। ପ୍ରମୋଦ ମୋଦ ଦାୟକ ବିଶ୍ୱ ସୁଧାବୃଷ୍ଟି ।

ଚିତ୍ରକଳା : ୨/୧୧

୮୩। ତାହାର ଦୁହିତା ନାମ ସର୍ବାଙ୍ଗ ସୁନ୍ଦରୀ
ଚତୁବର୍ଗ ଅଛି ଯା ଅପାଙ୍ଗ ଆଶ୍ରେ କରି ।

ସର୍ବାଙ୍ଗ ସୁନ୍ଦରୀ : ୧୦/୫

୮୪। କୋଟିବ୍ରହ୍ମାଣ୍ଡ ସୁନ୍ଦରୀ : ୧୫/୨୫

୮୫। ବିଦଗ୍ଧ ଚିନ୍ତାମଣି : ୧୫/୧୪

୮୬। କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୪/୨୨

୮୭। ଊଷାଭିଳାଷ : ୯/୧୬

୮୮। ଲବଣ୍ୟବତୀ : ୧୯/୭

୮୯। ରୁକ୍ମିଣୀ ବିଭା : ୩/୨୮

୯୦। ସେୟଂ ମୃଦୁଃ କୌସ୍ତୁଭମଗ୍ୟପ ଯଷ୍ଟିଃ ସ୍ମରସ୍ୟ ମୁଷ୍ଟି ଗ୍ରହଣାର୍ହମଧ୍ୟା
ତନୋତି ନଃ ଶ୍ରୀମଦପାଙ୍ଗ ମୁକ୍ତାଂ ମୋହାୟୁ ଯା ଦୃଷ୍ଟି ଶରୌଘ ବୃଷ୍ଟିମ୍

ନୈଷଧ : ୭/୨୮

୯୨। ଆକୁଳ ଅଳକ ବେଢ଼ଲ ମୁଖଶୋଭ
ରହୁ କଯଲ ସସି ମଣ୍ଡଲ ଲୋଭ ।
ବିଦ୍ୟାପତି ପଦ୍ୟାବଳୀ : ପୃ ୧୮୦

୯୨। ସୁଭଦ୍ରା ପରିଣୟ : ୨/୭ (ରହୁ), ୩/୮ (ଅନ୍ୟାନ୍ୟ) ।

୯୩। ଉଷାଭିଳାଷ : ୨/୧୦

୯୪। ପ୍ରେମଲୋଚନା : ୨/୧୮

୯୫। ମଥୁରାମଙ୍ଗଳ : ୧୩/୪ (ବାଳଅଳି), ଚିତ୍ରକଳା :
୨/୧୧ (ଶିଶୁ ଭୃଙ୍ଗପନ୍ତି),
ରସକଲ୍ଲୋଳ : ୧୯/୪ (ଭ୍ରମର)

୯୬। ଅଧରଃ କିଶଳୟ ରାଗଃ......ଶକୁନ୍ତଳା : ୧/୨୦

୯୭। ସର୍ବାଙ୍ଗ ସୁନ୍ଦରୀ : ୩/୧୯

୯୮। ଚିତ୍ରକଳା : ୨/୨୫

୯୯। ମଥୁରାମଙ୍ଗଳ : ୧୩/୬

୧୦୦। ଶଶିସେଣା : ୨/୬

୧୦୧। ପ୍ରେମଲୋଚନା : ୨/୩୦

୧୦୨। ଉଷାଭିଳାଷ : ୨/୧୧

୧୦୩। ମହେନ୍ଦ୍ର କାଷ୍ଠାଗତ ରାଗଚକ୍ରବର୍ତ୍ତୀ ଦ୍ୱିଜୈରମୀଭିଃ ସମୁପାସ୍ୟମାନା ।
ନୈଷଧ : ୭/୪୫

୧୦୪। ଦସନ ମୁକୁତା ଜିନି କୁନ୍ଦ କରଗ ବୀଜ......।
ବିଦ୍ୟାପତି ପଦ୍ୟାବଳୀ : ପୃ ୬୮

୧୦୫। ସର୍ବାଙ୍ଗ ସୁନ୍ଦରୀ : ୩/୨୨-୨୩,
ଚିତ୍ରକଳା : ୨/୨୭-୩୧

୧୦୬। କଳ୍ପଲତା : ୩/୭

୧୦୭। ପୁଷ୍ପଂ ପ୍ରବାଳୋପହିତଂ ଯଦିସ୍ୟାନ୍ମୁକ୍ତାଫଳଂ ବା ସ୍ଫୁଟ ବିଦ୍ରୁମସ୍ଥମ୍
ତତୋଽନୁକୁର୍ଯ୍ୟାଦ ବିଶଦସ୍ୟ ତିସ୍ୟାସ୍ତାମ୍ରୌଷ୍ଠ ପର୍ଯ୍ୟସ୍ତରୁଚଃ ସ୍ମିତସ୍ୟ ।
କୁମାର ସଂଭବ : ୧/୪୪

୧୦୮। ଯଦି ପ୍ରସାଦୀ କୁରୁତେ ସୁଧାଂଶୁରେଷା ସହସ୍ରାଂଶମପି ସ୍ମିତସ୍ୟ
ତତ୍ କୌମୁଦୀନାଂ କୁରୁତେ ତମେବ ନିମିତ୍ୟ ଦେବଃ ସଫଳଂସ ଜନ୍ମ ।
ନୈଷଧ : ୭/୪୬

୧୦୯। ହାସ ଅଧର ରହିଲେ ଏ ସଂଶୟ
କରିଅଛି କାହା ଶୋଭ କେ ଉଦୟ
ବାଳ ଅରୁଣ କି ସୁଧାସ୍ନାନ କରି
ଅନୁରାଗ ହରଷ ମିଶିଲ ପରି ।
ଲାବଣ୍ୟବତୀ : ୭/୬୨-୬୩

୧୧୦। ଉଷାଭିଳାଷ : ୨/୪, ସର୍ବାଙ୍ଗ ସୁନ୍ଦରୀ : ୩/୨୫

୧୧୧। ନାସାଦସୀୟା ତିଳପୁଷ୍ପତ୍ ତାଂ ଜଗତ୍ତ୍ରୟନ୍ୟସ୍ତ ଶରସ୍ତ୍ରୟସ୍ୟ
ଶ୍ୱାସାନିଳାମୋଦ ଭରଂନୁମେୟାଂ ଦଧଦ୍ଧିବାଣୀ କୁସୁମାୟୁଧସ୍ୟ ।
ନୈଷଧ : ୭/୩୬

୧୧୨। ନାସାତିଳଫୁଲ ଗରୁଡ଼ ଚଞ୍ଚୁ ଜିନି ।
ବିଦ୍ୟାପତି ପଦ୍ୟାବଳୀ-ପୃ ୬୮

୧୧୩। ଉଷାଭିଳାଷ : ୯/୧୧

୧୧୪। ସର୍ବାଙ୍ଗ ସୁନ୍ଦରୀ : ୩/୧୮, ଚିତ୍ରକଳା : ୨/୨୨

୧୧୫। ମଳୟ-ସମୀର-ମନ୍ଦିର ନାସା ଅଟଇ ତା'ର
ବସନ୍ତ ଆଶେ ବିକସିତ ହୋଏ କିଂଶୁକ ଧର ।
ଶଶିସେଣା : ୨/୬

୧୧୬। ନୈଷଧ : ୭/୩୧-୩୫

୧୧୭। ଚଣ୍ଡୀଦାସ ଓ ବିଦ୍ୟାପତି (ବଙ୍ଗଳା)-ପୃ ୪୮୪

୧୧୮। ବିଦ୍ୟାପତି ପଦ୍ୟାବଳୀ : ପୃ ୬୮

୧୧୯। ସୁଭଦ୍ରା ପରିଣୟ : ୩/୧୯

୧୨୦। ଉଷାଭିଳାଷ : ୨/୧୨, ରସକଲ୍ଲୋଳ : ୧୦,୬

୧୨୧। ଚିତ୍ରକଳା : ୨/୩୩

୧୨୨। କେଶାନ୍ଧକାରଦଥ ଦୃଶ୍ୟପାଳ ସ୍ଥଳାର୍ଦ୍ଧଚନ୍ଦ୍ର ସ୍ଫୁଟମଷ୍ଟମୀୟମ୍
ଏଣଂ ଯଦାସାଦ୍ୟ ଜଗଜ୍ଜୟାୟ ମନୋଭୁବା ସିଦ୍ଧିରସାଧିସାଧୁ ।
ନୈଷଧ : ୭/୨୩

୧୨୩। ଉଷାଭିଳାଷ : ୨/୧୩

୧୨୪। ଲଳଟ ପଟ କି ତା'ର ରୂପ ଅର୍ଦ୍ଧଶଶି ।
ଚିତ୍ରକଳା : ୨/୧୭

୧୨୫। ସର୍ବାଙ୍ଗ ସୁନ୍ଦରୀ : ୩/୧୭

୧୨୬। ଅନଙ୍ଗରେଖା : ୩/୯

୧୨୭। ଚିତ୍ରକଳା : ୨/୩୪

୧୨୮। କେଳି କଳାନିଧି : ୨/୫

୧୨୯। ଲବଣ୍ୟବତୀ : ୧୦/୧୯

୧୩୦। ସୁଭଦ୍ରା ପରିଣୟ : ୩/୨୬

୧୩୧। ଲଜ୍ଜା ତିରଶ୍ଚାଂ ଯଦି ଚେତସିସ୍ୟା ଦସଂଶୟଂ ପର୍ବତରାଜପୁତ୍ର୍ୟାଃ ।
ତଂ କେଶପାଶଂ ପ୍ରସମୀକ୍ଷ୍ୟ କୁର୍ଯ୍ୟୁର୍ବାଳ ପ୍ରିୟ ତ୍ୱଂ ଶିଥିଳଂ ଚମର୍ଯ୍ୟଃ ॥
କୁମାର ସମ୍ଭବ : ୧/୪୮

୧୩୨। ଚିକୁର ପ୍ରକର ଜୟନ୍ତୀ ତେ ବିଦୁଷୀ ମୂର୍ଦ୍ଧନି ସା ବିର୍ଭର୍ତ୍ତିଯାନ ।
ପଶୁନାପ୍ୟ ପୁରସ୍କୃତେନ ତତ୍ତୁଲନା ମିଚ୍ଛତୁ ଚାମରେଣ କଃ ॥
ନୈଷଧ : ୨/୨୦

୧୩୩। ନୈଷଧ : ୭/୨୦-୨୨

୧୩୪। ଜଳଧର, ତିମିର, ଭ୍ରମର ଜିନି କୁନ୍ତଳ ।

ବିଦ୍ୟାପତି ପଦ୍ୟାବଳୀ : ପୃ ୬୮

୧୩୫। କାବ୍ୟ ସବାଦ-ପୃ ୧୦୧, ୧୦୨, ୧୦୭

୧୩୬। ସଜଳ ଜଳଧର କଜ୍ଜ୍ୱଳ ଭୃଙ୍ଗ ତମାଳ କାଳିନ୍ଦୀଜଳ ବରହୀପୁଚ୍ଛ ଭ୍ରମର ନୀଳମଣି ସୁକେଶୀ ଯେ ।

ସୁଭଦ୍ରା ପରିଣୟ : ୬/୨୫

୧୩୭। ଉଷାଭିଳାଷ : ୨/୮, ରସକଲ୍ଲୋଳ : ୮/୨୦

୧୩୮। ଚିତ୍ରକଳା : ୨/୫-୧୦

୧୩୯। ଚିତ୍ରକଳା : ୯/୨୦

୧୪୦। ବିଦଗ୍ଧ ଚିନ୍ତାମଣି : ୩୦/୨୨

୧୪୧। ବୈଦେହୀଶ ବିଳାସ : ୨୯,୨୧

୧୪୨। ରସକଲ୍ଲୋଳ : ୧୮/୯

୧୪୩। ଉଷାଭିଳାଷ : ୨/୯, କଳ୍ପଲତା : ୩/୭

୧୪୪। ବୈଦେହୀଶ ବିଳାସ : ୧୦/୪

୧୪୫। ଚିକୁରରେ ବିନ୍ଦୁ ବିନ୍ଦୁ ହୋଇ ଜଳମାନ
କିବା ନୀଳ ଭ୍ରମରେ ଗୁନ୍ଥିଲ ମୋତି ଘେନ ଯେ ।

ପ୍ରେମଲୋଚନା : ୪/୪୪

୧୪୬। ବିନ୍ଦୁ ବିନ୍ଦୁ ଜଳ ରହିଛି ଗୁରୁ କୁଟିଳ ବାଳେ
ତୁଷାର ବୃଷ୍ଟି କି ହୋଇଛି ନବ ତମାଳ ଦଳେ ।

ଲାବଣ୍ୟବତୀ : ୬/୪୨

୧୪୭। ଇନ୍ଦ୍ରନୀଳ ଛାୟା, ଭ୍ରମର ନିଚୟ ପ୍ରଳମ୍ବ କୁନ୍ତଳ କୁଳ ଯେ ।
ଚନ୍ଦ୍ରକଳା : ୧୧/୩୫

୧୪୮। ଚଣ୍ଡୀଦାସ ଓ ବିଦ୍ୟାପତି (ବଂଗଳା)–ପୃ, ୪୫୯-୪୬୦

୧୪୯। ପର୍ଯ୍ୟାପ୍ତ ପୁଷ୍ପସ୍ତବକାବନମ୍ରା (କୁମାର ସଂଭବ),ସ୍ତୋକନମ୍ରା ସ୍ତନାଭ୍ୟାଂ (ମେଘଦୂତ),ପୀନୋନ୍ନତ ସ୍ତନଭରନତ ଗାତ୍ର(ଋତୁସଂହାର)ଇତ୍ୟାଦି ।

୧୫୦। ଅନ୍ୟୋନ୍ୟ ମୁତ୍ପୀଡୟଦୁତ୍ପଳାକ୍ଷାଃ ସ୍ତନଦ୍ୱୟଂ ପାଣ୍ଡୁ ତଥା ପ୍ରବୃଦ୍ଧମ୍
ମଧ୍ୟେ ଯଥା ଶ୍ୟାମ ମୁଖସ୍ୟ ତସ୍ୟ ମୃଣାଳ-ସୂତ୍ରାନ୍ତରମପ୍ୟଲଭ୍ୟମ୍ ।
କୁମାର ସଂଭବ : ୧/୪୦

୧୫୧। ଅପି ତଦ୍ ବପୁଷି ପ୍ରସର୍ପତୋର୍ଗମିତେ କାନ୍ତିଝରୈରଗାଧତାମ୍
ସ୍ମର ଯୌବନୟୋଃ ଖଲୁଦ୍ୱୟୋଃ ପ୍ଲବକୁମ୍ଭୌ ଭବତଃ କୁଚ୍ଚକୁଭୌ ।
ନୈଷଧ : ୨/୩୨

୧୫୨। ନୈଷଧ : ୭/୭୩-୮୦

୧୫୩। Ancient Indian Erotics and Erotic Literature—P-.57

୧୫୪। ବେଲ, ତାଲଯୁଗ, ହେମ କଲସ, ଗିରି,
କଟରି ଜିନିୟା କୁଚ ସାଜ ।
ବିଦ୍ୟାପତି ପଦ୍ୟାବଳୀ : ପୃ ୬୯

୧୫୫। ବିଦ୍ୟାପତି ପଦ୍ୟାବଳୀ : ପୃ ୪

୧୫୬। ସରସୀ କ୍ଷୀଣ ଉଦର ପୂରିତ ଲବଣ୍ୟନୀର
ଉପସ୍ଥିତ ବେନି କୁମ୍ଭ ଘେନି ମଦନ
ସଖଳିତ ପଦ ହୋଇ ପଡ଼ି ବୁଡ଼ିଗଲା ତହିଁ
କୂଳେ ଲଗିଲେ କି ଘଟି କରି ପ୍ଲାବନ ।
ସୁଭଦ୍ରା ପରିଣୟ : ୩/୩୧

୧୫୭। ରସକଲ୍ଲୋଳ : ୭/୨୨-୨୬

୧୫୮। ବିଦଗ୍ଧ ଚିନ୍ତାମଣି : ୩୭ଶ

୧୫୯। ରସଲେଖା : ୫/୧୦-୧୬

୧୬୦। ସର୍ବାଙ୍ଗ ସୁନ୍ଦରୀ : ୩/୨୬-୩୨

୧୬୧। ଶଶିସେଣା : ୨/୧୨-୧୩

୧୬୨। ଗୁପ୍ତ ଇଛାବତୀ : ୨/୬୫

୧୬୩। ପରିମଳା : ୨/୫୧

୧୬୪। ଅନଙ୍ଗ ରେଖା : ୩/୨୮

୧୬୫। କୋଟିବ୍ରହ୍ମାଣ୍ଡ ସୁନ୍ଦରୀ : ୮/୧୧ (କ); ୭/୧୮ (ଖ), ୭/୨୦ (ଗ)
୭/୨୧ (ଘ)

୧୬୬। କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ : 'ଯ'ଗୀତ/ପଦ

୧୬୭। ଚନ୍ଦ୍ରକଳା : ୧୨/୨୩ (କ), ୧୨/୧୩ (ଖ)

୧୬୮। କଳାକଉତୁକ : ୫/୩ (କ), ୫/୪ (ଖ)

୧୬୯। ବିଦଗ୍ଧ ଚିନ୍ତାମଣି : ୩୭/୫

୧୭୦। ବେନି ନାରିକେଳୁ ପୂଗ ଜନମିଛି ..।
କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୭/୧୭

୧୭୧। ବଳି ବାଟୁଳି କି ସ୍ତନାଗ୍ର ରୂପେ ସେ ମନୋହର ।
ବୈଦେହୀଶ ବିଳାସ : ୩/୪୦

୧୭୨। ଅଗ୍ରଭଗେ ନୀଳ ଚୂଚୁକ କମଳ-କୋରକ ପରେ କି ଭ୍ରମର ।
ଅମ୍ବିକା ବିଳାସ : ୧୭/୧୩

୧୭୩। କଳ୍ପଲତା : ୯/୫୧

୧୭୪। ପ୍ରେମ ଲୋଚନା : ୨/୩୩

୧୭୫। ସୁଭଦ୍ରା ପରିଣୟ : ୩/୨୮

୧୭୬। ଅର୍ଣ୍ଣିକା ବିଳାସ : ୧୭,୧୨

୧୭୭। ଉଷାଭିଳାଷ :୨/୧୦

୧୭୮। ପୁଷ୍ପସ୍ଥଳୀ ହାଟକ ପର୍ଣ୍ଣିକାୟମ୍ । ନୈଷଧ : ୭/୮୭

୧୭୯। ଚରମ ହେମ ସୁସମ ପତ୍ର ରୁଚିର । ପ୍ରେମଲୋଚନା : ୨/୪୭ ।

୧୮୦। ସୁଭଦ୍ରା ପରିଣୟ : ୩/୪୦

୧୮୧। ଚିତ୍ରକଳା : ୨/୪୬

୧୮୨। ତୁଳନା—ଶଶିସେଣା : ୨/୯, ଉଷାଭିଳାଷ ୨/୧୫ ଇତ୍ୟାଦି;
ନିନ୍ଦା—ଚିତ୍ରକଳା ୨/୩୫, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୭/୪ ।

୧୮୩। ସୁଭଦ୍ରା ପରିଣୟ : ୩/୨୭

୧୮୪। ଶଶିସେଣା : ୨/୧୧, ଉଷାଭିଳାଷ : ୯/୧୫, ରାମଚିନ୍ତ : ୧୦/୨୫ ।

୧୮୫। ଚିତ୍ରକଳା : ୨/୩୯

୧୮୬। କଳ୍ପଲତା : ୩/୯

୧୮୭। ସୁଭଦ୍ରା ପରିଣୟ : ୩/୩୪

୧୮୮। ଉଷାଭିଳାଷ : ୨/୧୮

୧୮୯। କୋଟିବ୍ରହ୍ମାଣ୍ଡ ସୁନ୍ଦରୀ : ୧୪/୨୬

୧୯୦। ବାହୁ ମୃଣାଳେ ପାଶ ଚଲରୀ ଜିନି ।
ବିଦ୍ୟାପତି ପଦ୍ୟାବଳୀ : ପୃ ୬୯

୧୯୧। ପ୍ରେମ ଲୋଚନା : ୨/୪୧, ଉଷାଭିଳାଷ : ୨/୧୮,
ବିଦଗ୍ଧ ଚିନ୍ତାମଣି : ୩୦/୧୯ ।

୧୯୨। ଉଷାଭିଳାଷ : ୯/୧୪

୧୯୩। ଲବଣ୍ୟବତୀ : ୧୧/୧୨

୧୯୪। ଚିତ୍ରକଳା : ୨/୪୦ (ଚମ୍ପାକୋରକ), ସୁଭଦ୍ରା ପରିଣୟ : ୩/୩୩
(ଶୁଭ୍ର ଚମ୍ପକ କଳିକା), ରସ କଲ୍ଲୋଳ : ୮/୧୬ (ଗଂଧପଂକ୍ତୀ) ।

୧୯୫। ପ୍ରେମ ଲୋଚନା : ୨/୪୨, ସର୍ବାଙ୍ଗ ସୁନ୍ଦରୀ : ୩/୩୭ ।

୧୯୬। ସୁଭଦ୍ରା ପରିଣୟ : ୩/୩୩

୧୯୭। ଗମ୍ଭୀର ମାସାଦ୍ୟ ଚ ନାଭି କୂପମ୍ । ନୈଷଧ : ୭/୮୪

ଓ

ଉନ୍ମୀଲିତାଲନ ବିଲାଭନାଭି । ନୈଷଧ : ୭/୮୫

୧୯୮। ତସ୍ୟାଃ ପ୍ରବିଷ୍ଟା ନତ ନାଭି ରନ୍ଧ୍ରଂ......। କୁମାରସଂଭବ : ୧/୩୮

୧୯୯। ନାଭି ସରୋବର ସରୋରୁହ ଦଳ ଜିନି । ବିଦ୍ୟାପତି ପଦ୍ୟାବଳୀ-ପୃ୬୯

୨୦୦। ରକ୍ମିଣୀ ବିଭା : ୩/୫୦

୨୦୧। କୋଟିବ୍ରହ୍ମାଣ୍ଡ ସୁନ୍ଦରୀ : ୩/୮

୨୦୨। ଉଷାଭିଳାଷ : ୭/୭

୨୦୩। ଶଶିସେଣା : ୨/୧୫

୨୦୪। କଳା କଉତୁକ : ୩/୧୯

୨୦୫। ତତ୍ରୈବ : ୫/୮

୨୦୬। ଚିତ୍ରକଳା : ୨/୪୨

୨୦୭। ଚନ୍ଦ୍ରକଳା : ୧୨/୧୨

୨୦୮। ଲାବଣ୍ୟବତୀ : ୩/୧୦୯

୨୦୯। ତସ୍ୟାଃ ପ୍ରବିଷ୍ଟା ନତନାଭି ରନ୍ଧ୍ରଂରରାଜ ତନ୍ୱୀ ନବରୋମରାଜି
ନୀବୀମତିକ୍ରମସ୍ୟ ସିତେତରସ୍ୟ ତନ୍ମେଖଳା ମଧ୍ୟ ମଣେରିବାର୍ଚ୍ଚିଃ ।
କୁମାରସମ୍ଭବ : ୧/୩୮

୨୧୦। ନୈଷଧ–
ରୋମାବଳୀ ମେଚକସୂତ୍ରମସ୍ୟା । ୭/୮୩
ରୋମାବଳୀ ରଜ୍ଜୁମୁରୋଜ କୁମ୍ଭେ ।୭/୮୪
ଛିନ୍ନସ୍ଥଳ ଛନ୍ଦ୍ମଗଳ ରୋମଦାମା । ୭/୮୫

୨୧୧। ରୋମଲତାବଲୀ ଶୈବଲ କଜ୍ଜଲ ।
ବିଦ୍ୟାପତି ପଦ୍ୟାବଳୀ : ପୃ ୬୯

୨୧୨। ଉଷାଭିଳାଷ : ୨/୭

୨୧୩। ତତ୍ରୈବ : ୭/୭

୨୧୪। ପ୍ରେମଲୋଚନା : ୨/୩୮

୨୧୫। ତତ୍ରୈବ : ୪/୩୫

୨୧୬। ତତ୍ରୈବ : ୪/୩୬

୨୧୭। ତତ୍ରୈବ : ୪/୩୭

୨୧୮। ତତ୍ରୈବ : ୪/୩୯

୨୧୯। ତତ୍ରୈବ : ୪/୪୦

୨୨୦। ପ୍ରେମ ଲୋଚନା : ୪/୪୦

୨୨୧। ସୁଭଦ୍ରା ପରିଣୟ : ୨/୬

୨୨୨। ସର୍ବାଙ୍ଗ ସୁନ୍ଦରୀ : ୩/୩୭

୨୨୩। କଳାଂ କଉତୁକି : ୩/୧୮

୨୨୪। ତତ୍ରୈବ : ୩/୧୮

୨୨୫। ଚିତ୍ରକଳା : ୨/୪୨

୨୨୬। ସୁଭଦ୍ରା ପରିଣୟ : ୨/୨୬

୨୨୭। ରସକଲ୍ଲୋଳ : ୧୦/୧୪

୨୨୮। ରସଲେଖା : ୨/୯

୨୨୯। କୋଟିବ୍ରହ୍ମାଣ୍ଡ ସୁନ୍ଦରୀ : ୩/୮

୨୩୦। କଳା କଉତୁକ : ୬/୬

୨୩୧। ରସିକ ହାରବଳୀ : ୨/୩

୨୩୨। ତତ୍ରୈବ : ୯/୨୬

୨୩୩। ବିଦଗ୍ଧ ଚିନ୍ତାମଣି : ୪/୧୪

୨୩୪। ତତ୍ରୈବ : ୪/୧୪

୨୩୫। ଚନ୍ଦ୍ରକଳା : ୧୨/୧୩

୨୩୬। ପ୍ରେମାବଳୀ ଗ୍ରହିଁ ଜନେ ଭ୍ରମ ଉପୁଜଇ
ସ୍ତନ ପେଟୀରୁ କି କାଢ ବ୍ୟାଳ ବାହାରଇ ।

ଲାବଣ୍ୟବତୀ : ୧୫/୧୪

୨୩୭। ସାଦୃଶ୍ୟ–କଳ୍ପଲତା :୩/୯, ଶଶିସେଣା : ୨/୧୬ ଇତ୍ୟାଦି
ନିନ୍ଦା–ରକ୍ମିଣୀ ବିଭା ୩/୫୧, ଚିତ୍ରକଳା : ୨/୪୪ ଇତ୍ୟାଦି

୨୩୮। ସୁଭଦ୍ରା ପରିଣୟ : ୩,୩୧

୨୩୯। ଚିତ୍ରକଳା : ୨/୪୧

୨୪୦। ଲାବଣ୍ୟବତୀ : ୬/୩୬

୨୪୧। ଚନ୍ଦ୍ରକଳା : ୬/୧୭

୨୪୨। ଚନ୍ଦ୍ରକଳା : ୧୨/୧୨

୨୪୩। ମଧ୍ୟେନ ସା ବେଦି ବିଲଗ୍ନ ମଧ୍ୟା ବଳିତ୍ରୟଂ ଗ୍ଚରୁ ବଭର ବାଳା
ଆରୋହଣାର୍ଥଂ ନବ ଯୌବନେନ କାମସ୍ୟ ସୋପାନମିବ ପ୍ରଯୁକ୍ତମ୍ ।
କୁମାର ସଭବ : ୧/୩୯

୨୪୪। ଉଷାଭିଳାଷ : ୭/୭, ପ୍ରେମଲୋଚନା : ୨/୩୯,
ଚିତ୍ରକଳା : ୨/୪୧ ଇତ୍ୟାଦି

୨୪୫। ଶଶିସେଣା : ୨/୧୬

୨୪୬। ଉଷାଭିଳାଷ : ୨/୨୬

୨୪୭। କୋଟିବ୍ରହ୍ମାଣ୍ଡ ସୁନ୍ଦରୀ : ୩/୭

୨୪୮। ସୁଭଦ୍ରା ପରିଣୟ : ୩/୩୯

୨୪୯। ଶ୍ରୋଣୀ ଭରଦଳସ ଗମନା—ମେଘଦୂତ : ଉତ୍ତର/୧୯, ଏତା ଗୁରୁ
ଶ୍ରୋଣୀ—ରଘୁବଂଶ : ୧୬/୩୦ ଇତ୍ୟାଦି

୨୫୦। ଚକ୍ରେଣ ଯଦି ମତ୍ସ୍ୟକେତୁଃ ପିତୁର୍ଜିତଂ ବିକ୍ଷ୍ୟ ସୁଦର୍ଶନେନ
ଜଗର୍ଜ୍ଜୀଷତ୍ୟମୁନା ନିତମ୍ବଦ୍ୱୟେନ କିଂ ଦୁର୍ଲଭ ଦର୍ଶନେନ ।
ନୈଷଧ : ୭/୮୮

୨୫୧। କଳ୍ପଲତା : ୩/୯, ଉଷାଭିଳାଷ : ୨/୨୮,ପ୍ରେମ ଲୋଚନା : ୨/୪୬

୨୫୨। ଉଷାଭିଳାଷ : ୭/୮, ସୁଭଦ୍ରା ପରିଣୟ : ୩/୪୧

୨୫୩। ଶଶିସେଣା : ୨/୧୬

୨୫୪। ଚିତ୍ରକଳା : ୨/୪୫

୨୫୫। ରସିକ ହାରବଲ୍ଲୀ : ୨/୪

୨୫୬। କୋଟିବ୍ରହ୍ମାଣ୍ଡ ସୁନ୍ଦରୀ : ୩/୧୦

୨୫୭। ବୃତ୍ତାନୁପୂର୍ବେ ଚ ନ ଘ୍ରତିଦୀର୍ଘେ ଜଂଘେ ଶୁଭେ ସୃଷ୍ଟବତ ସ୍ତଦୀୟେ
ଶେଷାଙ୍ଗ ନିର୍ମାଣ ବିଧୌ ବିଧାତୁର୍ଲାବଣ୍ୟ ଉତ୍ପାଦ୍ୟଇବାସ ଯନ୍ତଃ ।
କୁମାରସମ୍ଭବ : ୧/୩୫

୨୫୮। ନୈଷଧ : ୭/୯୨-୯୩ (ରମ୍ଭା), ୭/୯୪ (ହସ୍ତୀ), ୭/୯୫ (ମହାଭାରତ)

୨୫୯। ରସଲେଖା : ୫/୧୭-୨୦

୨୬୦। କଳ୍ପଲତା : ୩/୧୦ (ଓଲଟ କନକ କଦଳୀ), ଉଷାଭିଳାଷ : ୨/୨୯ (ବିପରୀତ କନକ କଦଳୀ), ଚିତ୍ରକଳା : ୨/୪୯ (ଓଲଟରମ୍ଭା), ଲାବଣ୍ୟବତୀ : ୩/୧୧୯ (କଦଳୀ)

୨୬୧। କଳ୍ପଲତା : ୩/୧୦

୨୬୨। ଲାବଣ୍ୟବତୀ : ୩/୧୦୮

୨୬୩। ପ୍ରେମଲୋଚନା : ୨/୪୫

୨୬୪। ଶଶିସେଣା ୨/୧୭

୨୬୫। ଚିତ୍ରକଳା : ୨/୪୭

୨୬୬। ତତ୍ରୈବ : ୨/୪୮

୨୬୭। ତତ୍ରୈବ : ୨/୪୯

୨୬୮। ଅର୍ଣ୍ଣିକା ବିଳାସ : ୨୯/୧୮

୨୬୯। ପ୍ରେମଲୋଚନା : ୧୦/୯୪

୨୭୦। ଲାବଣ୍ୟବତୀ : ୩/୧୦୮-୧୦୯, ରସିକ ହାରବଳୀ : ୨/୧୭-୧୮,
କଳ୍ପଲତା : ୩/୧୦

୨୭୧। ନୈଷଧ : ୭/୯୮-୯୯

୨୭୨। କଳ୍ପଲତା : ୩/୧୦, ଉଷାଭିଳାଷ : ୨/୩୧, ଚିତ୍ରକଳା : ୨/୫୦

୨୭୩। ଉଷାଭିଳାଷ : ୯/୧୪

୨୭୪। ପରିମଳା : ୨/୪୬ (ସ୍ୱରଙ୍ଗ ଜଳରୁହ), ରକ୍ମିଣୀବିଭା : ୨/୫୭ (କୋକନଦ),ଶଶିସେଣା : ୨/୧୮ (ଶୋଣ ପଦ୍ମ)

୨୭୫। ବିଦଗ୍ଧ ଚିନ୍ତାମଣି : ୪/୧୪

୨୭୬। ଅନଙ୍ଗରେଖା : ୩/୧୯

୨୭୭। ପ୍ରେମଲୋଚନା : ୨/୪୯

୨୭୮। ତହୁଁ ସ୍ଥଳ କମଳ ଉଦ୍ଧୁଟିଲେ
ଚୁମ୍ବ ଦେବାକୁ ରୋଲମ୍ବ ଘୋଟିଲେ ।
କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୩/୪୪

୨୭୯। ବିଦଗ୍ଧ ଚିନ୍ତାମଣି : ୩୦/୨୦

୨୮୦। ଉଷାଭିଳାଷ : ୨/୩୧

୨୮୧। ରକ୍ମିଣୀ ବିଭା : ୨/୫୮

୨୮୨। ବିଦଗ୍ଧ ଚିନ୍ତାମଣି : ୪/୧୮

୨୮୩। ଅଙ୍ଗେନ କେନାପି ବିଜେତୁମସ୍ୟା ଗବେଷ୍ୟତେ କିଞ୍ଚଳପତ୍ର ପତ୍ରମ୍
. ନୋ ଚେଦ୍ ବିଶେଷାଦିତରଚ୍ଛଦେଭ୍ୟ ସ୍ତସ୍ୟାସ୍ତୁ କମ୍ପସ୍ତୁ କୁତୋଭୟେନ ।
ନୈଷଧ : ୭/୯୦

୨୮୪। ପ୍ରେମଲୋଚନା : ୧୦/୮୧, ୧୦/୯୪

୨୮୫। ଲୀଳାବତୀ : ୩/୩୨-୪୦

୨୮୬। ଲବଣ୍ୟବତୀ : ୩/୨୮-୨୯

୨୮୭। ସୁବର୍ଣ୍ଣରେଖା : ୨/୧୦

୨୮୮। କେଳି କଳାନିଧି : ୪/୩-୪

୨୮୯। ଚନ୍ଦ୍ରକଳା : ୮/୩୦-୩୩

୨୯୦। ସୁଭଦ୍ରା ପରିଣୟ : ୬/୨୫

୨୯୧। ଉଷାଭିଳାଷ . ୯/୧୫, ଶଶିସେଣା : ୨/୯, କଳ୍ପଲତା : ୩/୮,
ଲବଣ୍ୟବତୀ : ୩/୭ ଇତ୍ୟାଦି ।

୨୯୨। ରସକଲ୍ଲୋଳ : ୧୦/୧୧, ସର୍ବାଙ୍ଗସୁନ୍ଦରୀ : ୩/୨୫

୨୯୩। ଉଷାଭିଳାଷ : ୯/୧୪, କଳାବତୀ : ୪/୨୧, ପ୍ରେମଲୋଚନା :୨/୨୬

୨୯୪। ଉଷାଭିଳାଷ : ୯/୧୧, କଳାବତୀ ୪/୨୧

୨୯୫। କଳ୍ପଲତା : ୩/୪

୨୯୬। କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୫/୨

୨୯୭। ବିଦଗ୍ଧ ଚିନ୍ତାମଣି : ୨୭/୯

୨୯୮। ଚିତ୍ରକଳା : ୭/୪୦

୨୯୯। (କ) ନୃତ୍ୟ ଗୀତ ବାଦ୍ୟ କାବ୍ୟରସରେ କୁଶଳ । ଉଷାଭିଳାଷ ୨/୩୮

(ଖ) ସଂଗୀତ ସାହିତ୍ୟରସେ ଏକଇ ପଣ୍ଡିତା
ବିଶେଷେ ପ୍ରାପତ ତାକୁ ହୋଇଛି କବିତା ।

ଚିତ୍ରକଳା : ୨ ୫୨

(ଗ) ସଂଗୀତ ବିଦ୍ୟା ଆଦି ଦେଇ ସେନେହୀ ଶାରଦା ସୁବୁଦ୍ଧି ବଳେ ।

ସୁଭଦ୍ରା ପରିଣୟ : ୨/୧୪

(ଘ) ବିଦ୍ୟା କି ? ସ୍ୱୟଂସିଦ୍ଧା ମହାବିଦ୍ୟା ସେ ।

ବିଦଗ୍ଧ ଚିନ୍ତାମଣି : ୪/୯

(ଙ) ସର୍ବବିଦ୍ୟା ଜାଣିଲ ଶ୍ରବଣ ମାତ୍ରକରେ ।

ସର୍ବାଙ୍ଗ ସୁନ୍ଦରୀ : ୨/୩୧

(ଚ) ନାଟକ ପଠିନୀ ଗଳେ ପୋତୁ ଲପନ ।

ବିଦଗ୍ଧ ଚିନ୍ତାମଣି : ୩୦/୫୦

୩୦୦। କ) ସାହିତ୍ୟ ପଢ଼ଇ କୂଟେ ସଖୀଙ୍କ ମେଳେ
ଉତ୍ସୁକ ହୁଅଇ ଶୁଣି ରତି ରସ ଖେଳେ ।

ଉଷାଭିଳାଷ : ୩/୬

(ଖ) କାମ ସାହିତ୍ୟ ପଠନେ ମନ ବଳାଇଲ ।

ପ୍ରେମଲୋଚନା : ୩/୩

(ଗ) ରତି ସାହିତ୍ୟ ରୀତି ସେହୁ ଜାଣଇ ।

ଅନଙ୍ଗରେଖା : ୫/୨୧

(ଘ) ଅନଙ୍ଗ ଶାସ୍ତ୍ର ପୋଥି ନ ଛାଡ଼େ କଣ୍ଠ ।

ରସଲେଖା : ୨/୨୨

(ଙ) ରତିଶାସ୍ତ୍ର ପଠନେ ପ୍ରବେଶ ହେଲା ମନ ।

ସର୍ବାଙ୍ଗ ସୁନ୍ଦରୀ : ୨/୩୭

୩୦୧। (କ) ଭୂଷଣେ ଭୂଷିତ ରତି ଲଳସେ ଯୁବତୀ ।

ଉଷାଭିଳାଷ : ୩/୮

(ଖ) ବାସଅଙ୍ଗୀ ସୁର ଉପରୁ ରତି ସେବନେ ସ୍ନେହୀ ।

ବୈଦେହୀଶ ବିଳାସ : ୩/୪୧

(ଗ) ବଳିଲା ସବୁ ପ୍ରକାରେ ସୁରତିରେ ମତି ।

ଚିତ୍ରକଳା : ୩/୨

(ଘ) କରୁଥାଇ ନିରତେ ବଲ୍ଲଭ ପ୍ରତି ଆଶା ।

ସର୍ବାଙ୍ଗ ସୁନ୍ଦରୀ : ୨/୪୧

(ଙ) କନ୍ଦର୍ପ କେଳି କୁଶଳା ହୋଇଥିବ ବାଳା ।

ରସକଲ୍ଲୋଳ : ୭/୩୭

୩୦୨। ଅଭିଜ୍ଞାନ ଶକୁନ୍ତଳା : ୧/୧୯

୩୦୩। ଅନନ୍ୟ ଶୋଭି ଜନନାଦ୍ ବଭୂବ ସାଧାରଣୋ ଭୂଷଣ ଭୂଷ୍ୟଭାବ ।

କୁମାର ସମ୍ଭବ : ୧/୪୨

୩୦୪। କୋଟିବ୍ରହ୍ମାଣ୍ଡ ସୁନ୍ଦରୀ : ୧୨/୬

୩୦୫। ସୁବୁଛି କାଳିନ୍ଦୀ ଦୁବୁଛି ଶୃଙ୍ଗାର ହା ହା  ସେ ଅତ୍ୟନ୍ତ ଗୁରୁ ଯେ ।
ଲାବଣ୍ୟବତୀ : ୪/୯

୩୦୬। ବୈଦେହୀଶ ବିଳାସ : ୧୦ମ, ସୁଭଦ୍ରା ପରିଣୟ : ୭ମ,
ଲାବଣ୍ୟବତୀ : ୪ର୍ଥ, ବିଦଗ୍ଧ ଚିନ୍ତାମଣି : ୩୦ଶ ।

୩୦୭। କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୧୨/୨୨, ଚନ୍ଦ୍ରକଳା : ୯/୧୩,
ବିଦଗ୍ଧ ଚିନ୍ତାମଣି : ୩୦ ୩୬, ଲାବଣ୍ୟବତୀ : ୩୧/୨୩

୩୦୮। ଲାବଣ୍ୟବତୀ : ୪ର୍ଥ, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୧୨ ଶ,
ରସକଲ୍ଲୋଳ : ୧୮ଶ ଚିତ୍ରକଳା : ୩ୟ ।

୩୦୯। ଗୋଟିର ଉଦାହରଣ—
ଦେଇ କହେ ଏ ମୃଦିର ନାଦେ । ନୀଳକଣ୍ଠ ବଶ ହେବେ ପ୍ରମୋଦେ ।
ଯୋଗ ବିନା ଭୋଗ କରିବେ ମତି । ଉଦ୍ଦୀପନକାରୀ କାଳର ରୀତି ।
ଆଲମ୍ବନ ଭବ । ଛନ୍ଦୁଁଛି କେମନ୍ତେ ଦମ୍ଭ ରହିବ ।
କୋଟିବ୍ରହ୍ମାଣ୍ଡ ସୁନ୍ଦରୀ : ୧୨/୨୧

୩୧୦। କୁମାର ସମ୍ଭବ : ୩/୫୪

୩୧୧। ବାହୁଦ୍ୱୌଚ ମୃଣାଳମାସ୍ୟ କମଳଂ ଲାବଣ୍ୟ ଲୀଳାଜଳମ୍
ଶ୍ରୋଣୀ ତୀର୍ଥ ଶିଳାଚ ନେତ୍ର ଶଫରୀ ଧମିଲ୍ଲ ଶୈବାଳକମ୍
କାନ୍ତାୟାଃ ସ୍ତନ ଚକ୍ରବାକ ଯୁଗଳଂ କନ୍ଦର୍ପ ବାଣାନଳୈ-
ଦ୍‌ଗ୍ଧାନାମ ବଗାହନାୟ ବିଧିନାଂ ରମ୍ୟଂ ସରେ ନିର୍ମିତମ ।
(ଉଦ୍ଧୃତି) ରସକଲ୍ଲୋଳ ସମୀକ୍ଷା : ପୃ ୧୨୪

୩୧୨। ମୁଖ ପାଦି ପଦ୍ମାକ୍ଷି ପଙ୍କଜୈ ରଚିତାଽଙ୍ଗେଷ୍ୱପରଷ୍ଟୁ ଚମତ୍କୈଃ
ସ୍ୱୟମାଦିତ ଯତ୍ର ଭୀମଜା ସ୍ମରପୂଜା କୁସୁମସ୍ରଜଃ ଶ୍ରିୟମ ।
ନୈଷଧ : ୨/୯୬

୩୧୩। ନୈଷଧ : ୨/୩୬

୩୧୪। ନବ ବନିତା ଅପୂର୍ବ ପୁଷ୍ପଲତା ପ୍ରକାଶ ଷୋଳ ଜାତି ଫୁଲ ।
ଲାବଣ୍ୟବତୀ : ୧୯/୧୪

୩୧୫। ସର୍ପପୁରେ ଯାଇ ପର୍ବତ କହିଲେ ମହୀ ଜାତ ହେମ ମଂଜରୀ ।
ସୁଭଦ୍ରା ପରିଣୟ : ୪/୭-୮

୩୧୬। ନାରୀ ବାରି ବାରି ନୋହିଲ ତହିଁ ଘଡ଼ିଏ ଯାଏ ।
ଲାବଣ୍ୟବତୀ : ୬/୩୪

କିମ୍ବା

କେଉଁ ଗୋପୀ ମୂର୍ତ୍ତି ଅନାଇ ବୋଲନ୍ତି ତୋ ଅଂଗ କାମ ସରୋବର ।
ରସକଲ୍ଲୋଳ : ୮/୨୦

୩୧୭। ଶଶିସେଣା : ୨/୧୫, ଚନ୍ଦ୍ରକଳା : ୧୨/୨୫

୩୧୮। ପରିମଳା : ୨/୪୮

୩୧୯। ଚିତ୍ରକଳା : ୩/୨୭

୩୨୦। ସର୍ବାଙ୍ଗ ସୁନ୍ଦରୀ : ୧୧/୧୮

୩୨୧। ଚିତ୍ରକଳା : ୯/୨୧-୨୨

୩୨୨। ଚିତ୍ରକଳା : ୯/୧୬ ଓ ସର୍ବାଙ୍ଗସୁନ୍ଦରୀ : ୧୧/୨୦

୩୨୩।
୩୨୪। } ଚିତ୍ରକଳା : ୬/୩୧
୩୨୫।

୩୨୬। ଚଉ୍ରୈବ : ୯/୧୭

୩୨୭। ଚଉ୍ରୈବ : ୯/୧୮

୩୨୮। ତତ୍ରୈବ : ୯/୧୯

୩୨୯। ତତ୍ରୈବ : ୯।୨୦

୩୩୦। ସର୍ବାଙ୍ଗ ସୁନ୍ଦରୀ : ୧୧/୧୯

୩୩୧। ପ୍ରେମ ସୁଧାନିଧି : ୪/୨, ପ୍ରେମଲୋଚନା : ୪/୩୦

୩୩୨। ପ୍ରେମ ସୁଧାନିଧି : ୫/୩୦-୩୫

୩୩୩। ପ୍ରେମ ସୁଧାନିଧି : ୧୩/୩, ଲବଣ୍ୟବତୀ : ୧୧/୧୨

୩୩୪। ପ୍ରେମ ସୁଧାନିଧି : ୧୫/୧୯

୩୩୫। କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୩/୧୫

୩୩୬। ତତ୍ରୈବ : ୧୨/୧୮

୩୩୭। ତତ୍ରୈବ : ୧୨/୨୦

୩୩୮। ତତ୍ରୈବ : ୧୨/୨୩

୩୩୯। ରସକଲ୍ଲୋଳ : ୮/୧୬, ପ୍ରେମଲୋଚନା : ୪/୨୯

୩୪୦। ଲବଣ୍ୟବତୀ : ୫/୮, ସୁଭଦ୍ରା ପରିଣୟ : ୪/୧-୨

୩୪୧। ରସକଲ୍ଲୋଳ : ୧୬/୧୮

୩୪୨। ରସକଲ୍ଲୋଳ : ୮/୧୭

୩୪୩। ସୁଭଦ୍ରା ପରିଣୟ : ୪/୩

୩୪୪। ତତ୍ରୈବ : ୪/୩

୩୪୫। ତତ୍ରୈବ : ୪/୪

୩୪୬। ତତ୍ରୈବ : ୪/୧୦

୩୪୭। ତତ୍ରୈବ : ୪/୧୯

୩୪୮। ତତ୍ରୈବ : ୪/୨୧

୩୪୯। ରସିକ ହାରାବଳୀ : ୨/୯

୩୫୦। ଲବଣ୍ୟବତୀ : ୨/୭୫

୩୫୧। ତତ୍ରୈବ : ୩/୧୦୬

୩୫୨। ତତ୍ରୈବ : ୩୮/୬

୩୫୩। ତତ୍ରୈବ : ୩୮/୮

୩୫୪। ତତ୍ରୈବ : ୯/୭

୩୫୫। ବିଦଗ୍ଧ ଚିନ୍ତାମଣି : ୩୦/୧୯

୩୫୬। ବିଦଗ୍ଧ ଚିନ୍ତାମଣି : ୫୪/୩୮, ଚନ୍ଦ୍ରକଳା : ୧୨/୨୩

୩୫୭। ଚନ୍ଦ୍ରକଳା : ୧୨/୨୭

୩୫୮। ଚନ୍ଦ୍ରକଳା : ୧୨/୨୫

୩୫୯। ବୈଦେହୀଶ ବିଳାସ : ୮/୧, ଲବଣ୍ୟବତୀ : ୭/୭୬,
ସୁଭଦ୍ରା ପରିଣୟ : ୪/୧୪, ସୁବର୍ଣ୍ଣରେଖା : ୧/୧୭

୩୬୦। ବୈଦେହୀଶ ବିଳାସ : ୭/୫୭, ଲବଣ୍ୟବତୀ ୯/୨୩,
ସୁଭଦ୍ରା ପରିଣୟ : ୩/୨, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୭/୨

୩୬୧। ଉଷାଭିଳାଷ : ୨/୩୨, ଅନଙ୍ଗରେଖା : ୩/୧୯,
କୋଟିବ୍ରହ୍ମାଣ୍ଡ ସୁନ୍ଦରୀ : ୧୪/୪, ରସିକ ହାରାବଳୀ : ୪/୯,
କଳାକଉତୁକ : ୧୦/୭

୩୬୨। ଅନଙ୍ଗରେଖା : ୬/୨୨-୩୪, ସର୍ବାଙ୍ଗ ସୁନ୍ଦରୀ : ୮/୫୦-୬୨,
ମଥୁରାମଙ୍ଗଳ : ୨୪ଶ ଇତ୍ୟାଦି

୩୬୩। ବିସ୍ତାର ତା' ବକ୍ଷ ପର ବାରଣ କବାଟ । ଅନଙ୍ଗରେଖା : ୬/୩୧

କିମ୍ବା

ବିସ୍ତାର ଉର କି ଦ୍ୱିପୁଟ କପାଟ ରମାଚିତ୍ତ ବନ୍ଦୀ ଦୁର୍ଗ ।

କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୧୬/୨୪

୩୬୪। ଗୋଟିଏ ଉଦାହରଣ—

—ବକ୍ଷ ଯେତେ ମନୋରମ

ହେବ ତା' କୁଚ ଆଶ୍ରମ ।—ସର୍ବାଙ୍ଗସୁନ୍ଦରୀ : ୮/୫୯

୩୬୫। ସାହିତ୍ୟ ଦର୍ପଣ : ୬ଷ୍ଠ-ପୃ ୫୮୩

୩୬୬। କନ୍ଦର୍ପ କଉତୁକେ ଦିନ ହରନ୍ତି ।

କିମ୍ବା ରସକଲ୍ଲୋଳ : ୮/୩୦

କେଶବ କାମଶାସ୍ତ୍ରରେ କୋବିଦ ।

ରସକଲ୍ଲୋଳ : ୨୩/୧୯ (ଇତ୍ୟାଦି)

୩୬୭। ବିଦଗ୍ଧ ଚିନ୍ତାମଣି : ୪୦/୧୨ (ଇତ୍ୟାଦି)

୩୬୮। ଲବଣ୍ୟବତୀ : ୧/୬୫-୬୮, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୪/୨୬-୩୮

୩୬୯। ରମବିଭ : ୭/୫୩-୫୫

୩୭୦। ରସକଲ୍ଲୋଳ : ୬/୧୯-୨୩

୩୭୧। କଣ୍ଠ ଶଙ୍ଖଜିତ ମନ୍ଦର ତାଡ଼ନ ବରହବର ଅଭୀତ

× × × ବିଷ୍ଣୁ ଦଶରୂପ ଏକେ ବହି ।

କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୧୬/୧୮

୩୭୨। ମାଲୁଣୀ (ଲବଣ୍ୟବତୀ : ୧୩ ଶ), ରଣିକା (ଲବଣ୍ୟବତୀ : ୯ମ, ବୈଦେହୀଶ ବିଳାସ-୪ର୍ଥ), ନଟୀ (ଲବଣ୍ୟବତୀ : ୧୫ଶ) ଅପ୍ସରୀ (ବୈଦେହୀଶ ବିଳାସ : ୨୩/୧୯-୨୬), ରାକ୍ଷସୀ (ରସ କଲ୍ଲୋଳ : ୪ର୍ଥ), ପୁରନାରୀ (କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୩୦ଶ) ଇତ୍ୟାଦି ।

❋

# ବିବିଧ ପ୍ରସଂଗ

ଓଡ଼ିଆ ରୀତି କାବ୍ୟରେ ଶୃଙ୍ଗାର ଚେତନାର ଅଭିବ୍ୟକ୍ତି ରସବିନ୍ୟାସ, ବସ୍ତୁବର୍ଣ୍ଣନା, ସୌନ୍ଦର୍ଯ୍ୟ ନିରୂପଣ ଭିନ୍ନ ଅନ୍ୟାନ୍ୟ ବିଷୟରେ ମଧ୍ୟ ପ୍ରତିଫଳିତ । କଥାବସ୍ତୁର ମୁଖ୍ୟ ପ୍ରବାହରେ ଏସବୁର ଭୂମିକା ଗୌଣ ହେଲେ ହେଁ ଆଲୋଚନାର ବିସ୍ତୃତ ପରିପ୍ରେକ୍ଷୀରେ ଏହାର ଉପାଦେୟତା ସ୍ୱୀକାର୍ଯ୍ୟ ।

## ନାମକରଣ

କାବ୍ୟ-ଅଳଂକାର ଶାସ୍ତ୍ରରେ କାବ୍ୟର ନାମକରଣ ସଂପର୍କିତ ସ୍ପଷ୍ଟ ନିର୍ଦ୍ଦେଶ ଦେଖିବାକୁ ମିଳେ । 'ସାହିତ୍ୟ ଦର୍ପଣ'ରେ କୁହାଯାଇଛି ଯେ କବି, କଥାବସ୍ତୁ, ନାୟକ ଅଥବା ଅନ୍ୟ କୌଣସି ବିଷୟକୁ ଆଧାର କରି କାବ୍ୟର ନାମକରଣ କରା ଯାଇପାରେ [୧] ।

ଓଡ଼ିଆ କାବ୍ୟ ସମୂହର [୨] ନାମକରଣରେ ବିବିଧ ଧାରା ଅନୁସୃତ । ପୌରାଣିକ କାବ୍ୟ କ୍ଷେତ୍ରରେ ବିଭା, କେଳି, ରାସ, ରସ, ପରିଣୟ, ବିଳାସ, ପ୍ରେମ ଇତ୍ୟାଦିର ଉଲ୍ଲେଖ ଏହାର ଶୃଙ୍ଗାର କୈନ୍ଦ୍ରିକତା ସୂଚିତ କରେ । ଏଠାରେ ଭକ୍ତି ଓ ପ୍ରୀତି ଅବିଚ୍ଛିନ୍ନ । ଉଦାହରଣ ସ୍ୱରୂପ-ରାମବିଭା (ଅର୍ଜୁନ ଦାସ), ରାମକୃଷ୍ଣ କେଳି କଲ୍ଲୋଳ (ତ୍ରିପୁରାରି ଦାସ), ରସ ବାରିଧି (ବୃନ୍ଦାବନ ଦାସ), ସୁଭଦ୍ରା ପରିଣୟ (ଉପେନ୍ଦ୍ର ଭଞ୍ଜ), ବ୍ରଜ ବିଳାସ (କୃଷ୍ଣଚନ୍ଦ୍ର ବଜ୍ରଧର ନରେନ୍ଦ୍ର) ପ୍ରେମ ତରଙ୍ଗିଣୀ (ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା) ଇତ୍ୟାଦି । କାଳ୍ପନିକ କାବ୍ୟର ନାମକରଣରେ ଏହି ଚେତନା ସୁପ୍ରତ୍ୟକ୍ଷ; ଯଥା-ମଦାଳସା (ହରିହର ନରେନ୍ଦ୍ର), ଲୀଳାବତୀ (ରଘୁନାଥ ହରିଚନ୍ଦନ), ଅନଙ୍ଗରେଖା, ମଦନ ମଞ୍ଜରୀ, ତ୍ରିପୁର ସୁନ୍ଦରୀ

(ଧନଞ୍ଜୟ ଭଞ୍ଜ), କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ଲାବଣ୍ୟବତୀ, ରସିକ ହାରାବଳୀ, ପ୍ରେମ ସୁଧାନିଧି (ଉପେନ୍ଦ୍ର ଭଞ୍ଜ , ସର୍ବାଙ୍ଗ ସୁନ୍ଦରୀ (ଲୋକନାଥ ବିଦ୍ୟାଧର), ତ୍ରୈଲୋକ୍ୟ ମୋହିନୀ (ଘନ ଭଂଜ), ଲାବଣ୍ୟ ତରଂଗିଣୀ (ଧର୍ମଦେବ), ଲାବଣ୍ୟଲତା (ବଳଭଦ୍ର ପଟ୍ଟନାୟକ),କେଳି କଳାନିଧି(ବ୍ରଜନାଥ ବଡ଼ଜେନା) ଅନୁରାଗବତୀ (ରାମଚନ୍ଦ୍ର ପଟ୍ଟନାୟକ) ଇତ୍ୟାଦି । ଏହି ଜାତୀୟ ନାମକରଣ ସକଳ କାଳାନୁସାରୀ ଏବଂ ଶୃଙ୍ଗାର ଭାବନା ଉଦ୍‌ବୋଧକ ।

ଚରିତ୍ର–ଅଧିକାଂଶ କାଳ୍ପନିକ କାବ୍ୟରେ ନାୟିକାମାନଙ୍କର ନାମକରଣ ଶୃଙ୍ଗାର ଚେତନା ଆଧାରିତ; ଯଥା– ମଦନ ମଂଜରୀ, ଲାବଣ୍ୟବତୀ, ଅନଙ୍ଗରେଖା ଇତ୍ୟାଦି । ସେସବୁର ବିସ୍ତୃତ ଉଲ୍ଲେଖ ଅନାବଶ୍ୟକ । କେତେକ ନାୟକଙ୍କ ନାମକରଣରେ ମଧ୍ୟ ଏହି ଧାରା ପରିଲକ୍ଷିତ; ଯଥା–ମକରକେତୁ (ପରିମଳା), କୁସୁମକେତୁ (ଅନଙ୍ଗରେଖା), ପୁଷ୍ପକେତୁ (କୋଟିବ୍ରହ୍ମାଣ୍ଡ ସୁନ୍ଦରୀ), ଅନଙ୍ଗସୁନ୍ଦର (ଚନ୍ଦ୍ରକଳା), ପଞ୍ଚବାଣ (ତ୍ରୈଲୋକ୍ୟ ମୋହିନୀ) ଇତ୍ୟାଦି । ରାଜା ଓ ରାଣୀଙ୍କ ନାମକରଣ ମଧ୍ୟ ଏହି ଦୃଷ୍ଟିରୁ ବିଚାର୍ଯ୍ୟ; ଯଥା–ସୁରତ ଶିରୋମଣି ଓ ଲାବଣ୍ୟନିଧି ଏବଂ ପୁଷ୍ପଧନୁ ଓ ରସବତୀ (ସର୍ବାଙ୍ଗ ସୁନ୍ଦରୀ), ବିଶ୍ୱାନନ୍ଦକ ଓ ବିଚିତ୍ରକଳା (କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ) ରାଣୀକେଳିକଲ୍ଲୋଳା (ଚନ୍ଦ୍ରକଳା)ଇତ୍ୟାଦି ।

ଏ ପ୍ରସଂଗରେ ଅନ୍ୟାନ୍ୟ ନାମକରଣ ମଧ୍ୟ ଉଲ୍ଲେଖଯୋଗ୍ୟ । ଉଦାହରଣ ସ୍ୱରୂପ ଶଶିସେଣା (ପ୍ରତାପ ରାୟ) କାବ୍ୟରେ ମନ୍ତ୍ରୀ ଓ ମନ୍ତ୍ରୀ ପତ୍ନୀଙ୍କ ନାମ ଯଥାକ୍ରମେ କୁଶଳ ରମଣ ଓ ଲୀଳାବତୀ । ଏତଦ୍‌ଭିନ୍ନ ବିଭିନ୍ନ କାବ୍ୟରେ ଉଲ୍ଲିଖିତ ଗନ୍ଧର୍ବ (ଯଥା–'ଇଚ୍ଛାବତୀ' କାବ୍ୟର କଳାବନ୍ତ, 'ଅନଙ୍ଗରେଖା' କାବ୍ୟର ପୁଷ୍ପଦନ୍ତ, 'ଚନ୍ଦ୍ରକଳା' କାବ୍ୟର ଲାବଣ୍ୟଧ୍ୱଜ) ଓ ଅପ୍‌ସରୀ (ଯଥା– 'ଇଚ୍ଛାବତୀ' କାବ୍ୟର କଳାବତୀ, ଅନଙ୍ଗରେଖା କାବ୍ୟର ମଦାଳସୀ, 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟର ରତିମର୍ଦ୍ଦା ଏବଂ 'ଚନ୍ଦ୍ରକଳା' କାବ୍ୟର କେଳିମଂଜୁଳା ଙ୍କ ନାମରେ ଶୃଙ୍ଗାର ତାତ୍‌ପର୍ଯ୍ୟ ସୁସ୍ପଷ୍ଟ ।

ନଗର ଓ ଅରଣ୍ୟ—ନଗରମାନଙ୍କର ନାମକରଣରେ ପୁରାଣପ୍ରୀତି ବିଶେଷ ଭାବେ ପରିଲକ୍ଷିତ । ଅଳ୍ପକେତେକ ସ୍ଥଳରେ ଏହା ଶୃଙ୍ଗାରଧର୍ମୀ ଓ କାଳ୍ପନିକ; ଯଥା— ରସ ତରଙ୍ଗ (ସର୍ବାଙ୍ଗସୁନ୍ଦରୀ), 'ଉଷାଭିଳାଷ', 'ପ୍ରେମଲୋଚନା' ଓ 'ରସଲେଖା' କାବ୍ୟରେ ରସୋଦୟ ଅରଣ୍ୟର ବର୍ଣ୍ଣନା ଦେଖିବାକୁ ମିଳେ । ପ୍ରତ୍ୟେକ କ୍ଷେତ୍ରରେ ନାମକରଣ ସହ ଶୃଙ୍ଗାରୋଦ୍ଦୀପକ ବିଷୟବସ୍ତୁର ଗଭୀର ସଂପର୍କ ବିଦ୍ୟମାନ [୩] ।

ଚରିତ୍ର—

ଦେବତା—କେତେକ କାଳ୍ପନିକ କାବ୍ୟ ପରିକଳ୍ପନାରେ ଦେବତାମାନଙ୍କ ଚରିତ୍ରକୁ କାମାନୁରକ୍ତ କରାଯାଇଥିବାର ଦେଖାଯାଏ । ଅର୍ଜୁନ ଦାସଙ୍କ 'କଳ୍ପଲତା'ରେ ଅପ୍‌ସରୀ ସୁରେଖାର ନୃତ୍ୟ ଉପଭୋଗ କରୁଥିବା ଦେବତାମାନଙ୍କର କାମପୀଡ଼ା ବର୍ଣ୍ଣନା ସରଳ ଓ ସ୍ୱଭାବସୁନ୍ଦର [୪] । ନରସିଂହ ସେଣଙ୍କ 'ପରିମଳା'ରେ ସେହିପରି ଅନ୍ୟ ଏକ ଚିତ୍ର ପ୍ରଦତ୍ତ । ସ୍ୱର୍ଗ ସୁନ୍ଦରୀ ପରିବୃତା ଇନ୍ଦ୍ରଙ୍କ ନୃତ୍ୟ ସଭାରେ ଦେବଗଣଙ୍କ ଯୁବତୀ-କୁଚ ଦର୍ଶନ ଲାଳସା କବି ଅତ୍ୟନ୍ତ ଚତୁରତାର ସହ ଉଲ୍ଲେଖ କରିଛନ୍ତି [୫] । ଏତଦ୍‌ଭିନ୍ନ ନୃତ୍ୟରତା ତିଳୋତ୍ତମାର ରୂପରେ ସମସ୍ତେ ମଦନମୋହାଭିଭୂତ ହେବା ଏବଂ ମିଥ୍ୟା ଦମ୍ଭ ପୋଷଣ ପୂର୍ବକ ବକ୍ର ନୟନରେ ତା'ର ସ୍ତନ ଯୁଗଳ ପ୍ରତି ଦୃଷ୍ଟିପାତ କରିବା ପ୍ରସଂଗ ଏଠାରେ ଏକାନ୍ତ ରସସିକ୍ତ [୬] । ରଘୁନାଥ ହରିଚନ୍ଦନଙ୍କ 'ଲୀଳାବତୀ' କାବ୍ୟରେ ରାଣୀଙ୍କର ଚନ୍ଦ୍ରୋପାସନା ଓ ପରେ ଦୁହିଁଙ୍କ ମଧ୍ୟରେ ମିଳନ ରୀତି କାବ୍ୟିକ ଶୃଙ୍ଗାର ଚେତନାର ଅନ୍ୟତମ ଦିଗ [୭] । କବିସୂର୍ଯ୍ୟଙ୍କ 'ଚନ୍ଦ୍ରକଳା' କାବ୍ୟର ମହାରାଜଘୋଷ ନଗର ବର୍ଣ୍ଣନା ପ୍ରସଙ୍ଗରେ କାମ ପୀଡ଼ିତ ବୃହସ୍ପତିଙ୍କ ଶଚୀବ-ମହିଷୀ ରମଣ ବୃତ୍ତାନ୍ତ ଏ କ୍ଷେତ୍ରରେ ସ୍ମରଣୀୟ [୮] । ଏ ସମସ୍ତ କଳ୍ପନା କିନ୍ତୁ ପୁରାଣ ପରଂପରାରୁ ଆହୃତ ।

ଋଷି—ଆଜନ୍ମ ବ୍ରହ୍ମଚାରୀ ଋଷ୍ୟଶୃଙ୍ଗଙ୍କ ଜରତା ସଂଭୋଗ ପୁରାଣ ପ୍ରସିଦ୍ଧ । ଉପେନ୍ଦ୍ର ଭଂଜଙ୍କ 'ବୈଦେହୀଶ ବିଳାସ'ରେ ଉକ୍ତ ପ୍ରସଂଗ କାବ୍ୟରସ-ସମୃଦ୍ଧ [୯] । 'ରସଲେଖା' ବର୍ଣ୍ଣିତ ରସୋଦୟ ଅରଣ୍ୟରେ

କପିଗାଙ୍କ ଋଷି ଓ ତାଙ୍କ ଶିଷ୍ୟଗଣଙ୍କ ବ୍ରହ୍ମଚର୍ଯ୍ୟ ପରିତ୍ୟାଗ ପୂର୍ବକ ଗାର୍ହସ୍ଥ୍ୟ ଧର୍ମ ପାଳନ ଶୃଙ୍ଗାର ଜର୍ଜରିତ ଋଷି-ଜୀବନ-ଚିତ୍ରର ଅନ୍ୟତମ ଉଦାହରଣ [୧୦] । ନରସିଂହ ସେଣଙ୍କ 'ପରିମଳା' କାବ୍ୟରେ ଅପ୍‌ସରୀ ତିଳୋତ୍ତମାର ନୃତ୍ୟ ଓ ମୁନିମାନଙ୍କ ମଦନ ପୀଡ଼ାର ରମଣୀୟ ଦୃଶ୍ୟ ଅଙ୍କିତ [୧୧] । ନାରୀ ରୂପର ଉଦ୍ଧତ ମହିମା କିପରି ସମୟ ସମୟରେ କଠିନ ତପଶ୍ଚର୍ଯ୍ୟାକୁ ମଧ୍ୟ ବିଚଳିତ କରିଦେଇପାରେ ପୁରାଣରେ ତା'ର ବହୁଳ ପ୍ରମାଣ ଲିପିବଦ୍ଧ ।

•

ନାଗକନ୍ୟା–'କଳ୍ପଲତା' କାବ୍ୟର ନାୟକ ନାୟିକାଙ୍କ ଜଳକେଳି ଦୃଶ୍ୟରେ ପୁରୁଷ ରୂପ ମୁଗଧା ଦୁଇ ନାଗ ତରୁଣୀଙ୍କ କାମବିକାର ଓ ନାୟକ ଅପହରଣ ପ୍ରସଂଗ ଉଲ୍ଲିଖିତ [୧୨] ।

ପୁରନାରୀ–କାବ୍ୟ-ନାୟକର ରୂପ ଓ ସୌନ୍ଦର୍ଯ୍ୟ ମୋହିତା ପୁରନାରୀମାନଙ୍କର ବିଭ୍ରମ ଓ କାମ ଭାବନା ଚିତ୍ରଣ ପରଂପରାସିଦ୍ଧ । ବରବେଶୀ ଶିବଙ୍କର ଓଷଧିପ୍ରସ୍ଥ ନଗରୀରେ ପ୍ରବେଶ କ୍ରମେ ଦର୍ଶନା-ଭିଳାଷିଣୀ ରମଣୀଗଣଙ୍କ ସ୍ୱକାର୍ଯ୍ୟ ପରିତ୍ୟାଗ ପୂର୍ବକ ବ୍ୟାପାର ସକଳ କାଳିଦାସୀୟ ଲେଖନୀରେ ରୂପାୟିତ [୧୩] ।

'ରାମବିଭା' ବର୍ଣ୍ଣିତ ଶ୍ରୀରାମ-ଦର୍ଶନ ହେତୁକ ମିଥିଳା ପୁରନାରୀମାନଙ୍କ କାମପୀଡ଼ା ଓ କାମନୀମାନଙ୍କ ସାତ୍ତ୍ୱିକ ବିକାରର ଚିତ୍ର ସରଳ ଓ ସଂକ୍ଷିପ୍ତ [୧୪] । 'ପରିମଳା'ରେ ବରଗମନ ଦୃଶ୍ୟ ସମ୍ମୋହିତା କାଞ୍ଚିନଗରୀ ନାରୀମାନଙ୍କ ବିଶୃଙ୍ଖଳ ବେଶବାସ, ଭାବ ଓ ଭାବନାର ବିବରଣ ସୁଦୀର୍ଘ [୧୫] । ନିଜ ନିଜ ପତିମାନଙ୍କର ରୂପ, ଗୁଣ ଓ ରତି ପ୍ରତି ଧିକ୍‌କାର ତଥା ସର୍ବାଙ୍ଗରେ କାମନା-ଅଧୀରତା ସେମାନଙ୍କ ଚାରିତ୍ରିକ ବୈଶିଷ୍ଟ୍ୟର ସୂଚନା ଦିଏ । ସୁପୁରୁଷ-ଭାବନା ପୀଡ଼ିତ ନାରୀ ମାନସିକତାର ଅନ୍ତଃପୁର ଉଦ୍‌ଘାଟନ କରିବାରେ କବିଙ୍କ କୃତିତ୍ୱ ବାସ୍ତବିକ ପ୍ରଶଂସନୀୟ । ଶ୍ରୀକୃଷ୍ଣଙ୍କ ବେଣୁନାଦ ଶ୍ରବଣରେ ଗୋପାଙ୍ଗନାମାନଙ୍କର ବିଭ୍ରମ ଏବଂ ମଥୁରା ପ୍ରବେଶରେ ନାରୀମାନଙ୍କର ରୂପ-ଦର୍ଶନ-ଆତୁରତା 'ରସ କଲ୍ଲୋଳ'ର ଦୁଇଟି ଉଲ୍ଲେଖଯୋଗ୍ୟ

ଅଧ୍ୟାୟ [୧୬] । ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ମତରେ– "ସପ୍ତଦଶ ଛାନ୍ଦରେ କୃଷ୍ଣଙ୍କ ଦର୍ଶନରେ ଗୋପୀମାନଙ୍କର 'ବିଭ୍ରମ ବର୍ଣ୍ଣନା ବଲରାମ ଦାସଙ୍କ କୃତ ରାମାୟଣରେ ବର୍ଣ୍ଣିତ ରାମଦର୍ଶନରେ ମିଥିଳା ନାରୀଙ୍କର କାଦମ୍ବରୀ ବର୍ଣ୍ଣିତ ଚନ୍ଦ୍ରାପୀଡ଼ ଦର୍ଶନେଚ୍ଛୁ ପୁରସ୍ତ୍ରୀମାନଙ୍କର ସେହି ବର୍ଣ୍ଣନାର ସଂପୂର୍ଣ୍ଣ ଅନୁରୂପ । ଭାଗବତରେ ମଧ୍ୟ ଏ ରୂପ ବର୍ଣ୍ଣନା ଅଛି [୧୭] ।"

ବିଦେହ ମଣ୍ଡଳର ରମଣୀମାନଙ୍କ ଶ୍ରୀରାମ ଦର୍ଶନାକାଂକ୍ଷା ଜନିତ ଆତୁର ଅବସ୍ଥା 'ବୈଦେହୀଶ ବିଳାସ'ରେ ସୁପରିକଳ୍ପିତ [୧୮] । ବିଭ୍ରମ ବଶତଃ ସେମାନଙ୍କର ନୟନରେ କଜ୍ଜ୍ୱଳ ପରିବର୍ତ୍ତେ କସ୍ତୁରୀ, ବକ୍ଷ ସ୍ଥଳରେ ସ୍ତନପରି ପରିବର୍ତ୍ତେ କିଂକିଣୀ, ଲଲାଟରେ ସିନ୍ଦୂର ପରିବର୍ତ୍ତେ ଲକ୍ଷାରସ ଇତ୍ୟାଦିର ଉପଯୋଗ କାବ୍ୟିକ ସରସତା ସମୃଦ୍ଧ । 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ର ନାୟକ ପୁଷ୍ପକେତୁର ବର ବେଶ ଦେଖି ତରୁଣୀଗଣ ତାଙ୍କୁ ବଲ୍ଲଭ ରୂପେ କାମନା କରିବା ଯେପରି ବାସ୍ତବ ସେହିପରି ଶୃଙ୍ଗାର ଚେତନା ସମନ୍ୱିତ [୧୯] । 'ମଥୁରା ମଙ୍ଗଳ' ବର୍ଣ୍ଣିତ ଶ୍ରୀକୃଷ୍ଣଙ୍କ ରୂପ ଶୋଭା ବିହ୍ୱଳିତା ମଥୁରା ନାରୀଙ୍କର କାମବିକାର ଓ ବାକ୍‌ଚାତୁରୀ ମଧ୍ୟ ପ୍ରୀତି ରସ ଜର୍ଜରିତ [୨୦] ।

ବୃଦ୍ଧା–ବୃଦ୍ଧା ଚରିତ୍ରରେ ଶୃଙ୍ଗାର ଚେତନାର ଅଭିବ୍ୟକ୍ତି ନୀତି ଓ ଶାସ୍ତ୍ର ବିରୁଦ୍ଧ ହେଲେ ହେଁ କେତେକ ସ୍ଥଳରେ ଏହାର ସଂକ୍ଷିପ୍ତ ସୂଚନା ପ୍ରଦତ୍ତ । 'ପରିମଳା' କାବ୍ୟର ବରଗମନ ଦର୍ଶନାଭିଳାଷିଣୀ ପୁରନାରୀ-ମାନଙ୍କ କାମାତୁରତା ପ୍ରସଙ୍ଗରେ ବୃଦ୍ଧାର ଅନୁଭବ ମଧ୍ୟ ଉଲ୍ଲିଖିତ [୨୧] । 'ମଥୁରା ମଙ୍ଗଳ'ରେ ବୃଦ୍ଧାର ଶରୀର ଶ୍ଳଥତା ଓ ଶୃଙ୍ଗାର ପୀଡ଼ିତ ଭାବନାର ଚିତ୍ର ବିସ୍ମୟକର [୨୨] । ନାୟକ ଚରିତ୍ରକୁ କାମମୟ ଓ ସୌନ୍ଦର୍ଯ୍ୟମୟ କରି ଗଢିବା ଏହାର ଏକମାତ୍ର ଉଦ୍ଦେଶ୍ୟ ।

ଶାଳୀ–ବିବାହ ବେଦୀରେ କୋଶଳ ରାଜ କୁମାରଙ୍କୁ ଦେଖି କନ୍ୟାର କନିଷ୍ଠା ଭଗ୍ନୀ ଶୃଙ୍ଗାର ଭାବନାରେ ଅଧୀର ହେବା 'ରସିକ ହାରା-ବଳୀ'ରେ ବର୍ଣ୍ଣିତ [୨୩] । ଓଡ଼ିଆ ରୀତି କାବ୍ୟରେ ଶାଳୀ ଚରିତ୍ରର ଉଲ୍ଲେଖ ଏକାନ୍ତ ବିରଳ ।

ଦାସୀ–'କଳ୍ପଲତା' ବର୍ଣ୍ଣିତ ନାୟକ ନାୟିକାଙ୍କ ଜଳକେଳି ଦୃଶ୍ୟରେ ସରୋବର କୂଳସ୍ଥ ଦାସୀମାନଙ୍କ ଅନଙ୍ଗ ବିକାରର ସଂକ୍ଷିପ୍ତ ସୂଚନା ଦେଖିବାକୁ ମିଳେ [୨୪] । ମାନବିକ ଚରିତ୍ରର ସ୍ୱାଭାବିକତା ଦୃଷ୍ଟିରୁ ଏହା ଯଥାର୍ଥ । ସ୍ୱୀକାର କରିବାକୁ ହେବ ଯେ ଗୌଣଚରିତ୍ର ପ୍ରତି ରୀତି କବିର ଧ୍ୟାନ ଆଦୌ ଅନୁକୂଳ ନୁହେଁ ।

ଖଳ ଚରିତ୍ର–ଚିତ୍ରରଥ (ପରିମଳା), କଳାବନ୍ତ (ପ୍ରେମ ଲୋଚନା) ଓ ପୁଷ୍ପଦନ୍ତ (ଅନଙ୍ଗରେଖା) ପ୍ରଭୃତି ଗନ୍ଧର୍ବଗଣ ଖଳ ଚରିତ୍ର ରୂପେ ଓଡ଼ିଆ ରୀତି କାବ୍ୟରେ ସୁପରିଚିତ । ନାୟିକା ପରିମଳାର ପ୍ରୀତି ଲାଭରେ ସଫଳତା ଓ ବିଫଳତା ତଥା ନାୟକର ବିରୁଦ୍ଧାଚରଣ ଚିତ୍ରରଥ ଚରିତ୍ରର ବୈଶିଷ୍ଟ୍ୟ । କିନ୍ତୁ କଳାବନ୍ତ ଓ ପୁଷ୍ପଦନ୍ତ ଚରିତ୍ରରେ ଖଳବୁଦ୍ଧି ଓ ଅସଫଳତାହିଁ ମୂର୍ତ୍ତିମନ୍ତ ।

ପକ୍ଷୀ (ହଂସ ଓ ହଂସୀ)–ନାୟକ ନିକଟରେ ନାୟିକାର ଓ ନାୟିକା ନିକଟରେ ନାୟକର ରୂପ ଗୁଣ ବର୍ଣ୍ଣନା ପୂର୍ବକ ପରସ୍ପରର ମିଳନରେ ସହାୟତା କରିବା ହଂସ/ହଂସୀ ଚରିତ୍ରର ରୀତି କାବ୍ୟିକ କର୍ତ୍ତବ୍ୟ ରୂପେ ଗୃହୀତ । କିନ୍ତୁ ଦୁଇଟି ସ୍ଥଳରେ ଏହାର ଭୂମିକା ଉଲ୍ଲେଖଯୋଗ୍ୟ । ଲୋକନାଥଙ୍କ 'ସର୍ବାଙ୍ଗ ସୁନ୍ଦରୀ'ରେ ବ୍ରହ୍ମାଙ୍କ ବାହନ ହଂସ ପଦ୍ମଦଳ ଅନ୍ତରାଳରେ ନିଜ ଶରୀରକୁ ଗୋପନ କରି ସ୍ନାନରତା ନାୟିକାର ରୂପଶୋଭା ଅବଲୋକନ କରିବା ଏକ ବିଚିତ୍ର ପରିକଳ୍ପନା [୨୫] । ସେହିପରି ରମଣ ଅଭାବରେ ନାୟିକା ଚିତ୍ରକଳାର ରାତ୍ରି ଯାପନ ପ୍ରତି ହଂସୀର ଆକ୍ଷେପ ଅତ୍ୟନ୍ତ ଶୃଙ୍ଗାରୋଦ୍ଦୀପକ [୨୬] ।

ଅନ୍ୟାନ୍ୟ–ଗନ୍ଧର୍ବ, ଅପ୍ସରୀ, ଗଣିକା ଚରିତ୍ର ମୁଖ୍ୟତଃ ଶୃଙ୍ଗାର ବିଳାସମୟ । ସେ ସବୁର ଉଲ୍ଲେଖ ଅନାବଶ୍ୟକ । ଅସୁରୀ ସୂର୍ପଣଖା (ବୈଦେହୀଶ ବିଳାସ)ର ପ୍ରୀତି-କାମନା ପୂରଣ ସମ୍ପୃକ୍ତ । ନାୟକ ନାୟିକାଙ୍କ ମିଳନ ଓ ବିରହ ସଂବଳିତ ଆୟୋଜନ, ଆକୁଳତା, ସଂବେଦନା ଓ ପରିହାସରେ ସଖୀମାନଙ୍କର ଭୂମିକା ରୀତିବଦ୍ଧ । ଏଥିରେ ସ୍ୱାତନ୍ତ୍ରିକ ବୈଶିଷ୍ଟ୍ୟର ସୂଚନା ପ୍ରାୟ ନାହିଁ କହିଲେ ଚଳେ ।

## କାବ୍ୟ ଗୌରବ

କାବ୍ୟ ଗୌରବ ଘୋଷଣା କଲାବେଳେ କବିଗଣ ବହୁ ସ୍ଥଳରେ ଶୃଙ୍ଗାର ଭାବନାଶ୍ରିତ ହୋଇଥିବାର ଦେଖାଯାଏ । ଏ ପ୍ରସଂଗରେ ଏକ ପ୍ରସିଦ୍ଧ ସଂସ୍କୃତ ଶ୍ଳୋକ ଆମର ସ୍ମରଣୀୟ । ସେଥିରେ କାବ୍ୟକୁ ଆନ୍ଧ୍ର, ଗୁର୍ଜ୍ଜର ଓ ମରହଟ୍ଟ ଦେଶୀୟ ନାରୀର ସ୍ତନ ସହ ତୁଳନା କରାଯାଇଛି [୨୭]। ମମ୍ମଟ ଏହାକୁ 'କାନ୍ତାସମ୍ମିତ ତୟୋପଦେଶ ଯୁଜେ' ବୋଲି କହିଛନ୍ତି । ବାଣଭଟ 'କାଦମ୍ବରୀ'ରେ କବିତା ସୁନ୍ଦରୀଙ୍କୁ ସ୍ୱୟଂଶଯ୍ୟା ସମୁପସ୍ଥିତା ଅନୁରାଗ ରସ ପରିପୂର୍ଣ୍ଣା ନବ ବଧୂ ରୂପେ ପରିକଳ୍ପନା କରିଛନ୍ତି [୨୮] । ଜୟଦେବଙ୍କ ଭାଷାରେ କାବ୍ୟ ହେଉଛି କୋମଳ କଳାବତୀ ଯୁବତୀ ସ୍ୱରୂପା [୨୯] ।

'ରସ କଲ୍ଲୋଳ'କାର ଏହି ରୀତିରେ କବିତ୍ୱର ସ୍ୱରୂପ ଦର୍ଶାଇବାକୁ ଯାଇ 'ବନିତା' ଓ 'କାମିନୀ ବିଭବ'ର ଉଲ୍ଲେଖ କରିଛନ୍ତି [୩୦] । ସେହିପରି ଅଭିମନ୍ୟୁ 'ବିଦଗ୍ଧ ଚିନ୍ତାମଣି'କୁ ନବ ଗୁଣବତୀ ଯୁବତୀ [୩୧], ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା 'ଲଳିତ ଲୋଚନା'କୁ ନାଗରୀ ନାରୀ [୩୨], ତ୍ରିବିକ୍ରମ ଭଂଜ 'କନକଲତା'କୁ ବର ବନିତା [୩୩], ନଳିନାକ୍ଷ ମର୍ଦ୍ଦରାଜ 'ଲାବଣ୍ୟନିଧି'କୁ ନାଗରୀ [୩୪],ପଦ୍ମନାଭ ଦେବ 'ଭାବବତୀ'କୁ ବୃତ୍ତିବାମା [୩୫], ଲକ୍ଷ୍ମଣ ମିଶ୍ର 'ଶ୍ରୀକୃଷ୍ଣ ଲୀଳାମୃତ'କୁ ମରହଟ୍ଟପୁର ନାରୀ ଉରଜ [୩୬] ରୂପେ ପରିକଳ୍ପନା କରିଛନ୍ତି ।

## ପୂର୍ବଜନ୍ମ

ପୂର୍ବଜନ୍ମ ପ୍ରସଂଗ ଭାରତୀୟ ପୁରାଣ ପରଂପରାରେ ସୁପ୍ରତିଷ୍ଠିତ । ଓଡ଼ିଆ ରୀତି କାବ୍ୟର ନାୟକ ନାୟିକାଙ୍କ ପୂର୍ବଜନ୍ମ ବ୍ୟାପାର ସେହି ପରଂପରାର ଫଳଶ୍ରୁତି । ଏହାର ରୂପ ଦ୍ୱିବିଧ । ପ୍ରଥମତଃ ଅଭିଶପ୍ତ ସିଦ୍ଧ, ଋଷି ତଥା ଅପ୍ସରା/ଅପ୍ସରୀଙ୍କ ମର୍ତ୍ତ୍ୟରେ ଜନ୍ମଲାଭ । ଦ୍ୱିତୀୟତଃ ଦେବ ଦେବୀଙ୍କ ମାନସ ସନ୍ତାନର ମାନବ ଦେହ ଧାରଣ ।

ଅଭିଶାପ–ଇନ୍ଦ୍ରଙ୍କ ଅଭିଶାପରୁ ଅପ୍‌ସରୀ ତିଳୋତ୍ତମା ଏବଂ ଅପ୍‌ସରୀ ମଦାଳସାର ନାୟିକା ରୂପେ ଜନ୍ମଲାଭ 'ପରିମଳା' ଓ 'ଅନଙ୍ଗରେଖା' କାବ୍ୟରେ ବର୍ଣ୍ଣିତ [୩୭] । ଦୃଷ୍ଟିପଥରେ ପ୍ରିୟତମର ଆବିର୍ଭାବ ହେତୁ ନୃତ୍ୟରେ ଶିଥିଳତା ଏବଂ ସୁରପତିଙ୍କ କ୍ରୋଧ ସେମାନଙ୍କ ମର୍ତ୍ତ୍ୟ ଜନ୍ମର କାରଣ ।

କେତେକ କାବ୍ୟରେ ନାୟକ ନାୟିକା ଉଭୟଙ୍କ ପୂର୍ବଜନ୍ମ ବିବରଣ ପ୍ରଦତ୍ତ । 'କଳ୍ପଲତା' କାବ୍ୟର ବସନ୍ତକ ଓ ସୁରେଖା, 'ରତ୍ନମଂଜରୀ' କାବ୍ୟର କଳାକର ଓ ମନୋରମା, 'ଇଚ୍ଛାବତୀ' କାବ୍ୟର କଳାବନ୍ତ ଓ କଳାବତୀ', 'ରସିକ ହାରବଳୀ' କାବ୍ୟର ବିଦ୍ୟାଧର ଦମ୍ପତି ପ୍ରେମାସକ୍ତି ଜନିତ ନୃତ୍ୟ-ବିଶୃଙ୍ଖଳା ହେତୁ ଇନ୍ଦ୍ରଙ୍କ ଦ୍ୱାରା ଅଭିଶପ୍ତ [୩୮] ।

ସ୍ନାନରତା ଯକ୍ଷ ନନ୍ଦିନୀ ସୁଲୋଚନା ଓ ଯୋଗୀ ଜ୍ଞାନପୁଞ୍ଜଙ୍କ ସଂଯୋଗ ପ୍ରମତ୍ତତା ହେତୁ ଶିବଙ୍କଠାରୁ ଅଭିଶାପ ଲାଭ ଏବଂ କନକଲତା ଓ ରସାଞ୍ଜନ ରୂପେ ସେମାନଙ୍କର ମର୍ତ୍ତ୍ୟରେ ଜନ୍ମଲାଭ ତ୍ରିବିକ୍ରମ ଭଞ୍ଜଙ୍କ 'କନକ ଲତା' କାବ୍ୟରେ ବର୍ଣ୍ଣିତ [୩୯] ।

ମାନସ ସନ୍ତାନ–ସିଦ୍ଧ ଯୋଗୀମାନଙ୍କର ଯୋଗ ପରୀକ୍ଷା ନିମିତ୍ତ ଦେବ ଦେବୀଙ୍କର ମାନସ କନ୍ୟା ସୃଷ୍ଟି 'ରୁଦ୍ର ସୁଧାନିଧି' ଓ 'ଗୋରେଖ ସଂହିତା' ଭଳି ପ୍ରାକ୍ ରୀତି କାବ୍ୟ ଧାରାରେ ପରିଦୃଷ୍ଟ [୪୦] । ଲୋକନାଥ ବିଦ୍ୟାଧରଙ୍କ କାବ୍ୟ-ନାୟିକା ସର୍ବାଙ୍ଗସୁନ୍ଦରୀର ପୂର୍ବଜନ୍ମ ବିଧାନରେ ସେହି ଆଦର୍ଶର ଅନୁସରଣ କରାଯାଇଛି । ପାର୍ବତୀଙ୍କ ଅପାଙ୍ଗରୁ ସୁରଅପାଙ୍ଗୀର ଆବିର୍ଭାବ, ଯୋଗୀ ଜ୍ଞାନାଙ୍କୁରର ଯୋଗଭ୍ରଷ୍ଟ ଏବଂ ଶିବପାର୍ବତୀଙ୍କ ନିର୍ଦ୍ଦେଶରେ ସେମାନଙ୍କର ମର୍ତ୍ତ୍ୟରେ ଜନ୍ମଲାଭ ବୃତ୍ତାନ୍ତ ଏଠାରେ ଉଲ୍ଲେଖଯୋଗ୍ୟ [୪୧] ।

ନରେନ୍ଦ୍ର ଯୁବତୀଙ୍କ 'ଶଶିସେଣା'ରେ ବର୍ଣ୍ଣିତ ଧର୍ମ ଧ୍ୱଂସିନୀ କନ୍ୟାର ଆବିର୍ଭାବ ଓଡ଼ିଆ ରୀତି କାବ୍ୟରେ ଏକ ବ୍ୟତିକ୍ରମ । ପିମ୍ପୋଲି ନଗରର ରାଜା ମଧୁକରଙ୍କ ପୁଣ୍ୟମୟ ଚରିତ୍ରକୁ କଳଙ୍କିତ କରିବା ନିମିତ୍ତ ବିଧାତାଙ୍କର

ଏହି କନ୍ୟାପ୍ରତି ନିର୍ଦ୍ଦେଶ ଏବଂ କନ୍ୟାର କୁପ୍ରଭବରେ ରଜାଙ୍କର ସକଳ ଧର୍ମତ୍ୟାଗ ତଥା ସ୍ୱକନ୍ୟା ସଂଭୋଗ ଅଭିଳାଷ ଭଳି ନିନ୍ଦନୀୟ ପ୍ରସଂଗ ଆଲୋଚ୍ୟ କାବ୍ୟରେ ପରିଲକ୍ଷିତ [୫୬] ।

ଉପେନ୍ଦ୍ରଙ୍କ 'ଲବଣ୍ୟବତୀ' କାବ୍ୟରେ ମାନସ-କନ୍ୟା ବାଞ୍ଛାବତୀର ଆବିର୍ଭାବ ପାର୍ବତୀଙ୍କ ଅବସର ବିନୋଦନ ନିମନ୍ତେ ଉଦ୍ଦିଷ୍ଟ [୫୭]। ଶିବଙ୍କ ଉପସ୍ଥିତିକ୍ରମେ ଏହି କନ୍ୟାର ଅରଣ୍ୟ ନିର୍ବାସନ, ପ୍ରଭକର ଓ ବାଞ୍ଛାବତୀଙ୍କ ସାକ୍ଷାତ ତଥା ସେମାନଙ୍କ ମର୍ତ୍ତ୍ୟଜନ୍ମ ଆଦି କଳ୍ପନାର ମନୋରମ ବିଳାସରେ ସମୃଦ୍ଧ ।

ପ୍ରବଳ ପ୍ରତାପୀ ସୁନ୍ଦ ଓ ଉପସୁନ୍ଦଙ୍କ ବିନାଶ ନିମନ୍ତେ ଲକ୍ଷ୍ମୀଙ୍କ ମାନସ-କନ୍ୟାର ଆବିର୍ଭାବ ରଘୁନାଥ ହରିଚନ୍ଦନଙ୍କ 'ଲୀଳାବତୀ' କାବ୍ୟରେ ବର୍ଣ୍ଣିତ [୫୮] । କନ୍ୟାକୁ ଦେଖି ଦୁଇଭାଇ ମୋହିତ ହେବା ଏବଂ ପରସ୍ପର ଯୁଦ୍ଧରେ ପ୍ରବୃତ୍ତ ହୋଇ ମୃତ୍ୟୁ ବରଣ କରିବା ତଥା ଶ୍ରୀକୃଷ୍ଣଙ୍କ ଆଖି ମଳିରୁ କନ୍ୟା ପାଇଁ ଉପଯୁକ୍ତ ପୁରୁଷ ସୃଷ୍ଟି ଓ ଉଭୟଙ୍କ ମର୍ତ୍ତ୍ୟଜନ୍ମ ବ୍ୟବସ୍ଥା ଆଦି କାଳ୍ପନିକ ବସ୍ତୁ ଗୁମ୍ଫନ ଏଠାରେ ବିଶେଷ କୌତୂହଳପ୍ରଦ ।

ଏକଦା ନାରାୟଣଙ୍କ କାମ ଭାବନାର ପରିତୁଷ୍ଟି ପାଇଁ ସ୍ୱାଧୀନଭର୍ତ୍ତୃକା ଲକ୍ଷ୍ମୀଙ୍କର ମନୋଜ୍ଞା ନାମ୍ନୀ ମାନସ କନ୍ୟା ସୃଷ୍ଟି ଏବଂ ଏହାର ପ୍ରତିସ୍ପର୍ଦ୍ଧାରେ ନାରାୟଣଙ୍କ ନିଃଶ୍ୱାସରୁ ଶ୍ୱାସୋଦ୍ଭବ ନାମକ ପୁରୁଷର ଆବିର୍ଭାବ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ 'ଲଳିତ ଲୋଚନା'ର ନାୟକ ନାୟିକାଙ୍କ ପୂର୍ବଜନ୍ମ ପ୍ରସଂଗରେ ଉଲ୍ଲିଖିତ [୫୯] । ଉଭୟଙ୍କ ମଧ୍ୟରେ ପ୍ରେମ, ଅଂଗ ସ୍ପର୍ଶମାତ୍ରେ ନାରୀର ପ୍ରାଣନାଶ ଏବଂ ପୁରୁଷର ବିରହ ବ୍ୟାକୁଳତା ତଥା ଲକ୍ଷ୍ମୀ ନାରାୟଣଙ୍କ ଠାରୁ ଦୁହିଁଙ୍କର ମର୍ତ୍ତ୍ୟଜନ୍ମ ବରଲାଭ ଇତ୍ୟାଦି ରୀତି କାଳ୍ପନିକତାର ଅନ୍ୟତମ ବୈଚିତ୍ର୍ୟ ।

ଥରେ ଜଳକେଳି କାଳରେ କୌତୁକ ବଶତଃ ଶିବ ଓ ପାର୍ବତୀଙ୍କର ଦୁଇ ମାନସ ସନ୍ତାନ ସୃଷ୍ଟି (ପୁରୁଷ କଂଜାନନ ଓ କନ୍ୟା ଚନ୍ଦ୍ରକାନ୍ତି),

ଉଭୟଙ୍କ ମଧ୍ୟରେ ପ୍ରବଳ ପ୍ରେମାକର୍ଷଣ ଏବଂ ଦୁହିଙ୍କର ନାୟକ ନାୟିକା ରୂପେ ମର୍ତ୍ତ୍ୟରେ ଜନ୍ମଲାଭ ନିମିତ୍ତ ଆଶୀର୍ବାଦ ଲାଭ ପଦ୍ମନାଭ ଶ୍ରୀଚନ୍ଦନଙ୍କ 'ଶଶିରେଖା' କାବ୍ୟରେ ବର୍ଣ୍ଣିତ [୫୬] । ସଦାନନ୍ଦ କବିସୂର୍ଯ୍ୟଙ୍କ 'ମୋହନ କଳ୍ପଲତା' କାବ୍ୟର ନାୟକ ନାୟିକାଙ୍କ ପୂର୍ବଜନ୍ମ ବୃତ୍ତାନ୍ତରେ ବୃନ୍ଦାଙ୍କର ନାରୀ ପ୍ରତିମା ନିର୍ମାଣ, ଏକାକ୍ଷର ମନ୍ତ୍ରରେ ରାଧାଙ୍କର ସେହି ପ୍ରତିମାକୁ ଜୀବନ୍ୟାସ ଦାନ, ସ୍ୱକନିଷ୍ଠାଙ୍ଗୁଳିରୁ ଶ୍ରୀକୃଷ୍ଣଙ୍କର ପୁରୁଷ ସୃଷ୍ଟି ଏବଂ ନାରୀପୁରୁଷର ପରିପୂର୍ଣ୍ଣ ମିଳନ ସୁଖ ନିମିତ୍ତ ମର୍ତ୍ତ୍ୟରେ ଦେହ ଧାରଣ ଲାଗି ଦୁହିଙ୍କୁ ବର ପ୍ରଦାନର ଦୀର୍ଘ ବିବରଣ ପ୍ରଦତ୍ତ [୫୭] ।

ସୁତରାଂ ଅଭିଶାପଗ୍ରସ୍ତ ସିଦ୍ଧ, ମୁନି, ଗନ୍ଧର୍ବ, ଅପ୍ସରୀ ହୁଅନ୍ତୁ କି ବିବିଧ ଉଦ୍ଦେଶ୍ୟରେ ସୃଷ୍ଟ ମାନସ ସନ୍ତାନ ହୁଅନ୍ତୁ ସକଳ କ୍ଷେତ୍ରରେ ପ୍ରେମର ଉଲ୍ଲେଖଯୋଗ୍ୟ ଭୂମିକା କାବ୍ୟିକ ସ୍ୱୀକୃତି ଲାଭ କରିଛି । ସେମାନଙ୍କ ମର୍ତ୍ତ୍ୟ ଜନ୍ମରେ ଶୃଙ୍ଗାର ଲୀଳାର ଉଦ୍ଦାମତା ଯେପରି ପୂର୍ବଜନ୍ମ ପ୍ରସଂଗରେ ନିର୍ଦ୍ଦିଷ୍ଟ କରି ଦିଆଯାଇଛି, ତାହା ଅନାୟସରେ ଦୃଷ୍ଟାନ୍ତ ସମୂହରୁ ଲକ୍ଷ୍ୟ କରାଯାଇପାରେ ।

## ସତ୍ୟରକ୍ଷା

ସକଳ ଦେଶର ଲୋକ କାହାଣୀରେ ସତ୍ୟରକ୍ଷାର ବହୁଳ ଉଦାହରଣ ଦୃଷ୍ଟି ଗୋଚର ହୁଏ । ଓଡ଼ିଆ 'ବଉଳା ଗାଇ' ଗପରେ ନିଜର ସନ୍ତାନଠାରୁ ବିଦାୟ ଘେନି ବଉଳା ବାଘ ମୁହଁକୁ ଫେରି ଆସିବା ପାଇଁ କୁଣ୍ଠା ପ୍ରକାଶ କରିନାହିଁ । ନ୍ୟାୟ ଅନ୍ୟାୟର ପ୍ରଶ୍ନ ସତ୍ୟରକ୍ଷାର ଦୃଢ଼ତା ନିକଟରେ ଗୌଣ । ପୁରାଣ ବର୍ଣ୍ଣିତ 'ରାଜା ହରିଶ୍ଚନ୍ଦ୍ର', 'ଦାନବୀର କର୍ଣ୍ଣ' ଉପାଖ୍ୟାନ ଆଦି ଏ ଦୃଷ୍ଟିରୁ ଅତ୍ୟନ୍ତ ପ୍ରସିଦ୍ଧ ।

ଓଡ଼ିଆ ରୀତି କାବ୍ୟରେ ସତ୍ୟରକ୍ଷା ପ୍ରସଂଗ ନାୟକ ନାୟିକାଙ୍କ ମିଳନର ଅନୁକୂଳ ବା ପ୍ରତିକୂଳ ଲକ୍ଷ୍ୟରେ ଅଭିପ୍ରେତ । ପ୍ରତାପ ରାୟଙ୍କ 'ଶଶିସେଣା', ବନମାଳୀ ଦାସଙ୍କ 'ଚ଼ୁଟ ଇଚ୍ଛାବତୀ,' ଧନଂଜୟଙ୍କ

'ଇନ୍ଦାବତୀ', ରାମଚନ୍ଦ୍ର ପଟ୍ଟନାୟକଙ୍କ 'ଅନୁରାଗବତୀ' କାବ୍ୟର ନାୟକ ନାୟିକା ପ୍ରଥମ ଦର୍ଶନରେ ପରସ୍ପର ବିବାହ କରିବାକୁ ସତ୍ୟାନୁବଦ୍ଧ । ଜୀବନ ପଥରେ ସକଳ ବାଧାବିଘ୍ନ ଅତିକ୍ରମ କରି ସେମାନେ ଅସାଧାରଣ ଧୈର୍ଯ୍ୟ ଓ ସାହସିକତାର ପରିଚୟ ଦେଇଛନ୍ତି । ରାମଚନ୍ଦ୍ର ପଟ୍ଟନାୟକଙ୍କ 'ହାରାବତୀ' କାବ୍ୟରେ ଏହା ନାୟକ (ପରପୁରୁଷ) ନାୟିକାଙ୍କ ଗୋପନ ପ୍ରୀତିର ସହାୟକ । ଏହି ସଂଭୋଗ ଲୀଳା ନାୟିକାର ବିବାହ ପୂର୍ବ ଓ ପର ଜୀବନବ୍ୟାପୀ ଆଦର୍ଶ ଅପେକ୍ଷା ଦେହ କାମନାହିଁ ଏଠାରେ ମୁଖ୍ୟ । 'ପରିମଳା' କାବ୍ୟରେ ସତ୍ୟାନୁବଦ୍ଧା ନାୟିକା ସହ ପ୍ରେମିକ ଗଂଧର୍ବ ଚିତ୍ରରଥ ଗୋପନ ସଂଭୋଗ ବ୍ୟାପାର ବର୍ଣ୍ଣିତ । ବିବାହ ପରେ ନାୟକ ନାୟିକାଙ୍କ ମଧ୍ୟରେ ଏହା ମିଳନ-ପ୍ରତିକୂଳତା ସୃଷ୍ଟି କରିଛି । କିନ୍ତୁ ନାୟକର ଅଲୌକିକ ପ୍ରଚେଷ୍ଟା କ୍ରମେ ଯଥା ସମୟରେ ଏହି ସଂକଟର ସମାଧାନ ସଂଭବ ହୋଇଅଛି । ସୁତରାଂ ରୀତିକାବ୍ୟର ସତ୍ୟରକ୍ଷା ପ୍ରସଂଗ ପ୍ରଧାନତଃ ଶୃଙ୍ଗାରକୈନ୍ଦ୍ରିକ । ଏ କ୍ଷେତ୍ରରେ ଅନ୍ୟ କୌଣସି ଉଚ୍ଚତମ ଆଦର୍ଶର ପ୍ରତିଷ୍ଠା କରାଯାଇ ନାହିଁ କହିଲେ ଚଳେ ।

## ମନ୍ତ୍ର ସାଧନା–

ମନ୍ତ୍ର ଶକ୍ତି ବଳରେ ଅସାଧ୍ୟ ସାଧନ ଭାରତୀୟ ବିଶ୍ୱାସରେ ସୁପ୍ରତିଷ୍ଠିତ । ଓଡ଼ିଆ ରୀତି କାବ୍ୟରେ ଏହାର ଦୃଷ୍ଟାନ୍ତ ପ୍ରଚୁର । ବିଷପାନ ହେତୁ ମୃତ ନାୟିକାର ମୃତ୍ୟୁଞ୍ଜୟ ମନ୍ତ୍ର ବଳରେ ପୁନର୍ଜୀବନ ଲାଭ 'କଳ୍ପଲତା' କାବ୍ୟରେ ଉଲ୍ଲିଖିତ [୫୮] । 'ପରିମଳା' କାବ୍ୟର ନାୟକ ମକରକେତୁର ମନ୍ତ୍ର ବଳରେ ଭ୍ରମର ରୂପ ଧାରଣ କରି ସ୍ୱର୍ଗପୁର ଯାତ୍ରା, ପାରିଜାତ ପୁଷ୍ପ ଆହରଣ ତଥା ଗୋପାଳ ମନ୍ତ୍ର ସାଧନା ପୂର୍ବକ ନାୟିକା ସହ ମିଳନ ଆଦି ଏଠାରେ ଆମର ସ୍ମରଣୀୟ [୫୯] ।

ମହୀଧାରଣ ପର୍ବତରେ ପ୍ରବାସୀ ନାୟକ ସୁଧାକରର ରଘୁନାଥ ମନ୍ତ୍ର ଜପ ଏବଂ ବିଚ୍ଛେଦ ଦଶାର ଅବସାନ 'ପ୍ରେମ ଲୋଚନା'ରେ ବର୍ଣ୍ଣିତ [୬୦] । ନବ ବିରହିଣୀ ଉଷାଙ୍କର କାମପୀଡ଼ା ଲାଘବ କରିବା ପାଇଁ

ସଖୀ ଚିତ୍ରଲେଖାର ନାରଦଙ୍କଠାରୁ ମନ୍ତ୍ର ଶିକ୍ଷା ଓ ମନ୍ତ୍ର ବଳରେ ଅନିରୁଦ୍ଧଙ୍କୁ ପଲ୍ୟଙ୍କ ସହ ଶୋଣିତପୁର ଆନୟନ 'ଉଷାଭିଳାଷ'ରେ ପରିକଳ୍ପିତ [୬୧]। 'ଚନ୍ଦ୍ରକଳା' କାବ୍ୟରେ ନାୟକ ଅନଙ୍ଗସୁନ୍ଦରର ନାୟିକା ନିକଟକୁ ଚିଟାଉ ପ୍ରସଂଗରେ ବାଳାମନ୍ତ୍ର ଜପର ଉଲ୍ଲେଖ ଦେଖିବାକୁ ମିଳେ [୬୨]।

ଏହିପରି ଭବରେ ମନ୍ତ୍ର ସାଧନାର ସକଳ ଦୃଷ୍ଟାନ୍ତ ନାୟକ ନାୟିକାଙ୍କ ମିଳନ/ବିରହ ଘଟନା ବିଜଡ଼ିତ। ଜୀବନର ଅନ୍ୟ କୌଣସି ଦିଗ ପ୍ରତି ରୀତି କବି ଏ ପ୍ରସଂଗରେ ଶ୍ରଦ୍ଧା ପ୍ରକାଶ କରିନାହିଁ।

## ତାନ୍ତ୍ରିକତା–

ତନ୍ତ୍ରବିଦ୍ୟା ଗୁହ୍ୟାଗ୍ରର ଭିତିକ। ସ୍ତମ୍ଭନ, ମୋହନ, ବଶ୍ୟ, ଉଚାଟନ ଆଦି ଆଭିଗ୍ରରିକ କୌଶଳ ବଳରେ ଲକ୍ଷ୍ୟ ବସ୍ତୁ ହାସଲ କରିବା ଏହାର ଉଦ୍ଦେଶ୍ୟ। 'ଶଶିସେଣା'ରେ ଉଲ୍ଲିଖିତ ତାରକ୍ଷୀ ରକ୍ଷସୀର ଅଗ୍ନି ସ୍ତମ୍ଭନ, ଜ୍ଞାନଦେଇ ମାଲୁଣୀର ଅହିମାଣିକ୍ୟଙ୍କୁ ମେଣ୍ଢାରେ ରୂପାନ୍ତରୀକରଣ ଇତ୍ୟାଦି ଏହି ଆଗ୍ରରର ଅନ୍ତର୍ଗତ [୬୩]। 'ସୁଭଦ୍ରା ପରିଣୟ' କାବ୍ୟରେ ମନ୍ତ୍ର ଧୂଳି ପ୍ରୟୋଗ ପୂର୍ବକ ଉଦ୍ଧତ ଅର୍ଜୁନଙ୍କୁ ନାୟିକାର ବଶୀକରଣ ଦୃଶ୍ୟ ଅତ୍ୟନ୍ତ ଉପଭୋଗ୍ୟ [୬୫]। ମଧ୍ୟଯୁଗୀୟ ହିନ୍ଦୀ କବି ଗଣପତିଙ୍କ ରଚିତ 'ମାଧବାନଳ କାମକନ୍ଦଳା' କାବ୍ୟରେ ମାଧବଙ୍କୁ ବଶ କରିବା ନିମିତ୍ତ ତାନ୍ତ୍ରିକ ପ୍ରୟୋଗର ଚିତ୍ର ଅଙ୍କିତ [୬୪]। 'ରହସ୍ୟମଂଜରୀ' ବର୍ଣ୍ଣିତ କୃଷ୍ଣ ବୀଜ ମନ୍ତ୍ର ଓ ଅଷ୍ଟାକ୍ଷର ମନ୍ତ୍ର ବଳରେ ଗୋପାଙ୍ଗନାମାନଙ୍କ ଅଂଗଜାତ ମାୟା କୁମାରୀ ମାନଙ୍କର ଜୀବନ୍ୟାସ କଳ୍ପନା ସାରଳାଙ୍କ ଚଣ୍ଡୀ ପୁରାଣ, ରାଧାତନ୍ତ୍ର ଓ ହରିବଂଶାଦି ଗ୍ରନ୍ଥ ଦ୍ୱାରା ପ୍ରଭାବିତ [୬୬]। ଉପରୋକ୍ତ ଉଦାହରଣ ସମୂହରୁ ଦେଖାଯାଏ ଯେ ତାରକ୍ଷୀର ଅଗ୍ନି ସ୍ତମ୍ଭନ ବ୍ୟତୀତ ସମସ୍ତ ତାନ୍ତ୍ରିକ ବ୍ୟାପାରରେ ଶୃଙ୍ଗାର ଚେତନାର ବୀଜ ନିହିତ।

## ବ୍ରତାଚରଣ–

ଉପସ୍ଥିତ ବିପଦରୁ ରକ୍ଷା ପାଇବା ଲାଗି ସମୟ ସମୟରେ ନାୟିକା ବ୍ରତାଚରଣର ଛଳନା କରେ। ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ନାୟକ ସହ ମିଳିତ

ହେବାର ଦୃଢ଼ ବିଶ୍ୱାସ ସେ ପୋଷଣ କରିଥାଏ । ସର୍ବନାଶ ଭୟରେ କେହି ନାରୀର ବ୍ରତ ଲଂଘନ କରିବାକୁ ସାହସ କରନ୍ତି ନାହିଁ । ଭରତର ସବୁ ପ୍ରଦେଶର ଗାଉଁଲୀ ଗଳ୍ପରେ ଏହି ପ୍ରକାର ଧର୍ମ ନିଷ୍ଠା ପ୍ରତି ସମ୍ମାନ ପ୍ରଦର୍ଶନ କରଯାଇଛି [୫୭] । ଓଡ଼ିଆ ରୀତି କାବ୍ୟରେ ବ୍ରତାଚରଣର ଦୃଷ୍ଟାନ୍ତ ସ୍ୱଳ୍ପ । ପୁରୁଷ ବେଶଧାରିଣୀ ଶଶିସେଣା ରଜକେମା ଚନ୍ଦ୍ରାବଳୀକୁ ବିବାହ କରି ମଧୁଶଯ୍ୟା ରଜନୀରେ ଏକ ବର୍ଷ ବ୍ୟାପୀ କାନ୍ତ ବିଚ୍ଛେଦ ବ୍ରତ ଗ୍ରହଣର ଯୋଜନା ପ୍ରସ୍ତୁତ କରିଛି [୫୮] । ଏହା ଦ୍ୱାର ତା'ର ଦୁଇଟି ଉଦ୍ଦେଶ୍ୟ ସାଧିତ । ପ୍ରଥମତଃ ମଧୁଶଯ୍ୟା ଅଳଂକୃତା ଚନ୍ଦ୍ରାବଳୀକୁ ଯଥେଷ୍ଟ ମାନସିକ ସାନ୍ତ୍ୱନା ପ୍ରଦାନ । ଦ୍ୱିତୀୟତଃ ପ୍ରିୟତମ ଅହିମଣିକ୍ୟର ସଂଧାନ । ବ୍ରତ ଉଦ୍‌ଯାପନ ସହିତ ନାୟକ ନାୟିକାଙ୍କ ମିଳନ ଯଥାରୀତି ସମାହିତ । ସେହିପରି 'ଅନୁରଗବତୀ' କାବ୍ୟର ନାୟିକା ମ୍ଳେଚ୍ଛ ଦେଶର ରଜାଙ୍କ ଦ୍ୱାର ବଳପୂର୍ବକ ଅପହୃତା ହୋଇ ସତୀତ୍ୱ ରକ୍ଷା ଲଗି ବ୍ରତାଚରଣର କୌଶଳ ଗ୍ରହଣ କରିଛି ଏବଂ ଯଥା ସମୟରେ ନାୟକ ସହ ତା'ର ପୁନର୍ମିଳନ ସଂଭବ ହୋଇଛି [୫୯] ।

## ଛଦ୍ମବେଶ

ଗାଉଁଲୀ ଗଳ୍ପର ନାୟକ ବା ନାୟିକା କୌଣସି ବିଶେଷ ଉଦ୍ଦେଶ୍ୟ ସାଧନ ଲଗି ସଂକଳ୍ପିତ ବା ଅଭିଶାପଗ୍ରସ୍ତ ହୋଇ ଛଦ୍ମବେଶ ଧାରଣ କରନ୍ତି [୬୦] । ଅଧିକାଂଶ ଲୋକ କାହାଣୀର ଏହା ଅଂଗ ବିଶେଷ । ସେକ୍‌ସପିଅରଙ୍କ ନାଟକାବଳୀରେ କେତେକ ଚରିତ୍ର ଛଦ୍ମବେଶ ଧାରଣ ପୂର୍ବକ ଅଭିଳଷିତ କାର୍ଯ୍ୟ ସାଧନ କରିଥିବା ଉଲ୍ଲିଖିତ । 'ଟ୍ୱେଲ୍‌ଫଥ୍ ନାଇଟ' (Twelfth Night)ର ଭୟୋଲ କିମ୍ବା 'ଦି ମର୍ଚ୍ଚେଣ୍ଟ ଅଫ୍ ଭେନିସ୍' (The Merchant of Venice)ର ପୁସିଆକୁ ଏହାର ଉଦାହରଣ ରୂପେ ଗ୍ରହଣ କରଯାଇପାରେ ।

ଓଡ଼ିଆ ରୀତି କାବ୍ୟର କେତେକ ସ୍ଥଳରେ ଏହି ପ୍ରସଂଗ ପରିଲକ୍ଷିତ । ପ୍ରତାପ ରୟଙ୍କ 'ଶଶିସେଣା' ତଥା ନରେନ୍ଦ୍ର ଯୁବରାଜଙ୍କ 'ଶଶିସେଣା'

ଅପ୍ରକାଶିତ କାବ୍ୟରେ ଦେବୀ କୃପାରୁ ଉଭୟ ନାୟିକାଙ୍କ ପୁରୁଷ ବେଶ ଧାରଣ ଓ କାର୍ଯ୍ୟସିଦ୍ଧି ଯଥାରୀତି ବର୍ଣ୍ଣିତ [୬୧]। ବନମାଳୀ ଦାସଙ୍କ 'ଗୁଟ ଇଚ୍ଛାବତୀ' କାବ୍ୟରେ ନାରୀବେଶୀ ନାୟକର ନାୟିକା-ଅନ୍ତଃପୁର ପ୍ରବେଶ ଓ ଗୋପନ ସମ୍ଭୋଗ ଚିତ୍ରଣ ସରସ ହୋଇଥିଲେ ହେଁ ପୁରୁଷୋଚିତ ହୋଇନାହିଁ [୬୨]। ଉପେନ୍ଦ୍ରଙ୍କ 'ଲାବଣ୍ୟବତୀ'ରେ ନାୟକ ଚନ୍ଦ୍ରଭାନୁର ନାୟିକା ସହ ସାକ୍ଷାତ ଲାଗି ନାରୀବେଶ ଧାରଣ ମଧ୍ୟ ପୌରୁଷଦୀପ୍ତ ମର୍ଯ୍ୟାଦାର ପରିପନ୍ଥୀ [୬୩]।

ଏଥିରୁ ଜଣାଯାଏ ଯେ ନାୟକ ଓ ନାୟିକା ପ୍ରତ୍ୟେକ ଚରିତ୍ରର ଛଦ୍ମବେଶ ଧାରଣ ଶୃଙ୍ଗାର ଭାବନା ଦ୍ୱାରା ପରିଚାଳିତ। କିନ୍ତୁ ଚାରିତ୍ରିକ ଗୌରବ ଦୃଷ୍ଟିରୁ ପୁରୁଷ ଅପେକ୍ଷା ନାରୀ ଉଚ୍ଚସମ୍ମାନର ଅଧିକାରିଣୀ।

## କାନ୍ଥଲେଖା-

ନାୟକ ବା ନାୟିକା ବିପଦ ମୁହୂର୍ତ୍ତରେ କାନ୍ଥଲେଖା ମାଧ୍ୟମରେ ଅନ୍ୟ ପାଇଁ ସନ୍ଦେଶ ଛାଡ଼ିଯିବା ଭାରତୀୟ ପ୍ରେମାଖ୍ୟାନ ପରିକଳ୍ପନାରେ ବିଶେଷ ରୂପେ ଆଦୃତ। ଲୋକ ସାହିତ୍ୟରୁ ଏହି ଧାରଣା ବିଦଗ୍ଧ ସାହିତ୍ୟକୁ ସଂକ୍ରମଣ କରିଅଛି। 'ମାଧବାନଳ କାମକନ୍ଦଳା' ଉପାଖ୍ୟାନ ଅନ୍ତର୍ଗତ ବିକ୍ରମାଦିତ୍ୟଙ୍କ ଶିବ ମନ୍ଦିରରେ କନ୍ଦଳାର 'ମାଧବ ଲିଖିତ ଗାଥା ପାଠ ପ୍ରସଙ୍ଗ ଏଠାରେ ଉଲ୍ଲେଖନୀୟ [୬୪]।

ଓଡ଼ିଆ କାବ୍ୟଧାରାରେ ମଧ୍ୟ ଏପରି କାହାଣୀ କୌଶଳର ସୂଚନା ପରିଦୃଷ୍ଟ। 'ଶଶିସେଣା' କାବ୍ୟରେ ନାୟକ ଅହିମାଣିକ୍ୟର ମନ୍ଦିର କାନ୍ଥରେ ଅଙ୍ଗାର ଲିଖିତ ଗାଥା, [୬୫] 'ପରିମଳା କାବ୍ୟରେ ନାୟିକା କର୍ତ୍ତୃକ ନବର ବାଡରେ (ଗେରୁଖଣ୍ଡ) ଲିଖିତ ଶାପମୁକ୍ତି ହେତୁକ ତାହାର ସ୍ୱର୍ଗଯାତ୍ରା ଓ ମୁକ୍ତି ସନ୍ଦେଶ [୬୬], 'ଅନୁରାଗବତୀ' କାବ୍ୟରେ ନାୟିକାର ମଣ୍ଡପ ଗାତ୍ରରେ ଲିଖିତ ରତ୍ନେଲରଙ୍କା କର୍ତ୍ତୃକ ଅପହରଣକାଳୀନ ଦୁର୍ଦ୍ଦଶାବାର୍ତ୍ତା [୬୭] ଆଦି କେତେଗୋଟି ଏ ସଂବଧିତ ଉତ୍କୃଷ୍ଟ ଦୃଷ୍ଟାନ୍ତ। ସକଳ କ୍ଷେତ୍ରରେ ନାୟକ ନାୟିକାଙ୍କ ବିଛେଦର କାରଣ ଓ ମିଳନର ପନ୍ଥା ଏଥିରେ ନିର୍ଦ୍ଦେଶିତ।

## ନାରୀ ସମକାମିତା (L. sbianism)

ସମକାମିତା ଅଳଂକାର ଶାସ୍ତ୍ରର ସମର୍ଥନ ଲଭ କରି ନଥିଲେ ହେଁ ଏହା ମନୋବିଜ୍ଞାନ ସମ୍ମତ । ଏହା ଶୃଙ୍ଗାର ନୁହେଁ; କାମ ପ୍ରବୃତ୍ତିର ଅଭିବ୍ୟକ୍ତି ମାତ୍ର । ଓଡ଼ିଆ ରୀତି କାବ୍ୟରେ ନାରୀ ସମକାମିତାର ଚିତ୍ର ସୀମିତ । ଏ ପ୍ରସଙ୍ଗରେ 'ପରିମଳା' ବର୍ଣ୍ଣିତ ବିଦ୍ୟାଙ୍ଗନାମାନଙ୍କର ଜଳକେଳି କାଳୀନ ପରସ୍ପର ଆଲିଙ୍ଗନ, ଚୁମ୍ବନ ଓ କୁଚ ମର୍ଦ୍ଦନ ଆଦିର ରସାଳ ଓ କାମୋଦ୍ଦୀପକ ଦୃଶ୍ୟ ଏକାନ୍ତ ଉପଭୋଗ୍ୟ [୭୮] ।

## Erotic Zoophilia–

ପଶୁପକ୍ଷୀଙ୍କ ପ୍ରୀତିଲୀଳା ଦେଖି ସମୟ ସମୟରେ ନର/ନାରୀଗଣ କାମପୀଡ଼ିତ ହୋଇ ପଡ଼ିଥାନ୍ତି । ମନୋବିଜ୍ଞାନରେ ଏହା Erotic Zoophilia ନାମରେ ଅଭିହିତ [୭୯] । ଓଡ଼ିଆ କାବ୍ୟଧାରାରେ ଏହି ଜାତୀୟ ଭାବନାର ଉଲ୍ଲେଖ କେତେକ ସ୍ଥଳରେ ପରିଦୃଷ୍ଟ । ହୋଇପାରେ ଏସବୁ ସ୍ୱାଭାବିକ ବର୍ଣ୍ଣନାରୀତିର ପରିଣତି । ହରିଣ ଓ ହରିଣୀଙ୍କୁ ଦେଖି ନାୟିକାର ଅନ୍ତର୍ଭମାନ ହେତୁ ନାୟକର ଖେଦନ ବିଷୟ 'ଉଷାଭିଳାଷ'ରେ ଉଲ୍ଲିଖିତ [୭୦] । ଉପବନ ପୁରରେ ବସନ୍ତ ବିଳାସୀ ନାୟିକା ଅନଙ୍ଗରେଖାର ବିରହଜ୍ୱାଳା ବର୍ଣ୍ଣନାରେ ମଧ୍ୟ ଏହା ଲକ୍ଷ୍ୟଣୀୟ [୭୧] । 'ବୈଦେହୀଶ ବିଳାସ'ର ସୀତା–ବିରହ-ବିଧୁର ରାମଚନ୍ଦ୍ର ଚକ୍ରବାକ ଦମ୍ପତିଙ୍କ ସୁରତ ବିଳାପ ଦେଖି ଅଧୀର ହେବା [୭୦] ଓ 'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର'ର ରଜା ଭୀଷ୍ମକ ପୁଷ୍ପ ପରାଗ ଲୁବ୍‌ଧ ଭ୍ରମର ଶ୍ରେଣୀ ଦେଖି କାମାନଳରେ ଦଗ୍‌ଧ ହେବା [୭୩] erotic zoophiliaର ସୁସ୍ପଷ୍ଟ ଅଭିବ୍ୟକ୍ତି ରୂପେ ଗ୍ରହଣ କରାଯାଇପାରେ ।

## ପିତୃଦ୍ରୋହ–

ଓଡ଼ିଆ ରୀତି କାବ୍ୟରେ ନାୟକ ନାୟିକାଙ୍କ ପ୍ରଣୟ ଘଟିତ ପିତୃଦ୍ରୋହର କିଂଚିତ୍ ସୂଚନା ପରିଲକ୍ଷିତ । 'ଉଷାଭିଳାଷ' କାବ୍ୟର ବିରହ ବିଧୁରା ନାୟିକା ପ୍ରିୟତମ ବିନିମୟରେ ପିତୃ-ବିନାଶର ପକ୍ଷ ସମର୍ଥନ କରିବାକୁ କୁଣ୍ଠିତା ନୁହେଁ [୭୪] । ସେହିପରି ନାୟିକା ପ୍ରଭବତୀ ତା'ର

ପିତା ମାତା ଜ୍ଞାତି ବଂନ୍ଧୁଙ୍କ ବିରୁଦ୍ଧରେ ପ୍ରଦ୍ୟୁମ୍ନର ଯୁଦ୍ଧ ଆୟୋଜନକୁ ସ୍ୱାଗତ ଜଣାଇଛି [୭୫]। ଆଦର୍ଶ ଅନୁରୋଧରେ ଏଭଳି ବିଗ୍ରହ ଅନୁଚିତ ହେଲେ ହେଁ ଯୌବନର ଉଦ୍‌ବେଳିତ ପ୍ରେମାକାଂକ୍ଷାରେ ଏହା ବରଣୀୟ ।

## ଜ୍ୟୋତିଷ-

ନାୟକ ନାୟିକାଙ୍କ ଜନ୍ମ, ବିବାହ, ଅଭିଷେକ, ଯୁଦ୍ଧଯାତ୍ରା, ପୁଷ୍ପଭେଦ ଆଦିର ଶୁଭାଶୁଭ ସଂବଳିତ ଜ୍ୟୋତିଷ ଶାସ୍ତ୍ରୀୟ ଉଲ୍ଲେଖ ଓଡ଼ିଆ କାବ୍ୟ ଧାରାରେ ବହୁଳ ପରିଲକ୍ଷିତ । କିନ୍ତୁ ସ୍ଥାନ ବିଶେଷରେ ଶୃଙ୍ଗାର ଧର୍ମୀ ଅଭିବ୍ୟକ୍ତି ମଧ୍ୟ ଜ୍ୟୋତିଷ ଶାସ୍ତ୍ରୀୟ ବର୍ଣ୍ଣନା ସମୃଦ୍ଧ । 'ଲବଣ୍ୟବତୀ' କାବ୍ୟ-ନାୟକର ରମେଶ୍ୱର ଯାତ୍ରାକାଳୀନ ଚାର ପୁରୁଷ ଓ କୁଳଟା ପ୍ରୀତି ପ୍ରସଂଗ ଏଠାରେ ସ୍ମରଣୀୟ [୭୬]। ରାଶିମାନଙ୍କର କାବ୍ୟିକ ସଂଯୋଜନାରେ ନାରୀ ସୌନ୍ଦର୍ଯ୍ୟ ଓ ପ୍ରେମ ଭାବନାର ଯେଉଁ ରମଣୀୟ ଚିତ୍ରଟି କବି ଅଙ୍କନ କରିଛନ୍ତି ତାହା ବାସ୍ତବିକ କୃତିତ୍ୱପୂର୍ଣ୍ଣ । 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ର ନାୟିକା-ପୁଷ୍ପୋଦ୍‌ଗମ ପ୍ରସଂଗରେ କନ୍ୟା ଓ ତୁଳାରାଶିର ସଂବଂଧ ପରିକଳ୍ପନା [୭୭], ସ୍ତନ ଚିତ୍ରଣରେ ଷଡ଼ଗ୍ରହର ସମାବେଶ [୭୮] ଆଦି ଭଂଜୀୟ ଶବ୍ଦ-ବିଳାସ ଓ କାବ୍ୟ-କୌଶଳ ଅନୁରଂଜିତ । ଗୋଟିଏ ସ୍ଥଳର ଚନ୍ଦ୍ରୋଦୟ ବର୍ଣ୍ଣନା ତୀବ୍ର ଶୃଙ୍ଗାରିକତା ଓ କ୍ଳିଷ୍ଟ ଶାସ୍ତ୍ରୀୟ କଳ୍ପନାରେ ଭାରକ୍ରାନ୍ତ [୭୯]। ରୀତି କବି କିପରି ଜ୍ୟୋତିଷ ଓ ଶୃଙ୍ଗାର ମଧ୍ୟରେ ସମନ୍ୱୟ ସଂଧାନ କରିପାରେ ଉପରୋକ୍ତ କେତୋଟି ଉଦାହରଣରୁ ତାହା ସୁସ୍ପଷ୍ଟ ।

## ସଂଗୀତ-

ସାଂଗୀତିକତା ରୀତି କାବ୍ୟର ଏକ ବିଶିଷ୍ଟ ବିଭବ । କିନ୍ତୁ ସଙ୍ଗୀତର ରାଗ ସଂଭାରରେ କିପରି ନାୟିକାର ବିରହ-ଚିତ୍ର ଅଙ୍କନ କରାଯାଇପାରେ ତାହାର ଗୋଟିଏ ଦୃଷ୍ଟାନ୍ତ ଆମ୍ଭେ 'ପ୍ରବଂଧ ପୂର୍ଣ୍ଣଚନ୍ଦ୍ର'ରେ ଦେଖୁ [୮୦]।

## ଆୟୁର୍ବେଦ-

'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର' ଉଲ୍ଲିଖିତ ଶ୍ରୀକୃଷ୍ଣ-ପ୍ରତୀକ୍ଷମାଣା ନାୟିକାର ଚେତନାହତ ଅବସ୍ଥା ପ୍ରସଂଗରେ ବୈଦ୍ୟକନ୍ୟାର ଉକ୍ତି ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ଏକ ପକ୍ଷରେ ଏହା ଯେପରି ଆୟୁର୍ବେଦୀୟ ଔଷଧାବଳୀର ଦୀର୍ଘ ସୂଚନା ଦିଏ, ଅନ୍ୟ ପକ୍ଷରେ ସେହିପରି ରକ୍ମିଣୀଙ୍କ ପ୍ରିୟତମ-ଅଭିବର ଇଂଗିତ ବହନ କରେ [୮୨]।

## ଯାତ୍ରାନୁକୂଳ-

ଭାରତୀୟ ଶକୁନ ଶାସ୍ତ୍ରରେ ଯାତ୍ରାନୁକୂଳ ବିଧି ବିଧାନର ବହୁବିଧ ସୂଚନା ପ୍ରଦତ୍ତ । ଏହାର ଶୁଭାଶୁଭ ଉପରେ କାର୍ଯ୍ୟର ସଫଳତା ବା ବିଫଳତା ନିର୍ଭର କରେ । ରୀତି କାବ୍ୟର କେତେକ ସ୍ଥଳରେ ଏଭଳି ପ୍ରସଂଗର ବର୍ଣ୍ଣନା ମଧ୍ୟ ଶୃଙ୍ଗାରସିକ୍ତ । ନାୟିକାର ଅଧର, ସ୍ତନ, ନୟନ, ଗତି, ଗଳ, ବଚନ, ଜଘନ, ଊରୁ, ମୃଦୁହାସ ଓ ଚୂଚୁକକୁ ଯଥାକ୍ରମେ ପଲ୍ଲବ, ପୂର୍ଣ୍ଣକୁମ୍ଭ, ମୀନ, ହଂସ, ପାରାବତ, ମଂଗଳଅଷ୍ଟକ, ଭଦ୍ରାସନ, କଦଳୀ, ଶଂଖ ଓ କ୍ରମୁକ ରୂପେ କଳ୍ପନା କରି ସର୍ବମଙ୍ଗଳ ହେବା ଚିନ୍ତାରେ ନାୟକର ରାମେଶ୍ୱର ଯାତ୍ରା 'ଲାବଣ୍ୟବତୀ'ରେ ବର୍ଣ୍ଣିତ [୮୭]। ସେହିପରି ନାୟିକା ସର୍ବାଙ୍ଗସୁନ୍ଦରୀର ହସ, ନେତ୍ର, ସ୍ତନ ଦର୍ଶନ କରି ନାୟକ ନିକଟକୁ ହଂସର ଯାତ୍ରାନୁକୂଳ ପରିକଳ୍ପନା ଅତ୍ୟନ୍ତ ସରସ ଓ ଶୃଙ୍ଗାରଧର୍ମୀ [୮୩]। ନାୟିକାର ସ୍ତନ ଯୁଗଳକୁ ପୂର୍ଣ୍ଣ କୁମ୍ଭ, ନୟନକୁ ନବ ପଦ୍ମପୁଷ୍ପର ତୋରଣ ସହ ତୁଳନା ସଂସ୍କୃତ ସାହିତ୍ୟ-ପରଂପରାସିଦ୍ଧ [୮୦]।

## ଅଲୌକିକତା-

ପୁରାଣର ଅଲୌକିକତା ଦ୍ୱାରା ରୀତିକାବ୍ୟ ବିଶେଷ ଭାବେ ପ୍ରଭାବିତ । ପ୍ରାୟ ସକଳ କାବ୍ୟରେ ଏହା ପରିଦୃଷ୍ଟ । ପୂର୍ବଜନ୍ମ, ଅଭିଶାପ, ମାନସ ସନ୍ତାନ, ତାନ୍ତ୍ରିକତା, ମନ୍ତ୍ରାସ୍ତ୍ରବର୍ଦ୍ଧି ପ୍ରସଙ୍ଗରେ ବହୁ ଅଲୌକିକ

ଘଟଣାବଳୀର ଚିତ୍ର ପ୍ରଦତ୍ତ । 'ଗୁପ୍ତ ଇଚ୍ଛାବତୀ'ରେ ବେତାଳ[୮୫] ତଥା 'ଅନଙ୍ଗରେଖା' ଓ 'ଇଚ୍ଛାବତୀ'ରେ ନାରଦଙ୍କ[୮୬] ଆବିର୍ଭାବ, 'ଲବଣ୍ୟବତୀ'ରେ ଚଣ୍ଡୀଙ୍କ ଦ୍ୱାରା ରାଜପୁତ୍ରର ଅପହରଣ[୮୭], 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ରେ ରତିମର୍ଦ୍ଦା ସଂଯୋଗ, ଅବଧୂତୀ ଓ ଉପାଧ୍ୟାୟୀଙ୍କର ମାୟାବଳରେ ପୁଷ୍ପପୁର ଯାତ୍ରା, ଚିତ୍ରମୃଗର ବିଚରଣ[୮୮], 'ପରିମଳା'ରେ ଘୋଟକୀ ବୃତ୍ତାନ୍ତ[୮୯], 'ପ୍ରେମଲୋଚନା'ରେ ନାୟକର ରଥ ଅନ୍ତର୍ଦ୍ଧାନ ଘଟଣା[୯୦], 'ଶଶିସେଣା'ରେ ନାୟକର ସର୍ପ ରୂପରେ ପାତାଳପୁର ଯାତ୍ରା[୯୧], 'କଳ୍ପଲତା'ରେ ନାଗକନ୍ୟା କର୍ତ୍ତୃକ ନାୟକ ଅପହରଣ[୯୨] ଇତ୍ୟାଦି ନାନାବିଧ ଦୃଷ୍ଟାନ୍ତ ଏହି ପ୍ରସଙ୍ଗର ଅନ୍ତର୍ଭୁକ୍ତ । ପୌରାଣିକ କାବ୍ୟର ଏହା ଅଙ୍ଗ ବିଶେଷ । ନାୟକ ନାୟିକାଙ୍କ ମିଳନ ଓ ବିରହର ସଫଳ ରୂପାୟନ ପାଇଁ କାଳ୍ପନିକ କାବ୍ୟରେ ମଧ୍ୟ ଏହି ସକଳ ଅଲୌକିକ ଚରିତ୍ର, ଘଟଣା ଓ ସମସ୍ୟାବଳୀ ସନ୍ନିବେଶିତ । ମଧ୍ୟଯୁଗୀୟ ବିଶ୍ୱାସ ଓ କାବ୍ୟ କୌଶଳ ଏଥିସହ ଓତଃପ୍ରୋତ ଭାବେ ଜଡ଼ିତ ।

## ଦେବ ଦେବୀ–

ରୀତି କାବ୍ୟର ନାୟକ ନାୟିକାଙ୍କ ପ୍ରଣୟ ଲୀଳାରେ ଦେବ ଦେବୀଙ୍କ ଭୂମିକା ଅନୁପେକ୍ଷଣୀୟ । ସ୍ୱପ୍ନାଦେଶ, ଅଭିଶାପ, ଆଶୀର୍ବାଦ, ବରଦାନ, ମାନସ ସନ୍ତାନ ସୃଷ୍ଟି–ଏହିପରି ବହୁବିଧ ପ୍ରସଙ୍ଗରେ ସେମାନଙ୍କର ଅଂଶ ଗ୍ରହଣ ତଥା ପ୍ରେମର ଗତିଧାରାକୁ ମାର୍ଗ ପ୍ରଦର୍ଶନ– ଅଲୌକିକ ହେଲେ ହେଁ ସାଂସ୍କୃତିକ ବିଶ୍ୱାସ ସମ୍ବଳିତ । ବିଶ୍ୱ ସାହିତ୍ୟରେ ଏହାର ଉଦାହରଣ ପ୍ରଚୁର । ଆମ ସାହିତ୍ୟରେ ନାରାୟଣ[୯୩], ଶିବ[୯୪], ରଘୁନାଥ[୯୫], ସୂର୍ଯ୍ୟ[୯୬], ଗୋପାଳ[୯୭], ଇନ୍ଦ୍ର[୯୮], ବ୍ରହ୍ମା[୯୯], ଗୋରେଖ[୧୦୦], ମାହେଶ୍ୱରୀ[୧୦୧], ଭୁବନେଶ୍ୱରୀ[୧୦୨], ମାୟାଦେବୀ[୧୦୩], ଚଣ୍ଡୀ[୧୦୪] ପ୍ରଭୃତିଙ୍କ ମହିମା ବିଶେଷ ଭାବେ ସ୍ୱୀକୃତ । କେତେକ ସ୍ଥଳରେ ମଦନ ପୂଜା ବା ମଦନୋତ୍ସବର ବର୍ଣ୍ଣନା ଅତ୍ୟନ୍ତ ରସୋତ୍ତୀର୍ଣ୍ଣ[୧୦୫] । ଶିବ ଓ ପାର୍ବତୀଙ୍କ ଏକତ୍ର ଉଲ୍ଲେଖ ମଧ୍ୟ ବହୁ କାବ୍ୟରେ ପରିଦୃଷ୍ଟ । ଭାରତୀୟ ସଂସ୍କୃତିରେ ଲିଙ୍ଗ ଓ ଯୋନିର ପ୍ରତୀକ ରୂପେ ଏ ଦୁହିଁଙ୍କର

ଆରାଧନା ବହୁ କାଳବ୍ୟାପୀ । ସୁତରାଂ ଶୃଙ୍ଗାର କାବ୍ୟରେ ଶିବଙ୍କର ପ୍ରତିଷ୍ଠା ଘନିଷ୍ଠ ସଂବଂଧଯୁକ୍ତ ବୋଲି ଅନୁମାନ କରଯାଇପାରେ ।

## ମାନସିକ ଦ୍ୱନ୍ଦ୍ୱ –

ମାନସିକ ଦ୍ୱନ୍ଦ୍ୱର ଯଥାର୍ଥ ପରିପ୍ରକାଶ ରୀତି କାବ୍ୟରେ କ୍ୱଚିତ୍ ଉପଲବ୍ଧ । ତାହାର ମୁଖ୍ୟ କାରଣ ହେଉଛି ଏକ ଧାରବାହିକ ରୀତିରେ ଚରିତ୍ରମାନଙ୍କର କ୍ରିୟାଶୀଳତା । ପୂର୍ବଜନ୍ମ ବିଶ୍ୱାସ ଓ ଦାମ୍ପତ୍ୟ ପ୍ରେମର ଆଦର୍ଶ ବିଗ୍ରହରେ ନାୟକ ନାୟିକାଙ୍କ ମାନସଲୋକ କେବଳ ଦେହକାମନାରେ ବିଚଳିତ ହେବା ବ୍ୟତୀତ ଜୀବନର ବିକଳ୍ପ ସମ୍ଭାବନାକୁ ସ୍ୱାଗତ ଜଣାଇବା ପାଇଁ ଅବସର ପାଇ ନାହିଁ । ଯେଉଁ କେତେକ ସ୍ଥଳରେ ଗତାନୁଗତିକତା ପରିହାର କରି କବି ମାନବିକ ବୈଚିତ୍ର୍ୟ ସଂଧାନରେ ଅନୁରାଗୀ, ସେଠାରେ ଭାବନାର ନୂତନ ସୂର୍ଯ୍ୟାଲୋକ ବିଚ୍ଛୁରିତ । କାମନ୍ଧାପୁରରେ ମଣୋହିଂସକା, କୁସୁମ ଓ ତାମ୍ବୁଳ ଆୟୋଜନ ଲାଗି ନଗର ମଧ୍ୟକୁ ଯାଇଥିବା ନାୟକ ଅହିମାଣିକ୍ୟର ଅପ୍ରତ୍ୟାବର୍ତ୍ତନ ହେତୁ ନାୟିକା ଶଶିସେଣାର ବ୍ୟାକୁଳତା ଓ ଆଶଙ୍କା ଏକାନ୍ତ ନାରୀସୁଲଭ[୧୦୬] । ସ୍ୱାମୀଙ୍କର ନାମ ଜାଣିବା ପାଇଁ ଗାଦ୍ୟେଣୀମାନଙ୍କ ପ୍ରରୋଚନା ହେତୁ ତା'ର ଚିନ୍ତାରାଜ୍ୟରେ ଦେଖା ଦେଇଥିବା ତୁମୁଳ ଆଲୋଡନ ମଧ୍ୟ ଅତ୍ୟନ୍ତ ସ୍ୱାଭାବିକ [୧୦୭] । 'ପରିମଳା' କାବ୍ୟରେ ନାୟକ ନାୟିକାଙ୍କ ମାନସିକ ଦ୍ୱନ୍ଦ୍ୱର ସୌନ୍ଦର୍ଯ୍ୟମୟ ଚିତ୍ର ପ୍ରଦତ୍ତ । ସତ୍ୟରକ୍ଷା ହେତୁ ମଧୁଶଯ୍ୟାପୁରରେ ସହବାସ ବଞ୍ଚିତ ପ୍ରଣୟୀଯୁଗଳର ଆକୁଳତା, ନାୟକ ସହ ସମ୍ଭୋଗରତ ନାୟିକାର ପ୍ରେମିକ ପ୍ରତି ବିରାଗଭାବନା, ଶାପମୁକ୍ତ ହେତୁ ନାୟିକାର ସ୍ୱର୍ଗ ଗମନରେ ନାୟକର ସନ୍ଦେହ (ପରିମଳା ଓ ଚିତ୍ରରଥର ମିଳନ ସମ୍ଭାବନା) ତଥା ସ୍ୱର୍ଗପୁରରେ ଗନ୍ଧର୍ବ ସହ କପଟ ସଂଭୋଗରତ ନାୟିକାର ପ୍ରିୟଚିନ୍ତା ଆଦି ବିଦଗ୍ଧ ପ୍ରାଣରସରେ ଜର୍ଜରିତ [୧୦୮] । ସମଗ୍ର ଓଡ଼ିଆ ରୀତି କାବ୍ୟରେ ଏହା ଅତୁଳନୀୟ । ଉପେନ୍ଦ୍ରଙ୍କ 'ରସିକ ହାରାବଳୀ'ରେ ବିରହ ପୀଡ଼ିତା ନାୟିକାର ନାୟକ-ଭାବନା ଅର୍ଥାତ୍ ଅନ୍ୟ ଯୁବତୀ ସହ ପ୍ରିୟତମର ପ୍ରଣୟ ସମ୍ପର୍କ ପରିକଳ୍ପନା କିଞ୍ଚିତ୍ ସ୍ୱାଭାବିକ । କିନ୍ତୁ ଅବୈଧ

ପ୍ରେମର ପୃଷ୍ଠଭୂମିରେ ପତିପ୍ରୁରସ୍ଥିତା ନାୟିକା ହାରବଳୀର ପ୍ରତ୍ୟାବର୍ତ୍ତନ ବିଳମ୍ବ ହେତୁ ବିରହ ବିଧୁର ନାୟକର ଅନୁଚିନ୍ତା ଅତ୍ୟନ୍ତ ବାସ୍ତବଧର୍ମୀ[110]।

## ଅବୈଧ ଭାବନା–

କନ୍ୟାର ସ୍ତନୋନ୍ନତି ଲକ୍ଷ୍ୟ କରି ତା'ର ବିବାହ ଚିନ୍ତାରେ ରଜା ପ୍ରଭାକର ବର୍ଦ୍ଧନଙ୍କ ହୃଦୟ ଅନ୍ଧକାରଚ୍ଛନ୍ନ ହୋଇ ଉଠିଥିବା କଥା ହର୍ଷ ଚରିତ୍ରରେ ବର୍ଣ୍ଣିତ[111] । ଉଦ୍ଦେଶ୍ୟ ଯାହା ହେଉନା କାହିଁକି ଏପରି ଭବନା ପିତା ପକ୍ଷରେ ଅଶୋଭନୀୟ । ନରେନ୍ଦ୍ର ଯୁବତୀଙ୍କ 'ଶଶିରେଣା' କାବ୍ୟରେ ବିଧାତା ପ୍ରେରିତ ଧର୍ମଧ୍ୱଂସିନୀ କନ୍ୟାର ମନ୍ତ୍ରଣାକ୍ରମେ ରଜା ମଧୁକର ସ୍ୱକନ୍ୟାର ରୂପ ଓ ଉନ୍ନତ ସ୍ତନ ସୌନ୍ଦର୍ଯ୍ୟ ଦେଖି ଅଭିଭୂତ ହୋଇଥିବା ବିଷୟ ବର୍ଣ୍ଣିତ[112] । ପରବର୍ତ୍ତୀ ପ୍ରସଙ୍ଗରେ ପିତାର ପାପ ସଂଭୋଗ ଅଭିଳାଷ ମଧ୍ୟ ଉଲ୍ଲିଖିତ । ଓଡ଼ିଆ ରୀତି କାବ୍ୟରେ ଏଭଳି ଅବୈଧ ଭବନା ଅନ୍ୟତ୍ର ଦୁର୍ଲଭ ।

## ଆତ୍ମୋତ୍ସର୍ଗ–

ପ୍ରିୟ ବା ପ୍ରିୟା ପାଇଁ ଜୀବନ ଉତ୍ସର୍ଗରେ ପ୍ରଣୟର ଆଦର୍ଶ ପ୍ରତିଷ୍ଠିତ । ବିଶ୍ୱ ସାହିତ୍ୟରେ ଏହାର ବହୁଳ ଦୃଷ୍ଟାନ୍ତ ପରିଲକ୍ଷିତ । ଗ୍ରୀକ୍ ପୁରାଣର ନାୟିକା ସିଲା (Scylla) କିମ୍ବା ସେକ୍ସପିଅରଙ୍କ ରେମିଓ ଓ ଜୁଲିଏଟ୍ ଚରିତ୍ରର ସଫଳତା ଏ ପ୍ରସଂଗରେ ଉଲ୍ଲେଖଯୋଗ୍ୟ ।

ଓଡ଼ିଆ ରୀତି କାବ୍ୟରେ ଏହି ଜାତୀୟ ଚରିତ୍ର ଅପ୍ରଚୁର । 'କଳ୍ପଲତା' କାବ୍ୟରେ ନାୟିକାର ବିଷପାନ ଘଟଣା ଆଦର୍ଶ ସ୍ଥାନୀୟ[113] । କିନ୍ତୁ କାବ୍ୟଟି ଅଲୌକିକତା ଆଚ୍ଛନ୍ନ ହୋଇଥିବାରୁ ଏହା ମାନବିକ ମୂଲ୍ୟବୋଧର ଅସୀମ ଶ୍ରଦ୍ଧା ଲଭ କରିବାରେ ଅସମର୍ଥ । ବହୁ କାବ୍ୟରେ ନାୟିକାର ଆତ୍ମୋତ୍ସର୍ଗ ଭବନା ନାୟକ ବିଚ୍ଛେଦ କୈନ୍ଦ୍ରିକ । ଅଗ୍ନିଝାସ ପାଇଁ ପ୍ରସ୍ତୁତି ହିଁ ଏହାର ସହଜ ସମାଧାନ[114] । 'ଅନଙ୍ଗରେଖା'ରେ ଛଦ୍ମବେଶୀ ଗନ୍ଧର୍ବର

କପଟ ଆଚରଣ ବିରୁଦ୍ଧରେ ନାୟିକାର ଅଗ୍ନିଝାସ ଧମକ ତା'ର ଚାରିତ୍ରିକ ମହତ୍ତ୍ୱ ପ୍ରଖ୍ୟାପନ କରେ[115]। ନାୟିକା ଚାଟଇଚ୍ଛାବତୀର ନାୟକ ସହ ବଧଭୂମିରେ ମୃତ୍ୟୁ ବରଣ ଅଭିଳାଷ ସେହିପରି ଉଚ୍ଚ ଆଦର୍ଶ ଆଧାରିତ[116]। 'ମଥୁରା ମଙ୍ଗଳ'ରେ ଶ୍ରୀକୃଷ୍ଣ ବିଚ୍ଛେଦ ଜନିତ ବିରହିଣୀ ଗୋପାଙ୍ଗନାମାନଙ୍କର ଗଣ୍ଡ ଜଳରେ ଲମ୍ଫଦାନ, ଅଗ୍ନିଝାସ, ଛୁରିକା ସାହାଯ୍ୟରେ କଣ୍ଠଛେଦ ଆଦି ଚିତ୍ରା ଅତ୍ୟନ୍ତ ହୃଦୟସ୍ପର୍ଶୀ [117]। ଏହି ସକଳ ବର୍ଣ୍ଣନାରୁ ଜଣାଯାଏ ଯେ ନାରୀର ଅଗ୍ନିପ୍ରବେଶ ସେ କାଳରେ ପବିତ୍ର ସାମାଜିକ ଗୌରବ ଲାଭ କରିଥିଲା ।

ନାୟକ ଚରିତ୍ରରେ ଆତ୍ମୋତ୍ସର୍ଗର ଚିତ୍ର ସୀମିତ । ନାୟିକା ବିରହରେ ନାୟକର ପର୍ବତ ଉପରୁ ଲମ୍ଫଦାନ ପୂର୍ବକ ଆତ୍ମ ବିସର୍ଜନ ଭାବନା 'ପରିମଳା'ରେ ଉଲ୍ଲିଖିତ [118]। ଲାବଣ୍ୟବତୀ [119] ରେ ପ୍ରଭାକରର ଗଙ୍ଗାସାଗର ଝାସ ଦୈବବାଣୀ ନିର୍ଦ୍ଦେଶିତ । ସେହିପରି ବିରହ ବିଧୁର ଚନ୍ଦ୍ରଭାନୁର ତନୁଦହନ କାମନା କାବ୍ୟିକ ଭାବ ପ୍ରବଣତା ସମୃଦ୍ଧ । ସୁତରାଂ ଚରିତ୍ର ଦୁଇଟିରେ ବାସ୍ତବମୁଖୀ ଜୀବନାଦର୍ଶର ପରିଚୟ ସ୍ପଷ୍ଟ ।

## ଦୁସ୍ତର ସାଧନା-

ନାୟକ ବା ନାୟିକାକୁ ପ୍ରଣୟୀ ବା ପ୍ରଣୟିନୀ ରୂପେ ଲାଭ କରିବା ଦୁସ୍ତର ସାଧନାର ଫଳଶ୍ରୁତି ରୂପେ କାବ୍ୟ ପରମ୍ପରାରେ ଗୃହୀତ । 'ରାମବିଭା'ର କାବ୍ୟ-ନାୟିକା ସଖୀମାନଙ୍କ ନିକଟରେ ପ୍ରକାଶ କରିଛି ଯେ ଯେଉଁ ନାରୀ ଶତବାର ସାଗରଝାସର ପୁଣ୍ୟ ଅର୍ଜନ କରିଥିବ ତାହା ପକ୍ଷରେ ହିଁ ରାମଚନ୍ଦ୍ରଙ୍କୁ ପତି ରୂପେ ପାଇବା ସମ୍ଭବ [120]। ସେହିପରି ଶ୍ରୀକୃଷ୍ଣ-ପ୍ରୀତି ଅଭିଳାଷିଣୀ ଶ୍ରୀରାଧାଙ୍କର କଳ୍ପତରୁ ତଳେ ଶତ ଜନ୍ମ ତପଃ ସାଧନା ଚିତ୍ରା 'ବିଦଗ୍ଧ ଚିନ୍ତାମଣି'ରେ ଉଲ୍ଲିଖିତ[121]।

ନାୟକ ଚରିତ୍ରରେ ଏପରି ସାଧନା ବା ସାଧନା ପ୍ରତି ଆସକ୍ତିର ଚିତ୍ର ବ୍ୟାପକ । ପାର୍ଥ ଶ୍ରୀଚନ୍ଦନଙ୍କ 'କଙ୍କାବତୀ'ରେ ନାୟିକା ପାଇଁ ନାୟକର

ସାଗର ଝାସ ଭବନା ପରିଲକ୍ଷିତ [122] । 'ଗ୍ରୈର ପଞ୍ଚାଶିକା' ଅନୁସୃତ ଧନଞ୍ଜୟଙ୍କ 'ଇଛାବତୀ' କାବ୍ୟର ନାୟିକାନୁଚିନ୍ତାରେ ପୁରୁଷର ଜନ୍ମାନ୍ତର ଜୀବନ ଚିତ୍ର ଉଦ୍‌ଘାଟିତ । ପୂର୍ବ ଜନ୍ମର ଦୁସ୍ତର ତପସ୍ୟା ହେତୁ ଇହ ଜନ୍ମର ନାୟିକାର ଅଙ୍ଗଲଭ ଯେପରି ସୁବାଂଛିତ ସେହିପରି ଗଙ୍ଗାରେ ତନୁତ୍ୟାଗ ପୂର୍ବକ ତା' ସହିତ ନାୟକର ପୁନର୍ମିଳନ କାମନା ପରଜନ୍ମ ଆକାଂକ୍ଷିତ [123] । 'ଲବଣ୍ୟବତୀ ରେ ପ୍ରଭକରର ଅକଥନୀୟ ପଞ୍ଚାଗ୍ନି ସାଧନା ଓ ଗଙ୍ଗା ସାଗର ଝାସ ପ୍ରସଙ୍ଗ 'ଗ୍ରୈର ପଞ୍ଚ ଶିକା'/'ଇଛାବତୀ' ଦ୍ୱାର ପ୍ରଭବିତ ହେବା ଅସମ୍ଭବ ନୁହେଁ [124] । 'ରସିକ ହାରବଳୀ'ରେ ମଧ୍ୟ ବାଞ୍ଛାତରୁ ତଳେ ତପ ସାଧନା ଓ ଗଙ୍ଗାସାଗର ଝାସ ଉତ୍ତମ ଗମା ଲଭର ଅନନ୍ୟ ପନ୍ଥା ରୂପେ କୀର୍ତ୍ତିତ [125]। ବିଦଗ୍ଧ ଚିନ୍ତାମଣି' ବର୍ଣ୍ଣିତ ଶ୍ରୀକୃଷ୍ଣଙ୍କ ରାଧା-ଭବନା (ଯଥା–ପ୍ରୟାଗ, କାଶୀ ଅଥବା ଗଙ୍ଗା-ସାଗରରେ ପ୍ରାଣ ବିସର୍ଜନ, ଯୋଗୀତ୍ୱ ବରଣ, ପଞ୍ଚାଗ୍ନି ସାଧନା, ଶଙ୍କର ପୂଜା ଇତ୍ୟାଦି) ଉପେନ୍ଦ୍ରଙ୍କ 'ଲବଣ୍ୟବତୀ' (ପ୍ରଭକରର ତପସ୍ୟା ଓ ଚନ୍ଦ୍ରଭନୁର ବିରହ ଭବନା) ଛାୟାରେ ପରିକଳ୍ପିତ[126]।

ପେଉଁ ସକଳ ସାଧନାର ଚିତ୍ର କାବ୍ୟମାନଙ୍କରେ ପ୍ରଦତ୍ତ, ତାହା ମଧ୍ୟଯୁଗୀୟ ଜୀବନ–ଦର୍ଶନ ସଂପର୍କହୀନ । ସାମନ୍ତୀୟ ବିଳାସ ବିଭବ ପରିପାଳିତ ନାରୀ ବା ପୁରୁଷ ଚରିତ୍ରରେ ଏହା ସ୍ୱପ୍ନ ମାତ୍ର ।

## ମୋକ୍ଷ ଭାବନା–

ଓଡ଼ିଆ ରୀତି କାବ୍ୟରେ ମୋକ୍ଷ ଭବନା ପ୍ରାୟତଃ ନାରୀ ସଂଭୋଗ କୈନ୍ଦ୍ରିକ । ସ୍ୱର୍ଗଭୋଗ, ଇନ୍ଦ୍ର ପଦବୀ, କୁବେର ବିଭବ ସବୁ କିଛି ତାହା ନିକଟରେ ତୁଚ୍ଛ । 'ପରିମଳା' କାବ୍ୟର ନାୟକ ପକ୍ଷରେ ଉଚ୍ଚ ପୃଥୁଳ ସ୍ତନର ହୃଦୟ-ସ୍ପର୍ଶ ସୁଖ ସ୍ୱର୍ଗାଦି ମୋକ୍ଷଠାରୁ ଅଧିକ ଗୌରବପ୍ରଦ[127] । ନାୟିକାର ନୀବୀ ମୋକ୍ଷଣହିଁ ମୋକ୍ଷଲଭର ଏକମାତ୍ର ପନ୍ଥା ବୋଲି ଉପେନ୍ଦ୍ରଙ୍କ କାବ୍ୟ-ନାୟକଙ୍କର ଦୃପ୍ତ ଘୋଷଣା ବହୁ ସ୍ଥଳରେ ପରିଲକ୍ଷିତ [128]।

'ପ୍ରବଂଧ ପୂର୍ଣ୍ଣଚନ୍ଦ୍ର'ଏ ପ୍ରସଙ୍ଗରେ ଭଂଜୀୟ ଆଦର୍ଶ ଅନୁସରଣ କରିଛି[୧୨୯] । 'ବିଦଗ୍ଧ ଚିନ୍ତାମଣି'ରେ ନାୟିକା ଶ୍ରୀରାଧାଙ୍କ କବରୀ ମୋକ୍ଷଣ ମାତ୍ରେ ମୋକ୍ଷ ଲୁଣ୍ଠିତ ହେଉଥିବା ବିଷୟ ପରିକଳ୍ପିତ[୧୩୦] । ଏଥିରେ ଜୀବନର ଉଚ୍ଚତମ ଆକାଂକ୍ଷା ନାହିଁ । ଅଛି କେବଳ ଦେହ ଭୋଗର ଅକୃତ୍ରିମ ବାସନା ।

## ଦାମ୍ପତ୍ୟ ପ୍ରେମ-

କୃଷ୍ଣ-କାବ୍ୟ ଭିନ୍ନ ପ୍ରାୟ ସକଳ କାବ୍ୟରେ ଦାମ୍ପତ୍ୟ ପ୍ରେମର ଗୌରବ ଉଦ୍‌ଘୋଷିତ । ଶ୍ରୀ ବିଚ୍ଛନ୍ଦ ଚରଣ ପଟ୍ଟନାୟକ ଭଂଜୀୟ କାବ୍ୟର ସମୀକ୍ଷା କରିବାକୁ ଯାଇ କହିଛନ୍ତି-"ଯୌନ ଆକର୍ଷଣ ମାନବର ସହଜାତ ପ୍ରବୃତ୍ତି । ବିବାହ ଦ୍ୱାରା ଏହି ଆକର୍ଷଣକୁ ନିୟମିତ କରି ଉଚ୍ଚତର ମାନସିକ ବୃତ୍ତିମାନଙ୍କୁ ବିକଶିତ କରିବା ଓ ଶେଷରେ ଚିନ୍ମୟ ରାଜ୍ୟରେ ପ୍ରବେଶ କରିବାର ଅଧିକାର ହିଁ ଆର୍ଯ୍ୟ ମାନବର ଲକ୍ଷ୍ୟ । ରସ କାବ୍ୟମାନ ଦମ୍ପତିଙ୍କ ଯୌନ ଆକର୍ଷଣକୁ ନିୟମିତ କରିବାରେ ଅତ୍ୟନ୍ତ ସହାୟକ[୧୩୧] ।" ପଣ୍ଡିତ ନୀଳକଣ୍ଠ ଦାସ, ଅଧ୍ୟାପକ ଆର୍ତ୍ତ ବଲ୍ଲଭ ମହାନ୍ତି ଓ ସମଧର୍ମା ସମାଲୋଚକଗଣ ଏହି ଦାମ୍ପତ୍ୟ ପ୍ରେମର ପ୍ରଶଂସାରେ ଶତମୁଖ । ଏକ ଜାତୀୟ ସାଂସ୍କୃତିକ ଆଦର୍ଶ ଏହାର ଭିତ୍ତି ।

କିନ୍ତୁ ଲକ୍ଷ୍ୟ କରିବାର କଥା ଯେ ଓଡ଼ିଆ କାବ୍ୟର ଏହି ଆଦର୍ଶ ରୀତି ଧାରରେ ଅନୁବର୍ତ୍ତିତ । ଜୀବନର ସକଳ ବିପର୍ଯ୍ୟୟ ମଧ୍ୟରେ ପତି ପତ୍ନୀଙ୍କ ପ୍ରେମାନୁରକ୍ତି ଯେଉଁ ଆଲୋକୋଜ୍ଜ୍ୱଳ ଭବରଶ୍ମି ବିଚ୍ଛୁରିତ କରେ ମଧ୍ୟଯୁଗୀୟ ଦାମ୍ପତ୍ୟ ପ୍ରେମ ଚିତ୍ରରେ ତାହା ଦୁର୍ଲଭ ଶୃଙ୍ଗାରିକତା ବା ଦେହୋପାସନା ହିଁ ଏଠାରେ ମୁଖ୍ୟ । ବିଚ୍ଛେଦ ପ୍ରସଂଗ ଅଲୌକିକତା ଓ ସହଜ କାଳ୍ପନିକତା ଆଶ୍ରିତ । ବିରହ ଭବନାରେ କାବ୍ୟିକ ସରସତା ପରିଲକ୍ଷିତ ହେଲେ ହେଁ ପ୍ରଣୟର ସୌନ୍ଦର୍ଯ୍ୟ ରତିବିଳାସର ସୀମିତ ପରିସର ମଧ୍ୟରେ କେବଳ ଓତପ୍ରୋତ । ସ୍ୱର୍ଗ ସମ୍ପଦ[୧୩୨], କୁବେର ସମ୍ପତ୍ତି[୧୩୩], ବୈକୁଣ୍ଠ ଭୋଗ[୧୩୪], ଇନ୍ଦ୍ର ଐଶ୍ୱର୍ଯ୍ୟ[୧୩୫] ଆଦି ସକଳ ପୁରୁଷାର୍ଥ ନାୟକ ନାୟିକାଙ୍କ

ସମ୍ଭୋଗ ଲୀଳା ନିକଟରେ ତୁଚ୍ଛାତିତୁଚ୍ଛ । 'ଲାବଣ୍ୟବତୀ' ପ୍ରସଙ୍ଗରେ ପଣ୍ଡିତ ନୀଳକଣ୍ଠଙ୍କ ମନ୍ତବ୍ୟ ଏଠାରେ ପ୍ରଣିଧାନ ଯୋଗ୍ୟ । "ଚନ୍ଦ୍ରଭାନୁଠାରେ ଏକପତ୍ନୀବ୍ରତ ଓ ଲାବଣ୍ୟବତୀଠାରେ ଅକାଟ୍ୟ ପତିପ୍ରାଣତା କାବ୍ୟର ମୋଟାମୋଟି ଆଦର୍ଶ କହିଲେ ଚଳେ । କିନ୍ତୁ ଏ ଆଦର୍ଶ ଫୁଟାଇବାରେ ଏ କ୍ଷେତ୍ରରେ କବି ଯେଉଁ ପନ୍ଥା ଅବଲମ୍ବନ କରିଛନ୍ତି ତାହା ବେଳେ ବେଳେ ସାଧାରଣ ପାଠକର ରୁଚିରେ ଆଘାତ ଦିଏ [୧୩୬] ।" ସୁତରାଂ ଏ ମ ରୀତି କାବ୍ୟରେ ଦାମ୍ପତ୍ୟ ପ୍ରେମର ଇନ୍ଦ୍ରିୟାତିରିକ୍ତ ବିଭବ ସଂପୂର୍ଣ୍ଣ ଅବହେଳିତ ସେକଥା କୁହାଯାଇ ନପାରେ । ପକ୍ଷାନ୍ତରେ କେବଳ ବୈଧୀ ବୋଲି ଯେ ଏହା ଶ୍ରେଷ୍ଠ ଓ ଆଦର୍ଶ ସ୍ଥାନୀୟ ହେବ, ତାହା ମଧ୍ୟ ଯଥାର୍ଥ ନୁହେଁ ।

## ବହୁ ପତ୍ନୀକତା–

ଶ୍ରୀହର୍ଷଙ୍କ 'ନୈଷଧ'ରେ ରାଜା ନଳ ବହୁପତ୍ନୀକ ରୂପେ ଚିତ୍ରିତ । ନାୟିକା ଦମୟନ୍ତୀଙ୍କଠାରେ ଏଥିପାଇଁ କ୍ଷୋଭ ବା ଘୃଣାର ସ୍ଥାନ ନାହିଁ । ବରଂ ଏହା ତାଙ୍କର ସହଜ ସମର୍ଥନ ଲାଭ କରିଛି ।

ଏ ଦୃଷ୍ଟିରୁ ଓଡ଼ିଆ ରୀତି କାବ୍ୟରେ 'ଶଶିସେଣା' (ପ୍ରତାପରାୟ)ର ସ୍ଥାନ ସ୍ୱତନ୍ତ୍ର । ନାୟିକା ଅତିରିକ୍ତ ଚନ୍ଦ୍ରାବଳୀ ଓ ନାଗ ରମଣୀଦ୍ୱୟ ନାୟକ ଅହିମାଣିକ୍ୟର ପତ୍ନୀ-ମର୍ଯ୍ୟାଦାରେ ସମ୍ମାନିତ । ଅନ୍ୟତ୍ର କାବ୍ୟ-ନାୟକ ବହୁ ପତ୍ନୀକ ଥିବାର ଦୃଷ୍ଟାନ୍ତ ମିଳେ ନାହିଁ । 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' ବର୍ଣ୍ଣିତ ରାଜା ବିଶ୍ୱାନନ୍ଦଙ୍କ ରତିମର୍ଦ୍ଦା ସମ୍ଭୋଗ ଏକ ଉଲ୍ଲେଖଯୋଗ୍ୟ ପ୍ରସଙ୍ଗ । ଏଠାରେ ବହୁପତ୍ନୀକତା ନିନ୍ଦିତ ନୁହେଁ, ବରଂ ସମର୍ଥିତ । ଏତଦ୍‌ଭିନ୍ନ ରାଜାଙ୍କର ବହୁରାଣୀ ଥିବାର ସ୍ପଷ୍ଟ ସୂଚନା କାବ୍ୟରେ ନିହିତ [୧୩୮] । ସେହିପରି 'ଲାବଣ୍ୟବତୀ'ରେ କର୍ଣ୍ଣାଟ ଦେଶର ରାଜା ଶଶି ଶେଖର ଓ ସିଂହଳର ରାଜା ରତ୍ନେଶ୍ୱରଙ୍କ ଅନ୍ତଃପୁର ବହୁରାଣୀଙ୍କ ଦ୍ୱାରା ଅଳଂକୃତ ଥିବା [୧୩୯] ତଥା 'ଅନଙ୍ଗରେଖା'ରେ କର୍ଣ୍ଣାଟ ଦେଶର ରାଜା ବିକ୍ରମବାହୁ ସାତଶ ପଞ୍ଚାଶ ଯୁବତୀଙ୍କ' ଗହଣରେ କାଳାତିବାହିତ କରୁଥିବା [୧୪୦] କଥା ଉଲ୍ଲିଖିତ । ମଧ୍ୟଯୁଗୀୟ ରାଜ ପରିବାରରେ ଏଭଳି ପ୍ରଥା ଆଦୌ

ଅପ୍ରାସଂଗିକ ନୁହେଁ । ପଣ୍ଡିତ ନୀଳକଣ୍ଠଙ୍କ ଭାଷାରେ–"ରାଜାମାନେ ପାଞ୍ଜିଆ, ଛାମୁଆ, ମନ୍ତ୍ରୀ, କଟୁଆଳ ପ୍ରଭୃତି ଖୋସାମଦିଆ ପଦବୀଧାରୀଙ୍କ ସାହଚର୍ଯ୍ୟରେ ରହି କାମିନୀବିଳାସକୁ ଜୀବନର ସର୍ବଶ୍ରେଷ୍ଠ ସମ୍ଭୋଗ ଓ ସମ୍ପଦ ବୋଲି ବିଗ୍ରହିଥିଲେ । × × ପତ୍ନୀ ଆଉ ପୂର୍ବପରି ରାଜାଙ୍କର ସହଧର୍ମିଣୀ ନଥିଲେ । ପତ୍ନୀ ବା ପତ୍ନୀମାନେ ଇତର ସାଧାରଣ ରମଣୀ ପରି ବିଳାସର ଭୋଗ୍ୟବସ୍ତୁ [141] ।" ରାଜାମାନଙ୍କ ଚରିତ୍ରରେ ବହୁପତ୍ନୀକତା ବରଣୀୟ ହୋଇଥିଲବେଳେ କାବ୍ୟ-ନାୟକ (ଅର୍ଥାତ୍ ରାଜକୁମାର) ଚରିତ୍ରରେ ଏହା ପରିତ୍ୟାଜ୍ୟ ହେବାର କାରଣ କ'ଣ ହୋଇପାରେ ? ମନେହୁଏ କବିଗଣ କେବଳ ସାମାଜିକ ଓ ସାଂସ୍କୃତିକ ଆଦର୍ଶର ଅନୁରୋଧରେ ନାୟକ ଚରିତ୍ରକୁ ଏକପତ୍ନୀକ କରିଯାଇଛନ୍ତି ।

## ବେଶ୍ୟା ବିଳାସ–

ଓଡ଼ିଶାର ମଧ୍ୟଯୁଗୀୟ ସାମନ୍ତୀୟ ରାଜପରିବାର ସଂପର୍କରେ ପଣ୍ଡିତ ନୀଳକଣ୍ଠ କହନ୍ତି–"ପରସ୍ତ୍ରୈଣତା ଓ ବେଶ୍ୟାସକ୍ତି ଯେପରି କି ରାଜକୁଳର ଭୂଷଣ ହୋଇ ସାରିଥିଲା [142] ।" ଓଡ଼ିଆ ରୀତି କାବ୍ୟରେ ଏହାର କିଞ୍ଚିତ୍ ସୂଚନା ପ୍ରଦତ୍ତ । 'ଲାବଣ୍ୟବତୀ' ବର୍ଣ୍ଣିତ କର୍ଣ୍ଣାଟ ରାଜ-ଦରବାରରେ ଗଣିକାନୃତ୍ୟ ବିଧାନ [143] ଓ ମିତ୍ର ମଣ୍ଡଳୀ ପରିବେଷ୍ଟିତ ରାଜକୁମାର ଚନ୍ଦ୍ରଭାନୁଙ୍କ ମହ୍ଲାରବାସିନୀ ଗଣିକା ମଦନିକାର ରୂପ ପ୍ରଶଂସା[144] , ଏ କ୍ଷେତ୍ରରେ ବିଶେଷ । ଉପେନ୍ଦ୍ର ଭଞ୍ଜଙ୍କ ବର୍ଣ୍ଣନା (ମଦନିକା) ରଘୁନାଥ ହରିଚନ୍ଦନଙ୍କ 'ଲୀଳାବତୀ' କାବ୍ୟର ଗଣିକା ବସନ୍ତସେନା ପ୍ରସଂଗର ଅନୁରୂପ [145] । 'ସୁବର୍ଣ୍ଣରେଖା'ରେ ମଧ୍ୟ କୋଶଳ ରାଜକୁମାରଙ୍କ ଆଳାପ ପୀଠରେ ରୂପଜୀବାର ଉପସ୍ଥିତି ବର୍ଣ୍ଣିତ [146] । ଘନ ଭଞ୍ଜଙ୍କ 'ତ୍ରୈଲୋକ୍ୟ ମୋହିନୀ'ରେ ଉଲ୍ଲିଖିତ ରାଜପୁତ୍ର ପଞ୍ଚବାଣଙ୍କ ଦରବାରରେ ମନୋରମା ବେଶ୍ୟାର ନୃତ୍ୟ ପ୍ରସଙ୍ଗ ଏଠାରେ ମଧ୍ୟ ସ୍ମରଣ କରଯାଇପାରେ [147] । ନାୟିକା ରୂପର ଉତ୍କର୍ଷ ପ୍ରତିପାଦନ କରିବା ଉଦ୍ଦେଶ୍ୟରେ ରୂପବିଳାସିନୀ ଗଣିକା ଚରିତ୍ରର ସଂଯୋଜନା ହୁଏତ କବିର

ଲକ୍ଷ୍ୟ ହୋଇପାରେ କିନ୍ତୁ ଦରବାରୀ ଗଣିକା ବିଳାସର ପ୍ରାସଙ୍ଗିକତା ଏ କ୍ଷେତ୍ରରେ ସ୍ୱୀକୃତ । ପୁନଶ୍ଚ ନାୟକର ନାୟିକା-ଭବନା ସହ ଏହା କିପ୍ରରି ଓତଃପ୍ରୋତ ଭବରେ ଜଡ଼ିତ ତା'ର ନିରପେକ୍ଷ ସମୀକ୍ଷା ଏକାନ୍ତ ଆବଶ୍ୟକ ।

## ସମର ଚିତ୍ର-

ରୀତି ଯୁଗୀୟ ସାହିତ୍ୟରେ ସମର ଚିତ୍ରର ଅଭବ ନଥିଲେ ହେଁ ତାହା ଯଥାର୍ଥ ଗୌରବ ଲଭ କରିପାରିନାହିଁ । ପ୍ରାୟ ସକଳ କ୍ଷେତ୍ରରେ କାବ୍ୟ ନାୟକର ଅପରଜେୟ ଶକ୍ତି ଓ ଅଲୌକିକ କାର୍ଯ୍ୟସାଧନର ବିବରଣ ପ୍ରଦତ୍ତ [୧୪୮]। ସମର ବର୍ଣ୍ଣନାରେ ପୌରାଣିକ ଓ କାଳ୍ପନିକ ଅତିରଞ୍ଜନ ତଥା ଆଳଂକାରିକ ପରକାଷ୍ଠା ଦର୍ଶାଇବାରେ କବିଗଣ ସଯତ୍ନ ପ୍ରୟାସ କରିଯାଇଛନ୍ତି । ଯୁଦ୍ଧର ଭୟାବହତା ଓ ବାସ୍ତବତା ପ୍ରତି ଏମାନଙ୍କ ଧ୍ୟାନ ଆକର୍ଷିତ ହୋଇନାହିଁ । ଐତିହାସିକ ଡକ୍‌ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଏହାର କାରଣ ନିରୂପଣ କରିବାକୁ ଯାଇ କହିଛନ୍ତି—"ଓଡ଼ିଶାର ସ୍ୱାଧୀନ ନରପତି-ମାନଙ୍କ ଅମଳରେ ଯୁଦ୍ଧବିଗ୍ରହ ଯେପରି ରାଜନ୍ୟବର୍ଗଙ୍କୁ ସଜାଗ କରି ରଖୁଥିଲା ମୁସଲମାନ, ମରହଟ୍ଟା ଓ ବ୍ରିଟିଶ ରାଜତ୍ୱରେ ସେମାନେ ସେପରି ସଜାଗ ରହିବାରେ ଆବଶ୍ୟକତା ନଥିଲା । ଯୁଦ୍ଧ କିଂବଦନ୍ତୀରେ ପରିଣତ ହୋଇ ସାରିଥିଲା । × × ଓଡ଼ିଆମାନେ କେବେସିନା ସମରପ୍ରିୟ ଜାତି ଥିଲେ; କିନ୍ତୁ ଏ ସାହିତ୍ୟ ଯେତେବେଳେ ରଚିତ ହୋଇଥିଲା ସେତେବେଳେ ଏମାନଙ୍କ ସମରପ୍ରିୟତା ସମ୍ପୂର୍ଣ୍ଣ ରୂପେ ଲୁପ୍ତ ହୋଇ ସାରିଥିଲା [୧୪୯]।" ସୁତରାଂ ଭୋଗ ବିଳାସରେ ପ୍ରତିପାଳିତ ସାମନ୍ତୀୟ ସ୍ୱପ୍ନ କାବ୍ୟ ସୃଷ୍ଟିକୁ ଆଚ୍ଛନ୍ନ କରି ରଖିବା ସ୍ୱାଭବିକ । ଏ କ୍ଷେତ୍ରରେ ବୀରତ୍ୱ ଅସ୍ତ୍ର ପରୀକ୍ଷାର ସମ୍ମୁଖୀନ ହୋଇନାହିଁ କେବଳ ବାଣୀ ବିଳାସରେ ତା'ର ମହିମା ଉଦ୍‌ଘୋଷିତ (ଯଥା—ସମର ଆରମ୍ଭ ପଳାଇଲେ ଦଇତ [୧୫୦] ।)

ପ୍ରସଙ୍ଗକ୍ରମେ ବ୍ରଜନାଥଙ୍କ 'ସମରତରଂଗ'ର ସଫଳତା ବିଚାର୍ଯ୍ୟ । ଢେଙ୍କାନାଳ ଯୁଦ୍ଧ, (୧୭୮୧)ର ଐତିହାସିକ ପୃଷ୍ଠପଟ, ସାମରିକ ଆକ୍ରମଣ ଓ ପ୍ରତିଆକ୍ରମଣର ବୀର ରସାଶ୍ରୟୀ ବର୍ଣ୍ଣନା, ବ୍ୟବହୃତ ଅସ୍ତ୍ର ଶସ୍ତ୍ରାଦିର

ବିଶଦ ଉଲ୍ଲେଖ, ବୈଦେଶିକ ଶବ୍ଦର ଯଥାର୍ଥ ପ୍ରୟୋଗ ଉକ୍ତ କାବ୍ୟର ବିଶିଷ୍ଟ ସମ୍ପଦ । ଦ୍ୱିତୀୟ ଛାନ୍ଦରେ ଯୁଦ୍ଧାଭିଯାନର ଯେଉଁ ସ୍ୱାଭାବିକ ଓ ଜୀବନ୍ତ ବର୍ଣ୍ଣନା ପ୍ରଦତ୍ତ ତାହା ସମଗ୍ର ଓଡ଼ିଆ କାବ୍ୟ ସାହିତ୍ୟରେ ଦୁର୍ଲ୍ଲଭ [୧୫୧]।

ଅନ୍ୟପକ୍ଷରେ ରୀତିକବିଗଣ ରତି-ସମରର ନିପୁଣ ବର୍ଣ୍ଣନା ପ୍ରଦାନ କରିଯାଇଛନ୍ତି । ଭଞ୍ଜଙ୍କ 'ପ୍ରେମ ସୁଧାନିଧି' ଓ ଅଭିମନ୍ୟୁଙ୍କ 'ବିଦଗ୍ଧ ଚିନ୍ତାମଣି'ରେ ନାୟକ ନାୟିକାଙ୍କ ସମ୍ଭୋଗଲୀଳାକୁ ମଲ୍ଲଯୁଦ୍ଧ ବୋଲି କୁହାଯାଇଛି [୧୫୨]। 'ରସକଲ୍ଲୋଳ' ଓ 'ପ୍ରେମପଞ୍ଚାମୃତ'ରେ ମଧ୍ୟ ଉକ୍ତ ପ୍ରସଂଗ ବିସ୍ତୃତ ଭାବେ ଉଲ୍ଲିଖିତ [୧୫୩] । 'ବିଦଗ୍ଧ ଚିନ୍ତାମଣି'ର କାବ୍ୟ ନାୟିକା ଅଭିସାରିକା ଶ୍ରୀରାଧାଙ୍କ ବେଶ ପରିପାଟିରେ ରତି-ରଣ-ସେନାନୀତ୍ୱର ଆରୋପ ଏକ ଉଲ୍ଲେଖଯୋଗ୍ୟ ପରିକଳ୍ପନା [୧୫୪] । ଓଡ଼ିଆ ରୀତି କାବ୍ୟର ବିଭିନ୍ନ ସ୍ଥଳରେ ଏପରି ଚିତ୍ର ବହୁଳ ଭାବେ ପରିଦୃଷ୍ଟ । ସମ୍ଭବତଃ ମଧ୍ୟଯୁଗୀୟ ଯୁଦ୍ଧଲିପ୍‌ସା ଓ ପ୍ରେମଲିପ୍‌ସା ସେକାଳର ଶୃଙ୍ଗାର ବର୍ଣ୍ଣନାରେ ମୂର୍ତ୍ତିମନ୍ତ ହୋଇଉଠିଥିଲା ।

## ଅଶ୍ଳୀଳତା-

ଓଡ଼ିଆ ରୀତି କାବ୍ୟର ଅଶ୍ଳୀଳତା ଏକ ବିତର୍କିତ ପ୍ରସଂଗ । ଊନବିଂଶ ଶତାବ୍ଦୀର ଶେଷଆଡ଼କୁ 'ଇନ୍ଦ୍ରଧନୁ' ଓ 'ବିଜୁଳି' (୧୮୯୩-୯୪) ପତ୍ରିକାକୁ ଆଶ୍ରୟ କରି ଏହାର ସପକ୍ଷରେ ଓ ବିପକ୍ଷରେ ବହୁଳ ଚର୍ଚ୍ଚା ହୋଇଥିଲା । ଯେତେଦୂର ମନେହୁଏ ଦୁଇଟି ଗୋଷ୍ଠୀ ମଧ୍ୟରେ ଏକଦିଗ-ଦର୍ଶିତାର ମାତ୍ରା ଥିଲା ଅତ୍ୟଧିକ । ପରଂପରାବାଦୀ ପ୍ରାଚୀନ ପନ୍ଥୀ ଓ ନବଜାଗରଣବାଦୀ ଆଧୁନିକପନ୍ଥୀ ଆଲୋଚକଗଣ ନିରପେକ୍ଷ ଓ ସତ୍ୟାନୁସନ୍ଧିତ୍ସୁ ହେବା ପରିବର୍ତ୍ତେ ଆଦର୍ଶଗତ ବିସଂବାଦରେ ଜଡ଼ିତ ହୋଇ ପଡ଼ିଥିଲେ ।

ପରବର୍ତ୍ତୀକାଳରେ ବିଶ୍ୱନାଥ କର ଓ ବିଜୟ ଚନ୍ଦ୍ର ମଜୁମ୍‌ଦାର ପ୍ରଭୃତିଙ୍କ ନୀତିବାଦୀ ସମୀକ୍ଷା ଓଡ଼ିଆ ବୁଦ୍ଧିଜୀବୀ ମହଲରେ ଘୋର

ଆଲୋଡନ ସୃଷ୍ଟି କରିଥିଲା । ବିଜୟ ଚନ୍ଦ୍ର ଦୃଢ଼ କଣ୍ଠରେ କହିଥିଲେ– "I cannot resist the temptation of saying that all that Upendra Bhanja has composed in the name of sentiment of love or ଶୃଙ୍ଗାର ରସ is ବୀଭତ୍ସ or ugly and mauseating.[୧୫୫]" ପଣ୍ଡିତ ନୀଳକଣ୍ଠ ଓ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ପରି ସମଧର୍ମୀ ସାହିତ୍ୟିକ ଗଣ କୃଷ୍ଟି ଓ ଜାତୀୟତା ଭିତ୍ତିକ ପରଂପରାବାଦର ପୁନରୁତ୍‌ଥାନ ସପକ୍ଷରେ ସ୍ୱର ଉଠାଇଥିଲେ । ସେମାନଙ୍କ ମତରେ ଅଶ୍ଳୀଳତା ଭରତୀୟ କାବ୍ୟ ଓ ଅଳଂକାର ଶାହିତ୍ୟର ଏକ ଲୋକପ୍ରସିଦ୍ଧ ବିଭବ [୧୫୬] । ଏ ପ୍ରସଂଗରେ ଶ୍ରୀ ଲକ୍ଷ୍ମୀ ନାରାୟଣ ସାହୁ ଉପେନ୍ଦ୍ର ଭଞ୍ଜଙ୍କୁ ସଂସ୍କୃତ କବିମାନଙ୍କ ତୁଳନାରେ ଉଚ୍ଚ ସମ୍ମାନ ପ୍ରଦର୍ଶନ କରିଛନ୍ତି [୧୫୭] ।

କାଳିଦାସଙ୍କ 'କୁମାର ସଂଭବ', ଶ୍ରୀହର୍ଷଙ୍କ 'ନୈଷଧ' ଓ ଜୟଦେବଙ୍କ 'ଗୀତ ଗୋବିନ୍ଦ'ରେ ଅଶ୍ଳୀଳତା ସୀମା ଅତିକ୍ରମ କରିଛି । ମଧ୍ୟଯୁଗୀୟ ଓଡ଼ିଆ କାବ୍ୟଧାରା ଏହି ତିନିଜଣ ପ୍ରମୁଖ କବିଙ୍କ ନିକଟରେ ବିଶେଷ ଭବେ ଋଣୀ । ପୂର୍ବସୂରିଙ୍କ ରଚନା ଅଶ୍ଳୀଳତା ଦୋଷଯୁକ୍ତ ହୋଇଥିବା ଦୁହାଇ ଦେଇ ଆମର କବିମାନଙ୍କୁ ଦୋଷମୁକ୍ତ କରିଦେବା ଯୁକ୍ତି ଆଦୌ ଗ୍ରହଣୀୟ ନୁହେଁ । ପୁନଶ୍ଚ କାଳର କଷଟିରେ ସେସବୁର ପରୀକ୍ଷା ନିରୀକ୍ଷା ହେବା ଏକାନ୍ତ ଆବଶ୍ୟକ । ଗୋଟିଏ ଯୁଗର ସାମାଜିକ, ରାଜନୈତିକ ଓ ସାଂସ୍କୃତିକ ଆଦର୍ଶ ଯାହା ହୋଇଥାଉନା କାହିଁକି ସାହିତ୍ୟ ସମୀକ୍ଷା କ୍ଷେତ୍ରରେ କବିପ୍ରତିଭାର ଉତ୍‌କର୍ଷ ଓ ଅପକର୍ଷକୁ ମଧ୍ୟ ଉପେକ୍ଷା କରାଯାଇ ନପାରେ । ଶୃଙ୍ଗାର ନାମରେ କେବଳ ଯୌନବିଳାସ ଆଦୌ ବରଣୀୟ ନୁହେଁ । କାରଣ ଜୀବନ ଓ ସାହିତ୍ୟରେ ଏସବୁର ସୀମା ସୁନିର୍ଦ୍ଦିଷ୍ଟ ।

ଏହି ପରିପ୍ରେକ୍ଷୀରେ ଓଡ଼ିଆ ରୀତି କାବ୍ୟର ବିଭିନ୍ନ ସ୍ଥଳ [୧୫୮] ଯେ ଅଶ୍ଳୀଳତା ଓ ସ୍ଥୂଳତା ଧର୍ମରେ ଦୀକ୍ଷିତ ଏହା ନିଃସନ୍ଦେହ ।

## ଭକ୍ତି ଭାବନା–

ମଧ୍ୟଯୁଗୀୟ ଭକ୍ତି ଭବନା ସହ ଶୃଙ୍ଗାର ଚେତନାର ସଂବନ୍ଧ ସାଧାରଣ ଦୃଷ୍ଟିରେ ଅତ୍ୟନ୍ତ ରହସ୍ୟମୟ । ଏହି କାଳରେ ଭରତରୁ

ରାଜନୈତିକ ଓ ସାମାଜିକ ଅବସ୍ଥା ଯାହା ଥିଲା ସେଥିରୁ ଭକ୍ତିମାର୍ଗର ସହଜ ସ୍ଥିତି ସଂପର୍କରେ ସନ୍ଦେହ ଉପୁଜିବା ସ୍ୱାଭବିକ । ଦରବାର ଆଶ୍ରିତ କବି ଜୀବନ ରସିକତା ଓ ବିଳାସିତା ବଂଚିତ ହୋଇ ରହିବା ଏକ ଅସଂଭବ ବ୍ୟାପାର । ଭକ୍ତି କାବ୍ୟରେ ରସିକତା ଓ ଶୃଙ୍ଗାରିକତାର ଉଦ୍‌ବେଳ ପ୍ରବାହ ଦେଖିଲେ ମନେହୁଏ ଏଥିରେ ଦେହ ଗନ୍ଧର ମାତ୍ରା ଅଧିକ । ଐତିହାସିକ ଡକ୍‌ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଏ ସଂପର୍କରେ କହନ୍ତି– "ଧର୍ମ ଏ ସାହିତ୍ୟରେ ଓତଃପ୍ରୋତ ଭବରେ ଜଡ଼ିତ ହୋଇ ରହିଥିଲା । ମାତ୍ର ମଦ ସାଙ୍ଗରେ ଦୁଧ ମିଶାଇ ଦେଲେ ଦୁଧ ଯେପରି ମଦର ଉତ୍‌କଟ ପ୍ରତିକ୍ରିୟା ଦୂର କରିପାରେ ନାହିଁ, ସେହିପରି ଧର୍ମ ଏ ସାହିତ୍ୟରେ ମିଶ୍ରିତ ହୋଇଥିଲେ ହେଁ ତାହା ପ୍ରେମର ଉତ୍‌କଟ ପ୍ରତିକ୍ରିୟା ଦୂର କରିନଥିଲା [୧୫୯] ।" ହିନ୍ଦୀ ରୀତି ସାହିତ୍ୟର ସମୀକ୍ଷକ ଡକ୍‌ଟର ନଗେନ୍ଦ୍ରଙ୍କ ମତରେ ସେ ଯୁଗର ଧର୍ମଭୀରୁ କବିମାନ ରାମ ଭକ୍ତି ବା କୃଷ୍ଣ ଭକ୍ତି ସଂବଳିତ ରଚନା ମଧ୍ୟରେ ଆଶ୍ୱାସନା ଲାଭ କରୁଥିଲା । ଏହା ଥିଲା ତା'ର ସାମାଜିକ ରକ୍ଷା କବଚ ଓ ମାନସିକ ଶରଣଭୂମି [୧୬୦]। ଏହାକୁ ଆଶ୍ରୟ କରି ହୁଏତ ଜୀବନର ପୁଂଜୀଭୂତ ଗ୍ଳାନି ଓ ଅବସାଦକୁ ସହଜରେ ପାଶୋରିଦେବା କବି/ଭକ୍ତ/ରସିକ ପକ୍ଷରେ ସଂଭବ ହେଉଥିଲା ।

## ପ୍ରେମ ପତ୍ର ବା ଚିଠାଉ–

ଓଡ଼ିଆ ରୀତି କାବ୍ୟର ନାୟକ ନାୟିକାଙ୍କ ମଧ୍ୟରେ ଚିଟାଉ ଆଦାନପ୍ରଦାନ ଏକ ରଢ଼ିବଦ୍ଧ ବ୍ୟାପାର । ସାଧାରଣତଃ ସାକ୍ଷାତ ଦର୍ଶନ ବା ସ୍ୱପ୍ନ ଦର୍ଶନ ଅନନ୍ତର ରୂପତନ୍ମୟତା ଓ ପ୍ରଣୟାକୁଳତା ଏଥିରେ ସ୍ଥାନ ପାଇଥାଏ [୧୬୧] । କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ଲାବଣ୍ୟବତୀ, ରସଲେଖା, ବିଦଗ୍‌ଧ ଚିନ୍ତାମଣି, ଚନ୍ଦ୍ରକଳା ପ୍ରଭୃତି କାବ୍ୟରେ ପ୍ରଥମେ ନାୟକ ଓ ପରେ ନାୟିକା ଚିଟାଉ ବିନିମୟରେ ଅଂଶଗ୍ରହଣ କରିଛନ୍ତି । କେତେକ ସ୍ଥଳରେ ପ୍ରବାସସ୍ଥ ବିରହଦଗ୍‌ଧ ନାୟକର ନାୟିକା ନିକଟକୁ ଚିଟାଉ ପ୍ରେରଣ ଉଲ୍ଲିଖିତ [୧୬୨] । ଏଥିରେ ପ୍ରିୟତମାର ରୂପ ପ୍ରଶଂସା, ସଂଭୋଗ

ସ୍ମରଣାଦି ଯଥାରୀତି ଅଙ୍କିତ । ଅଭିମନ୍ୟୁ, ବ୍ରଜନାଥ ଓ କବିସୂର୍ଯ୍ୟଙ୍କ ଉପରେ ଉପେନ୍ଦ୍ରଙ୍କ 'ପ୍ରେମ ସୁଧାନିଧି'ର ପ୍ରଭାବ ଅପ୍ରତିହତ । ଯଥା—

ରବିକର ନ ଛାଡ଼ିଲା ପରଯେ ମେରୁକୁ
ମୋ ମନ ନଛାଡ଼େ ତୋ ପୃଥୁଳ ଉରଜକୁ ।

ପ୍ରେମ ସୁଧାନିଧି : ୧୪/୭

ରମ୍ୟ ସ୍ତନ ସୁରବାସ
ରବି କର ମୋ ମାନସ × ×

ବିଦଗ୍ଧ ଚିନ୍ତାମଣି : ୧୫/୧୬

କିମ୍ବା—

ନୀବୀ ବନ୍ଧ ପ୍ରାୟେ କରି
ଫେଡ଼ି ପଢି ଆରମ୍ଭିଲା ବିସ୍ତରି ବିସ୍ତରି ।

ପ୍ରେମ ସୁଧାନିଧି : ୧୪/୨୦

ମହା କାମୁକ ନବବଧୂ ନୀବୀ
ବିଗତ ପାଇଁ ଯଥାତୁରେ ଭବି × ×
ମୃଦ ବିଭଙ୍ଗ ରସ ଲୋଭେ କରି ।

ବିଦଗ୍ଧ ଚିନ୍ତାମଣି : ୫୫/୯

ଚିଟାଉର ବିଷୟବସ୍ତୁ, ଭାଷା ଓ ପଠନ ରୀତି କିପରି ଶୃଙ୍ଗାରଧର୍ମୀ ତାହା ଉପରୋକ୍ତ ଉଦାହରଣ ଗୁଡ଼ିକରୁ ସହଜରେ ଅନୁମେୟ । ମଧ୍ୟଯୁଗୀୟ ଓଡ଼ିଆ ଚିଟାଉ ସାହିତ୍ୟ ବିଷୟକ ବିଶଦ ଆଲୋଚନା ପାଇଁ ଡ଼କ୍ଟର ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ)ଙ୍କ 'ଓଡ଼ିଆ ଗୀତି କାବ୍ୟ' ଗ୍ରନ୍ଥ ଦ୍ରଷ୍ଟବ୍ୟ [୨୬୩] ।

## ଦୋଷ ବର୍ଗ୍ଗର—

ଓଡ଼ିଆ ରୀତି କାବ୍ୟଧାରରେ ରସାଭାସ ଓ ରସଦୋଷର ବହୁଳ ଦୃଷ୍ଟାନ୍ତ ପରିଲକ୍ଷିତ । ରସ ପରିବେଷଣରେ ଔଚିତ୍ୟ ଅପେକ୍ଷା ଅନୌଚିତ୍ୟର ମାତ୍ରା ମଧ୍ୟ ଅଧିକ (ଅର୍ଥାତ୍ ଅଧିକାଂଶ କ୍ଷେତ୍ରରେ ଶୃଙ୍ଗାର ବର୍ଣ୍ଣନା ସ୍ଥୂଳତା

୭ ଅଶ୍ଳୀଳତା ଦୋଷଯୁକ୍ତ । ସଂଭୋଗ ଓ ବିପ୍ରଲମ୍ଭ ଅଧ୍ୟାୟରେ ଏହାର ସୂଚନା ପ୍ରଦତ୍ତ ।) । ଏଠାରେ ଉଦାହରଣ ସହ ଶାସ୍ତ୍ର ସମ୍ମତ କେତେଗୋଟି ଦୋଷର ଉଲ୍ଲେଖ କରଯାଇଛି ।

## ରସାଭାସ-

ନରସିଂହ ସେଣଙ୍କ 'ପରିମଳା' ଓ ରାମଚନ୍ଦ୍ର ପଟ୍ଟନାୟକଙ୍କ 'ହାରାବତୀ' କାବ୍ୟରେ ନାୟିକାର ପରପୁରୁଷ ପ୍ରୀତି, କୃଷ୍ଣ-କାବ୍ୟରେ ବର୍ଣ୍ଣିତ ପରକୀୟା ପ୍ରୀତି ଏବଂ 'ଶଶିସେଣା' କାବ୍ୟରେ ନାୟକର ବହୁ ନାୟିକାପ୍ରୀତି ଇତ୍ୟାଦି ରସାଭାସ ପର୍ଯ୍ୟାୟଭୁକ୍ତ ।

## ରସ ଦୋଷ-

(କ) ରସର ସ୍ୱଶବ୍ଦ ବାଚ୍ୟତା-ଶୃଙ୍ଗାର ସମରେ ନେତ୍ର ଭ୍ରମିତ ତା'ର ।

ଶିଥିଳ ବସନ କେଶ ବେଶ ରୁଚିର ।।

ଇଚ୍ଛାବତୀ : ୯/୨୬

କିଂବା

ବିବିଧ ବଂଧେ ପରିରମ୍ଭ ଲୀଳା ।

ଶୃଙ୍ଗାର ରସେ ଗୋପୀ କୃଷ୍ଣ ଭୋଳା ।।

ରହସ୍ୟ ମଂଜରୀ : ୧୯/୧୮

ଶୃଙ୍ଗାର ରସ ବର୍ଣ୍ଣନାରେ 'ଶୃଙ୍ଗାର' ଶବ୍ଦର ପ୍ରୟୋଗ ଦୋଷାବହ ।

(ଖ) ସ୍ଥାୟୀ ଭାବର ସ୍ୱଶବ୍ଦ ବାଚ୍ୟତା-କ୍ରମେ କ୍ରମେ ପୁଣି ବସନ ଫିଟାଇ

ଆରମ୍ଭ କଲା ସୁରତି ।

ରତି ପତି ଦୁଃଖ ବେଗେ ପାଶୋରିଲା

ଲଭିଲା ଇନ୍ଦ୍ର ସଂପତି ।

ସୁବର୍ଣ୍ଣରେଖା : ୫/୧୪

କିମ୍ବା

ନିତମ୍ବେ ହାମୋଳି ଠୁକ୍କୁ ଚେତନା ପଶିଲା
ଭିଡ଼ି ମହାମଉ୍ଭେ ଗମା ସୁରତେ ରସିଲ

ଲବଣ୍ୟବତୀ : ୩୩/୨୦

ଶୃଙ୍ଗାର ରସର ସ୍ଥାୟୀଭାବ ହେଉଛି 'ରତି' । ଏଠାରେ 'ସୁରତ' ଶବ୍ଦ ପ୍ରୟୋଗ ତେଣୁ ଦୋଷାବହ ।

(ଗ) ବ୍ୟଭିଚାରୀ ଭାବର ସ୍ୱଶବ୍ଦବାଚ୍ୟତା—

ଅଞ୍ଚଳ ଧରିଣ କୁମର ମଣି
କୋଳରେ ଧରି ବସାଇଲେ ଆଣି ।
ଆରତେ ଅଧର ମଧୁପାନ
କୁମାରୀ ଲଜ୍ଜେ ବୁଜିଲା ନୟନ ।

କଳ୍ପଲତା : ୧୦/୩୧

କିମ୍ବା

ମନ୍ଦାକ୍ଷ ତୁଟିଲା ମନୁ ମୋହ ପଗଯେ ସୁତନୁ
ମାର ମୂର୍ଚ୍ଛା ଶାନ୍ତିମତ ମୋହନ କୃତ ଯେ ।

ବିଦଗ୍ଧ ଚିନ୍ତାମଣି : ୨୧/୧୦

ଲଜ୍ଜା ଓ ମୋହ ଆଦି ଶୃଙ୍ଗାରୀ ରସର ବ୍ୟଭିଚାରୀ ଭାବ । ଏଠାରେ ନାୟକ ନାୟିକାଙ୍କ ସଂଭୋଗ ବିଧି ବର୍ଣ୍ଣନାରେ ସେହି ସବୁ ଶବ୍ଦର ପ୍ରୟୋଗ ଦୂଷଣୀୟ ।

## ଅନ୍ୟାନ୍ୟ—

ଗ୍ରାମ୍ୟତା—ଯେସନେ ରମିଲା ତାକୁ ରମଣୀ ମଣି
ଅନିରୁଦ୍ଧ ତେସନେ ରମିଲା ତରୁଣୀ

କିମ୍ବା ଉଷାଭିଳାଷ : ୪/୪୯

ଗୋକୁଳ ଈଶ ରସ ମନେ ଭାବି
ପଞ୍ଛୁ କୋଳକରି ଧରନ୍ତେ ନୀବୀ ।

ଲବଣ୍ୟବତୀ : ୪୧/୩୩

ଏଠାରେ ଅର୍ଥର ଗାମ୍ଭୀର୍ଯ୍ୟ ନାହିଁ । ଏହା ମନ ମଧ୍ୟରେ ଗ୍ରାମ୍ୟଭାବ ଉଦ୍ରେକ କରେ ।

କ୍ଲିଷ୍ଟତା–ଜଳସୁତ ସୁତ ତା ସୁତ ତାସୁତ ତାସୁତ ତାସୁତ ସୁତ
ତାସୁତ ସୁତା ସୁତ ଦେଲ ଜୀବିତ ନାରୀ ସ୍ନେହେ ବିଗ୍ରହିତ
ହେ ବୀର ।
ବିଦଗ୍ଧ ଚିନ୍ତାମଣି : ୭୭/୪

କିମ୍ବା

ବାରିଜ ଅରି ବଇରୀ ଧ୍ୱଜର ପତିଙ୍କି ସେବି ପାଇଥିଲୁ
ଛାଡ଼ିଲୁ ଦଇବ କହିଲେ କିହେବ ମଧୁରକ୍ଷକ ପ୍ରାୟେ ହେଲୁ ।
ମଥୁରା ମଙ୍ଗଳ–୭ମ

ସ୍ୱଳ୍ପ ଅର୍ଥ ପାଇଁ ବହୁ ଶବ୍ଦର ପ୍ରୟୋଗ ହେତୁ ଏହା କ୍ଲିଷ୍ଟତା ଦୋଷଯୁକ୍ତ ।

ଅନୁଚିତତା–ବୃନ୍ଦକଧେନୁରେ ଏକ ଷଣ୍ଢ ପରି ବିଭେଗେ ହୋଇଛି ମତ ଯେ
ବୈଦେହୀଶ ବିଳାସ : ୩୪/୩୩

କିମ୍ବା

ମଜ୍ଜିଯିବି କି ଉଭରତିରେ ।
କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ 'କ' ଗୀତ/୨

ଏଠାରେ 'ଷଣ୍ଢ' ଓ 'ଉଭରତି' ଶବ୍ଦ ବର୍ଣ୍ଣନୀୟ ବିଷୟର ଅପକର୍ଷ ବ୍ୟଞ୍ଜକ । ସୁତରାଂ ଏହା ଅନୁଚିତତା ଦୋଷଯୁକ୍ତ ।

## ଜୀବ ବିଜ୍ଞାନୀ ଦୃଷ୍ଟି–

ଶରୀରର ଗଠନ ଓ ବିକାଶ କେତେଗୁଡ଼ିଏ ଗ୍ରନ୍ଥି ଉପରେ ନିର୍ଭର କରେ । ସେଗୁଡ଼ିକ ମଧ୍ୟରେ ଯୌନ ଗ୍ରନ୍ଥି (Gonad or sex glands) ଅନ୍ୟତମ । ଶୈଶବରେ ଏଗୁଡ଼ିକ ନିଷ୍କ୍ରିୟ ଥାଆନ୍ତି ଏବଂ ବୟଃସନ୍ଧିକାଳରେ ସକ୍ରିୟ ହୋଇ ଦୁଇ ପ୍ରକାର କାର୍ଯ୍ୟରେ ଅଂଶ ଗ୍ରହଣ କରନ୍ତି; ଯଥା– ପ୍ରଜନନ କୋଷ ଉତ୍ପାଦନ ଓ ହରମୋନ୍ ରସ କ୍ଷରଣୀକରଣ । ଯୌନ ଜୀବନରେ ଏହି ସବୁର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

ଯୌନ କାମନା ସହ ପ୍ରଜନନର ନିବିଡ଼ ସଂବଂଧ ହେତୁ ଯୌବନରେ ପ୍ରତ୍ୟେକ ନାରୀ ଓ ପୁରୁଷ ପରସ୍ପର ପ୍ରତି ଦୁର୍ନିବାର ·ଆକର୍ଷଣ ଅନୁଭବ କରନ୍ତି । ଯୌନ ମିଳନ ହିଁ ଏହାର ଅନ୍ତିମ ଲକ୍ଷ୍ୟ ।

ସ୍ପଂଏର୍‌ଙ୍କ ମତରେ—Popular conception makes definite assumptions concerning the nature and qualities of this sexual impulse × × × its aim is sexual union or atleast such actions as would lead to union."[୧୭୮]

ଯୌନ ମିଳନ କାଳରେ ଦେହର ବିଭିନ୍ନ ଅଂଶରେ ପ୍ରଭୂତ ଉତ୍ତେଜନା ଅନୁଭୂତ ହୁଏ । ଶରୀରର ଜୈବିକ ଗଠନ ସହିତ ଏହାର ସଂବଂଧ ଥିବାରୁ ଗୋଟିଏ ଅଂଶ ଉତ୍ତେଜିତ ହେଲେ ତାହାର ପ୍ରତିକ୍ରିୟା ଅନ୍ୟତ୍ର ଦେଖାଯାଇଥାଏ । ହ୍ୟାଭ୍‌ଲକ ଏଲିସ୍ କହନ୍ତି—"This is the name now given to regions of body which in the process of tumescene are found to be sexually hyper-esthetic".[୨୭୯] । ଜନନେନ୍ଦ୍ରିୟ ଅଞ୍ଚଳ, ମୁଖ ଓ ନାରୀର ସ୍ତନବୃନ୍ତ ସାଧାରଣତଃ ପ୍ରଧାନ ଯୌନ ଉତ୍ତେଜକ ଅଂଶ ରୂପେ ସ୍ୱୀକୃତ । ଏତଦ୍‌ବ୍ୟତୀତ କାନ, ବେକର ପଛଭାଗ, ମଳଦ୍ୱାର, ଜଙ୍ଘ ମଧ୍ୟ ସମୟ କ୍ରମେ ଉତ୍ତେଜିତ ହୋଇଥାନ୍ତି । ପ୍ରେମ ସୁଖଭୋଗ ନିମିତ୍ତ ଏଗୁଡ଼ିକ ସାମୂହିକ ଅବଦାନ ଅପରିସୀମ । ପ୍ରତ୍ୟେକ ନାରୀର ସୁଖଭୋଗ ପଦ୍ଧତି ସ୍ୱତନ୍ତ୍ର ହୋଇଥିବାରୁ ତା'ର ଯୌନାତୁର ଅଂଶଗୁଡ଼ିକୁ (Erogenic zones) ଯଥାରୀତି ପରିତୃପ୍ତ କରିବା ପୁରୁଷର କର୍ତ୍ତବ୍ୟ ।

ନାରୀ ପୁରୁଷର ପ୍ରଣୟ ବା ଯୌନ ମିଳନ କ୍ଷେତ୍ରରେ ଆଉ କେତେକ ଉପାଦାନ ଜୀବବିଜ୍ଞାନବିତ୍‌ମାନଙ୍କ ଦୃଷ୍ଟିରେ ମଧ୍ୟ ଗୁରୁତ୍ୱପୂର୍ଣ୍ଣ । ସେଗୁଡ଼ିକ ହେଲା—ଦର୍ଶନ (vision) ସ୍ପର୍ଶନ (touching), ଶ୍ରବଣ (hearing), ଆଲିଙ୍ଗନ (embrace), ଚୁମ୍ବନ (kissing), ସୁଗଂଧି (perfumes),

ଚିତ୍ର (pictures), ନାରୀ ସୌନ୍ଦର୍ଯ୍ୟ (beauty of women) ଇତ୍ୟାଦି[୧୭୬]। ଉପରୋକ୍ତ ସକଳ ବିଷୟ ସାହିତ୍ୟ ଶାସ୍ତ୍ରୀୟ ପୂର୍ବାନୁରାଗ ଓ ସଂଭୋଗ ପ୍ରସଂଗର ଅଂଗୀଭୂତ । ଶୃଙ୍ଗାର ଲୀଳା ବର୍ଣ୍ଣନାରେ ରୀତି କବିର ବିପୁଳ ପ୍ରୟାସ ଅନେକ କ୍ଷେତ୍ରରେ ଅତିରଂଜିତ ହୋଇଥିଲେ ହେଁ ସେଗୁଡ଼ିକ ନିଛକ କଳ୍ପନା ନୁହେଁ । ସେସବୁ ବିଜ୍ଞାନସିଦ୍ଧ ଜୈବିକ ବିଭବର କାବ୍ୟରୂପ । ସେହି କାବ୍ୟଧାରାର ସାହିତ୍ୟିକ ସଫଳତା ଓ ବିଫଳତା ସ୍ୱତନ୍ତ୍ର କଥା ।

## ଶେଷକଥା-

ଓଡ଼ିଆ ରୀତି କାବ୍ୟର ବିବିଧ ବିଭବ ଉପରେ ବିଭିନ୍ନ ଦୃଷ୍ଟିକୋଣରୁ ଆଲୋକପାତ କରାଯାଇପାରେ । ବହୁ ଅଜ୍ଞାତ ତଥ୍ୟ ଏହାର ଅନ୍ତରାଳରେ ଲୁକ୍କାୟିତ । ଭାରତର ପ୍ରାନ୍ତୀୟ ରୀତି ସାହିତ୍ୟର ସମତାଳରେ ଏସବୁର ବ୍ୟାପକ ସମୀକ୍ଷା ଏକାନ୍ତ ଆବଶ୍ୟକ ।



## ପାଦଟୀକା-

୧। କବେର୍ବୃତ୍ତସ୍ୟ ବା ନାମ୍ନା ନାୟକସ୍ୟେତରସ୍ୟ ବା ।
–ସାହିତ୍ୟ ଦର୍ପଣ (ଓଡ଼ିଶା ସାହିତ୍ୟ ଏକାଡ଼େମୀ) : ପୃ ୫୮୫

୨। ଓଡ଼ିଆ କାବ୍ୟ କୌଶଳ(ଅପ୍ରକାଶିତ ସନ୍ଦର୍ଭ)-ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ
ପୃ : ୮୨୦–୮୨୨ (ଓଡ଼ିଆ କାବ୍ୟସୂଚୀ)

୩। ଉଷାଭିଳାଷ : ୩/୧୩, ପ୍ରେମ ଲୋଚନା : ୧୫/୪୯,
ରସଲେଖା : ୧/୧୦

୪। ଦେବତାମାନେ ଦେଖନ୍ତି
କାମେଣ କୌପୁନୀ ତିତନ୍ତି ।
କଳ୍ପଲତା : ୧/୫୨

୫। ଯୁବତୀଙ୍କ କୁଚରୁ ଖସଇ ଝୀନବାସ
ତାହା ଦେଖି ଦେବତାଙ୍କ ହୃଦୟ ଉଲ୍ଲାସ ।
ପରିମଳା : ୨୪/୨୧

୬। ପରିମଳା : ୨୪/୧୩୧-୧୩୫

୭। ଯେସନ ଶୁଣି ଚନ୍ଦ୍ରମା କହନ୍ତି ଶୁଣରେ ବାମା
ଆମ ସଙ୍ଗେ ବ୍ୟଭିଚ୍ଚର ନିର୍ଦୋଷ ତୋର ଯେ ।
ଲୀଳାବତୀ : ୭/୨୨

୮। ଚନ୍ଦ୍ରକଳା : ୩/୨୯

୯। ବୈଦେହୀଶ ବିଳାସ : ୪ର୍ଥ

୧୦। ରସଲେଖା : ୧ମ

୧୧। ପରିମଳା : ୨୪/୧୩୬-୧୪୨

୧୨। କଳ୍ପଲତା : ୧୧/୭

୧୩। କୁମାର ସମ୍ଭବ : ୭/୫୬-୬୪

୧୪।‥ ବହିଦେଇ ପୁର ନାରୀ । ଜଣେ ଜଣେ ଆଗସରି
ଦେଖନ୍ତି ଶ୍ରୀରାମ ମୁଖ । ମଦନ ଦୁଃଖ ଯେ ।
କାମିନୀ ସମ୍ମୁଖେ ମିଳି । ସାକ୍ଷିକେ ନପାରେ ଚଳି
ବିଚ୍ଛେ କି ନୂଆ ମଦନ । ପ୍ରତ୍ୟକ୍ଷ କାମ ଯେ ।
ରାମବିଭା : ୬/୬୦-୬୧

୧୫। ପରିମଳା : ୭ମ
(ଉଦାହରଣ—ମୋହର ନିଜ ପତି ଗୋ ସଖି ନ ଜାଣେ ସୁରତି ରସ
ତାହାଙ୍କର ଯାହା ମୁଁ ସମର୍ପି ହୋଇବି ଖାଇ ମରିବି
ବିଷ । ୭/୨୫)

୧୬। ରସକଲ୍ଲୋଳ : ୧୭ଶ ଓ ୨୭ଶ

୧୭। ତତ୍ତ୍ୱୈବ/ମୁଖବଂଧ—(ପ୍ରାଚୀ)

୧୮। ବିଷୟ କରି ଅନ୍ତର ସେ ପ୍ରାନ୍ତ ହତ ପ୍ରକାର ମଣି
ରମଣୀ ବାହାର ଛନ୍ନ ଦ୍ୱିଗୁଣ ।
—ବୈଦେହୀଶ ବିଳାସ : ୯/୯ (ଇତ୍ୟାଦି)

୧୯। କଥା ହୋଇଲେ ତରୁଣୀଗଣ ଆମ୍ଭ ବଲ୍ଲଭ ଏ ହେଲେ ଜାଣ
ହୁଅନ୍ତା ଦୀନ କ୍ଷଣଦା କ୍ଷଣ ପରାୟେ ସହିରେ ।
—କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୨୭/୬୧

୨୦। କାହାର ନାରୀ କାହାର ନନ୍ଦିନୀ । କାହାର ଭଗ୍ନୀ କାହାର ଜନନୀ ।
କାହାର ଖୁଡ଼ି କାହା ମଉଳାଣୀ । ଏହି ପ୍ରକାରେ ଅନେକ ରମଣୀ ।
କରନ୍ତି ଗମନ । ରତି କି ଧାଏଁ ଦେଖିବ ମଦନ ।
ମଥୁରା ମଙ୍ଗଳ : ୨୦/୪ (ଇତ୍ୟାଦି)

୨୧। ଆମ୍ଭର ବୃଦ୍ଧକାଳ ଆସି ହୋଇଲା
ଦେଖି ହୋଇଲୁ ଅଧୀରୁ ।
—ପରିମଳା : ୭/୪୧

୨୨। ବୟସ ଗଲଣି କରିବି କିସ । ଅଙ୍ଗ ଥର ଥର ଶୁକଳ କେଶ
× × × ଏକାଳେ ଯାହା ହେଉଅଛି ମନ । ତାହା ଜାଣଇ ମଦନ ଗଞ୍ଜନ ।
ମଥୁରା ମଙ୍ଗଳ : ୨୦,୨୩-୨୪

୨୩। କନ୍ୟା ସାନ ଭଗିନୀ କୁମାର ଶୋଭ ଗୃହି
ବିଚରନ୍ତି ଆମ୍ଭର ଏମନ୍ତ କର୍ମ ନାହିଁ ।
ଏ ପୁରୁଷ ହୋଇଥାନ୍ତା ଯେବେ ଆମ୍ଭ ବର
ଦିବା ନିଶି ହୋଇବାର ନୁହନ୍ତା ଗୋଚର ।
ରସିକ ହାରବଳୀ : ୫/୧୮-୧୯

୨୪। କୁଳରେ ଯେତେକ ଦାସୀ ଅନଙ୍ଗେଣ ଅଙ୍ଗନାଣି
ଦେହ କଂପି ସାଉକ୍ୟରେ ବିକାର ହୋନ୍ତି ।
କଳ୍ପଲତା : ୧୧,୧୨

୨୫। ପଦ୍ମ ପତ୍ରେ ଲୁଚଇ ଶରୀରକୁ । ସ୍ନାନ କାଳେ ଦେଖିଲ ପ୍ରମଦାକୁ ।
× × ତା'ର ଦେଖିବା ବଦନ ମଣ୍ଡଳ । ପକ୍ଷୀ ଜନ୍ମକୁ କରିବା ସଫଳ ।
ସର୍ବାଙ୍ଗ ସୁନ୍ଦରୀ : ୪/୪୨-୪୮

୨୬। ତୋହର ପର ରମଣୀ ରମଣ ବିନୁ ରଜନୀ
କେମନ୍ତ ପ୍ରକାରେ ହରୁ
ହା ହା ରମ୍ଭୋରୁଏ । ଚିତ୍ରକଳା : ୬/୧୧

୨୭। ନାର୍ଯ୍ୟୋ ପୟୋଧର ଇବାତିତର ପ୍ରକାଶାଃ
ନୋ ଗୁର୍ଜରୀସ୍ତନଇବା ତିତରଂ ନିଗୂଢାଃ
ଅର୍ଥୋ ଗିରମପିହିତଃ ପିହିତଶ୍ଚ କଶ୍ଚିତ୍
ସୌଭାଗ୍ୟମେତି ମରହଟ ବଧୂ କୁଚାଭଃ ।
କାବ୍ୟ ସଂବାଦ : ପୃ ୬୭ (ଉଦ୍ଧୃତି)

୨୮। ସ୍ଫୁରତ୍ କଳାଳାପ ବିଳାସ କୋମଳା
କରୋତି ରାଗଂ ହୃଦି କୌତୁକାଧିକମ୍
ରସେନ ଶଯ୍ୟା ସ୍ୱୟମଭ୍ୟୁପାଗତା
କଥା ଜନସ୍ୟାଭିନବା ବଧୂରିବ ।

କାବ୍ୟ ସଂବାଦ : ପୃ ୩୮ (ଉଦ୍ଧୃତି)

୨୯। ହରି ଚରଣ ଶରଣ ଜୟଦେବ କବି ଭାରତୀ
ବସତୁ ହୃଦି ଯୁବତିରିବ କୋମଳ କଳାବତୀ ।

ଗୀତ ଗୋବିନ୍ଦ : ୭/୧୦

୩୦। କବିତ୍ୱ ବନିତା କବିତା ପିତା—
କିମ୍ବା
କାମିନୀ ବିଭବ । କରଇ ନିକି ନଂପୁସକ ଦ୍ରବ ।

ରସକଲ୍ଲୋଳ : ୩୪/୨୭-୨୮

୩୧। ଛଇଳ ଲୋକର ନବ ଗୁଣବତୀ ଛବି ।

ବିଦଗ୍ଧ ଚିନ୍ତାମଣି : ୧/୨୩

୩୨। ନାଗରୀ ନାରୀ ପ୍ରକାରେ ଏ ଗୀତ ହୋଇବ
ଅଳଂକାରେ ଯୁକ୍ତ ବକ୍ର ଉକ୍ତି ଯେଣୁ ଥିବ । (ଲଳିତ ଲୋଚନା : ୧୮)
ଦ୍ରଷ୍ଟବ୍ୟ—ଓଡ଼ିଆ ସାହିତ୍ୟର ଇତିହାସ ୩ୟ—[(ସୂର୍ଯ୍ୟନାରାୟଣ ଦାସ)
(୧୯୧୯)] : ପୃ ୨୫୭

୩୩। କବିତା ମୋ ହେଉ ବର ବନିତା ସଦୃଶ ।

କନକଲତା : ୧/୧୦

୩୪। ଦୃଷ୍ଟିରେ ନାଗରୀ ପରି ଏ ଗୀତ ହୋଇବ ।

ଲାବଣ୍ୟନିଧି : ୧/୨୦

୩୫। ଏ ପ୍ରବଂଧ ବୃତ୍ତିବାମା ପର ରସିକରେ ।

ଲବବତୀ : ୧/୬

୩୬। ନୋହିବ ଅତି ଗୁପତ ନୋହିବ ପ୍ରକାଶ
ମହାରାଷ୍ଟ୍ର ପୁର ନାରୀ ଉରଜ ସଦୃଶ ।
ଶ୍ରୀକୃଷ୍ଣ ଲୀଳାମୃତ : ୧ମ

୩୭। ପରିମଳା : ୪ର୍ଥ, ଅନଙ୍ଗରେଖା : ୧ମ

୩୮। କଳ୍ପଲତା : ୧ମ, ରତ୍ନମଂଜରୀ : ୩ୟ, ଲୀଳାବତୀ : ୧ମ,
ରସିକ ହାରବଳୀ : ୧ମ

୩୯। କନକଲତା : ୧ମ (ଦ୍ରଷ୍ଟବ୍ୟ : ଓଡ଼ିଆ ସାହିତ୍ୟର ଇତିହାସ ୩ୟ–
ସୂର୍ଯ୍ୟନାରାୟଣ ଦାସ–୧୯୭୯ : ପୃ ୫୧୯)

୪୦। ରୁଦ୍ର ସୁଧାନିଧି : ପୃ ୪, ଓଡ଼ିଶାର ନାଥ ସଂପ୍ରଦାୟ ଓ ନାଥ
ସାହିତ୍ୟ : ପୃ ୫୧୯

୪୧। ସର୍ବାଙ୍ଗ ସୁନ୍ଦରୀ : ୧ମ

୪୨। ଶଶିସେଣା (ନରେନ୍ଦ୍ର ଯୁବତୀ) : ୪ର୍ଥ, ୫ମ

୪୩। ଲାବଣ୍ୟବତୀ : ୧ମ

୪୪। ଲୀଳାବତୀ : ୧୩ଶ, ୧୪ଶ

୪୫। ଲଳିତ ଲୋଚନା (ଦ୍ରଷ୍ଟବ୍ୟ : ଓଡ଼ିଆ ସାହିତ୍ୟର ଇତିହାସ (୩ୟ)–
ସୂ. ନା. ଦାଶ (୧୯୭୯): ପୃ–୨୫୮

୪୬। ଶଶିରେଖା : ୨

୪୭। ମୋହନ କଳ୍ପଲତା (ଦ୍ରଷ୍ଟବ୍ୟ : ଓଡ଼ିଆ ସାହିତ୍ୟର ଇତିହାସ (୩ୟ)–
ସୂ. ନା. ଦାଶ, (୧୯୭୯) : ପୃ–୨୮୫

୪୮। କଳ୍ପଲତା : ୭ମ

୪୯। ପରିମଳା : ୧୦ମ, ୨୨ଶ

୫୦। ପ୍ରେମ ଲୋଚନା : ୧୮ଶ

୫୧। ମସ୍ତକେ ପଲଙ୍କ ସହିତ ଘେନି ଶିରେ
ଦିବସ ଶେଷେଣ ମିଳେ ଶୋଣିତ ନବରେ ଗୋ ।

ଉଷାଭିଳାଷ : ୬/୩୨

୫୨। ନିତି କରନ୍ତି ବାଳା ମନ୍ତ୍ର ଜପ ।

ଚନ୍ଦ୍ରକଳା : ୧୨/୨୧

୫୩। ଶଶିସେଣା : ୬ଷ, ୮ମ

୫୪। ସୁଭଦ୍ରା ପରିଣୟ : ୧୦ମ

୫୫। ଭାରତୀୟ ପ୍ରେମାଖ୍ୟାନ କାବ୍ୟ (ହିନ୍ଦୀ) : ପୃ–୮୩

୫୬। ରହସ୍ୟ ମଂଜରୀ : ୯ମ ଓ ମୁଖବନ୍ଧ : ପୃ–୧

୫୭। ଓଡ଼ିଆ ଲୋକଗୀତ ଓ କାହାଣୀ : ପୃ–୪୯୪

୫୮। ଶଶିସେଣା : ୧୦ମ

୫୯। ଅନୁରାଗବତୀ (ଦ୍ରଷ୍ଟବ୍ୟ–ଓଡ଼ିଆ କାବ୍ୟ କୌଶଳ [(ଅପ୍ରକାଶିତ ସନ୍ଦର୍ଭ)
–ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ] ପରିଶିଷ୍ଟ : ପୃ- ୭୭୧)

୬୦। ଓଡ଼ିଆ ଲୋକଗୀତ ଓ କାହାଣୀ : ପୃ–୪୮୧

୬୧। ଶଶିସେଣା (ପ୍ରତାପ ରାୟ) : ୯ମ, ଶଶିସେଣା (ନରେନ୍ଦ୍ର ଯୁବତୀ) : ୮ମ

୬୨। ରସ୍ଟ ଇଚ୍ଛାବତୀ : ୩ୟ

୬୩। ଲାବଣ୍ୟବତୀ : ୨୬ଶ

୬୪। ଭାରତୀୟ ପ୍ରେମାଖ୍ୟାନ କାବ୍ୟ (ହିନ୍ଦୀ) : ପୃ–୨୨୬

୬୫। ଶଶିସେଣା : ୧୦/୫୭-୬୦

୬୬। ପରିମଳା : ୧୨/୪୦-୫୮

୬୭। ଅନୁରାଗବତୀ (ଦ୍ରଷ୍ଟବ୍ୟ : ଓଡ଼ିଆ କାବ୍ୟ କୌଶଳ [(ଅପ୍ରକାଶିତ
' ସନ୍ଦର୍ଭ)–ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ] ପରିଶିଷ୍ଟ),

୬୮। କେହୁ ସଖୀ କି କରନ୍ତି ଆଲିଙ୍ଗନ
ନାରୀ ନାରୀ ମତ୍ତ ହୋଇ ଦିଅନ୍ତି ଚୁମ୍ବନ ।
ଯେକ ଯୁବତୀର କୁଚ ବେନି ବଡ଼ ଦେଖି
ଗାଢ଼େ ମରଦଇ ପୁଣ କେବଣ ସେ ସଖୀ ।
ଯେକକୁ ଆରେକ ଯେ ମାଗନ୍ତି ରତିଦାନ
ଭୁଜେ ଭୁଜ ଭିଡ଼ି କରନ୍ତି ଆଲିଙ୍ଗନ ।
କାମ ବଶ୍ୟ ହୋଇଣ କାହାରି ନାହିଁ ଗ୍ୟାଂନ
ବୃକ୍ଷମାନେ ତାଙ୍କୁ ଦିଶନ୍ତି ପୁରୁଷ ଜନ ।

ପରିମଳା : ୧୯/୧୯ ୨୦

୬୯। Psychology of Sex (Havelock Ellis) : P. 175

୭୦। ହରିଣ ହରିଣୀ ଦେଖି ରେଦନ କଲୁ
ମୁଁ ଯାଇଁ ପାଦ ପଡ଼ନ୍ତେ ତୋଳି ଧଇଲୁ ।

ଉଷାଭିଳାଷ : ୧୧/୨୫

୭୧। ମୃଗ ପତନ ମିଥୁନ ଅନୁରାଗ କେବଳ ଛଦେ ଅଛି ଘେନି ।

ଅନଙ୍ଗରେଖା : ୫/୧

୭୨। ବୈଦେହୀଶ ବିଳାସ : ୨୬/୫୪-୫୫

୭୩। କୁସୁମରେଣୁ ଲମ୍ପଟ ...କାମାନଳ ମରମ ସ୍ଥଳରେ ବାଢ଼ିଲା ।

ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର : ୫/୩

୭୪। ପାପିଷ୍ଟ ପିଅର ମୋର କରନ୍ତୁ ନାଶ
ପ୍ରାଣନାଥ ଦାନ ଦ୍ୟନ୍ତୁ ଅଖିଳବାସଃ ।

ଉଷାଭିଳାଷ : ୧୧/୩୫

୭୫। ପ୍ରଭବତୀ ଶୋକ ଅସମ୍ଭାଳେ
ବୋଲେ ପଡ଼ି କାନ୍ତ ପାଦତଳେ
ବଂଧୁ ଦୋଷ ନାଶ ମନେ ନ ବିଗ୍ଭର
ମାଂର ରଣ୍ଣ ରଙ୍ଗ କୁତୂହଳେ ହେ। ସୁନ୍ଦର ।

ପ୍ରଭବତୀ ପରିଣୟ : ୧୨/୧୨

୭୬। କେ ଜ ର ଭଷି ସ୍ନେହେ ଭବି ରଶିକି ଗଣି କଚନା ତୋତେ କରି
କନ୍ୟା ତୁଳାଅଙ୍ଗୀ ସିଂହକଟୀ ମୀନ ନୟନା କୁମ୍ଭସ୍ତନା ଭରି ।
ଭ୍ରୂଲତା, ଧନୁରେ ପୁଣି ମନୋହର
ମକର-କେତୁ ତାପେ ତୋ ପ୍ରେମ ଜଳେ ମନ-କକଡ଼ା ମଗ୍ନ ମୋର ।
ଲାବଣ୍ୟବତୀ : ୨୩/୧୩

୭୭। ନବଚଣ୍ଡୀ ଅର୍ଚ୍ଚନ ଆରମ୍ଭରେ । ପଶୁଭବନା କରିଛି ଆମ୍ଭରେ ।
କନ୍ୟା ସମୟ ହେଲ କି ସଂଶୟ । ତୁଳା ହେବାରୁ ଦୂର ଅତିଶୟ ।
କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୮/୧୧

୭୮। ସ୍ୱଭାବ ଗୁରୁଭବ ଅଂଗୀକାରୀ । ×× ଷଡଗ୍ରହ ମହାବିଗ୍ରହ ଭବେ ।
କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୮/୧୧

୭୯। କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୨୬/୯ ୧୧

୮୦। ଶଙ୍କର ପରଜରେ ମନ୍ତ୍ରି ରହିଲେ ରଗ ଆଶାବରୀ ଗଉରୀ
ଲଳିତ ବସନ୍ତ ଭୈରବ ହେବାରୁ ବହିବ କୋଳାହଳ ପୂରି
ମାଳବରେ ଯେ
ହୋଇବ ଶଙ୍କରଭରଣ
ବିଷ ଆହାରି ହୋଇବୁ ନ ଭେଟିଲେ ମୋହନ ମଙ୍ଗଳ କଲ୍ୟାଣ ।
ପ୍ରବଂଧ ପୂର୍ଣ୍ଣଚନ୍ଦ୍ର : ୩/୨୫

୮୧। ଲକ୍ଷ୍ମୀ ବିଳାସ ବି–ନ୍ୟାସ ବିନା ଲେଶ
ଲସିବ ନାହିଁ ଏ ମାରକ । × ×
ପ୍ରବଂଧ ପୂର୍ଣ୍ଣଚନ୍ଦ୍ର : ୮/୬

୮୨। ପଲ୍ଲବ ଦ୍ରୋଣ ଅଧର ପୟୋଧର ପୂର୍ଣ୍ଣକୁମ୍ଭ ମୀନ ନୟନ ।
ଗତି ହଂସ ପାରବତ ଗଜ ମଂଗଳ ଅଷ୍ଟକ ବଚନ ।
ଜଘନ । ଭଦ୍ରାସନ ଉରୁ କଦଳୀ ।
ଶଂଙ୍ଖ ମୃଦୁହାସ ଚୁଚୁକ କ୍ରମୁକ ସର୍ବମଙ୍ଗଳପ୍ରଦ ଭଳି ।
ଲାବଣ୍ୟବତୀ : ୨୩/୩୬

୮୩। ହାସ ଦଧି ନେତ୍ର ମୀନ । ସୁଧାପୂର୍ଣ୍ଣ କୁମ୍ଭ ସ୍ତନ ।
ଗୃହିଣ କଲ ଗମନ । ପକ୍ଷୀ ଗର୍ଜନ ଯେ ।

ସର୍ବାଙ୍ଗ ସୁନ୍ଦରୀ : ୮/୬୯

୮୪। ଅତ୍ୟୁନ୍ନତ ସ୍ତନଯୁଗା ତରଳାୟତାକ୍ଷୀ ଦ୍ୱାରିସ୍ଥିତାପମାନ ମହୋତ୍ସବାୟ
ସା ପୂର୍ଣ୍ଣକୁମ୍ଭ ନବ ନୀରଜ ତୋରଣସ୍ରକ୍ ସଂଭର ମଙ୍ଗଳମୟନ୍
କୃତଂ ବିଧତ୍ତେ ।

—ସାହିତ୍ୟ ଦର୍ପଣ (ଓଡ଼ିଶା ସାହିତ୍ୟ ଏକାଡେମୀ) : ପୃ ୩୬୯

୮୫। ଗୃଟ ଇଚ୍ଛାବତୀ : ୪ର୍ଥ

୮୬। ଅନଙ୍ଗରେଖା : ୨୧ଶ, ଇଚ୍ଛାବତୀ : ୧୦ମ

୮୭। ଲାବଣ୍ୟବତୀ : ୩୯ଶ

୮୮। କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୧ମ, ୨୩ଶ, ୩୦ଶ

୮୯। ପରିମଳା : ୧୯ଶ

୯୦। ପ୍ରେମ ଲୋଚନା : ୨୬ଶ

୯୧। ଶଶିସେଣା : ୧୨ଶ

୯୨। କଳ୍ପଲତା : ୧୧ଶ

୯୩। ଲଳିତ ଲୋଚନା (ଦ୍ରଷ୍ଟବ୍ୟ—ଓଡ଼ିଆ ସାହିତ୍ୟର ଇତିହାସ-୩ୟ
[ (ସୂ.ନା. ଦାଶ) ୧୯୬୯] : ପୃ ୨୫୮

୯୪। କଳ୍ପଲତା : ୩/୧୩, ୬/୩୧, ୭/୪୧, ପ୍ରେମଲୋଚନା : ୧୧/୬୬,
ଅନଙ୍ଗରେଖା : ୧୫/୫୧, ସର୍ବାଙ୍ଗ ସୁନ୍ଦରୀ ୨/୫୨

୯୫। ପ୍ରେମଲୋଚନା : ୧୮ଶ

୯୬। ବିଦଗ୍ଧ ଚିନ୍ତାମଣି : ୬୧ ଶ

୯୭। ପରିମଳା : ୨୨ଶ

୯୮। ଅନଙ୍ଗରେଖା ୧ମ, ୨୪ଶ, ପରିମଳା : ୨୪ଶ

୯୯। କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୧ମ

୧୦୦। କଳ୍ପଲତା : ୩/୩୩

୧୦୧। ଅନଙ୍ଗରେଖା : ୬/୧୬

୧୦୨। ଶଶିସେଣା : ୮ମ

୧୦୩। ଶଶିସେଣା : ୧୨ଶ

୧୦୪। ଲାବଣ୍ୟବତୀ : ୩୯ଶ

୧୦୫। ପରିମଳା : ୧୯/୧୦, ପ୍ରେମ ଲୋଚନା : ୬,୭୨-୭୮,
ରହସ୍ୟମଞ୍ଜରୀ : ୧୩/୧୦

୧୦୬। କଟକେ ଛଟକ ନାରୀ ଅଛନ୍ତି ନାନା ଚତୁରୀ
କେ ଅବା କୁମରମନ ରଖିଲା ମୋହି ।
ମନ୍ତ୍ର ବଶ କଲେ ଯହୁଁ ମୋତେ ପାଶୋରିଲେ ତହୁଁ
ଆୟତ୍ତ ହୋଇଲେ କି ସେ ଅଛନ୍ତି ରହି ।
ନିମିଷେ ଯେ ନପାରେ ମୁଛି
ଏତେ ବିଳମ୍ବକୁ କି ସେ ରହିଣ ଅଛି ।
ଶଶିସେଣା : ୮/୧୪

୧୦୭। ବୋଲଇ ପୁରୁଷ ଜାତି ଏଡ଼େକ ନିର୍ଦ୍ଦୟା
ଯେତେ ଯେତେ ଭଜିଲେ ମୁଁ ନ ପାଇଲି ମାୟା ।
ଶଶିସେଣା : ୧୨/୧

୧୦୮। ପରିମଳା : ୮ମ, ୧୦ମ, ୧୪ଶ, ୧୭ଶ,

୧୦୯। କେତେ ଯୁବତୀ ସୁରସବତୀ ତାଙ୍କୁ ନ ମିଳୁଥିବେ
ମଦନ ମତ୍ତେ କାହିଁକି ମତେ ମତ୍ତେ ସେ ସୁମରିବେ ।.....
ରସିକ ହାରବଳୀ : ୧୩/୩

୧୧୦। ମନେକରେ ଦୟାଶୀଳା ଅଟଇ ମୋହର ସିନା
ଥାଉଁ ଥାଉଁ ଆୟତ କି ଛାଡ଼ିବ ମୋତେ ।
ମାସକେ ଆସିବ ବୋଲି କହି ଯେ ଥିଲ ସୁନ୍ଦରୀ
ପାସୋରିଲ ପଡ଼ି ଅବା କାନ୍ତ ସଂଗତେ ।
ସ୍ତିରୀ ଜାତି କାମରେ ବଶ
ଅନ୍ତର ହେଲେ ଇଛନ୍ତି ଆନ ପୁରୁଷ ।
ହାରବତୀ : ୬/୨୫

୧୧୧। ହୃଦୟମନ୍ଧକାରୟତି ମେ ଦିବସମିବ ପୟୋଧରୋନ୍ନତିରସ୍ୟା ।
ହର୍ଷ ଚରିତ

୧୧୨। ଧନ୍ୟ ଧନ୍ୟ ଏ ନବୀନ ନାରୀ
ଧନ୍ୟ ଧନ୍ୟ ଏ କନକ ଗୋରୀ
ଧନ୍ୟ ଧନ୍ୟ ଉଚ୍ଚ କୁଚ ଦିଶେ ରଚି ଧାତା ଗଢ଼ିଲ ଯତନେ କରି ।
ଶଶିଶେଣା (ନରେନ୍ଦ୍ରଯୁବତୀ) : ୫/୮

୧୧୩। କଳ୍ପଲତା—୫ମ

୧୧୪। କଳ୍ପଲତା : ୧୧/୨୫, ଶଶିସେଣା : ୬/୧୦, ପରିମଳା : ୨୧,୧୭,
ପ୍ରେମଲୋଚନା : ୧୧/୫୮, ରକ୍ମିଣୀ ବିଭା : ୫/୬

୧୧୫। ଅନଙ୍ଗ ରେଖା : ୧୬/୨୪

୧୧୬। ଗୁପ୍ତ ଇଚ୍ଛାବତୀ : ୪/୯୯

୧୧୭। ମଥୁରାମଙ୍ଗଳ : ୯/୪

୧୧୮। ପରିମଳା : ୧୮/୯

୧୧୯। ଲବଣ୍ୟବତୀ : ୧/୬୦, ୪୨/୫୨-୫୭

୧୨୦। ସାଗରେ ଶତେକ ବାର ଶରୀର ଝାସିବ ତା'ର
ସେ ଅବା ଛୁଇଁବ ଦେହ ଯେଥୁ ସନ୍ଦେହ ଯେ ।
ରାମବିଭା : ୬/୭୩

୧୨୧। ଶତେଜନ୍ମ ଯାଏ ସକନ୍ତ
କଳ୍ପତରୁ ତଳେ ବସି ସାଧିବି ଯୋଗ ।
ବିଦଗ୍ଧ ଚିନ୍ତାମଣି : ୫୧/୧୫

୧୨୨। ତୋହପର କରି
ପାଇବି ସାଗରେ ଜୀବନ ହାରି ।
କଳାବତୀ : ୬/୧୫

୧୨୩। ଇଚ୍ଛାବତୀ : ୬/୧୭, ୬/୨୦

୧୨୪। ତପ ତା' ଅକଥନୀୟ ଦିବ୍ୟ ନାରୀ ଶ୍ରଦ୍ଧେ × ×
ବଂଗ ଦେଶେ ଯାଇ ଗଂଗା ସାଗରେ ଝାସିଲ ଯେ ।
ଲବଣ୍ୟବତୀ : ୧/୨୮, ୧/୬୦

୧୨୫। ବାଞ୍ଛା ତରୁ ତଳେ ବସି । ଉଦ୍ଧାଗରେ ନେଇ ଅହର୍ନିଶି
ଯେ ଗଂଗା ସାଗରେ ଝାସିଥାଇ ତା'ର ଉତ୍ତମ ରମା ଅଙ୍କରେ ବସି ।
ରସିକ ହାରବଳୀ : ୮/୧୯

୧୨୬। ପ୍ରାଣ ପ୍ରୟାଗରେ କି ଶିବ ନଗରେ କି ଗଙ୍ଗା ସାଗରେ ଦେବି ବଳେ ।
× × ×
କି ଯୋଗୀ ହୋଇବି ତୋ ଗୁଣ ଗାଇବି ଏ ଦେହ ଥୋଇବି ମହୀଫେରି
× × ×.
ପଞ୍ଚାତପ ଥାପି ହୋଇବି ସନ୍ତାପି ମଦନ ପ୍ରତାପୀ ଯିବ ହଟି ।
× × ×
ପୂଜିବି ଶଂକର ବୋଲିବି ଶଂକର କରିବି କିଂକର ସେ ସୁତନୁ ।
ବିଦଗ୍ଧ ଚିନ୍ତାମଣି : ୧୨/୧୨, ୧୨/୧୩, ୧୨/୧୬, ୧୨/୧୭

୧୨୭। ପୃଥୁଳ ଉଚ୍ଚ କଠିନ ସ୍ତନ ବେନି
ହୃଦେ ମୋର ଲଗିଥାଇ
ମନେ ମଣୁଥାଇ ସ୍ୱର୍ଗାଗି ମୋକ୍ଷକୁ
ଚିନ୍ତନ୍ତି ଜନେ କିପାଇଁ ।
ପରିମଳା : ୧୭/୩୮

୧୨୮। ସ୍ୱର୍ଗ ଯାଇଁ କେଉଁ ଭୋଗ ହେବ
ନୀବୀରେ ମୋକ୍ଷଣ ଅଛି ଭବ ।

ତଥା
ରସିକ ହାରବଳୀ : ୮/୧୫

ଲାବଣ୍ୟବତୀ : ୩୬/୧୦, ପ୍ରେମ ସୁଧାନିଧି : ୧୩/୧୯,
ରସିକ ହାରବଳୀ : ୬/୧୬

୧୨୯। ମୋକ୍ଷ କରିଦଏ ବେନି ଶରୀର
ମୋଃକ୍ଷ ଏ ନିବିଡ଼େ ରମଣୀଙ୍କର, (ପାଣିନୀୟ ସୂତ୍ରରେ 'ଡ' ଓ 'ର'
ମଧ୍ୟରେ ପ୍ରଭେଦ ନାହିଁ ।)
ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର : ୧/୩୦

୧୩୦। ବର କବରୀ ଆଶ୍ୱାସି ଯେ
ମୋକ୍ଷ କଲକ୍ଷଣି ମୋୟକୁ ଦେକ୍ଷଣି ଲୁଟାଇବାର ଆଭସି ଯେ ।
ବିଦଗ୍ଧ ଚିନ୍ତାମଣି : ୫୯/୮

୧୩୧। ରଙ୍ଗପ୍ରଭ (୧୯୭୫) : ପୃ ୩

୧୩୨। ସ୍ୱର୍ଗ ସମ୍ପଦରୁ ଅଧିକ ପ୍ରୀତି । ସୁରସିକ ଗଣେ ଘେନି ଅଛନ୍ତି ।
ସୁଖୀରେ ସେ ସାର । ସଙ୍ଗେ ମନୋହାରୀ ଥାଇ ଯାହାର ।
ସୁଭଦ୍ରାପରିଣୟ : ୧୭/୨୨

୧୩୩। ମହାସୁଖ ନାହିଁ ଦମ୍ପତିରୁ । କି କାର୍ଯ୍ୟ କୁବେର ସଂପତିରୁ
ଜୀବନ ଯିବାର ବଡତ ନୁହଇ ଯୁବାଙ୍କୁ ଯୁବତୀ ବିଚ୍ଛେଦରୁ ।
ରସିକ ହାରବଳୀ : ୮/୨

୧୩୪। ଜବାଧରୀ ଦେହ ଇତର ନୁହଇ ଯୁବା ବଇକୁଣ୍ଠ ପୁର ।
ଲାବଣ୍ୟବତୀ : ୪୪/୧୧

୧୩୫। କ୍ରମେ କ୍ରମେ ପୁଣି ବସନ ଫିଟାଇ ଆରମ୍ଭ କଲ ସୁରତି
ରତି ଯତି ଦୁଃଖୁ ବେଗେ ପାସୋରିଲ ଲଭିଲ ଇନ୍ଦ୍ର ସମ୍ପତ୍ତି ।
ସୁବର୍ଣ୍ଣରେଖା : ୫/୧୪

୧୩୬। ଓଡ଼ିଆ ଭଷା ଓ ସାହିତ୍ୟ : ପୃ ୧୩୨-୩୩

୧୩୭। କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୨/୫୩-୬୦

୧୩୮। ପାଟ ମହାଦେବୀ ବିଚିତ୍ରକଳା
× × ଦେବୀ ବୃନ୍ଦରେ ତ ସହଜେ ସାର ।
କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୨/୬୨

୧୩୯। ଲବଣ୍ୟବତୀ : ୧/୬୨, ୨/୨୫
('ପାଟ ମହିଷୀ' ଉଲ୍ଲେଖରୁ ରଜାଙ୍କର ବହୁରାଣୀ ଥିବା ସୁସ୍ପଷ୍ଟ)

୧୪୦। ତା'ର ସାତଶ ପଞ୍ଚାଶ ଯୁବତୀ
ତହିଁ ପ୍ରିୟତମା ସେ ରତ୍ନାବତୀ ।
ଅନଙ୍ଗରେଖା : ୨/୩୦

୧୪୧। ଓଡ଼ିଆ ଭଷା ଓ ସାହିତ୍ୟ : ପୃ ୧୩୩

୧୪୨। ତତ୍ରୈବ : ପୃ ୧୩୩

୧୪୩। ନାଟ କରୁଛନ୍ତି ଗଣିକା ଆଳୀ
ଗୀତ ଗାଉଛନ୍ତି ଗୁଣି କେ ମିଳି ।
ଲବଣ୍ୟବତୀ : ୬/୧୧

୧୪୪। ଲବଣ୍ୟବତୀ : ୯ମ

୧୪୫। ଲବଣ୍ୟବତୀ (ପ୍ରାଚୀ) : ମୁଖବଂଧ–ପୃ ୧୨୪

୧୪୬। ରୂପାଜୀବା ଜଣେ ତହିଁ ଆଗେ ଥିଲ ଉଭ ହୋଇ ....
ସୁବର୍ଣ୍ଣରେଖା : ୧/୭

୧୪୭। ତ୍ରୈଲୋକ୍ୟ ମୋହିନୀ : ୫/୧-୨

୧୪୮। ବୈଦେହୀଶ ବିଳାସ : ୪୧ଶ-୪୫ଶ, ଲବଣ୍ୟବତୀ : ୪୫ଶ

୧୪୯। ଝଙ୍କାର (ଅଗଷ୍ଟ, ୧୯୬୬) : ପୃ ୩୭୩

୧୫୦। ରସିକ ହାରେବଳୀ : ୬/୪

୧୫୧। ସାଗ ଫଉଜ ହେଲେ ଡିଆର ମୁସଦିମୁଷା ହେଲେ ବାହାର
ପାଗାସ୍ତୁଆର କି ସରଦାର କି ଜମାଦାର ଯେ । × ×
ସମର ତରଂଗ : ୨/୧

୧୫୨। ପ୍ରେମ ସୁଧାନିଧି : ୬/୬, ବିଦଗ୍ଧ ଚିନ୍ତାମଣି : ୮୩/୮

୧୫୩। ରସ କଲ୍ଲୋଳ : ୨୩/୨୬ ଇତ୍ୟାଦି, ପ୍ରେମ ପଞ୍ଚାମୃତ : ୯/୩୮୦-୪୧୦

୧୫୪। ବିଦଗ୍ଧ ଚିନ୍ତାମଣି : ୮୧/୧୩-୧୪

୧୫୫। Typical Selection From Oriya Literature
Vol II p. xxiii

୧୫୬। ଲାବଣ୍ୟବତୀ (ପ୍ରାଚୀ) : ମୁଖବଂଧ/ପୃ ୯୫

୧୫୭। କୋଣାର୍କ—୧ମ ବର୍ଷ, ତୃତୀୟ ସଂଖ୍ୟା ପୃ ୫୮-୫୯

୧୫୮। ପରିମଳା : ୧୦/୬୧-୧୧୭, ଅନଙ୍ଗରେଖା : ୧୨/୧୬-୩୩,
ଲୀଳାବତୀ : ୩/୨୨-୪୨, ଲାବଣ୍ୟବତୀ-୩/୨୪-୩୪,
ସୁବର୍ଣ୍ଣରେଖା: ୨/୬, ୪/୧୨ ଇତ୍ୟାଦି

୧୫୯। ଝଙ୍କାର (ଅଗଷ୍ଟ, ୧୯୭୬) : ପୃ ୩୭୩

୧୬୦। ରୀତିକାବ୍ୟ କି ଭୂମିକା : ପୃ ୧୭୫

୧୬୧। କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ୨୨ଶ, ୨୪ଶ, ଲାବଣ୍ୟବତୀ : ୧୯ଶ,୨୦ଶ,
ରସଲେଖା : ୭ମ, ୧୦ମ; ବିଦଗ୍ଧ ଚିନ୍ତାମଣି ୧୫ଶ, ୧୬ଶ,
(ଚନ୍ଦ୍ରାବଳୀ ପ୍ରସଂଗ) ୫୪ଶ, ୫୫ଶ (ରାଧା ପ୍ରସଂଗ),
ଚନ୍ଦ୍ରକଳା : ୧୨ଶ, ୧୩ଶ,

୧୬୨। ପ୍ରେମ ସୁଧାନିଧି : ୧୪ଶ,କେଳିକଳାନିଧି : ୧୧ଶ, ମଥୁରାମଙ୍ଗଳ : ୨୮ଶ

୧୬୩। ଓଡ଼ିଆ ଗୀତି କାବ୍ୟ : ପୃ ୧୫୧

୧୬୪। Three Contributions to The Theory of Sex-p.1

୧୬୫। Psychology of Sex-p.29

୧୬୬। Three Contributions to The Theory of
Sex-p.66-69

❊

# ଉପସଂହାର

•

ଓଡ଼ିଆ ରୀତି କାବ୍ୟ ଦୀର୍ଘ ତିନିଶହ ବର୍ଷ ବ୍ୟାପୀ ଉତ୍କଳ-ବାଣୀ ସାଧନାର ବିପୁଳ ପରିପ୍ରକାଶ । ତାହାର ପୃଷ୍ଠଭୂମିରେ ଲୁଚି ରହିଛି କେତେ ଅତ୍ୟାଚ୍ଚର, ନିର୍ଯ୍ୟାତନା, ଶୋଷଣ, ଅଶାନ୍ତି ଓ ଉପଦ୍ରବର କଳଙ୍କିତ ଅଧ୍ୟାୟ । ଶାସନ ଶକ୍ତିର ଦୁର୍ବଳତା, ରାଜ୍ୟ ରାଜ୍ୟ ମଧ୍ୟରେ କଳହ, ସିଂହାସନ ପାଇଁ ପ୍ରତ୍ୟେକ ଦରବାରରେ ଅବିରାମ ଷଡ଼ଯନ୍ତ୍ର, ସାମନ୍ତବର୍ଗଙ୍କ ସୀମାହୀନ ବିଳାସିତା ଏବଂ ପ୍ରଜାକୁଳର ନିଃସହାୟ ଅବସ୍ଥାଦିର ଐତିହାସିକ ପରିଣତି ଏହି କାବ୍ୟ ସୃଷ୍ଟିକୁ ଜୀବନର ବୃହତ୍ତର ସ୍ପର୍ଶ ଦେଇପାରିନାହିଁ । ଫଳତଃ ଏହା ଶୃଙ୍ଗାର ପ୍ରଧାନ ସାହିତ୍ୟର ସକଳ ଐଶ୍ୱର୍ଯ୍ୟରେ ଗୌରବାନ୍ୱିତ ।

ଶୃଙ୍ଗାର ଚର୍ଯ୍ୟା ଓଡ଼ିଆ ରୀତି କାବ୍ୟର ମୁଖ୍ୟ ବିଭବ ରୂପେ ଗୃହୀତ ହୋଇଥିଲେ ହେଁ ଆଦି ପର୍ଯ୍ୟାୟର କବି ଗୋଷ୍ଠୀଙ୍କ ନିକଟରେ ଏହାର ରୂପ ଯଥେଷ୍ଟ ମାର୍ଜିତ ଓ କଳା ସମ୍ପନ୍ନ । ଅର୍ଜୁନ ଦାସଙ୍କ ଠାରୁ ଦେବ ଦୁର୍ଲଭଙ୍କ ପର୍ଯ୍ୟନ୍ତ ଏହି ଧାରା ପ୍ରାୟ ଅବ୍ୟାହତ । ମଧ୍ୟ ପର୍ଯ୍ୟାୟରେ କବିଗୋଷ୍ଠୀଙ୍କ (ଯଥା-ଧନଂଜୟ, ଦୀନକୃଷ୍ଣ, ଉପେନ୍ଦ୍ର, ସଦାନନ୍ଦ ଓ ଅଭିମନ୍ୟୁ) ରଚନାରେ ଅଳଂକାର ପ୍ରାଧାନ୍ୟ, ଦୀର୍ଘାୟିତ ପ୍ରଣୟ ବ୍ୟାପାର ଓ ଅନାବୃତ ସୁରତ ଲୀଳା ବିଶେଷ ଭାବେ ସ୍ଥାନ ଅଧିକାର କଲା । ଅନ୍ତିମ ପର୍ଯ୍ୟାୟର କବିଗଣଙ୍କ ସୃଷ୍ଟି ସଂପୂର୍ଣ୍ଣ ଭାବେ ଭଂଜୀୟ କାବ୍ୟର ଅନୁସରଣ ପରଂପରା ଉପରେ ଆଧାରିତ । ଏଥିରେ କ୍ଷୟିଷ୍ଣୁ ପ୍ରତିଭାର ସ୍ୱାକ୍ଷର ଲିପିବଦ୍ଧ । ବ୍ରଜନାଥ, କବି ସୂର୍ଯ୍ୟ ଓ ଯଦୁମଣି ଏହି କାଳର କବି । (କିନ୍ତୁ 'ସମର ତରଂଗ' ଏହି ଯୁଗର ଆଶ୍ଚର୍ଯ୍ୟ ବ୍ୟତିକ୍ରମ ।) •

ଓଡ଼ିଆ ରୀତି କାବ୍ୟର ପ୍ରକୃତି/ଷଡ଼ରତୁ ଚିତ୍ରଣରେ ଶୃଙ୍ଗାର ଆଭିମୁଖ୍ୟ ବହୁଳ ଭାବେ ପ୍ରତିଫଳିତ । ନାୟକ/ନାୟିକାର ପୂର୍ବରାଗ ଓ ବିପ୍ରଲମ୍ଭର ପୃଷ୍ଠଭୂମି ରୂପେ ଏହାକୁ ସର୍ବତ୍ର ଉପସ୍ଥାପନ କରାଯାଇଛି । ପ୍ରୀତି ଭାବନାକୁ ଗଭୀର ଓ ବଳିଷ୍ଠ କରିବା ନିମନ୍ତେ ରତୁ ପର୍ଯ୍ୟାୟକ୍ରମେ ପ୍ରକୃତିର ସୁନ୍ଦର/ବିଧୁର ରୂପ ରାଗ ଏଥିରେ ଅଙ୍କିତ । କିନ୍ତୁ ଯେଉଁଠାରେ ଏହା ରୀତିବଦ୍ଧ ଓ ଆଙ୍ଗିକ ସର୍ବସ୍ୱ ସେଠାରେ ସଫଳତାର ମାତ୍ରା ଏକାନ୍ତ ସ୍ୱଳ୍ପ ।

ଶୃଙ୍ଗାର ଚେତନା ସହ ନାରୀ କେନ୍ଦ୍ରିକ ଦୃଷ୍ଟି ଅଂଗାଂଗୀ ଭାବେ ଜଡ଼ିତ । ଧନଞ୍ଜୟ ଓ ତାଙ୍କ ପରବର୍ତ୍ତୀ କବିଗୋଷ୍ଠୀ ନାରୀକୁ ଆଳଂକାରିକ ରୀତିରେ ଜୀବନର ଐହିକ ଓ ପାରତ୍ରିକ ସକଳ ଐଶ୍ୱର୍ଯ୍ୟର ଆଧାର ରୂପେ ଗ୍ରହଣ କରିଛନ୍ତି । ଫଳତଃ ରୀତି କାବ୍ୟରେ ତାହାର ମର୍ଯ୍ୟାଦା ଓ ଗୌରବ ବିଳାସିତା ଓ ରସିକତାର ସ୍ୱର୍ଣ୍ଣ ସିଂହାସନାସୀନ । ମାତ୍ର ଏହା ସାମନ୍ତୀୟ ଭୋଗ ଲିପ୍‌ସାର ଅକପଟ ପ୍ରତିବିମ୍ବ କହିଲେ ଅତ୍ୟୁକ୍ତି ହେବନାହିଁ ।

କୃଷ୍ଣଭକ୍ତି ପରଂପରା ଅତିରିକ୍ତ ପ୍ରାୟ ସକଳ ରୀତି କାବ୍ୟରେ ଶୃଙ୍ଗାର ଚେତନା ଗାର୍ହସ୍ଥିକ ଜଳବାୟୁର ସ୍ନେହ ସ୍ପର୍ଶ ଲାଭ କରିଛି । ବହୁପତ୍ନୀକତା ସାମାଜିକ ସ୍ୱୀକୃତି ଲାଭ କରିଥିଲେ ହେଁ କାବ୍ୟ ସ୍ୱୀକୃତିରୁ ବଂଚିତ । ଏହା ମୂଳରେ ରହିଛି ପ୍ରାଚୀନ ଭାରତର ଦାମ୍ପତ୍ୟ ପ୍ରେମାଦର୍ଶ ଓ ସଂସ୍କୃତ କାବ୍ୟଧାରାର ପ୍ରେରଣା ସ୍ରୋତ ।

ରୀତିଯୁଗୀୟ ଶୃଙ୍ଗାର ଚେତନା ଏକ ମହାଦ୍ରୁମର ଗୌରବ ଲାଭ କଲେ, ଧାର୍ମିକତା ତାହାର ଛାୟାଶ୍ରିତ ଏକ ଲୁଗ୍ଣ ତରୁ । ରାମଭକ୍ତି, କୃଷ୍ଣଭକ୍ତି ଓ ଜଗନ୍ନାଥ ଭକ୍ତି—ଏହି ସକଳ ଧାରା ନିଜ ନିଜର ଜୀବନୀ ଶକ୍ତି ଓ ଚମତ୍କାରିତା ହରାଇ ନିର୍ବୀର୍ଯ୍ୟ କାଳର ପ୍ରତିନିଧିତ୍ୱ କରିଛନ୍ତି ମାତ୍ର । ଏ ସମସ୍ତ ଆଳଂକାରିକ ଆବଶ୍ୟକତା ଓ ଭକ୍ତିକ' ଆଗ୍ରହ ସେ ଯୁଗର କବି ପକ୍ଷରେ ଥିଲା ବୌଦ୍ଧିକ/ସାମାଜିକ ସମ୍ମାନର ପରିଚୟ ପତ୍ର ।

ମୋଟ ଉପରେ ଏ ଯୁଗର ଶୃଙ୍ଗାର ଚେତନାରେ କାମବୃତ୍ତି ନିରଙ୍କୁଶ ଆଧିପତ୍ୟ ଲାଭ କରିଥିଲା । ଧର୍ମ, ପ୍ରେମ ଓ ଭକ୍ତି ଥିଲେ ଏହାର ଅନୁଗତ ପାରିଷଦ ବର୍ଗ । ଆତ୍ମାର ଉତ୍ତରଣ କିମ୍ବା ସମାଜର ବିକାଶ ସାଧନ ନିମନ୍ତେ ରୀତି କାବ୍ୟର ସଂବଳ ଅତ୍ୟନ୍ତ ସୀମିତ । ଭୋଗ ଯଦି ଜୀବନର ଏକମାତ୍ର ଆଦର୍ଶ ହୁଏ ତାହେଲେ ମାନବ ଜାତିର ଇତିହାସକୁ ଏହି କାବ୍ୟଧାରାର ଦାନ ଅତୁଳନୀୟ ।



# ଗ୍ରନ୍ଥ ସୂଚୀ

## ଓଡ଼ିଆ

## ଆଧାର ଗ୍ରନ୍ଥ

### କ) ପ୍ରକାଶିତ କାବ୍ୟ — ପ୍ରକାଶ କାଳ

| | | | |
|---|---|---|---|
| ୧। | ରାମ ବିଭା–ଅର୍ଜୁନ ଦାସ | ସଂ: ଆର୍ତ୍ତବଲ୍ଲଭ ମହାନ୍ତି | ୧୯୫୩ |
| ୨। | କଳ୍ପଲତା–ଅର୍ଜୁନ ଦାସ | ସଂ:କେଦାରନାଥ ମହାପାତ୍ର | ୧୯୬୧ |
| ୩। | ରହସ୍ୟ ମଞ୍ଜରୀ-ଦେବଦୁର୍ଲ୍ଲଭ ଦାସ | ସଂ:ଆର୍ତ୍ତବଲ୍ଲଭ ମହାନ୍ତି | ୧୯୬୫ |
| ୪। | ଗୋପୀ ଚନ୍ଦନ-ରୁଦ୍ର ଦାସ | ସଂ:ନୀଳମଣି ମିଶ୍ର | ୧୯୬୦ |
| ୫। | ଉଷାଭିଳାଷ-ଶିଶୁଶଙ୍କର ଦାସ | ସଂ:ଆର୍ତ୍ତବଲ୍ଲଭ ମହାନ୍ତି | ୧୯୨୯ |
| ୬। | କାଞ୍ଚି କାବେରୀ-ପୁରୁଷୋତ୍ତମ ଦାସ | ସଂ:ସୁକୁମାର ସେନ୍ | ୧୯୫୮ |
| ୭। | ପରିମଳା-ନରସିଂହ ସେଣ | ସଂ:କେଦାରନାଥ ମହାପାତ୍ର | ୧୯୬୧ |
| ୮। | ପ୍ରେମଲୋଚନା-ବିଷ୍ଣୁ ଦାସ | ସଂ:କେଦାରନାଥ ମହାପାତ୍ର | ୧୯୬୧ |
| ୯। | ଶଶିସେଣା-ପ୍ରତାପ ରାୟ | ସଂ:ଆର୍ତ୍ତବଲ୍ଲଭ ମହାନ୍ତି | ୧୯୬୧ |
| ୧୦। | ଚଟ ଇଚ୍ଛାବତୀ-ବନମାଳୀ ଦାସ | ସଂ:କେଦାରନାଥ ମହାପାତ୍ର | ୧୯୬୧ |
| ୧୧। | କଳାବତୀ-ପାର୍ଥ ଶ୍ରୀଚନ୍ଦନ | ସଂ:କେଦାରନାଥ ମହାପାତ୍ର | ୧୯୬୧ |
| ୧୨। | ରୁକ୍ମିଣୀ ବିଭା-କାର୍ତ୍ତିକ ଦାସ | ସଂ:ଆର୍ତ୍ତବଲ୍ଲଭ ମହାନ୍ତି | |

୧୩। ଗୋପୀଭାଷା-ଦନାଈ ଦାସ ଦାଶରଥୀ ପୁସ୍ତକାଳୟ ୧୯୫୯

୧୪। ଇଚ୍ଛାବତୀ-ଧନଞ୍ଜୟ ଭଞ୍ଜ ସଂ:ଗୌରୀକୁମାର ବ୍ରହ୍ମା ୧୯୬୦

୧୫। ଅନଙ୍ଗରେଖା-ଧନଂଜୟ ଭଞ୍ଜ ସଂ:ଗୌରୀକୁମାର ବ୍ରହ୍ମା ୧୯୬୦

୧୬। ସର୍ବାଙ୍ଗସୁନ୍ଦରୀ-ଲୋକନାଥ ବିଦ୍ୟାଧର (ଦାଶରଥୀ ପୁସ୍ତକାଳୟ)୧୯୫୯

୧୭। ଚିତ୍ରକଳା-ଲୋକନାଥ ବିଦ୍ୟାଧର ସଂ: ଭଗବାନ ପଣ୍ଡା ୧୯୭୩

୧୮। ରସକଲ୍ଲୋଳ-ଦୀନକୃଷ୍ଣ ଦାସ ସଂ: ଆର୍ତ୍ତବଲ୍ଲଭ ମହାନ୍ତି ୧୯୭୩

୧୯। ପ୍ରେମ ପଞ୍ଚାମୃତ-ଭୂପତି ପଣ୍ଡିତ ସଂ:ଲକ୍ଷ୍ମୀକାନ୍ତ ଚୌଧୁରୀ ପ୍ରଥମ ମୁଦ୍ରଣ

୨୦। ବୈଦେହୀଶ ବିଳାସ-ଉପେନ୍ଦ୍ର ଭଞ୍ଜ (ଉପେନ୍ଦ୍ରଭଞ୍ଜ ଗ୍ରନ୍ଥାବଳୀ ଧର୍ମଗ୍ରନ୍ଥ ଷ୍ଟୋର) ୧୯୭୫

୨୧। କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଉପେନ୍ଦ୍ର ଭଞ୍ଜ ,, ୧୯୭୫

୨୨। ଲାବଣ୍ୟବତୀ ଉପେନ୍ଦ୍ର ଭଞ୍ଜ ,, ୧୯୭୫

୨୩। ପ୍ରେମ ସୁଧାନିଧି ଉପେନ୍ଦ୍ର ଭଞ୍ଜ ,, ୧୯୭୫

୨୪। ସୁବର୍ଣ୍ଣରେଖା ଉପେନ୍ଦ୍ର ଭଞ୍ଜ ,, ୧୯୭୫

୨୫। ରସିକ ହାରବଳୀ ଉପେନ୍ଦ୍ର ଭଞ୍ଜ ,, ୧୯୭୫

୨୬। ରସଲେଖା ଉପେନ୍ଦ୍ର ଭଞ୍ଜ ,, ୧୯୭୫

୨୭। କଳା କଉତୁକ ଉପେନ୍ଦ୍ର ଭଞ୍ଜ ,, ୧୯୭୫

୨୮। ଛାନ୍ଦ ଭୂଷଣ ଉପେନ୍ଦ୍ର ଭଞ୍ଜ ,, ୧୯୭୫

୨୯। ବିଦଗ୍ଧ ଚିନ୍ତାମଣି-ଅଭିମନ୍ୟୁ ସାମନ୍ତ ସିଂହାର ସଂ: ଆର୍ତ୍ତବଲ୍ଲଭ ମହାନ୍ତି ୧୯୬୫

୩୦। ଶ୍ୟାମ ରସୋତ୍ସବ-ବ୍ରଜନାଥ ବଡ଼ଜେନା ସଂ:ସୁଧାକର ପଟ୍ଟନାୟକ (ବ୍ରଜନାଥ ଗ୍ରନ୍ଥାବଳୀ) ୧୯୬୫

୩୧। ଅର୍ଣ୍ଣିକା ବିଳାସ-ବ୍ରଜନାଥ ବଡ଼ଜେନା ସ:ସୁଧାକର ପଟ୍ଟନାୟକ (ବ୍ରଜନାଥ ଗ୍ରନ୍ଥାବଳୀ) ୧୯୬୫

୩୨। କେଳିକଳାନିଧି-ବ୍ରଜନାଥ ବଡ଼ଜେନା ,, ୧୯୬୫

୩୩। ସମର ତରଙ୍ଗ-ବ୍ରଜନାଥ ବଡ଼ଜେନା ,, ୧୯୬୫

୩୪। ଶଶିରେଖା-ପଦ୍ମନାଭ ଶ୍ରୀଚନ୍ଦନ ସ:ବିଛନ୍ଦ ଚରଣ ପଟ୍ଟନାୟକ ୧୯୩୨

୩୫। ମଥୁରା ମଙ୍ଗଳ-ଭକ୍ତଚରଣ ଦାସ ଉତ୍କଳ ବିଶ୍ୱବିଦ୍ୟାଳୟ ୧୯୫୧

୩୬। ଚନ୍ଦ୍ରକଳା-କବିସୂର୍ଯ୍ୟ ବଳଦେବ ରଥ କବିସୂର୍ଯ୍ୟ ଗ୍ରନ୍ଥାବଳୀ (କଟକ ପବ୍ଲିଶିଂ ହାଉସ) ୧୯୭୭

୩୭। କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ ,, ,, ୧୯୭୭

୩୮। ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର—ଯଦୁମଣି ମହାପାତ୍ର ଯଦୁମଣି ଗ୍ରନ୍ଥାବଳୀ (ଦାସବ୍ରଦର୍ସ) ୧୯୬୫

୩୯। ରାଘବ ବିଳାସ- ,, ,, ,,

୪୦। ପ୍ରଭାବତୀ ପରିଣୟ-ଜଗନ୍ନାଥ ନୃପ ସ:ପ୍ରମିଳା ମିଶ୍ର ୧୯୭୨

୪୧। ରସବାରିଧି-ବୃନ୍ଦାବନ ଦାସ ସ:ଆର୍ତ୍ତବଲ୍ଲଭ ମହାନ୍ତି ୧୯୫୯

## ଖ) ଅପ୍ରକାଶିତ କାବ୍ୟ

୪୨। ଲୀଳାବତୀ-ରଘୁନାଥ ହରିଚନ୍ଦନ ବ୍ରହ୍ମପୁର ବିଶ୍ୱ ବିଦ୍ୟାଳୟ ସଂଗ୍ରହାଳୟ

୪୩। ସୁକୁନ୍ତଳା-ରଘୁନାଥ ହରିଚନ୍ଦନ ,,

୪୪। ରତ୍ନମଞ୍ଜରୀ-ଧନଞ୍ଜୟ ଭଞ୍ଜ ,,

୪୫। ଶଶିସେଣା-ନରେନ୍ଦ୍ର ଯୁବତୀ ,,

୪୬। ରସକଲ୍ଲୋଳ-ବାମଦେବ ପଟ୍ଟନାୟକ ବ୍ରହ୍ମପୁର ବିଶ୍ୱ ବିଦ୍ୟାଳୟ ସଂଗ୍ରହାଳୟ

୪୭। ମଦାଳସା-ହରିହର ନରେନ୍ଦ୍ର ଓଡ଼ିଶା ରାଜ୍ୟ ସଂଗ୍ରହାଳୟ Cy/94

୪୮। ଭାଗବତୀ-ରାମଚନ୍ଦ୍ର ପଟ୍ଟନାୟକ ,, Cy/362

୪୯। ପ୍ରେମ କଳ୍ପଲତା –ହରିବଂଶ ରାୟ ,, Cy/45

୫୦। ତ୍ରୈଲୋକ୍ୟମୋହିନୀ-ଘନ ଭଞ୍ଜ ,, Cy/46

୫୧। ରଘୁନାଥ ବିଳାସ-ଧନଞ୍ଜୟ ଭଞ୍ଜ ,, Cy/8

୫୨। ଯୁଗଳ ରସାମୃତ ଭଉଁରୀ-ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ,, Cy/1006

୫୩। ପ୍ରେମ ତରଙ୍ଗିଣୀ ,, ,, Cy/1128

## ଗ) ସହାୟକ କାବ୍ୟ (ଦୁଷ୍ପ୍ରାପ୍ୟ)

୫୪। କନକଲତା–ତ୍ରିବିକ୍ରମ ଭଞ୍ଜ ଦ୍ରଷ୍ଟବ୍ୟ-ଓଡ଼ିଆ ସାହିତ୍ୟର ଇତିହାସ ୩ୟ ଭାଗ (ସୂର୍ଯ୍ୟନାରାୟଣ ଦାସ)

୫୫। ଲଳିତ ଲୋଚନା-ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ,,

୫୬। ମୋହନ କଳ୍ପଲତା-ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ,,

୫୭। ଅନୁରାଗବତୀ ରାମଚନ୍ଦ୍ର ପଟ୍ଟନାୟକ ଦ୍ରଷ୍ଟବ୍ୟ–ଓଡ଼ିଆ କାବ୍ୟ କୌଶଳ (ଅଧ୍ୟାପକ ସୁଦର୍ଶନ ଆଚାର୍ଯ୍ୟଙ୍କ ଅପ୍ରକାଶିତ ସନ୍ଦର୍ଭ)

୫୮। ଲାବଣ୍ୟନିଧି-ନଳିନାକ୍ଷ ମର୍ଦ୍ଦରାଜ ,, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ

୫୯। ରାବବତୀ-ପଦ୍ମନାଭ ଦେବ ,,

୬୦। ଶ୍ରୀକୃଷ୍ଣ ଲୀଳାମୃତ-ଲକ୍ଷଣ ମିଶ୍ର ,,

## ସହାୟକ ଗ୍ରନ୍ଥ

### କ) କାବ୍ୟ କବିତା


୧। ବିଦ୍ୟାପତି ପଦ୍ୟାବଳୀ (ଓଡ଼ିଶା ସାହିତ୍ୟ ଏକାଡ଼େମୀ) ୧୯୬୫

୨। ଭକ୍ତିସୁଧାନିଧି-ନାରାୟଣାନନ୍ଦ ଅବଧୂତ ସ୍ୱାମୀ ,, ୧୯୬୫

୩। ସଂଚୟନ ସଂ: ବସନ୍ତ କୁମାର ଶତପଥୀ ୧୯୬୪

୪। ସାରଳା ମହାଭାରତ ସଂ: ଆର୍ତ୍ତବଲ୍ଲଭ ମହାନ୍ତି ୧୯୬୫

୫। ଦାଣ୍ଡୀ ରାମାୟଣ ସଂ: ଗୋବିନ୍ଦ ରଥ ପ୍ରଥମ ରାଜ ସଂସ୍କରଣ

୬। ଭଞ୍ଜବଂଶାନୁଚରିତ- ମାଗୁଣି ଦାଶ ୨ୟ ସଂସ୍କରଣ:୧୯୭୭

୭। ଘୁମୁସର ଭଞ୍ଜ ବଂଶାବଳୀ ସୂର୍ଯ୍ୟମଣି ଚ୍ୟାଉପଟ୍ଟନାୟକ
ସଂ: ଦୁର୍ଗାମାଧବ ନନ୍ଦ ୧୯୭୩

୮। ରସ ପଞ୍ଚକ-ଉପେନ୍ଦ୍ର ଭଞ୍ଜ ଉପେନ୍ଦ୍ର ଭଞ୍ଜ ଗ୍ରନ୍ଥାବଳୀ
(ଧର୍ମଗ୍ରନ୍ଥ ଷ୍ଟୋର)

୯। ଗୀତାଭିଧାନ ,, ,, ୧୯୭୫

୧୦। ଚନ୍ଦ୍ରଭାଗା-ରାଧାନାଥ ରାୟ ରାଧାନାଥ ଗ୍ରନ୍ଥାବଳୀ
(କଟକ ଟ୍ରେଡ଼ିଂ କଂପାନୀ) ୧୯୭୬

୧୧। ଗୋବିନ୍ଦଚନ୍ଦ୍ର-ଯଶୋବନ୍ତ ଦାସ ଓଡ଼ିଶାର ନାଥ ସଂପ୍ରଦାୟ ଓ
ନାଥ ସାହିତ୍ୟ
ସଂ:ଡକ୍ଟର ବଂଶୀଧର ମହାନ୍ତି ୧୯୬୮

୧୨। ଗୋରେଖ ସଂହିତା-ଚନ୍ଦ୍ରଶେଖର ନାଥ ,, ୧୯୬୮

୧୩। ଚର୍ଯ୍ୟା ଗୀତିକା ସଂ:ଡକ୍ଟର ଖଗେଶ୍ୱର ମହାପାତ୍ର ୧୯୭୬

୧୪। ପଲ୍ଲୀଗୀତି ସଂଚୟନ ସଂ:ଡକ୍ଟର କୁଞ୍ଜବିହାରୀ ଦାଶ ୧୯୫୪

୧୫। ଶ୍ରୀମଦ୍‌ଭାଗବତ ରାଜକିଶୋର ଦାସଙ୍କ ଦ୍ୱାରା ସଂକଳିତ –

୧୬। ଲାବଣ୍ୟବତୀ ସଂ:ଆର୍ତ୍ତବଲ୍ଲଭ ମହାନ୍ତି ୧୯୫୨

ଖ) ସମାଲୋଚନା

୧। ବଳରାମ ଦାସ ଓ ଓଡ଼ିଆ ରାମାୟଣ-ଡଃ ନରେନ୍ଦ୍ରନାଥ ମିଶ୍ର ୧୯୫୫

୨। ଅଚ୍ୟୁତାନନ୍ଦ ଓ ପଞ୍ଚସଖା ଧର୍ମ-ଚିତ୍ତରଞ୍ଜନ ଦାସ ୧୯୫୧

୩। ଭଞ୍ଜପ୍ରଭା ସଂ:କଳିଙ୍ଗ ଭାରତୀ(ପରିବର୍ଦ୍ଧିତ ୨ୟ ସଂସ୍କରଣ)୧୯୭୫

୪। ଆଲୋଚନାମାଳା ଡକ୍ଟର କାହ୍ନୁଚରଣ ମିଶ୍ର ୧୯୬୭

୫। କାବ୍ୟ ସମ୍ବାଦ ,, ଦାଶରଥୀ ଦାସ ୧୯୭୩

୬। ରସକଲ୍ଲୋଳ ସମୀକ୍ଷା-ଗୌରୀକୁମାର ବ୍ରହ୍ମା ୧୯୬୬

୭। ଓଡ଼ିଶାର ନାଥ ସମ୍ପ୍ରଦାୟ ଓ
ନାଥ ସାହିତ୍ୟ ଡକଟର ବଂଶୀଧର ମହାନ୍ତି ୧୯୬୮

୮। ଓଡ଼ିଆ ଲୋକଗୀତ ଓ କାହାଣୀ-ଡକ୍‌ଟର କୁଞ୍ଜବିହାରୀ ଦାଶ ୧୯୫୮

୯। ଓଡ଼ିଆ ଭାଷା ଓ ସାହିତ୍ୟ-ପଣ୍ଡିତ ନୀଳକଣ୍ଠ ଦାସ ୧୯୫୮

୧୦। ଓଡ଼ିଆ ସାହିତ୍ୟର ଇତିହାସ-ପଣ୍ଡିତ ବିନାୟକ ମିଶ୍ର ୧୯୬୨

୧୧। ବୈଦିକ ସାହିତ୍ୟ ଓ ସଂସ୍କୃତି-ଅଭିନ୍ନ ଚନ୍ଦ୍ର ଦାଶ ୧୯୭୨

୧୨। ଓଡ଼ିଆ ପଲ୍ଲୀ ସାହିତ୍ୟ-ଡକ୍‌ଟର ନଟବର ସାମନ୍ତରାୟ ୧୯୭୦

୧୩। ସାହିତ୍ୟ ଓ ସାହିତ୍ୟିକ-ସୁଦର୍ଶନ ଆଚାର୍ଯ୍ୟ ୧୯୬୮

୧୪। ଓଡ଼ିଆ ସାହିତ୍ୟର ଇତିହାସ-ଡକ୍‌ଟର ମାୟାଧର ମାନସିଂହ ୧୯୭୬

୧୫। ଓଡ଼ିଆ ସାହିତ୍ୟର ଆଦିପର୍ବ-ସୁରେନ୍ଦ୍ର ମହାନ୍ତି ୧୯୬୩

୧୬। ଓଡ଼ିଆ ସାହିତ୍ୟର ମଧ୍ୟପର୍ବ ,, ୧୯୬୭

୧୭। ଓଡ଼ିଆ ସାହିତ୍ୟର କ୍ରମବିକାଶ ,, ୧୯୭୮

୧୮। ଓଡ଼ିଆ ଉପନ୍ୟାସ-ଡକ୍‌ଟର କୃଷ୍ଣ ଚରଣ ବେହେରା ୧୯୬୮

୧୯। ଓଡ଼ିଆ ସାହିତ୍ୟର କ୍ରମପରିଣାମ-ପଣ୍ଡିତ ନୀଳକଣ୍ଠ ଦାସ ୧ ୭୭

୨୦। ଓଡ଼ିଶୀ ବୈଷ୍ଣବ ଧର୍ମ-ଡକ୍‌ଟର କାହ୍ନୁଚରଣ ମିଶ୍ର ୧୯୬୧

୨୧। ଭକ୍ତ ଚରଣ ଓ ମଥୁରା ମଙ୍ଗଳ-ଗୌରୀ କୁମାର ବ୍ରହ୍ମା ୧୯୬୭

୨୨। ସାହିତ୍ୟାଦର୍ଶ-ଡକ୍‌ଟର ନଟବର ସାମନ୍ତରାୟ ୧୯୬୦

୨୩। ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ-ଡଃ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ ୧୯୭୫

୨୪। ବିଦଗ୍ଧ ଚିନ୍ତାମଣି ପରିଚୟ-ଡକ୍‌ଟର ବଂଶୀଧର ମହାନ୍ତି ୧୯୬୭

୨୫। ଓଡ଼ିଆ ସାହିତ୍ୟର ଇତିହାସ-ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ(୨ୟ ଭାଗ)୧୯୭୮
(୩ୟ ଭାଗ) ୧୯୭୯
(୪ର୍ଥ ଭାଗ) ୧୯୮୧

୨୬। ଓଡ଼ିଆ ସାହିତ୍ୟର ଇତିହାସ-ପଠାଣି ପଟ୍ଟନାୟକ ୧୯୭୮

୨୭। ଚଳିତ ଶତାବ୍ଦୀର ଭାରତୀୟ ସାହିତ୍ୟ-ଡ଼କ୍ଟର ଗୋପାଳ ଚନ୍ଦ୍ର ମିଶ୍ର୧୯୭୪

୨୮। ଭଞ୍ଜ ଭୂମିକା (୧ମ ଖଣ୍ଡ -ଗୌରୀ କୁମାର ବ୍ରହ୍ମା ୧୯୭୫

୨୯। ସାହିତ୍ୟ ଦୀକ୍ଷା-ଡ଼କ୍ଟର ଦେବୀ ପ୍ରସନ୍ନ ପଟ୍ଟନାୟକ ୧୯୬୫

୩୦। କାବ୍ୟ ଓ କଳାକାର-ଚିନ୍ତାମଣି ବେହେରା ୧୯୬୭

୩୧। ଦେଶ, କାଳ,ପାତ୍ର ଓ ଫକୀରମୋହନ-ଡ଼କ୍ଟର ଜେ. ଭି. ବୋଲଟନ୍ ୧୯୭୬

୩୨। ଓଡ଼ିଶା ଇତିହାସ-ଡ଼କ୍ଟର ହରେକୃଷ୍ଣ ମହତାବ (ଅଭିନବ ୨ୟ ସଂସ୍କରଣ) ୧୯୬୪

୩୩। ଓଡ଼ିଶାର ଇତିହାସ-ପ୍ୟାରୀ ମୋହନ ଆଚାର୍ଯ୍ୟ ୧୯୨୫

୩୪। ମୋ ସମୟର ଓଡ଼ିଶା-ଡ଼କ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ୧୯୭୮

୩୫। ଉତ୍କଳ ଇତିହାସ-କୃପାସିନ୍ଧୁ ମିଶ୍ର ୧୯୩୩

୩୬। ଓଡ଼ିଆ ଗୀତିକାବ୍ୟ-ଡ଼କ୍ଟର ଜାନକୀ ବଲ୍ଲଭ ମହାନ୍ତି (୨ୟ ମୁଦ୍ରଣ) ୧୯୭୬

ଗ) ଅଭିଧାନ

୧। ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ସଂ. ଗୋପାଳ ଚନ୍ଦ୍ର ପ୍ରହରାଜ ୧୯୩୭

ଘ) ପତ୍ର ପତ୍ରିକା

୧। ଝଙ୍କାର

୨। କୋଣାର୍କ

## -ବଙ୍ଗଳା-

କ) ଆଲୋଚନା ଗ୍ରନ୍ଥ

୧। ଇଂରାଜୀ ସାହିତ୍ୟେର ଇତିବୃତ୍ତ ଓ ମୂଲ୍ୟାୟନ-
ବିମଳ କୃଷ୍ଣ ସରକାର ୧୩୭୪ ସା

୨। ଚଣ୍ଡୀଦାସ ଓ ବିଦ୍ୟାପତି-ଶଂକରୀ ପ୍ରସାଦ ବସୁ ପରିବର୍ଦ୍ଧିତ ଓ
ସଂଶୋଧିତ ସଂସ୍କରଣ

୩। ହାଜାର ବଛରେର ପ୍ରେମେର କବିତା-ସଂ:ଅବନ୍ତୀ ସାନ୍ୟାଲ
(୨ୟ ସଂସ୍କରଣ) ୧୩୬୮ ସା

୪। ଭାରତୀୟ ସାହିତ୍ୟେର ଇତିହାସ-ସୁକୁମାର ସେନ ୧୩୬୮ସା

୫। ବୈଷ୍ଣବ ସାହିତ୍ୟ ପ୍ରବେଶିକା-ହିମାଂଶୁ ଚନ୍ଦ୍ର ଚୌଧୁରୀ . ୧୩୫୮ସା

୬। ମନୋବିଦ୍ୟା-ପ୍ରମୋଦ ବନ୍ଧୁ ଦାଶଗୁପ୍ତ ୧୯୬୩

୭। ଫ୍ରଏଡ଼େର ଭାଲବାସା-ନୃପେନ୍ଦ୍ର କୁମାର ବସୁ ୧୯୫୯

୮। ପଦାବଳୀ ସାହିତ୍ୟ-କାଳିଦାସ ରାୟ ତୃତୀୟ ସଂସ୍କରଣ-୧୩୮୩ସା

ଖ) ପଦ୍ୟ ଗ୍ରନ୍ଥ

୧। ବୌଦ୍ଧଗାନ ଓ ଦୋହା-ସଂ: ହରପ୍ରସାଦ ଶାସ୍ତ୍ରୀ ୧୩୬୬

୨। ଶ୍ରୀ ଚୈତନ୍ୟ ଚରିତାମୃତ (Bhakti Vedanta Book Trust)
୧୯୭୪

ଗ) କୋଷ ଗ୍ରନ୍ଥ

୧। ବିଶ୍ୱକୋଷ ନଗେନ୍ଦ୍ର ନାଥ ବସୁ

ଘ) ପତ୍ର ପତ୍ରିକା

୧। ଦେଶ ୧୪ ଏପ୍ରିଲ ୧୯୭୯

୨। ରହସ୍ୟ ସନ୍ଦର୍ଭ ୨ୟ ପର୍ବ/୧୫ଶ ଖଣ୍ଡ
,, ୨ୟ ପର୍ବ/୧୬ଶ ଖଣ୍ଡ

## -ହିନ୍ଦୀ-

କ) ଆଲୋଚନା ଗ୍ରନ୍ଥ


୧। ମହାକବି କାଳିଦାସ-ଡ଼କ୍ଟର ଉମାଶଂକର ତିଓ୍ୱାରୀ ୧୯୭୨

୨। ଭାରତୀୟ ପ୍ରେମାଖ୍ୟାନ କାବ୍ୟ-ଶ୍ରୀ ହରିକାନ୍ତ ଶ୍ରୀବାସ୍ତବ ୧୯୬୧

୩। ଅପଭ୍ରଂଶ ସାହିତ୍ୟ-ହରିବଂଶ କଛୋତ (ଭାରତୀ ସାହିତ୍ୟ ମନ୍ଦିର)

୪। ହିନ୍ଦୀ ରୀତି ସାହିତ୍ୟ-ଡ଼କ୍ଟର ଭଗୀରଥ ମିଶ୍ର, ଦ୍ୱିତୀୟା ବୃତ୍ତ ୧୯୬୩

୫। ରୀତିକାବ୍ୟ ସଂଗ୍ରହ-ଡ଼କ୍ଟର ଜଗଦୀଶ ଗୁପ୍ତ, ୨ୟ ସଂସ୍କରଣ ୧୯୬୦

୬। ରୀତି କାବ୍ୟ କି ଭୂମିକା-ଡ଼ଃ ନଗେନ୍ଦ୍ର ୬ଷ୍ଠ ସଂସ୍କରଣ

୭। ହିନ୍ଦୁତ୍ୱ-ରାମଦାସ ଗୌଡ଼ ୧୯୩୮

୮। ଭାରତୀୟ ସାହିତ୍ୟ ମେ ଶୃଙ୍ଗାର ରସ-ଡ଼ଃ ଗଣପତି ଗୁପ୍ତ ୧୯୭୨

୯। ଆଧୁନିକ ହିନ୍ଦୀ କବିତା ମେଁ ପ୍ରେମ ଔର ସୌନ୍ଦର୍ଯ୍ୟ-
ଡ଼ଃ ରାମେଶ୍ୱରଲାଲ ଖଣ୍ଡେଲଓ୍ୱାଲ ୧୯୫୮

୧୦। ଶୃଙ୍ଗାର ରସ କା ଶାସ୍ତ୍ରୀୟ ବିବେଚନ-ଡ଼ଃ ଇନ୍ଦ୍ରପାଲ ସିଂ ୧୮୬୭

୧୧। ଭାରତୀୟ ସ୍ଥାପତ୍ୟ ଡ଼ଃ ଦ୍ୱିଜେନ୍ଦ୍ର ନାଥ ଶୁକ୍ଳ ୧୯୬୮


ଖ) କୋଷ ଗ୍ରନ୍ଥ


୧। ହିନ୍ଦୀ ଶବ୍ଦ ସାଗର (କାଶୀ ନଗରୀ ପ୍ରଚାରିଣୀ ସଭା) ୧୯୨୮


## -ସଂସ୍କୃତ-


୧। କୁମାର ସଂଭବମ୍-କାଳିଦାସ ଗ୍ରନ୍ଥାବଳୀ
(ସଂ. ଆଚାର୍ଯ୍ୟ ସୀତାରାମ ଚତୁର୍ବେଦୀ) ସଂ. ୨୦୦୭

୨। ରଘୁବଂଶମ୍

୩। ଅଭିଜ୍ଞାନ ଶକୁନ୍ତଳମ୍ — କାଳିଦାସ ଗ୍ରନ୍ଥାବଳୀ (ସ: ଆଚାର୍ଯ୍ୟ ସୀତାରାମ ଚତୁର୍ବେଦୀ)

୪। ଋତୁ ସଂହାରମ୍ — ,,

୫। ମେଘଦୂତମ୍ — (ଚୌଖମ୍ବା ସଂସ୍କୃତ ସିରିଜ୍) ୧୯୬୨

୬। ଶିଶୁପାଳ ବଧମ୍-ମାଘ (ଚୌଖମ୍ବା ବିଦ୍ୟାଭବନ) ୧୯୬୧

୭। କୀରାତାର୍ଜୁନୀୟମ୍-ଭାରବୀ (ଚୌଖମ୍ବା ସଂସ୍କୃତ ସିରିଜ୍) ହରିଦାସ ସଂସ୍କୃତ ଗ୍ରନ୍ଥମାଳା

୮। ଉତ୍ତର ରାମ ଚରିତମ୍-ଭବଭୂତି — ,, ୧୯୬୬

୯। କାବ୍ୟ ପ୍ରକାଶ ମମ୍ମଟ — (ଓଡ଼ିଶା ସାହିତ୍ୟ ଏକାଡ଼େମୀ) ୧୯୬୪

୧୦। ସାହିତ୍ୟ ଦର୍ପଣ-ବିଶ୍ୱନାଥ — (ଓଡ଼ିଶା ସାହିତ୍ୟ ଏକାଡ଼େମୀ) ୧୯୬୫

୧୧। କାମ ସୂତ୍ରମ୍-ବାତ୍ସାୟନ — ସ:ଅନନ୍ତ ତ୍ରିପାଠୀ ଶର୍ମା ୧୯୭୨

୧୨। ଦଶରୂପ-ଧନଞ୍ଜୟ — Ed by George C.O. HAAS 1972

୧୩। ନାଟ୍ୟଶାସ୍ତ୍ର-ଭରତ — Vol I & Vol II. Ed. by Manomohan Ghosh 1956 1967

୧୪। ତୈତ୍ତରୀୟ ଉପନିଷଦ — (ଏକାଦଶୋପନିଷଦ-ପ୍ରକାଶକ ମୋତିଲାଲ ବାନାରସୀ ଦାସ) ୧୯୬୬

୧୫। ଛାନ୍ଦୋଗ୍ୟ ଉପନିଷଦ — ,,

୧୬। ବୃହଦାରଣ୍ୟକ ଉପନିଷଦ — ,,

୧୭। ରାମାୟଣ — ସ: ପଣ୍ଡିତ ଲିଙ୍ଗରାଜ ମିଶ୍ର (ଗୋପବନ୍ଧୁ ସାହିତ୍ୟ ମନ୍ଦିର) ୧୯୫୫

୧୮। ମହାଭାରତ — (ଗଦ୍ୟାନୁବାଦ— ଓଡ଼ିଶା ସାହିତ୍ୟ ଏକାଡ଼େମୀ)

୧୯। ଶିବ ପୁରାଣ — ସ: ପଣ୍ଡିତ ପଞ୍ଚାନନ ତର୍କରତ୍ନ ୧୩୮୮ ସାଲ

୨୦। ଲିଙ୍ଗ ପୁରାଣ — ,, ,, ଶକ ୧୮୧୨ ସାଲ

୨୧। କାଳିକା ପୁରାଣ — ,, ,, ୧୩୮୪ ସାଲ

୨୨। ସୌନ୍ଦର ନନ୍ଦ-ଅଶ୍ୱଘୋଷ ସଂ: ସୂର୍ଯ୍ୟନାରାୟଣ ଚୌଧୁରୀ ୨୦୧୬ ସଂ

୨୩। ବୁଦ୍ଧଚରିତ-ଅଶ୍ୱଘୋଷ (ଚୌଖମ୍ବା ବିଦ୍ୟାଭବନ) ୧୯୬୬

୨୪। ମାଳତୀ ମାଧବ-ଭବଭୂତି (ମୋତିଲାଲ ବାନାରସୀ ଦାସ) ୧୯୬୮

୨୫। ଅମରୁ ଶତକ (ଚୌଖମ୍ବା ସଂସ୍କୃତ ସିରିଜ୍) ୧୯୬୬

୨୬। କାଦମ୍ବରୀ-ବାଣଭଟ୍ଟ (ଚୌଖମ୍ବା ସଂସ୍କୃତ ସିରିଜ୍) ୧୯୬୧

୨୭। ଶୃଙ୍ଗାରଶତକ-ଭର୍ତୃହରି (ଚୌଖମ୍ବା ବିଦ୍ୟାଭବନ) ୧୯୬୭

୨୮। ଚୌର ପଞ୍ଚାଶିକା-ବିହ୍ଲଣ (ଓରିଏଣ୍ଟାଲ୍ ବୁକଏଜେନ୍‌ସିଜ) ୧୯୪୬

୨୯। କର୍ପୂର ମଞ୍ଜରୀ-ରାଜଶେଖର ସଂ ଧନେଶ୍ୱର ମହାପାତ୍ର ୧୯୬୩

୩୦। ଗାଥା ସପ୍ତଶତୀ-ହାଳ (ଚୌଖମ୍ବା ସଂସ୍କୃତ ସିରିଜ) ୧୯୬୯

୩୧। ନୈଷଧ ମହାକାବ୍ୟମ୍-ଶ୍ରୀହର୍ଷ (ଚୌଖମ୍ବ) ୧୯୬୧

୩୨। ଉଜ୍ଜ୍ୱଳ ନୀଳମଣି-ରୂପ ଗୋସ୍ୱାମୀ (ପ୍ରକାଶକ-ରାମଦେବ ମିଶ୍ର
୩ୟ ସଂସ୍କରଣ (ବଂଗଳା)୧୩୨୫ ସାଲ

୩୩। ଭକ୍ତିରସ ତରଙ୍ଗିଣୀ-ନାରାୟଣ ଭଟ୍ଟ (ପ୍ରକାଶକ-କୃଷ୍ଣଦାସ) ସଂ: ୨୦୦୪

୩୪। ରସ ଗଙ୍ଗାଧର-ଜଗନ୍ନାଥ (ଚୌଖମ୍ବା ବିଦ୍ୟାଭବନ) ୧୯୭୦

୩୫। ଶୃଙ୍ଗାର ପ୍ରକାଶ ଭୋଜରାଜ Ed. by V.Raghavan ୧୯୬୩

୩୬। ସରସ୍ୱତୀ କଣ୍ଠାଭରଣ ,, (ନିର୍ଣ୍ଣୟ ସାଗର ପ୍ରେସ) ୧୯୩୪

୩୭। ଅଗ୍ନି ପୁରାଣ (The Alankar Section of the Agni
Puran-Ed by Suresh Mohan Bhattacharya) ୧୯୭୬

୩୮। ଧ୍ୱନ୍ୟାଲୋକ ଆନନ୍ଦ ବର୍ଦ୍ଧନ (ଓଡ଼ିଶା ସାହିତ୍ୟ ଏକାଡ଼େମୀ) ୧୯୬୪

୩୯। ଅଥର୍ବ ବେଦ Visheswarananda Vedic
Research Institute)

୪୦। ଋଗ୍‌ବେଦ-ବୈଦିକ ସଂଶୋଧନ ମଣ୍ଡଳ ଶକ ୧୮୫୮

୪୧। ଅମରକୋଷ-(ରାଧାରମଣ ପୁସ୍ତକାଳୟ) ୧୯୭୦

୪୨। କାବ୍ୟାଦର୍ଶ-ଦଣ୍ଡୀ (ଚୌଖମ୍ବା ବିଦ୍ୟାଭବନ) ୧୯୫୮

୪୩। କାବ୍ୟାଲଙ୍କାର ସୂତ୍ରବୃତ୍ତି-ବାମନ (ଆତ୍ମାରାମ
ଏଣ୍ଡ ସନ୍ସ) ପ୍ରଥମ ସଂସ୍କରଣ

୪୪। ଔଚିତ୍ୟ ବିଚାର ଚର୍ଚ୍ଚା-କ୍ଷେମେନ୍ଦ୍ର (ଚୌଖମ୍ବା ବିଦ୍ୟାଭବନ) ୧୯୬୪

୪୫। ଗୀତ ଗୋବିନ୍ଦ (ରାଧାରମଣ ପୁସ୍ତକାଳୟ) ପ୍ରଥମ ସଂସ୍କରଣ

୪୬। ସୂକ୍ତି ମୁକ୍ତାବଳୀ (ଓରିଏଣ୍ଟାଲ ଇନ୍ଷ୍ଟିଚ୍ୟୁଟ୍, ବରୋଦା) ୧୯୩୮

୪୭। କାମକଳା ବିଳାସ (J & K State) ୧୯୧୮

୪୮। ହରିବଂଶ ପୁରାଣ ସଂ: ଶ୍ରୀରାମ ନାରାୟଣ ଆର୍ଯ୍ୟ ୧୯୬୮

୪୯। ଶ୍ରୀମଦ୍‌ଭାଗବତ (ପ୍ରକାଶକ-ରାମନାରାୟଣ
ବିଦ୍ୟାରତ୍ନ) ୧୮୮୩ ସାଲ

୫୦। ବିଷ୍ଣୁ ପୁରାଣ —

୫୧। ବାୟୁ ପୁରାଣ ସଂ: ପଞ୍ଚାନନ ତର୍କରତ୍ନ ୧୩୧୭ସାଲ

୫୨। ବ୍ରହ୍ମପୁରାଣ ,, ୧୩୧୬ ସାଲ

୫୩। ବିଷ୍ଣୁଧର୍ମୋତ୍ତର ମହାପୁରାଣ-(କ୍ଷେମରାଜ ଶ୍ରୀକୃଷ୍ଣ ଦାସ ପ୍ରକାଶିତ)

୫୪। ଗୀତା (Dvine Life Society) ୧୯୬୯

୫୫। ମନୁସ୍ମୃତି (Ed. by Mahamohopadhyaya ୧୯୩୨
Ganganath Jha )

୫୬। ନାରଦ ଭକ୍ତିସୂତ୍ର (Indian Rennaissance Library)
୧୯୨୪

୫୭। ମୈତ୍ରାୟଣୀ ସହିତା

୫୮। ଶତପଥ ବ୍ରାହ୍ମଣ (Ed. by Max Muller) ୧୯୬୬

୫୯। କାବ୍ୟାଲଙ୍କାର   ରୁଦ୍ରଟ

୬୦। ବାଚସ୍ପତ୍ୟମ୍   (ଚୌଖମ୍ବା ସଂସ୍କୃତ ସିରିଜ)   ୧୯୬୨

୬୧। ଶବ୍ଦ କଳ୍ପଦ୍ରୁମ   ,,   (୩ୟ ସଂସ୍କରଣ) ୧୯୬୭

## ଇଂରାଜୀ

1. History of Sanskrit Literature (A.B.Keith) 1920

2 Anciennt Indian Erotics And Erotic Literature-
by S K Dey 1969

3. Psychology of Sex-by Havelock Ellis 1933

4. The Erotic Motive in Literature-
by Albert Mordell 1962

5. The Erotic In Literature-by David Loth 1961

6. Encyclopaedia of Religion And Ethics Vol III 1930

7. The Readers' Companion to World Literature-
(New American Library, New York 1956

8. Rubaiyat of Omar Khayyam-
(Ed. Edward Fitzgerald) Rupa & Co 1979

9. The Cruelest Month-by James J. Wilhelm 1965

10. The Story of Women of India-
by Padmini Sengupta 1974

11. Anthropology-by A. I. Kroeber 1976

12. Psychological Studies of Rasa-by Rakesh Gupta 1950

13. The Wonder That was India-by A. L. Basham 1974

14 Sex In Civilisation-Ed by V. F. Calverton 1929

15. Eros Kalos-by Jean Marcade 1962

16 Sacrifice to Attis by William A. Brend 1936

17. Sex In History-by G. Rettray Jaylor 1953

18. Ratilila-by Giuseppe Tussi 1969

19. Eros and Evil-by R. E. Masters 1962

20. The Cult of Jagannath-by K. C. Mishra 1971

21. Eros and Civilisation-by Herbert Marcuse —

22. Erotic Sculpture of India-by Max Pol Fouchest 1957

23. Ananga Ranga-by Kalyan Malla
Tr. by F. F. Arbuthnot & others 1964

24. Archaeological Remains of Bhubaneswar-
by K. C. Panigrahi 1961

25. The Characters of Love-by Jhon Baley 1960

26. The Eros And The Romantic-by Gerald Enscoe 1967

27. The Cult of Jagannath and Regional Traditions-
by A. Eschmann and Others 1978

28. Collected Essays In Literary Criticism-
by Herbert Read 1950

29. Complete Works of Shakespear-
(Oxford University Press) 1977

30. Typical Selection From Oriya Literature
Ed. by B. C. Majumdar 1923

31. Three Contributions to the Theory of Sex-
Tr. by A. A. Brill 1930

32. Studies in Nayak Nayikabheda-
by Rakesh Gupta 1967

33. Indian Painting-by C. Sivaram Murty 1970

34. Inscriptions of Orissa, Vol IV-Ed. S. N Rajguru
1966

35. The Holy Bible (American Bible Society) 1974





କବି ଓ ସମାଲୋଚକ **ଡକ୍ଟର ବନମାଳୀ ବାରିକ**(୧୯୪୭)ଙ୍କ ଜନ୍ମ ବାଲେଶ୍ୱର ଜିଲ୍ଲାର ସିଂଲଥାନା ଅନ୍ତର୍ଗତ ଇଡ଼ଦା ଗ୍ରାମରେ । ଫକୀର ମୋହନ କଲେଜରୁ ଅର୍ଥଶାସ୍ତ୍ରରେ ଅନର୍ସ, ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟରୁ ଓଡ଼ିଆ ଏମ୍.ଏ (ପ୍ରଥମ ଶ୍ରେଣୀରେ ପ୍ରଥମ) ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ଡିଲିଟ୍. ଉପାଧି ଲାଭ । ୧୯୭୨ ମସିହାରୁ ବିଭିନ୍ନ ସରକାରୀ କଲେଜରେ ଅଧ୍ୟାପନା । ସଂପ୍ରତି 'କାନ୍ଦିସ୍ଥ କବି ଶ୍ରୀକିଶୋର କଲେଜର ଓଡ଼ିଆ ବିଭାଗର ପ୍ରାଧ୍ୟାପକ ଓ ମୁଖ୍ୟ । ଅଦ୍ୟାବଧି ତିନିଗୋଟି କାବ୍ୟଗ୍ରନ୍ଥ ପ୍ରକାଶିତ **କସ୍ତୁରୀ ନଦୀର ଗଂଧ** (୧୯୮୦), **ଅନ୍ୟ ଅଙ୍ଗୀକାର** (୧୯୮୮), **ରାଗର ନାମ ଅନୁରାଗ** (୧୯୮୮)।

କେଦାରନାଥ "ଗବେଷଣା ପରିଷଦ, ଫୋକ୍‌ଲୋର ଏକାଡେମୀ, ଭୁବନେଶ୍ୱର, ଓଡ଼ିଆ ଗବେଷଣା ପରିଷଦ, ପଣ୍ଡିତ ନୀଳକଣ୍ଠ ସ୍ମୃତିସମିତି, ଅଙ୍କୁର ସାହିତ୍ୟ ଓ ସଂସ୍କୃତି ପ୍ରତିଷ୍ଠାନ, ବସନ୍ତ ମୁଦୁଲି ସ୍ମୃତି ସଂସଦ ପ୍ରଭୃତିର ସେ ଜଣେ ଆଜୀବନ ଓ ସକ୍ରିୟ ସଭ୍ୟ ।

ତାଙ୍କ ରଚିତ **ଓଡ଼ିଶା ଓ ଓଡ଼ିଆ ସାହିତ୍ୟ** (ଅନୁବାଦ ଓ ସଂପାଦନା) ଓ **ଭଂଜୀୟ କାବ୍ୟ : ଏକ ଅନ୍ତରଙ୍ଗ ଅନୁଶୀଳନ**, ଏବେ ପ୍ରକାଶୋନ୍ମୁଖୀ ।